ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର କଥିତ

# ବିବାହ ଓ ପ୍ରଜନନ ପ୍ରସଙ୍ଗ

ସଂକଳକ

ଶ୍ରୀବିଦ୍ୟୁତ୍‌ରଞ୍ଜନ ଚକ୍ରବର୍ତ୍ତୀ

ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ କଥିତ

# ବିବାହ ଓ ପ୍ରଜନନ-ପ୍ରସଙ୍ଗ



ସଂକଳକ

ଶ୍ରୀବିଦ୍ୟୁତ୍‌ରଞ୍ଜନ ଚକ୍ରବର୍ତ୍ତୀ

ପ୍ରକାଶକ :
ଶ୍ରୀ ଦିବାକର ସରକାର
ଚର୍ଯ୍ୟାଶ୍ରମ ପ୍ରକାଶନ
'ଅସ୍ତିକାୟନ' ସତ୍‌ସଙ୍ଗ, ଦେଓଘର, ଝାଡ୍ଖଣ୍ଡ - ୮୧୪୧୧୬

ପରିବେଶକ :
ବିବେକ-ବିତାନ
ସତ୍‌ସଙ୍ଗ, ଦେଓଘର, ଝାଡ଼ଖଣ୍ଡ

ଅନୁବାଦିକା : ଶ୍ରୀମତୀ ଶୈଳବାଳା ପ୍ରଧାନ

ପ୍ରଥମ ପ୍ରକାଶ : (ମୂଳ ବଙ୍ଗଳା) ତାଳନବମୀ ୧୪୧୦
ଦ୍ୱିତୀୟ ପ୍ରକାଶ : (ମୂଳ ବଙ୍ଗଳା) ତାଳନବମୀ ୧୪୧୧
ପ୍ରଥମ ପ୍ରକାଶ (ଓଡ଼ିଆ ଅନୁବାଦ) ବିଜୟା ଦଶମୀ ୨୦୧୮ ବଙ୍ଗାବ୍ଦ

*ଅକ୍ଷର ବିନ୍ୟାଶ ଓ ମୁଦ୍ରଣ ସହଯୋଗୀତା :* ଜୟଗୁରୁ ଉଦ୍ୟୋଗ
୫୯, ସୂର୍ଯ୍ୟସେନ୍ ଷ୍ଟ୍ରୀଟ୍, କୋଲକାତା - ୭୦୦ ୦୦୯

ମୁଦ୍ରକ · ଅନିଲ ଲିଥୋଗ୍ରାଫିଙ୍ଗ୍ କୋ
୧୩, ଶଶୀଭୂଷଣ ଦେ ଷ୍ଟ୍ରୀଟ୍, କୋଲକାତା - ୭୦୦ ୦୧୨

ଦକ୍ଷିଣା :
(Price) : Rs. 1[illegible]/- (Rupe[illegible]2 Hundred) only

# ସଂକଳକଙ୍କର ନିବେଦନ

ପ୍ରିୟପରମ ଶ୍ରୀଶ୍ରୀଠାକୁରଙ୍କ ଆଶୀର୍ବାଦରୁ ବିବାହ ଓ ପ୍ରଜନନ ପ୍ରସଙ୍ଗରେ ତାଙ୍କର କହିଥିବା କଥାଗୁଡ଼ିକର ସଂକଳନ କାର୍ଯ୍ୟ ସମାପ୍ତ ହେଲା।

ମଣିଷର ଜୀବନ ଓ ସଭ୍ୟତାରେ ବିବାହ ଓ ପ୍ରଜନନର ସ୍ଥାନହିଁ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ। କାରଣ, ତାହା ମଧ୍ୟ ଦେଇହିଁ ମଣିଷ ନିଜକୁ ବହୁରେ ଉଭିନ୍ନ କରି ତୋଳି ପାରେ। ବିବାହ ଓ ପ୍ରଜନନର ପ୍ରୟୋଗ ଯେପରି, ମଣିଷର ଜନ୍ମ ମଧ୍ୟ ହୁଏ ସେହିପରି। ଏବଂ ସେହିପରି ଭାବରେହିଁ ସେ ତାର ସଂଶ୍ଳିଷ୍ଟ ଯାହା-କିଛିକୁ ପ୍ରଭାବିତ ଓ ବିନ୍ୟସ୍ତ କରିଥାଏ। ସୁପ୍ରାଚୀନ କାଳରେ ଭାରତବର୍ଷର ସମାଜ ଓ ପ୍ରଜନନ ବିଜ୍ଞାନୀମାନେ ଏହି ସନାତନ ସତ୍ୟକୁ ଅନୁଧାବନ କରି ବିବାହ ଓ ପ୍ରଜନନ ପାଇଁ ଏମିତି ସବୁ ନୀତି-ନିର୍ଦ୍ଦେଶ ପ୍ରଣୟନ କରିଥିଲେ ଯେଉଁଗୁଡ଼ିକର ବାସ୍ତବ ପ୍ରୟୋଗ ଓ ଅନୁଶୀଳନ ଏହି ଦେଶକୁ ସବୁ ଦିଗରୁ ଉନ୍ନତିର ଚରମ ଶିଖରକୁ ନେଇ ଯାଇଥିଲା। କିନ୍ତୁ ସହସ୍ରାଧିକ ବର୍ଷର ପରାଧୀନତା ଏବଂ ତାର ପରିଣତି ହିସାବରେ Cultural conquest ବା କୃଷ୍ଟିଗତ ପରାଭବର ପ୍ରଭାବରେ ଯେଉଁଦିନ ଠାରୁ ଆମେ ସେଗୁଡ଼ିକୁ ଉପେକ୍ଷା କରିବାକୁ ଆରମ୍ଭ କରିଛୁ, ଦେଶର ଦୁର୍ଦ୍ଦିନ ମଧ୍ୟ ସେହିଦିନ ଠାରୁ ଆମ୍ଭମାନଙ୍କୁ ରିହାଇ ଦେଉ ନାହିଁ। ଶାସ୍ତ୍ରନିହିତ ବିଜ୍ଞାନର ବାଣୀକୁ ଅବହେଳା କରି ଯଥେଚ୍ଛ ବିବାହ ଓ ପ୍ରଜନନର ପରିଣାମରେ ପ୍ରବୃତ୍ତିମୁଖୀ ନିମ୍ନ ପ୍ରକୃତିର ମଣିଷଙ୍କ ଭିଡ଼ରେ ଦେଶର ସୁପ୍ରାଚୀନ କୃଷ୍ଟି, ସୁମହାନ ଐତିହ୍ୟ ଏବଂ ଜୀବନୀୟ ପ୍ରଥାସମୂହର କିଛିହିଁ ଆଉ ପ୍ରାୟ ଅବଶିଷ୍ଟ ନାହିଁ। ଜନ ଓ ଜାତିର ବାହ୍ୟିକ ଉତ୍କର୍ଷ ଓ ବିକାଶ ଯାହା ହୋଇଛି ସେ ସବୁହିଁ ଭିତ୍ତିହୀନ ଓ ନିରର୍ଥକ ହୋଇ ଉଠିଛି।

ବ୍ୟକ୍ତି, ଦମ୍ପତି, ଗୃହ, ସମାଜ ଓ ରାଷ୍ଟ୍ରର ଏହି ଜଟିଳ ସଂକଟରେ ଭୁକ୍ତଭୋଗୀ ସର୍ବସ୍ତରର ମଣିଷ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କର ଦରବାରକୁ ଆସିଛନ୍ତି ଏଥିରୁ ପରିତ୍ରାଣର ଉପାୟ ଜାଣିବା ପାଇଁ। ସେମାନଙ୍କର ଆକୂଳ ଜିଜ୍ଞାସାରେ ପ୍ରିୟପରମଙ୍କର ଦୈବୀ ଚେତନା ମନ୍ଥନ କରି ଯେଉଁ ସମାଧାନ-ବାଣୀ ନିର୍ଗତ ହୋଇଛି ତାର ନିଖୁଁତ ଅନୁଚଳନ ଓ ଅନୁପାଳନହିଁ ବର୍ତ୍ତମାନ ଜନ ଓ ଜାତିର ଏକମାତ୍ର ରକ୍ଷାକବଚ।

ଏହି ସଂକଳନରେ 'ନାରାୟଣୀ କିରାଣୀ' ପରମ ଶ୍ରଦ୍ଧା-ଭାଜନ ଶ୍ରୀପ୍ରଫୁଲ୍ଲ କୁମାର ଦାସ ସଂକଳିତ 'ଆଲୋଚନା-ପ୍ରସଙ୍ଗେ' (ଆ.ପ୍ର.) ର ଏବଂ ଶ୍ରଦ୍ଧେୟ ଦେବୀପ୍ରସାଦ

ମୁଖୋପାଧ୍ୟାୟ ସଂକଳିତ 'ଦୀପରକ୍ଷୀ' (ଦୀ.ର) ର ଏ ପର୍ଯ୍ୟନ୍ତ ପ୍ରକାଶିତ ଯଥାକ୍ରମେ ବାଇଶଟି ଓ ଛଅଟି ଖଣ୍ଡରୁ ବିବାହ ଓ ପ୍ରଜନନ ପ୍ରସଙ୍ଗରେ କୁହାଯାଇଥିବା ଶ୍ରୀଶ୍ରୀଠାକୁରଙ୍କର ପ୍ରାୟ ସବୁ କଥାହିଁ ସଂଗୃହିତ ହୋଇଛି। ଆଲୋଚ୍ୟ ବିଷୟ ସହିତ ସଙ୍ଗତି ରଖି ଶ୍ରୀଶ୍ରୀଠାକୁରଙ୍କର ଉକ୍ତିଗୁଡ଼ିକର ଭିନ୍ନ ଭିନ୍ନ ଶିରୋନାମ ଦିଆ ହୋଇଛି। ପ୍ରତ୍ୟେକ ଅନୁଚ୍ଛେଦର ଶେଷରେ ମୂଳ ବହିର ନାମ, ଖଣ୍ଡ ସଂଖ୍ୟା ଏବଂ ଆଲୋଚନାର ତାରିଖ ମଧ୍ୟ ଦିଆ ହୋଇଛି ଯାହାଦ୍ୱାରା ଆଗ୍ରହୀ ପାଠକ ପ୍ରୟୋଜନରେ ମୂଳ ବହି ଦେଖି ପାରିବେ। ଏକ ସୂଚୀପତ୍ର ମଧ୍ୟ କରାହୋଇଛି। ଶ୍ରୀମାନ ବୁଦ୍ଧଦେବ ଚକ୍ରବର୍ତ୍ତୀଙ୍କର ସୁଲିଖିତ ଭୂମିକା ଏହି ସଂକଳନର ମୂଳ ସୁରଟିକୁ ପରିସ୍ଫୁଟ କରିଛି।...

ବନ୍ଦେପୁରୁଷୋତ୍ତମମ୍!

ରଥଯାତ୍ରା ୧୪୧୦
ବିବେକ ବିତାନ
ସତ୍‌ସଙ୍ଗ, ଦେଓଘର

# ଭୂମିକା

ସଭ୍ୟତାର ବର୍ତ୍ତମାନ ସନ୍ଧିକ୍ଷଣରେ ଛିଡ଼ାହୋଇ ଆମ୍ଭମାନଙ୍କର ଅଭିଜ୍ଞତାର କଥା ଭାବିଲେ ଏକ ପରସ୍ପର ବିରୋଧୀ ଅନୁଭବ ହୁଏ। ବିଜ୍ଞାନ ଓ ପ୍ରଯୁକ୍ତି–ବିଦ୍ୟାର ଅଭାବନୀୟ ଉନ୍ନତି ଉପରେ ନିର୍ଭର କରି ମଣିଷ ବହୁ ବହୁ ଦୂର ଆଗେଇଛି। ନିଜର ମସ୍ତିଷ୍କ ମନ୍ଥନ କରି ନବ ନବ ଐଶ୍ୱର୍ଯ୍ୟର ସମ୍ଭାରରେ ସଭ୍ୟ ମଣିଷ ନିତ୍ୟହିଁ ନିଜର ଭଣ୍ଡାର ସ୍ଫୀତ କରି ଚାଲିଛି। ଦୈନନ୍ଦିନ ଜୀବନ ଯାପନ ପ୍ରଣାଳୀକୁ ଆହୁରି ଅଧିକତର ଆରାମପ୍ରଦ ଓ ଉପଭୋଗ୍ୟ କରି ତୋଳିବାରେ ନାନା ରକମର ଆୟୋଜନ ଆମ୍ଭମାନଙ୍କର ବିସ୍ମୟ ଉଦ୍ରେକ କରେ। ଚିକିତ୍ସା, ଯୋଗାଯୋଗ, ଜୀବନଦାୟକ ଔଷଧ, ସ୍କୁଲ-କଲେଜର ପଢ଼ାଶୁଣା, ଗବେଷଣା ଇତ୍ୟାଦି ନାନା କ୍ଷେତ୍ରରେ ବିଜ୍ଞାନର ବିସ୍ମୟକର ଅବଦାନ ମଣିଷକୁ ଏତେଟା ସମୃଦ୍ଧ କରିଛି ଓ କରି ଚାଲିଛି ଯାହା କିଛିଦିନ ଆଗରୁ ଅସମ୍ଭବ ବୋଲି ମନେ ହେଉଥିଲା। ମଣିଷର ଅନୁସନ୍ଧିତ୍ସା, ପ୍ରଣିଧାନ, କର୍ମଚଞ୍ଚଳତା, ଅଜଣାକୁ ଜାଣିବାର ସୀମାହୀନ ଆକୁତି ଏବଂ ସବୁକିଛି ଉପରେ ଆଧିପତ୍ୟ ବିସ୍ତାର କରି ନିଜ ସୁବିଧା ଓ ମଙ୍ଗଳାର୍ଥେ ତାହା ବିନିଯୋଗ କରିବାର ନିରନ୍ତର ସାଧନା ତାର ଚରିତ୍ରକୁ ଯେ ଏକ ବିସ୍ମୟକର ପରିଚୟରେ ପରିଚିତ କରିଛି, ସେ ବିଷୟରେ ସନ୍ଦେହର କୌଣସି ଅବକାଶ ନାହିଁ। ଅଜଣାକୁ ଜାଣି, କରାୟତ୍ତ କରି, ନିୟନ୍ତ୍ରଣ ଓ ସାମଞ୍ଜସ୍ୟ ସହକାରେ ସମାଧାନରେ ବିନିଯୋଗ କରିବାର ଯେଉଁ କ୍ଷମତା, ଅନ୍ୟ ଭାବରେ କହିଲେ, – ଯେଉଁ Power of acquisition ବା ଅର୍ଜନ କରିବାର କ୍ଷମତା – ତାକୁ କୁହାଯାଏ ଐଶୀଶକ୍ତି। ମଣିଷ ମଧ୍ୟରେ ସେହି ଶକ୍ତିର ବୀଜ ବର୍ତ୍ତମାନ। ତେଣୁ ମଣିଷ ଛଡ଼ା ଆମେ ଈଶ୍ୱର ବୋଲି ଅନ୍ୟ କାହାକୁ ବୁଝୁନା ବା ଯେଉଁ ଈଶ୍ୱର ମଣିଷ ନୁହଁନ୍ତି, ତାଙ୍କୁ ବୋଧରେ ଆଣି ପାରୁ ନା। ଆଜି ଦେଖା ଯାଉଛି ମଣିଷ ଯେମିତି କ୍ରମଶଃହିଁ ଈଶ୍ୱର–ସାଧନାରେ ପୂର୍ଣ୍ଣତ୍ୱ ପାଇ ଚାଲିଛି। ସଭ୍ୟତାର ବର୍ତ୍ତମାନ ସନ୍ଧିକ୍ଷଣରେ ଛିଡ଼ାହୋଇ ବିଜ୍ଞାନ ଓ ପ୍ରଯୁକ୍ତିଗତ କଳାକୌଶଳର ଆଶୀର୍ବାଦ-ଧନ୍ୟ ମଣିଷକୁ ଦେଖି ଏହି କଥାହିଁ ମନେ ହୁଏ।

କିନ୍ତୁ ଆମ୍ଭମାନଙ୍କର ଏହି ମନେ ହେବାଟା ଯଦି କେବଳହିଁ ଏପରି ସୁଖକର ଅନୁଭୂତିରେହିଁ ଶେଷ ହୋଇଥାନ୍ତା ତାହେଲେ ପ୍ରକୃତରେ ଭଲ ହୋଇଥାନ୍ତା। ଦୁଃଖର ବିଷୟ ତା ହୋଇନାହିଁ। ଏହି 'ହୋଇନାହିଁ' କହିବାର କାରଣଟିକୁ ଖୋଜିବାକୁ ହେଲେ ଆମ୍ଭମାନଙ୍କୁ ବର୍ତ୍ତମାନ ପୃଥିବୀର ସମାଜ–ଜୀବନର ଦିଗକୁ ଆଖି ଫେରାଇବାକୁ ହେବ।

ଯୋଗାଯୋଗ ଓ ଯାତାୟତ ବ୍ୟବସ୍ଥାର ଅଭୂତପୂର୍ବ ଉନ୍ନତି ହେବା ଫଳରେ ସାରା ପୃଥିବୀ ଏକ ଛୋଟ ଅଗଣା ପରି ହୋଇ ଛିଡ଼ା ହୋଇଛି । ତେଣୁ ସାମଗ୍ରିକଭାବରେ ବିଶ୍ୱଦୁନିଆର ସାମାଜିକ ପରିସ୍ଥିତିର ଅବସ୍ଥାନ କେଉଁଠି ଆଉ ତାହା କେଉଁ କ୍ଷେତ୍ରକୁ ବହୁଛି ତାହା ଜାଣିବାର ସୁବିଧା ହୋଇଛି ସେଥିରେ ସନ୍ଦେହ ନାହିଁ । କ୍ରମବର୍ଦ୍ଧମାନ ମାରାତ୍ମକ ଜନବିସ୍ଫୋରଣ ଫଳରେ ପୃଥିବୀର ସ୍ଥାୟୀ ସମ୍ବଳର ଭଣ୍ଡାରରେ ଟାଣ ପଡ଼ିଛି । ବିଜ୍ଞାନ ଓ ଜୈବ ପ୍ରଯୁକ୍ତିର ଜ୍ଞାନ କାର୍ଯ୍ୟରେ ଲଗେଇ ବିଭିନ୍ନ କ୍ଷେତ୍ରରେ ଉତ୍ପାଦନ ବଢ଼ିଛି ଠିକ୍, ତେବେ ସେହି ବୃଦ୍ଧି କ୍ରମବର୍ଦ୍ଧମାନ ଚାହିଦା ସହିତ ତାଳ ମିଳାଇ ପାରୁନାହିଁ । ଏହା ସହିତ ଯୁକ୍ତ ହୋଇଛି ତ୍ରୁଟିପୂର୍ଣ୍ଣ ଓ ଇଚ୍ଛାକୃତ ଅସମ ବଣ୍ଟନ ପ୍ରଣାଳୀ । ଯାହାର ପ୍ରୟୋଜନ ସେହି ସମସ୍ତଙ୍କ ମଧ୍ୟରେ ଉତ୍ପାଦନ ବଣ୍ଟନ ନକରି ଜୋର ଜୁଲୁମ କରି ଅନ୍ୟମାନଙ୍କୁ ବଞ୍ଚିତ କରି ଏକା ସବୁଟିକୁ ଭୋଗ କରିବାର ଲୋଭଜନିତ ପ୍ରବଣତା ଜନସାଧାରଣଙ୍କ ଏକ ବିଶାଳ ସଂଖ୍ୟାକୁ ଜୀବନର ନାନା କ୍ଷେତ୍ରରେ ବଞ୍ଚିତ କରି ରଖିଛି ।

ପୁଣି ଏହି ଇତର ଅହଂତାଡ଼ିତ ପ୍ରଭୁତ୍ୱ ସ୍ପୃହା ଓ ଲୋଭ ସ୍ୱୀୟ ଭଣ୍ଡାର ସ୍ଫୀତ କରିବାର ଦୁର୍ମଦ ଆକାଂକ୍ଷା ବିଜ୍ଞାନର ଅବଦାନକୁ ସମସ୍ତଙ୍କ କଲ୍ୟାଣରେ ପ୍ରୟୋଗ ନ କରି ନିତ୍ୟ ନୂତନ ମାରଣାସ୍ତ୍ର ଓ ଧ୍ୱଂସକାରୀ ଆୟୁଧ ପ୍ରସ୍ତୁତ କରିବା ପାଇଁ ବିପୁଳ ପରିମାଣ ଅର୍ଥର ବିନିଯୋଗ କରିବାରେ ଦ୍ୱିଧା କରୁ ନାହିଁ, ଅଥଚ ଏବେ ସାରା ପୃଥିବୀରେ ଅସଂଖ୍ୟ ମଣିଷର ବାସସ୍ଥାନ ନାହିଁ, ଖାଦ୍ୟ ନାହିଁ, ପାନୀୟ ଜଳ, ସ୍ୱାସ୍ଥ୍ୟ ପରିସେବା, ଶିକ୍ଷା ଇତ୍ୟାଦିର ନ୍ୟୂନତମ ସୁବିଧା ମଧ୍ୟ ସେମାନଙ୍କ ପାଖରେ ପହଞ୍ଚୁ ନାହିଁ । ମୂଳତଃ ମଣିଷର ମାନସିକ ଭାରସାମ୍ୟହୀନତା ଓ ପ୍ରବୃତ୍ତିପରତନ୍ତ୍ରତା ସମାଜର ପ୍ରତିଟି ସ୍ତରର ମଣିଷକୁ ଏମିତି ଆଚ୍ଛନ୍ନ କରି ରଖିଛି ଯେ ଆତ୍ମମଗ୍ନ ମଣିଷ ସମସ୍ୟାର ଅସଲ କାରଣଗୁଡ଼ିକର ଦିଗକୁ ଆଖି ଫେରାଇ ପାରୁ ନାହିଁ । ସେମାନେ ଜଣେ ଅନ୍ୟଠାରୁ ବିଚ୍ଛିନ୍ନ ହୋଇ ଯାଇ ସମାଜରେ ଏକତ୍ର ବାସ କରିବି ଜନାରଣ୍ୟରେ ଏକ ପ୍ରକାରର ଅରଣ୍ୟର ପରିବେଶ ସୃଷ୍ଟି କରି ପକାଇଛନ୍ତି । ବେଶୀଦୂରକୁ ଯିବାର ପ୍ରୟୋଜନ ନାହିଁ, ଆମ୍ଭମାନଙ୍କର ନିକଟ ପରିବେଶର ଦିଗକୁ ଚାହିଁଲେହିଁ ମାନବତାର ଅବକ୍ଷୟର ଦୃଶ୍ୟଟି ଭଲ ଭାବରେ ଦେଖା ଯିବ । ଦୟା, ମାୟା, କ୍ଷମା, ସହ୍ୟ, ଧୈର୍ଯ୍ୟ, ସହାନୁଭୂତିସମ୍ପନ୍ନ ଆତ୍ମବିଶ୍ୱାସୀ, ପରୋପକାରୀ, ତ୍ୟାଗନିଷ୍ଠ, ଦରଦୀ, ଦାୟିତ୍ୱଜ୍ଞାନସମ୍ପନ୍ନ କର୍ତ୍ତବ୍ୟପ୍ରାଣ ସୁସ୍ଥ ମଣିଷର ଅଭାବ ବର୍ତ୍ତମାନ ଏକାନ୍ତଭାବେହିଁ ଦେଖା ଦେଇଛି । କଳ-କାରଖାନା, ସ୍କୁଲ-କଲେଜ, ଗବେଷଣାଗାର, ହସପିଟାଲ, ସରକାରୀ ଅଫିସ, ଥାନା-ପୁଲିସ ଓ ସାମାଜିକ

ପରିସେବାର ଅନ୍ୟାନ୍ୟ ଦପ୍ତର ଓ ପ୍ରତିଷ୍ଠାନଗୁଡ଼ିକ–ଯେଉଁଠି ମଣିଷର ସେବା, ସହଯୋଗିତା ଓ ସାହାଯ୍ୟ ପାଇଁ ଦାୟିତ୍ୱପୂର୍ଣ୍ଣ କର୍ମବିନିଯୋଗର ଏକାନ୍ତ ପ୍ରୟୋଜନ – ସେହିଠାରେହିଁ ଏସବୁର ଅଭାବ ଦେଖା ଦେଇଛି । ମଣିଷର କର୍ମବିମୁଖତା, ଫାଁକିଦେବାର ପ୍ରବଣତା, ଉଦାସୀନତା ସମସ୍ତ ସତ୍ ଓ ଶୁଭ ପ୍ରଚେଷ୍ଟାକୁହିଁ ଅସ୍ତବ୍ୟସ୍ତ କରି ଦେଉଛି । ଅଥଚ ଏସବୁ ଜାଗାରେ ଉପଯୁକ୍ତ ପାରିଶ୍ରମିକର ବିନିମୟରେ ଯେଉଁମାନେ ନିୟୋଜିତ ହୋଇଛନ୍ତି ସେମାନେ ନିଜ ନିଜ ଦାୟିତ୍ୱ ଓ କର୍ତ୍ତବ୍ୟ ଯଥାଯଥଭାବରେ ପାଳନ କରିବାର ସର୍ତ୍ତରେହିଁ ନିର୍ବାଚିତ ହୋଇଥିଲେ ।

ଅତ୍ୟାବଶ୍ୟକ ପରିସେବାର ବୃତ୍ତିମାଫିକ ଯଥେଚ୍ଛାଚାରର ଫଳ ହିସାବରେ ବଞ୍ଚିତ, କ୍ଷୁବ୍ଧ, ଶୋଷିତ, କ୍ଷୁଧାର୍ତ୍ତ, ନିପୀଡ଼ିତ, ଅଶିକ୍ଷିତ ଲକ୍ଷ ଲକ୍ଷ ମଣିଷ ନ-ପାଇବାର ଯନ୍ତ୍ରଣା ଛାତିରେ ନେଇ ବଞ୍ଚି ରହିବାର ତାଗିଦରେ ନାନା ବିଗର୍ହିତ ଓ ବିପଦଜନକ ଉପାୟରେ ମୁକ୍ତିର ପଥ ଖୋଜି ବୁଲୁଛନ୍ତି । ଜନ୍ମ ନେଉଛି ଏକ ଭୟଙ୍କର ବିଚ୍ଛିନ୍ନତାବାଦ ଓ ସନ୍ତ୍ରାସବାଦୀ ଆନ୍ଦୋଳନ । ଏସବୁ ସହିତହିଁ ଚାଲୁଛି ରାଜନୀତିର ନାମରେ ଭୋଟ ସର୍ବସ୍ୱ କ୍ଷମତାକେନ୍ଦ୍ରିକ କ୍ରିୟାକଳାପ । ଯାହାର ସୁବିଧା ନେଉଛନ୍ତି କିଛି ଆତ୍ମ ଓ ଗଣ୍ଡୀସ୍ୱାର୍ଥୀ ଧନ୍ଦାବାଜ ରାଜନୈତିକ ନେତା । ସବୁ ମିଶେଇ ପରିସ୍ଥିତି ଜଟିଳତର ହୋଇ ଉଠିଛି ।

ଆଜି ଯେଉଁଦିଗରେହିଁ ଆଖି ପକେଇବୁ ସେହି ଦିଗରେହିଁ ଦେଖାଯାଏ ଏକ ନିଦାରୁଣ ଅବକ୍ଷୟର ମସୀକୃଷ୍ଣ ଚିତ୍ର । ସମସ୍ୟା ଯେ ମଣିଷର ଜୀବନରେ ରହେ ନା ତା ନୁହେଁ । କ୍ଷୁଦ୍ର ପାରିବାରିକ ଜୀବନ ଓ ବୃହତ୍ ସାମାଜିକ ଜୀବନରେ ସ୍ୱାଭାବିକ ଭାବରେହିଁ ଯେଉଁ ସମସ୍ୟାଗୁଡ଼ିକ ମଣିଷର ଜୀବନରେ ଆସେ, ବୁଦ୍ଧି–ବିବେଚନାର ସହିତ ସମୟାନୁଗ ବ୍ୟବସ୍ଥା ଗ୍ରହଣ, ଧୈର୍ଯ୍ୟ, ଆତ୍ମସଂଯମ, ଅସତ୍‌ନିରୋଧୀ ପରାକ୍ରମ, ସତ୍‌ସଂହତି ଇତ୍ୟାଦି ମଣିଷକୁ ସେହି ସବୁ ସମସ୍ୟାରୁ ଉତ୍ତରଣ ପାଇଁ ସାହାଯ୍ୟ କରେ । ସତ୍ୟ କଥା କହିବାକୁ ଗଲେ ସମସ୍ୟା ନ ଥିଲେ ମଣିଷର ପ୍ରଗତିର ପଥଟିହିଁ ରୁଦ୍ଧ ହୋଇ ଯାଇଥାନ୍ତା । କୌଣସି ସମସ୍ୟାର ସମ୍ମୁଖୀନ ହେଲେ ମଣିଷ ନିଜ ବ୍ୟକ୍ତିତ୍ୱର ଗୁଣ ଦେଇହିଁ ତାର ମୁକାବିଲା କରିଥାଏ । କିନ୍ତୁ ମଣିଷର ଏକକ ଶକ୍ତିରେ ସବୁ ସମୟରେ ସବୁରକମର ସମସ୍ୟାର ସମ୍ମୁଖୀନ ହେବା ସମ୍ଭବ ହୁଏ ନାହିଁ । ତେଣୁ ପ୍ରୟୋଜନ ହୁଏ ଗୁଚ୍ଛବଦ୍ଧ ବା ସମାଜବଦ୍ଧ ମଣିଷର । ସମାଜ ଅର୍ଥହିଁ ସନ୍ନିବେଶ, ଏକତ୍ର ବାସ । କିନ୍ତୁ ଭିନ୍ନ ଭିନ୍ନ ବୈଶିଷ୍ଟ୍ୟଥିବା ମଣିଷର ବୈଚିତ୍ର୍ୟର ମଧ୍ୟରେ ଯେଉଁ ଏକ ନିନଡ଼ ଏକତାର ଉଦ୍ଭବ ଓ ଆମେ ସମସ୍ତେ ମିଶି ଯେଉଁ ଏକହିଁ, ମଣିଷ ମଧ୍ୟରେ ଏହି ବୋଧର ଉନ୍ମେଷ ନ ହୋଇ

ଟୁକ୍‌ରା ଟୁକ୍‌ରା ମଣିଷ, ଟୁକ୍‌ରା ଟୁକ୍‌ରା ଦଳ, ବିଚ୍ଛିନ୍ନ ଓ ପରସ୍ପର ବିରୋଧୀ ଆଦର୍ଶ ଓ ଉଦ୍ଦେଶ୍ୟ ନେଇ ଏକତ୍ର ବାସ କରିଲେହିଁ ତାକୁ ସମାଜ କୁହାଯାଏ ନାହିଁ।

ଏ ସବୁ ପାଠ୍ୟକ୍ରମରେ ଅନେକ ନୀତିବାକ୍ୟ ଶିଖାଯାଏ, ଅନେକ ଉପଦେଶ ବର୍ଷିତ ହୁଏ। ସମସ୍ୟାର ସମାଧାନ ପାଇଁ ଅନେକ ପରିକଳ୍ପନା, ସଭାସମିତି, କାର୍ଯ୍ୟଶାଳା, କମିଟି, ଆଇନପ୍ରଣୟନ ଇତ୍ୟାଦି କେତେକିଛିହିଁ କରାହୁଏ। ପୁଣି ନାନା ଭାବରେ ବୁଝାଇବା ପାଇଁ ଚେଷ୍ଟା, ସ୍ତୁତିବାକ୍ୟ, ଶେଷ ହତିଆର ହିସାବରେ ଭୀତିପ୍ରଦର୍ଶନ ମଧ୍ୟ କରାହୁଏ – ଅଥଚ ସମସ୍ୟାର ସମାଧାନ ହୁଏ ନାହିଁ। ତାହା ଦିନକୁ ଦିନ ଗୁଣିତ ହୋଇ ବଢ଼ି ଚାଲେ। କିଛି ପ୍ରକାରରେ ଆୟତ୍ତକୁ ଆଣି ହୁଏ ନାହିଁ। ଚୋରି, ଡକାୟତି, ଖୁନ୍, ଧର୍ଷଣ, ପ୍ରତାରଣା, ସାମାନ୍ୟ କାରଣରୁ ହତ୍ୟା, ଅନ୍ୟର ସମ୍ପତ୍ତି ଜବର ଦଖଲ, ତହବିଲ୍ ଆତ୍ମସାତ୍‌କରଣ ଇତ୍ୟାଦି ନାନା ଅପରାଧର ପ୍ରବଣତା ବଢ଼ିହିଁ ଚାଲିଛି, କୌଣସି ପ୍ରକାରେହିଁ ଥମେଇ ହେଉନାହିଁ। ଏମିତି କରି ପରିବାର, ସମାଜ ସବୁ ଭାଙ୍ଗି ଟୁକୁରା ଟୁକୁରା ହୋଇଯାଉଛି ଏହା ଫଳରେ ରାଷ୍ଟ୍ରୀୟ ସ୍ଥିତି ମଧ୍ୟ ଟଳମଳ ହୋଇ ଉଠିଛି। ଆତଙ୍କିତ ଭୀତ ମଣିଷ ଅସହାୟ ଅନିଶ୍ଚିତତା ମଧ୍ୟରେ ଦିନାତିପାତ କରୁଛି। ବଞ୍ଚି ରହିବାର ଆକୁଳ ଆର୍ତ୍ତି ନେଇ କାରଣମୁଖୀ ନ ହୋଇ ମଣିଷ ମାଦୁଲି, ମାନତ, ତାବିଜ, କବଚ, ତାନ୍ତ୍ରିକ, ଗ୍ରହ-ରତ୍ନ, ସାଧୁ-ସନ୍ୟାସୀ ରୂପୀ ଭଣ୍ଡ ପ୍ରତାରକମାନଙ୍କର କବଳରେ ପଡ଼ି ଅବସ୍ଥା ଆହୁରି ଜଟିଳ କରି ପକାଉଛି। ଏହା ଏକ ଅବର୍ଣ୍ଣନୀୟ ଅବସ୍ଥା। ଗୋଟିଏ ଦିଗରେ ମଣିଷର ଦୁଇ ହାତରେ ଭରା ବିଜ୍ଞାନର ଅଜସ୍ର ଆଶୀର୍ବାଦ, ଅନ୍ୟଦିଗରେ ମଣିଷର ମଣିଷ ନ ହୋଇ ଉଠି ପାରିବାର ଘୋର ଅଭିସମ୍ପାତ ତାକୁ ଅଚଳୈଶ୍ୱର୍ଯ୍ୟ ମଧ୍ୟରେବି ଚିରଭିଖାରୀ କରି ରଖିଛି।' ମୋର ସଜାହୋଇଥିବା ବଗିଚା ଶୁଖି ଗଲା' – ଏହି ହତାଶ୍ୱାସ ମଣିଷର ଅନ୍ତରର ଅନ୍ତସ୍ଥଳ ଠାରୁ ବାହାରି ଆସି ତାର ଚାରିଦିଗକୁହିଁ ଭାରାକ୍ରାନ୍ତ କରି ତୋଳିଛି। ଗଭୀର ପରିତାପର କଥା ଏହି ଯେ, ଜୀବନର ଜଟିଳ ସମସ୍ୟାଗୁଡ଼ିକ ଠାରୁ ରିହାଇ ପାଇବାର ଅସୀମ ତାଗିଦରେ ମଣିଷ ଅନ୍ଧ ପରି ଏଠି ସେଠି ହାତ ମାରୁଛି ଠିକ୍‌ହିଁ, କିନ୍ତୁ ତାର ପ୍ରବୃତ୍ତି–ଅଭିଭୂତ ବୋଧ ଓ ବୁଦ୍ଧିରେ ସମସ୍ୟାର ପ୍ରକୃତ କାରଣଟି ଧରା ପଡୁନାହିଁ। ପତୁଲିରେ ବାନ୍ଧା ବଳଦ ପରି ଈଶ୍ୱରଙ୍କର ଶ୍ରେଷ୍ଠ ସୃଷ୍ଟି ମଣିଷ ନିଜ ପ୍ରବୃତ୍ତିର ଗୋଲକ ଧନ୍ଦାରେ ପଥ ହରେଇ ସମସ୍ୟାର ଆବର୍ତ୍ତରେହିଁ ଘୁରି ଚାଲିଛି। ଏମିତିହିଁ ହୁଏ। ଭୂୟୋଦର୍ଶୀ ମଣିଷ ତେଣୁ କହେ, 'ଇତିହାସ ମଣିଷକୁ ଏହି ଶିକ୍ଷାହିଁ ଦେଇଛି ଯେ ମଣିଷ ଇତିହାସ ଠାରୁ କିଛିହିଁ ଶିକ୍ଷା ପାଇନି।'

ଅଥଚ ପ୍ରବୃତ୍ତିପରତନ୍ତ୍ରତାର ଊର୍ଦ୍ଧ୍ୱସ୍ଥଲୋକରୁ ଆଗତ ପ୍ରେମିକ ପୁରୁଷ, ମଣିଷ–କାଙ୍ଗାଳ ସହଜ-ସୁନ୍ଦର ମହାମାନବ ଯିଏ, ତାଙ୍କର ଦୃଷ୍ଟିରେ ସମସ୍ୟାର ମୂଳ କିନ୍ତୁ ଅତି ସହଜରେହିଁ ଧରା ପଡ଼େ। ଏବଂ ତାହାକୁ ପ୍ରକାଶ କରିବା ପାଇଁ ସେ ବଡ଼ ବଡ଼ ତତ୍ତ୍ୱର ଅବତାରଣା କରନ୍ତି ନାହିଁ। ଅତ୍ୟନ୍ତ ସହଜ କରିହିଁ ସେ କୁହନ୍ତି ସେହି ଅମିୟ ସଙ୍କେତର ସୂତ୍ର ଯାହା ସବୁ ସମସ୍ୟାରହିଁ ସମାଧାନ କରିପାରେ। ଗୋଟିଏ ବାଣୀରେ ବର୍ତ୍ତମାନ ଯୁଗପୁରୁଷୋତ୍ତମ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର କହିଛନ୍ତି – ହୋଇଥିବା–ମଣିଷକୁ ତିଆରି କରାଯାଏ ନାହିଁ –/ବରଂ ତାହାର ବୈଶିଷ୍ଟ୍ୟକୁ ପୋଷଣରେ/ପୁଷ୍ଟ କରାଯାଏ – /ଉତ୍କ୍ରମୀ କରି;/ମଣିଷ ତିଆରି କରିବାକୁ ଗଲେହିଁ ଦରକାର –/ପ୍ରଜନନ–ପରିଶୁଦ୍ଧି। ୧୪। (ଶିକ୍ଷା, ଶାଶ୍ୱତୀ ଅଖଣ୍ଡ)। ବୁଝିବାକୁ ଅସୁବିଧା ହେବା କଥା ନୁହେଁ, ଯେଉଁ ସମ୍ଭାବନାର ବୀଜ ନେଇ ମଣିଷ ଜନ୍ମିଛି, ଉପଯୁକ୍ତ ପୋଷଣରେ ତାକୁ ସ୍ଫୁରିତ କରାଯାଏ ଓ ଉନ୍ନତ କରାଯାଏ। କିନ୍ତୁ ଯିଏ ଯାହା ନୁହେଁ, ତାକୁ ତାହା କରି ତୋଳିବା କେତେବେଳେବି ସମ୍ଭବ ନୁହେଁ। ମୋଟକଥା, ଜନ୍ମଗତ ଗୁଣସମ୍ପଦ ଯଦି ମଣିଷର ନ ଥାଏ ତେବେ କେବଳମାତ୍ର ଉନ୍ନତ ଶିକ୍ଷା ବ୍ୟବସ୍ଥାରେ ତାକୁ ଶିକ୍ଷିତ କରି ଉପଯୁକ୍ତ ମଣିଷ ତିଆରି କରିବାର ଚେଷ୍ଟା ଯେତେହିଁ କରାଯାଉ ନା କାହିଁକି, ତାହା ବ୍ୟର୍ଥ ହେବାକୁ ବାଧ୍ୟ। ତାହା ଯଦି ସମ୍ଭବ ହୋଇଥାନ୍ତା ତେବେ ଆଜି ସଭ୍ୟତାର ଏହି ସଂକଟମୟ ମୁହୂର୍ତ୍ତରେ ଅତ୍ୟାଧୁନିକ ଓ ଉନ୍ନତ ଶିକ୍ଷା–ପଦ୍ଧତିର ପ୍ରୟୋଗରେ ଅତି ସହଜରେହିଁ ବିବେକାନନ୍ଦ, ନେତାଜୀ ସୁଭାଷ, ରବୀନ୍ଦ୍ରନାଥ ସୃଷ୍ଟି କରା ଯାଇଥାନ୍ତା। ପ୍ରଜନନ ବିଭ୍ରାଟରେ ଅର୍ଥାତ୍ ଭ୍ରାନ୍ତ ବିବାହନୀତି ଯୋଗୁଁହିଁ ସମାଜରେ ଧ୍ୱଂସାତ୍ମକ ମନୋଭାବାପନ୍ନ, ଇନ୍ଦ୍ରିୟପରବଶ, ଲୋଭୀ, ଆତ୍ମକେନ୍ଦ୍ରିକ, ଅଳସ, ଜଡବୁଦ୍ଧି ଓ ସ୍ନାୟୁ–ଦୌର୍ବଲ୍ୟସମ୍ପନ୍ନ ମଣିଷର ସୃଷ୍ଟି ହୁଏ ଏକଥା ବିଜ୍ଞାନ ମଧ୍ୟ ଅସ୍ୱୀକାର କରେ ନାହିଁ। ସମ୍ପ୍ରତି American Society of Human Genetics-ର report-ରେ ଦେଖାଯାଇଛି ସେମାନେ ନିଃସନ୍ଦେହରେ କହୁଛନ୍ତି – The American society of human genetics recognizes that genetic variation can significantly influence risk for diseases and the nature of one individual's future health and that many human capacities and talants are influenced by genes।

ପ୍ରଜନନ–ପରିଶୁଦ୍ଧିର ମୂଳ ଭିତ୍ତିହିଁ ସ୍ଥାପିତ ହୁଏ ପରସ୍ପର ପରିପୂରକ ପୁରୁଷ ଓ ନାରୀର ବିବାହ ବନ୍ଧନର ମଧ୍ୟ ଦେଇ। ଏହି ବ୍ୟାପାରରେ ସବୁ ମଣିଷର ଯେ ସମ୍ୟକ ଧାରଣା ରହିବ ତାହା ଆଶା କରାଯାଏ ନାହିଁ। ତେଣୁ ଋଷି, ବୈଜ୍ଞାନିକ, ଗବେଷକ ଓ

ବିଶେଷଜ୍ଞଙ୍କର ଗବେଷଣାଲବ୍ଧ ପ୍ରଜନନଗତ ସୁଫଳ ଲାଭର ଉପାୟଗୁଡ଼ିକ ସାଧାରଣ ମଣିଷ ପାଖରେ ପାଳନୀୟ ନୀତି ହିସାବରେ ଆସେ। କିନ୍ତୁ ଆଧୁନିକ ମଣିଷ ସେସବୁ ସମ୍ବନ୍ଧରେ ଉଦାସୀନ। ଏକ ବିଶେଷ ବୟସର ସନ୍ଧିକାଳରେ ଯୌନ ତାଡ଼ନାରେ ପୁରୁଷ ଓ ନାରୀ ବିବାହ ବନ୍ଧନରେ ଆବଦ୍ଧ ହୁଅନ୍ତି। ଇନ୍ଦ୍ରିୟଉପଭୋଗହିଁ ଏହି ଜାତୀୟ ବିବାହର ଏକମାତ୍ର ଉଦ୍ଦେଶ୍ୟ। ଏହା ସହିତ ସୁପ୍ରଜନନର କୌଣସି ସମ୍ବନ୍ଧ ନାହିଁ। ଏହି ଜାତୀୟ ବିବାହର କୌଣସି ବୈଜ୍ଞାନିକ ଭିତ୍ତି ମଧ୍ୟ ନାହିଁ। ଫଳତଃ ସୁସନ୍ତାନ ଲାଭର ବୈଜ୍ଞାନିକ ପନ୍ଥାଗୁଡ଼ିକ ପାଳିତ ହେଉ ନାହିଁ। ଅସମ ଓ ଅସାମଞ୍ଜସ୍ୟ ମିଳନର ଫଳରେ ଜୈବିକ ନିୟମରେ ମଣିଷର ଜନ୍ମ ହେଉଛି ମାତ୍ର, ପିତୃପୁରୁଷର ସଦ୍‌ଗୁଣାବଳୀ ଓ ବିଶେଷ-ଗୁଣସମନ୍ୱିତ ବୈଶିଷ୍ଟ୍ୟଗୁଡ଼ିକ ବଂଶାନୁବାହିତ ହୋଇ ପିତାମାତାଙ୍କ ମାଧ୍ୟମରେ ସନ୍ତାନର ଭିତରେ ସଞ୍ଚାରିତ ହେଉ ନାହିଁ।

ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କର କଣ୍ଠରେ ତେଣୁ ଧ୍ୱନିତ ହୋଇଛି ବିବାହ ସଂସ୍କାରର ଆହ୍ୱାନ। ସମସ୍ୟାର ମୂଳକୁ ମଣିଷର ଦୃଷ୍ଟି ଆକର୍ଷଣ କରି ସେ କହିଛନ୍ତି – ଉନ୍ନୟନ ଆଉ ସୁପ୍ରଜନନ/ଏହି ତୋ ବିବାହର ମୂଳ/ଯେମିତି ସେମିତି କରି ବିବାହ/ କରିବ ନାହିଁ ଭୁଲ୍। ନାନା ସମୟରେ, ନାନା ପ୍ରସଙ୍ଗରେ ବର୍ତ୍ତମାନ ସମସାମୟିକ ଭାରତବର୍ଷର ନେତା, ବିଜ୍ଞାନୀ, ଶିକ୍ଷକ, ସମାଜସେବୀ ସାଧାରଣ ମଣିଷ ସକଳଙ୍କ ପାଖରେ ବାରମ୍ବାର ଆକୁଳ ଆର୍ତ୍ତି ନେଇ ଶ୍ରୀଶ୍ରୀଠାକୁର ସମସ୍ୟାର ଜଟଗୁଡ଼ିକୁ ଚିହ୍ନିତ କରିଛନ୍ତି, ସେଥିରୁ ଉତ୍ତରଣର ପଥ ଦେଖେଇଛନ୍ତି। ତାଙ୍କର ସେହି କଥୋପକଥନର ମହାସମୁଦ୍ର ମନ୍ଥନ କରି ବିବାହ ଓ ପ୍ରଜନନ-ସମ୍ବନ୍ଧୀୟ କଥାଗୁଡ଼ିକର ସଂକଳନ ପ୍ରକାଶ କରା ହେଲା। ଆଶା ମଣିଷର ଶୁଭବୁଦ୍ଧି ଜାଗ୍ରତ ହେବ। ବିଶେଷ ପ୍ରଣିଧାନ ନେଇ ମଣିଷ ଏସବୁ ଅନୁଧାବନ କରି ଘନ ଅନ୍ଧକାରମୟ ଚଲା ପଥରେ ଏକ ଉଜ୍ଜ୍ୱଳ ଆଲୋକ ବର୍ତ୍ତିକାର ସନ୍ଧାନ ପାଇବ।

ରାଁଚୀ ବିଶ୍ୱବିଦ୍ୟାଳୟ
ଗୁରୁପୂର୍ଣ୍ଣିମା, ୧୪୧୦

**ଡଃ ବୁଦ୍ଧଦେବ ଚକ୍ରବର୍ତ୍ତୀ**

# ।। ଶ୍ରୀଶ୍ରୀଠାକୁରଙ୍କ ବାଣୀ ।।

ବିବାହ-ବ୍ୟାପାରେ ସବୁଠୁ ଆଗେ
ବର୍ଣ୍ଣର ହିସାବ କରିବୁ,
ତା ସହିତହିଁ ବଂଶଟିକୁ
ବେଶ ନିରୀକ୍ଷୀ ଦେଖିବୁ;
ବଂଶ ଦେଖି ଶ୍ରଦ୍ଧା ହେଲେହିଁ
ସ୍ୱାସ୍ଥ୍ୟ ଦେଖିବୁ କେମିତି ତାର,
ତା ସହିତ ତୁହି ତନଖି ନେବୁ
ସ୍ୱଭାବ-ଅଭ୍ୟାସ-ବ୍ୟବହାର;
ଏ-ସବୁକିଛିର ସୁସଙ୍ଗତି
ମିଳିହିଁ ଯାଏ ଯାହାର,
ବିଦ୍ୟା ଦେଖିବୁ ନଜର କରି
କର୍ମର ଓଜନ ତାର;
ପାରମ୍ପର୍ଯ୍ୟେ ଏହି ସବୁ କିଛି
ମିଳେଇଲେ ବିବାହରେ,
ପ୍ରାୟହିଁ ଦେଖିବୁ ଠକିବୁନି ତୁହି
ମରିବୁ ନାହିଁ ବିଷରେ। (୨)

ଅନୁଶ୍ରୁତି ୧ମ, ବିବାହ

# ସୂଚୀପତ୍ର

ବଞ୍ଚିବାର ଶକ୍ତି ରହିବ ନାହିଁ କେତେବେଳେ

କାମ-ପ୍ରବୃତ୍ତିକୁ ପ୍ରଶ୍ରୟ ଦେବ ନାହିଁ କାହିଁକି

ପ୍ରାଚୀନ ସମାଜ ବ୍ୟବସ୍ଥା କିପରି ଥିଲା

ଆଦର୍ଶ ଓ ବିବାହ ଏହି ଦୁଇଟି ବନ୍ଧନୀ ତ୍ୟାଗ କରିବା ନାହିଁ କାହିଁକି

ସୁପ୍ରଜନନ କାହାକୁ କହନ୍ତି

ବିବାହ କରି ପ୍ରଥମେ କଣ କରିବାକୁ ହୁଏ

ସୁପ୍ରଜନନ ଏବଂ ଦାମ୍ପତ୍ୟଜୀବନରେ ଯୌନ-ଉପଭୋଗ
ଏ ଦୁଇଟିର ସଙ୍ଗତି କେଉଁଠି

ହିସାବ କରି ବିବାହ ଦେବାକୁ ହୁଏ କାହିଁକି

ବିବାହ ନିରର୍ଥକ କେତେବେଳେ

ସୁପ୍ରଜନନ ଉପରେ ଜୋର ଦେବାକୁ ହୁଏ କାହିଁକି

ଜନ୍ମ ବ୍ୟାପାରରେ ପିତାମାତାଙ୍କ ମଧ୍ୟରୁ କାହାର ଅବଦାନ କେତେଟିକିଏ

ପିତାମାତାଙ୍କର ପାଞ୍ଚଟି ସନ୍ତାନ ପାଞ୍ଚ ପ୍ରକାରର ହୁଏ କାହିଁକି ?

ମାଆ କଣ ପରିମାପ କରନ୍ତୁ

ସେସମୟର ବିବାହରେ କଡ଼ାକଡ଼ି ଥିଲା କାହିଁକ...

ଅପ-ବିବାହ ଠାରୁ ଅବିବାହ ଭଲ

ବିବାହ ବ୍ୟାପାରରେ କେବଳ ରାଶିଚକ୍ର ଉପରେହିଁ ନିର୍ଭର କରିବାଟା କିପରି

ନାରୀର ଶିକ୍ଷା କିପରି ହେବ

କେବଳ ଶାରୀରିକ ସତୀତ୍ୱର ଖୁବ୍ ଗୋଟିଏ ଦାମ୍ ନାହିଁ କାହିଁକି...

ରେଜେଷ୍ଟ୍ରି ବିବାହ କିପରି ଲାଗେ

ବିବାହ-ବିଚ୍ଛେଦରେ କଣ ହୁଏ

ବିଧିମତ ବିବାହ ହୋଇ ମଧ୍ୟ ସ୍ୱାମୀ-ସ୍ତ୍ରୀ ଏକସଙ୍ଗରେ
ରହିବା ଅସମ୍ଭବ ହେଲେ କଣ କରିବ...

ନାରୀ-ପୁରୁଷର ଆଚରଣ କିପରି ହେବ

ପୁରୁଷ ସବୁ ସମୟରେ ଘରେ ରହିଲେ କଣ ହୁଏ

ସତୀତ୍ୱ ସହଜ ଓ ସ୍ୱତଃ ହେଲେ କଣ ହୁଏ

ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ କଥିତ

# ବିବାହ ଓ ପ୍ରଜନନ-ପ୍ରସଙ୍ଗ

## ।। ସମାଜର ମହାଶତ୍ରୁ କେଉଁମାନେ ।।

ଆର୍ଯ୍ୟମାନଙ୍କର ଯେ କି ଜିନିଷ ଥିଲା ତାହା ଭାବି ମଧ୍ୟ ପାରିବ ନାହିଁ। ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟମାନଙ୍କ ଭିତରୁ ପ୍ରଧାନମାନଙ୍କୁ ନେଇ cabinet formed (ମନ୍ତ୍ରୀ ପରିଷଦ ଗଠନ) ହେଉଥିଲା। ପ୍ରଧାନମାନଙ୍କର ପ୍ରଧାନ, ସେମାନଙ୍କ ପ୍ରଧାନ, ଏହି ପ୍ରକାରରେ ଗୋଟିଏ ସୁନ୍ଦର gradation (ପର୍ଯ୍ୟାୟ) ଥିଲା। ଯେଉଁମାନେ ଯେତେବେଶୀଙ୍କୁ ପୂରଣ କରୁଥିଲେ ସେମାନେ ସେତେବଡ଼ ପ୍ରଧାନ। ପ୍ରଧାନ ମନ୍ତ୍ରୀ ସବୁବେଳେ ଠିକ୍ ହୋଇହିଁ ରହୁଥିଲେ, ଉପଯୁକ୍ତ ଲୋକ ନିର୍ବାଚନ ନେଇ କୌଣସି ଗଣ୍ଡଗୋଳ ଉପସ୍ଥିତ ହେଉ ନଥିଲା। ଅନ୍ୟଦେଶ ଭାରତବର୍ଷଙ୍କୁ ଆକ୍ରମଣ କରିବାକୁ ସାହସ ପାଉ ନଥିଲେ। ସବୁ ଜାତି ମିଶି ଅତ୍ୟନ୍ତ compact (ସଂହତ) ରହୁଥିଲେ। ଅନୁଲୋମ ବିବାହ ଥିବା ଯୋଗୁଁ ସାରା ଜାତିଟା ଯେପରି ଦାନା ବାନ୍ଧି ରହୁଥିଲା ଆଉ ଏଥିରେ evolution (କ୍ରମୋନ୍ନତିର) ସୁବିଧା ହେଉଥିଲା – ଯଥାକ୍ରମେ ପାଞ୍ଚ, ସାତ ଓ ଚଉଦ ପୁରୁଷ ଧରି କ୍ଷତ୍ରିୟ, ବୈଶ୍ୟ ଓ ଶୁଦ୍ର ଭିତରେ ଯଦି Brahmanic instinct (ବ୍ରହ୍ମଣ୍ୟ ସଂସ୍କାର) ଦେଖା ଯାଉଥିଲା – ସେମାନଙ୍କୁ ବିପ୍ର କରି ଦିଆ ଯାଉଥିଲା। ସବୁଦିଗରୁ ଉନ୍ନତିର ପଥ ଖୋଲା ଥିଲା। ...ସବୁ ସମୟରେ ଲକ୍ଷ୍ୟ ଥିଲା – ଜ୍ଞାନ, ଗୁଣ ଯେପରି ଜନ୍ମଗତ ସଂସ୍କାର ଓ ସମ୍ପଦରେ ପରିଣତ ହୁଏ। ବର୍ଣ୍ଣାଶ୍ରମଧର୍ମ ଏତେ ସୂକ୍ଷ୍ମ, ଉନ୍ନତ ଓ ବୈଜ୍ଞାନିକ ବ୍ୟାପାର ଯେ ଅନେକେ ଏହାର ଅନ୍ତର୍ନିହିତ ତଥ୍ୟ ବୁଝି ନ ପାରି ଏହାକୁ ବୈଷମ୍ୟମୂଳକ ବୋଲି ମନେ କରନ୍ତି। – ଏହା ଠାରୁ ବଡ଼ ଭୁଲ ଆଉ ନାହିଁ। ଯେଉଁମାନେ ବିଜ୍ଞାନ ସମ୍ମତ ବର୍ଣ୍ଣାଶ୍ରମଧର୍ମକୁ ବିପର୍ଯ୍ୟସ୍ତ କରିବାର ଉଦ୍ଦେଶ୍ୟରେ generous pose (ଉଦାରତାର ଭଙ୍ଗୀ) ନେଇ inferior (ଅସମର୍ଥ) ମାନଙ୍କୁ ଉଚ୍ଚ ବନେଇ ଦିଅନ୍ତି, ସେମାନେ ସମାଜର ମହାଶତ୍ରୁ।

ଆ.ପ୍ର. ୧ମ/୧୫.୬.୧୯୩୯

## ।। ପ୍ରତିଲୋମ ଜାତ ସନ୍ତାନ ଭଲ ହୁଅନ୍ତି କି ନାହିଁ।।

ପ୍ରତିଲୋମ ଜାତ ସନ୍ତାନ କେତେବେଳେବି ଭଲ ହୋଇପାରନ୍ତି ନାହିଁ। ସେମାନଙ୍କ ମଧ୍ୟରେ treachery (ବିଶ୍ୱାସଘାତକତା) ରହିବହିଁ। ଉଚ୍ଚବର୍ଣ୍ଣର ଝିଅର ନିମ୍ନବର୍ଣ୍ଣର ପୁଅ ସହିତ ବିବାହ ହେଲେ ସେଠାରେ husband (ସ୍ୱାମୀର) ଉପରେ Regard (ଶ୍ରଦ୍ଧା) ରହିପାରେ ନା – ବହୁତ ଗଣ୍ଡଗୋଳର ସୃଷ୍ଟି ହୁଏ। ଏପରି କ୍ଷେତ୍ରରେ ଶୁଣାଯାଏ ଯେ, ସ୍ୱାମୀର ପ୍ରତି ବିରକ୍ତି ବଶତଃ ସନ୍ତାନକୁ ମା 'କୁତ୍ତାକା ବାଚ୍ଚା' ପର୍ଯ୍ୟନ୍ତ କହି ଥାଏ।

ଆ.ପ୍ର. ୧ମ/୧୬.୬.୧୯୩୯

## ।। ସହଜାତ-ସଂସ୍କାରରେ ଗଣ୍ଡଗୋଳ ହେଲେ କଣ ବୁଝିବ।।

Acquisition (ଅର୍ଜନ) ଆଉ instinctରେ (ସଂସ୍କାରରେ) ଅନେକ ତଫାତ୍। ନିଉଟନ୍ ଥିଲେ Mathematician by instinct (ସଂସ୍କାରସିଦ୍ଧ ଗଣିତଜ୍ଞ)। Mathematics (ଗଣିତ) ତାଙ୍କ ଅପେକ୍ଷା ହୁଏତ କେହି ମଧ୍ୟ ଭଲ ଜାଣି ପାରନ୍ତି –କିନ୍ତୁ ସେମାନଙ୍କ ମଧ୍ୟରେ Mathematics (ଗଣିତ) ହୁଏତ instinct (ସହଜାତ ସଂସ୍କାର)-ର ସ୍ଥାନ ନେଇ ନାହିଁ। Instinct (ସହଜାତ ସଂସ୍କାର) କିପରି – ଯେପରି heart beat କରେ (ହୃତ୍‌ପିଣ୍ଡ ସ୍ପନ୍ଦିତ ହୁଏ), କାନ ଶୁଣେ, ନାକ ନିଃଶ୍ୱାସ ନିଏ, ପାଦ ଚାଲେ। ଗୋଟିଏ ବଡ଼ ବଂଶର ପିଲା ହୁଏତ ଅନୁଶୀଳନର ଅଭାବରେ ଗୋଟିଏ ବଣବୃଷ (ବଣୁଆ ଷଣ୍ଢ) ହୋଇପାରେ, କିନ୍ତୁ ତା ଭିତରେ instinct (ସହଜାତ ସଂସ୍କାର) ସବୁ ଠିକ୍ ଥାଏ। Instinct (ସହଜାତ ସଂସ୍କାର)-ର ଯେଉଁଠି ଗଣ୍ଡଗୋଳ ହୋଇଛି, ବୁଝିବାକୁ ହେବ ସେଠାରେ ବଂଶରେ ପ୍ରତିଲୋମର ସଂଶ୍ରବ ପ୍ରବେଶ କରିଛି କିମ୍ବା ବିବାହ-ବିଧିର ବ୍ୟତ୍ୟୟ ହୋଇଛି। Corruption (କଳୁଷ) ଯୋଗୁଁ ଅନେକ ସମୟରେ ଭଦ୍ର ଘରେ ମଧ୍ୟେ ପ୍ରତିଲୋମଜ ସନ୍ତାନ ଜନ୍ମ ହୁଏ। ଏପରି ମଧ୍ୟ ଅସମ୍ଭବ ନୁହେଁ ଯେ, ବ୍ରାହ୍ମଣୀର ଗର୍ଭରେ ଶୁଦ୍ର ଔରସରୁ ଜାତ ସନ୍ତାନ ବ୍ରାହ୍ମଣ-ସନ୍ତାନ ବୋଲି ସମାଜରେ ପରିଚିତ ହେଉଛି।

ଆ.ପ୍ର. – ୧ମ/୧୬.୬.୧୯୩୯

## ।। ବିବାହରେ ବରଣ କିପରି ହେବା ଉଚିତ।।

Offer (ବରଣ) ପିଲା ଖେଳ କଥା ନୁହେଁ। ଅପରିଣତ ବୟସରେ କୌଣସି ଝିଅଯଦି offer ଦିଏ (ବରଣ କରେ) ତାହା consider (ବିବେଚନା) କରିବାର ଯୋଗ୍ୟ ନୁହେଁ, ମିଳାମିଶାର ଫଳରେ ଯେଉଁ ଆକର୍ଷଣ ଆସେ, ତାହା କିନ୍ତୁ ଠିକ୍ ନୁହେଁ,

offerରେ (ବରଣ ବ୍ୟାପାରରେ) ବାପା-ମାଙ୍କର ମତ ରହିବା ଉଚିତ। ଯେଉଁ-ପୁରୁଷ offer ଦେବାର (ବରଣ କରିବାର) ପ୍ରରୋଚନା ଯୋଗାଏ, ସେ କିନ୍ତୁ ଆଦୌ ଯୋଗ୍ୟ ପୁରୁଷ ନୁହେଁ। ଆ:ପ୍ର: ୧ମ/୩.୧୦.୧୯୩୯

## ।। ଯୌନ ସମ୍ପର୍କ କେତେବେଳେ କରାଯାଏ ।।

Animal lifeରେ (ପଶୁ ଜୀବନରେ ମଧ୍ୟ) ଆମେ ଦେଖିବାକୁ ପାଉ, female (ସ୍ତ୍ରୀ) male (ପୁରୁଷ)କୁ woo (ଆମନ୍ତ୍ରଣ) କରେ – ଏମିତି ହୁଏତ male (ପୁରୁଷ) indifferent (ଉଦାସୀନ), କିନ୍ତୁ female (ସ୍ତ୍ରୀ) ଯେତେବେଳେ ଗରମ ହୁଏ, male (ପୁରୁଷ) କ୍ଷଣକେ ପାଗଳ ହୋଇଉଠେ। ମଣିଷ ବେଳକୁ female (ସ୍ତ୍ରୀ) woo (ଆମନ୍ତ୍ରଣ) ନ କରୁଣୁ ଯଦି male sexually (ପୁରୁଷ ଯୌନସମ୍ପର୍କରେ ଲିପ୍ତ) ହେବାକୁ ଚାହେଁ, female (ସ୍ତ୍ରୀ) ତାହା ପସନ୍ଦ କରେ ନାହିଁ, ଅନ୍ତରେ-ଅନ୍ତରେ repel (ପ୍ରତ୍ୟାଖ୍ୟାନ) କରେ, ସେପରି ପୁରୁଷକୁ ଅଶ୍ରଦ୍ଧା କରେ, ଭାବେ – 'ଏଇଥି ପାଇଁ ତୁମେ ମୋ ପଛେ-ପଛେ ବୁଲ।' ଏଥିରେ ପୁରୁଷ ଓ ନାରୀ ଉଭୟେ ହିଁ mentally ଓ physically deteriorate (ଶାରୀରିକ ଓ ମାନସିକ ଅଧୋଗମନ) କରନ୍ତି, ସନ୍ତାନସନ୍ତତି ମଧ୍ୟ vitally weak (ପ୍ରାଣସମ୍ପଦରେ ଦୁର୍ବଳ) ହୁଅନ୍ତି—ଆଉ, ଏପରି ସଙ୍ଗମର ଫଳରେ ପ୍ରାୟହିଁ ପୁଅ ନ ହୋଇ ଝିଅ ହୁଏ – ଅବଶ୍ୟ ଏହା ମୋର ମତ। Male must be worshipped from the side of the female (ପୁରୁଷ ସ୍ତ୍ରୀ ଦିଗରୁ ପୂଜିତ ବା ସମ୍ବର୍ଦ୍ଧିତ ହେବା ଦରକାର)। ଆ:ପ୍ର: ୧ମ/୧୫.୧୦.୧୯୩୯

## ।। ଜାତୀୟ ସଂହତିର ଉପାଦାନ କଣ ।।

ଆଜି ଯଦି ଆମେ ଇଷ୍ଟ ଓ କୃଷ୍ଟିର ଭିତ୍ତି ଉପରେ ଗୁଚ୍ଛ ବାନ୍ଧି ଉଠିପାରୁ – କଣ ଯେ କରିପାରିବୁ ତାର ଠିକଣା ନାହିଁ। ଆମର ରକ୍ତରେ ସବୁ-କିଛି ରହିଯାଇଛି—ତାର ଉପଯୁକ୍ତ ପୋଷଣ ଦରକାର। ଅନୁଲୋମ ଅସବର୍ଣ୍ଣ ବିବାହ ଓ ଏକାଦର୍ଶ ଗ୍ରହଣ – ଏହି ଦୁଇଟି ହେଲା ସମାଜର cementing factor (ସଂହତିର ଉପାଦାନ)। ପୁଣି ତାହା ଜଗାଇ ତୋଳିବାକୁ ହେବ। ଆମ୍ଭମାନଙ୍କର କି ଯେ ଭୂଲ – ଜଣକର ନିନ୍ଦା କରି ଆଉ-ଜଣକର ପ୍ରତିଷ୍ଠା କରିବାକୁ ଯାଉ, ତେଣୁ ଜାତିଟା disintegrated into lumps (ଖଣ୍ଡ ଖଣ୍ଡ ବିଚ୍ଛିନ୍ନ) ହୋଇଯାଇଛି। ... ବଙ୍ଗାଳୀ ଜାତି ମଧ୍ୟରେ ଖାଁଟି Aryan (ଆର୍ଯ୍ୟ) ଅଛନ୍ତି,

ଅନ୍ୟଦିଗରେ ଯେତେବେଳେ ଅତ୍ୟାଚାର ଆରମ୍ଭ ହୋଇଥିଲା ସେତେବେଳେ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ଏ ଦିଗକୁ ଆସିବାକୁ ପଡ଼ିଥିଲା। ଏମାନଙ୍କର ରକ୍ତ, ଏମାନଙ୍କର ପ୍ରାଣ ଯେ–ସେ କଥା ନୁହେଁ। ଆମେତ ଜାଣିନାହୁଁ ଆମ୍ଭମାନଙ୍କର ନିଜର କଣ ଥିଲା...। ଏକତ୍ର ହୋଇ ଉଠିଲେ ଏ-ଜାତି ସହିତ ପାରିବା ମୁସକିଲ। ଆ.ପ୍ର. ୧ମ/୧୭.୧୦.୧୦୩୯

## ।। ଅନୁଲୋମ ବିବାହ ଏବେ ବେଶୀ ନୁହେଁ।।

ପ୍ରସଙ୍ଗକ୍ରମେ ଶ୍ରୀଶ୍ରୀଠାକୁର କହିଲେ – ଅନୁଲୋମ ବିବାହଟା ଭାରି ଚମତ୍କାର ଜିନିଷ।

ଯତୀନଦା – ବର୍ତ୍ତମାନ ଯଦି ଦୁଇ ତିନି ଶହ ଅନୁଲୋମ ବିବାହ ହୋଇ ଯାଏ।

ଶ୍ରୀଶ୍ରୀଠାକୁର – ନା, ବର୍ତ୍ତମାନ ବେଶୀ ନୁହେଁ, ଆଉ କିଛିଟା ଅଗ୍ରସର ହୋଇ କରିବା ଭଲ। ଆ.ପ୍ର. ୧ମ/୨୦.୧୦.୧୯୩୯

## ।। ପୁରୁଷର ବହୁବିବାହ ଦରକାର କାହିଁକି।।

ପୁରୁଷର ଅନୁଲୋମ ଅସବର୍ଣ୍ଣ ବିବାହ ଓ ବହୁବିବାହ ଏକାନ୍ତ ଦରକାର। ବହୁବିବାହ ହେବା ଆରମ୍ଭ କରିଲେ ନିକୃଷ୍ଟ ପୁରୁଷମାନେ ଝିଅ ପାଇବେ ନାହିଁ। ଫଳରେ ଅନ୍ୟ ସମାଜ ଠାରୁ ଅନୁଲୋମ କ୍ରମରେ ଝିଅ ଆହରଣ କରିବାକୁ ଚେଷ୍ଟା କରିବେ, ଏହାଦ୍ୱାରା ସମାଜ ପୁଷ୍ଟ ହେବାକୁ ଲାଗିବ – ସମାଜର ଆତ୍ମୀକରଣ ଓ ଆପ୍ତୀକରଣ କ୍ଷମତା ମଧ୍ୟ ବଢ଼ି ଯିବ। ଆ.ପ୍ର. ୧ମ/୨.୭.୧୯୪୦

## ।। ବିବାହାଦିରେ ବାଧା ନାହିଁ କେଉଁଠାରେ।।

ଶାକ୍ତ ବିପ୍ର ଏବଂ ବୈଷ୍ଣବ ବିପ୍ର-ପରିବାରରେ ଯେପରି ବିବାହ-ସାଦିର କୌଣସି ନିଷେଧ ନାହିଁ—ସୌର ବିପ୍ର ଓ ଗାଣପତ୍ୟ ବିପ୍ର ମଧ୍ୟରେ ଯେପରି ବିବାହ ଚଳିପାରେ, ଇଷ୍ଟ, କୃଷ୍ଟି ଓ ପିତୃପୁରୁଷର ଐତିହ୍ୟବାହୀ ରସୁଲ-ଭକ୍ତ ବିପ୍ର, ବୁଦ୍ଧ ଭକ୍ତ ବିପ୍ର, ଖ୍ରୀଷ୍ଟଭକ୍ତ ବିପ୍ରର ସହିତ ସେହିପରି ବିଧିମାଫିକ ବିବାହାଦି ହୋଇପାରେ –ଏଥିରେ କୌଣସି ବାଧା ନାହିଁ। କାରଣ, ସ୍ୱଧର୍ମ ଓ କୃଷ୍ଟିନିଷ୍ଠ ରହି ଯେ-କୌଣସି ପୂରୟମାଣ ମହାପୁରୁଷଙ୍କ ପ୍ରତି ଶ୍ରଦ୍ଧାନତି ନେଇ ଚାଲିବା ଧର୍ମର ପରିପନ୍ଥୀ ତ ନୁହେଁ ବରଂ ପରିପୋଷକ। ତେବେ ପ୍ରତ୍ୟେକଟି ବିବାହ ବିଷୟରେ ଖୁବ୍ ହିସାବ କରି ଚାଲିବାକୁ ହେବ, ଯେପରି କୌଣସି ପ୍ରକାରରେ ବ୍ୟତ୍ୟୟୀ କିଛି ବା ପ୍ରତିଲୋମ-ସଂସ୍ରବ କୌଣସି ପ୍ରକାରେ ନ ଘଟେ।

ଆ.ପ୍ର. ୧ମ/୨.୭.୧୯୪୦

## ।। ଜନ ଓ ଜାତିର ସମତା ରହେ କେତେବେଳେ ।।

ଦୁଇଟି ଜିନିଷ – Ideal (ଆଦର୍ଶ) ଓ Eugenics (ବିବାହ-ବିଧି) ଠିକ୍ ରହିଲେ balance (ସମତା) ଠିକ୍ ରହେ। ଆ.ପ୍ର. ୧ମ/୧୫.୭.୧୯୪୦

## ।। ପାରିବାରିକ ଐତିହ୍ୟ ମାନିବାକୁ ହୁଏ କାହିଁକି ।।

ଅତୀତକୁ ଆମେ ସବୁ ମସୟରେ ବୋହି ନେଇ ଚାଲିଛୁ। ଅତୀତର ଭଲ-ମନ୍ଦ କିଛିହିଁ ଆମକୁ ଛାଡ଼େ ନାହିଁ। ଆପଣଙ୍କର ପିତୃପୁରୁଷ ବଂଶପରମ୍ପରାରେ ଯେଉଁ ସବୁ ଆଚାର-ଅନୁଷ୍ଠାନ ଓ କର୍ମ କରିଯାଇଛନ୍ତି, ତା ଭିତର ଦେଇ ଆପଣଙ୍କ ବଂଶରେ ବିଶେଷ କେତେଗୁଡ଼ିଏ instinctive-trait (ସହଜାତ-ଗୁଣ)ର ସୃଷ୍ଟି ହୋଇଛି। ସେହିଗୁଡ଼ିକର ଉପରେ ଆପଣ ଛିଡ଼ାହୋଇଛନ୍ତି। ଆପଣଙ୍କର ଏହି ଭିତ୍ତିକୁ ଯଦି ଆପଣ ignore (ଉପେକ୍ଷା) କରନ୍ତି, ତା ହେଲେ nowhere (ସ୍ଥିତିହୀନ) ହୋଇଯିବେ। ତେଣୁ family-tradition (ପାରିବାରିକ ଐତିହ୍ୟ)ରୁ deviated (ବିଚ୍ୟୁତ) ହେବା ଭଲ ନୁହେଁ।

ଆ.ପ୍ର. ୧ମ/୧୩.୮.୧୯୪୦

## ।। ଅନୁଲୋମ ମାନେ ଇନ୍‌ଟାରକାଷ୍ଟ ମ୍ୟାରେଜ କି ନୁହେଁ ।।

ତଥାକଥିତ inter-cast marriage (ବିଭିନ୍ନ ବର୍ଣ୍ଣ ମଧ୍ୟରେ ବିବାହ) ପ୍ରତିଲୋମ ମଧ୍ୟ ହୋଇପାରେ, ତାହା ଅନୁଲୋମ ନୁହେଁ। ଅନୁଲୋମରେ ପୁଅ ହେବ ଉଚ୍ଚବର୍ଣ୍ଣର, ଝିଅ ହେବ ନିମ୍ନବର୍ଣ୍ଣର। ଉଚ୍ଚବର୍ଣ୍ଣର ଝିଅ ନିମ୍ନବର୍ଣ୍ଣର ପୁଅ ସହିତ କିନ୍ତୁ ବିବାହ କରିପାରେ ନାହିଁ।

ଆ.ପ୍ର. ୧ମ/୪.୯.୧୯୪୦

## ।। ଏକ ବର୍ଣ୍ଣ ଭିତରେ ମଧ୍ୟ କିପରି ପ୍ରତିଲୋମ ହୁଏ ।।

ଏକ ବର୍ଣ୍ଣ ଭିତରେ ମଧ୍ୟ ବଡ଼ ବଂଶର ଝିଅକୁ ଛୋଟ ବଂଶର ପୁଅକୁ ଦେଲେ ସେଥିରେ ମଧ୍ୟ ପ୍ରତିଲୋମ ହୁଏ। ସଦ୍‌ବଂଶଜ ଓ ଅସଦ୍‌ବଂଶଜ ମଧ୍ୟରେ କେତେଗୁଡ଼ିଏ ଚରିତ୍ରଗତ ଲକ୍ଷଣ ଅଛି। ନୀଚ ବଂଶର ହୋଇ ମଧ୍ୟ ଜଣେ ସଦ୍‌ବଂଶଜ ହୋଇପାରେ, ପୁଣି ଉଚ୍ଚବଂଶର ହୋଇ ମଧ୍ୟ ଜଣେ ଅସଦ୍‌ବଂଶଜ ହୋଇପାରେ। ଅସଦ୍‌ବଂଶଜର ପ୍ରଧାନ ଦୋଷ ହେଲା – ସେମାନେ କାହାକୁ ଶ୍ରଦ୍ଧା କରିପାରନ୍ତି ନାହିଁ। ଟିକିଏ ଖିଆଲ କରିଲେହିଁ ଏ ସବୁ instinct (ସଂସ୍କାର) ବୁଝି ହେବ। ତେଣୁ ଝିଅର ବିବାହ ଦେବାକୁ

ଗଲେ ଦେଖିବାକୁ ହେବ, ପୁଅ ଉଚ୍ଚ ସଦ୍‌ବଂଶଜ କି ନୁହେଁ – ଏହା ନ ହେଲେହିଁ, ପ୍ରତିଲୋମ ହେଲେହିଁ, ସର୍ବନାଶ। ଆ.ପ୍ର. ୧ମ/୭.୯.୧୯୪୦

## ।। ସର୍ବନାଶର ସିଧା ପଥ କଣ ।।

ପ୍ରତିଲୋମ ଏପରି ଜିନିଷ ଯେ ଯଦି କାହାରି ସଙ୍ଗେ – ତାହା ଏକ ଦେଶ ହେଉ କିମ୍ବା ପରିବାରହିଁ ହେଉ – ଶତ୍ରୁତା ଥାଏ ଏବଂ ପ୍ରତିଶୋଧ ନେବାର ଇଚ୍ଛା ଥାଏ ଆଉ ସେଠାରେ ଯଦି କୌଣସି ପ୍ରକାରରେ ପ୍ରତିଲୋମ ପ୍ରବେଶ କରାଇ ଦିଆଯାଏ, ତାହେଲେ ଏକେବାରେ ନିଶ୍ଚିନ୍ତ। ଏହା ଅପେକ୍ଷା ସର୍ବନାଶ କରିବାର ସିଧା ପଥ ଆଉ ନାହିଁ। ଆ.ପ୍ର. ୧ମ/୭.୯.୧୯୪୦

## ।। ବିବାହ କିପରି ଦେବାକୁ ହୁଏ ।।

ବିବାହ ଠିକ୍‌ଭାବରେ ଦେବା ଦରକାର, ବର ସର୍ବାଂଶେ ଶ୍ରେୟ ହେବା ଦରକାର – ବିଶେଷତଃ ବଂଶରେ। ଅନେକେ ଏ ଦିଗକୁ ଖିଆଲହିଁ ଦିଅନ୍ତି ନାହିଁ, ତାର ଫଳ ଭଲ ହୁଏ ନାହିଁ। ବରର କୁଳକୃଷ୍ଟି ଓ ପ୍ରକୃତି କନ୍ୟାର କୁଳକୃଷ୍ଟି ଓ ପ୍ରକୃତିର ପରିପୂରଣୀ ହେବ, ପୁଣି କନ୍ୟାର କୁଳକୃଷ୍ଟି ଓ ପ୍ରକୃତି ହେବ ବରର କୁଳକୃଷ୍ଟି ଓ ପ୍ରକୃତିର ପରିପୋଷଣୀ। କନ୍ୟାର କୁଳ ଓ କନ୍ୟା ନିଜେ ସେହି ବରକୁ ପାଇ ନିଜ ନିଜକୁ ଧନ୍ୟ ମନେ କରିବେ। ଏହିପରି ଶ୍ରଦ୍ଧାପ୍ଲୁତ ଭାବ ନେଇ ଯେଉଁ-ଝିଅ ଆସେ, ସେ ସ୍ୱାମୀର ସଂସାରକୁ ତାର ତୀର୍ଥକ୍ଷେତ୍ର ମନେ କରି ଯଥୋପଯୁକ୍ତ ସେବାଦ୍ୱାରା ସମସ୍ତଙ୍କୁ ନନ୍ଦିତ କରି ସାର୍ଥକ ହୋଇ ଉଠେ, ସଂସାରକୁ ସେ ତା ବୁକୁଭରା ପ୍ରୀତି ଓ ପ୍ରାଣନ-ପୋଷଣୀ ଦକ୍ଷତା ଦେଇ ପ୍ଲାବିତ କରି ତୋଳେ। ସେ ଜଣେ ମନୋଜ୍ଞ ବ୍ୟବହାର କାହାକୁ କହନ୍ତି – ନ ଚାହିଁବା ଆଗରୁ, ନ କହିବା ଆଗରୁ ଯାହାର ଯେତେବେଳେ ଯାହା ପ୍ରୟୋଜନ ସେ ତାହା କରିବାରେ ଅଭ୍ୟସ୍ତ ହୋଇଉଠେ। ଆଉ, ଝିଅମାନଙ୍କୁ ଏ-ସବୁ (ଶିକ୍ଷା) ପିଲାବେଳରୁ ଦେବା ଦରକାର। ବାପଘରୁ ଅଭ୍ୟସ୍ତ ହୋଇ ଆସିଲେ ସେତେବେଳେ ଆଉ ବିବାହ ପରେ କଷ୍ଟ ହୁଏ ନା। ତେବେ ଏ-ସବୁ କରିବା ମୂଳରେ ଦରକାର ସୁକେନ୍ଦ୍ରିକ ଶ୍ରେୟପ୍ରୀତି, ସେତେବେଳେ ସବୁଜିନିଷଟାହିଁ ସହଜ ହୋଇଆସେ। ଝିଅମାନେ ଯଦି ପିତୃଭକ୍ତ ହୁଅନ୍ତି, ତାହେଲେ ସେ-ସବୁ ଝିଅମାନେ ସାଧାରଣତଃ ଭଲ ହୁଅନ୍ତି।

ଭକ୍ତିର ପୁଣି ଗୋଟିଏ ପରଖ ଅଛି, ଭକ୍ତି ଚିରକାଳହିଁ କର୍ମ ମୁଖର। ଯାହାକୁ

ଯିଏ ଭକ୍ତି କରେ, ଭଲ ପାଏ, ତା ଖୁସି ପାଇଁ, ତା ସ୍ୱସ୍ତି ପାଇଁ ସେ ମୁଣ୍ଡ ଓ ଗତର ନ ଖଟେଇ ରହି ପାରେନା। ପୁଣି, ନିଜର ଚରିତ୍ରଟାକୁ ମଧ୍ୟ ସେହିପରି ଭାବରେ ସୁସଜ୍ଜିତ କରି ତୋଳେ। ଏହା କରିବାକୁ ଯାଇ ତାର ପ୍ରବୃତ୍ତିଗୁଡ଼ିକ ମଧ୍ୟ ନିୟନ୍ତ୍ରିତ ହୋଇଉଠେ। ତେଣୁ, ଏହିପରି ପିତୃଭକ୍ତ ଝିଅ ଯଦି ଆଦର୍ଶପ୍ରାଣ ଉପଯୁକ୍ତ ପୁଅ ହାତରେ ପଡ଼େ, ତାକୁ ନିଜର ଅସ୍ତିତ୍ୱ ବୋଲି ଗ୍ରହଣ କରେ, ତାକୁ ବାଦ ଦେଇ ନିଜର ଅଲଗା କୌଣସି ଖିଆଲ ଖୁସି ତାର ନଥାଏ, ତା ପାଇଁ ଯେ-କୌଣସି କଷ୍ଟକୁ ମଧ୍ୟ ସେ ସୁଖର ବୋଲି ମନେ କରେ। ସଂସାର ସେଠାରେ ହିଁ ସ୍ୱର୍ଗ ହୋଇ ଉଠେ, ଆଉ ସେହିପରି ଦମ୍ପତିର ଭିତର ଦେଇ ହିଁ ଦେବଶିଶୁର ଆବିର୍ଭାବ ହୁଏ। ବଂଶ-ପରମ୍ପରା କ୍ରମେ ବିବାହ ଯଦି ଠିକ୍‌ଭାବରେ ହେଉଥାଏ, ତେବେ ଦେଖା ଯିବ ଗୋଟିଏ ବଂଶ କିପରି କ୍ରମେ-କ୍ରମେ ଉନ୍ନତିର ପଥରେ ଆଗେଇ ଯାଉଛି। ଅବଶ୍ୟ, ଆଦର୍ଶ-ପ୍ରାଣତା ଓ ସୁଶିକ୍ଷାର ସଂଯୋଗ ଏହା ସହିତ ଦରକାର, ଆଉ ସ୍ୱଭାବତଃହିଁ ସେମାନଙ୍କର ଝୋଁକ ମଧ୍ୟ ଏ ଦିଗରେ ଥାଏ।

ଆ.ପ୍ର. ୧୩/୨୭.୧୧.୧୯୪୧

## ।। ବାହା-ସାହା ଓ ସୁପ୍ରଜନନର କଥା ଏତେ କରି କହେ କାହିଁକି ।।

ଗୋଟିଏବି ବିବାହ ଯଦି କେଉଁଠି ବେମିସିଲ ହୋଇଯାଏ, ବଂଶପରମ୍ପରାରେ ତାହା ଯେ କେତେ ଅପଗଣ୍ଡ ଓ ଅବ୍ୟବସ୍ଥାର ଆମଦାନୀ କରି ଥାଏ ତାର ଇୟତ୍ତା କରା ଯାଏ ନା। ଲକ୍ଷ-ଲକ୍ଷ ମହାପୁରୁଷ ଓ ଶିକ୍ଷା-ବ୍ୟବସ୍ଥା ପକ୍ଷରେ ମଧ୍ୟ ସେମାନଙ୍କୁ ମଣିଷ କରିବା ଦୁରୂହ ହୋଇ ଉଠେ। ବିସମୋଲ୍ଲାୟ ଗଲଦ ! କରିବେ କିପରି ? ତେଣୁ ମୁଁ ବାହା-ସାହା ଓ ସୁପ୍ରଜନନର କଥା ଏତେ କରି କୁହେଁ। ତୁମେମାନେ କେମିତି ପୋଷାକୀ ଭାବରେ କଥାଗୁଡ଼ିକ ନିଅ, ଭଲ ଭାବରେ ମୁଣ୍ଡରେ ନିଅ ନାହିଁ, ତେଣୁ କେମିତି ଯେପରି ଫସ୍କାନ ଭାବ। ଚାରିଦିଗରେ କି ସର୍ବନାଶ ହେଉଛି ତାହା ଯଦି ତୁମ୍ଭେମାନେ ବୁଝିଥାନ୍ତ ତାହେଲେ କଣ ଏମିତି ବେଖିଆଲି ଚଳନରେ ଚାଲି ପାରିଥାନ୍ତ ? ନିଆଁ ହୋଇ ଉଠନ୍ତ। ପରମପିତାଙ୍କର ଦୟାରେ ଏତେଗୁଡ଼ିଏ ସମ୍ପଦ ତୁମ୍ଭେମାନେ ପାଇଛ, ଏହା ନେଇ tremendous (ପ୍ରଚଣ୍ଡ) ବଞ୍ଚିବା ଯଦି ନ ହେଲା, consolidation (ସଂହତି) ଯଦି ନ ଆସିଲା—ଗତାନୁଗତିକ ଏହି ଚଳଣୀରେ ଚାଲିବାରେ କି ସୁଖ ! କି ସାର୍ଥକତା !

ଆ.ପ୍ର. ୧/୨୭.୧୧.୧୯୪୧

## ।। ମଣିଷ ଦିନକୁ ଦିନ ଏତେ ପ୍ରବୃତ୍ତିମୁଖୀ ହେଉଛି କାହିଁକି ।।

Eugenic relation-ରେ (ଯୌନ-ସମ୍ବନ୍ଧରେ) ଭୂଲ ପସିବାରୁହିଁ ଯେତେ ସର୍ବନାଶ ହୋଇଛି। ବିବାହ ଯଦି ଠିକ୍ ଭାବରେବି ହୁଏ ତଥାପି ସ୍ୱାମୀଙ୍କ ପ୍ରତି ସ୍ତ୍ରୀର attachment (ଅନୁରାଗ) wisely conscious (ପ୍ରଜ୍ଞାଚେତନ) ନ ହେଲେ ଅର୍ଥାତ୍ ଚାରି-ଦିଗରୁ attention (ଅଭିନିବେଶ) ନ ରହିଲେ, ପିଲାର (ସନ୍ତାନର) ଶାରୀରିକ ସ୍ୱାସ୍ଥ୍ୟ ଭଲ ହେଲେ ମଧ୍ୟ ମାନସିକ ସ୍ୱାସ୍ଥ୍ୟ vigorous (ସତେଜ) ରହେ ନାହିଁ, comparatively dull (ଅପେକ୍ଷାକୃତ ମୂଢ଼) ହୁଏ, dull (ମୂଢ଼) ହେଲେ ଚଳଣୀ ମଧ୍ୟ ସେହି ପ୍ରକାରେ ହୁଏ। ମୋଟ ଉପରେ ସେମାନଙ୍କ ମଧ୍ୟରେ କୌଣସି-ନା–କୌଣସି ପ୍ରକାରେ ଅସଙ୍ଗତି ରହିବହିଁ। କାରଣ, ସ୍ତ୍ରୀ ଯଦି ସର୍ବତୋଭାବରେ ସ୍ୱାମୀର ସତ୍ତାସ୍ୱାର୍ଥିନୀ ନ ହୋଇ ଉଠେ, ତାର କେତେଗୁଡ଼ିଏ ଚାହିଦା, ଇଚ୍ଛା ଓ ପ୍ରବୃତ୍ତି ଅନାବୃତ ଓ ଅସଂଲଗ୍ନ ଯଦି ଥାଏ, ତେବେ ତାର ବ୍ୟକ୍ତିତ୍ୱ ସଂହତ ହୋଇ ଉଠେ ନାହିଁ – ତା ଭିତରର ଖଣ୍ଡିତ ରୂପହିଁ ସନ୍ତାନଠାରେ ରୂପାୟିତ ହୋଇ ଉଠେ। ଅବଶ୍ୟ, ସ୍ୱାମୀର ଯେ କିଛି କରଣୀୟ ନାହିଁ ତା ନୁହେଁ, ତାକୁ ମଧ୍ୟ ଆଦର୍ଶପ୍ରାଣ ହୋଇ ଉଠିବାକୁ ହେବ। କିନ୍ତୁ ମୋର ମନେ ହୁଏ ପ୍ରଜନନ–ବ୍ୟାପାରରେ, ସ୍ତ୍ରୀର ଦାୟୀତ୍ୱହିଁ ବେଶୀ। ଯେଉଁ ମାର ପେଟରୁ ଜନ୍ମ ନେଇଛି ସେ ଯାହା କରି ଦେଇଛି ତାହା ନେଇହିଁ ସବୁ କରାମତି। 'ଯେଖାନେ ସେଖାନେ ଯାଓରେ ମାକୁ, ଚରକି ଛାଡ଼ା ନୟ।' ତେଣୁ ଦେଖ, ମାର ପ୍ରବୃତ୍ତି-ପରାୟଣତା କିପରି ସନ୍ତାନଠାରେ ସଞ୍ଚାରିତ ହୁଏ। ଅଥଚ ପ୍ରତ୍ୟେକଟି ମା ଚାହେଁ ଯେ ତାର ପିଲା ସୁଖୀ ହେଉ, ସୁସ୍ଥ ହେଉ, ସୁଦୀର୍ଘଜୀବୀ ହେଉ, କୃତୀ ହେଉ, ଭଲ ହେଉ। କିନ୍ତୁ ମୂଳକାଟି ଅଗରେ ଜଳ ଢ଼ାଳିଲେ କଣ ହେବ ? ଗୋଟିଏ ଜୀବନର ବେଶୀ ଭାଗ ଜନ୍ମ ପୂର୍ବରୁହିଁ ତ ରଚିତ ହୋଇଯାଏ। କାରଣ, ଯେଉଁ ଶରୀର-ମନ ନେଇ ସେ ଜନ୍ମ ହୁଏ, ତାରି ଉପରେ ଛିଡ଼ା ହୋଇ ହିଁ ତାର ଚଳନ, କିନ୍ତୁ ଜନ୍ମ ପରେ ଯେପରି-ଯେପରି କରି ସନ୍ତାନକୁ ସୁଗଠିତ କରି ତୋଳିବାକୁ ହୁଏ, କେତେଜଣ ମା-ବାପା ବା ତାର ଧାର ଧାରନ୍ତି ? ଫଳରେ ଛୁଆପିଲାଙ୍କୁ ନେଇ କେତେ କଷ୍ଟ ପାଆନ୍ତି, ଆଉ ଅଦୃଷ୍ଟକୁ ଧିକ୍କାର ଦିଅନ୍ତି। ଅଥଚ ନିଜର ଯାହା କରଣୀୟ ତାହା କରନ୍ତି ନାହିଁ, ଚଳଣି ମଧ୍ୟ ଶୁଧାରନ୍ତି ନାହିଁ।

ଆ.ପ୍ର. ୧/୩୦.୧୧.୧୯୪୧

## ।। ସନ୍ତାନ କିପରି ମାତୃଗର୍ଭକୁ ଆସେ ।।

ସ୍ତ୍ରୀର ଯେଉଁ ଭାବଧାରା ଓ ଯେଉଁପରି impulse (ପ୍ରେରଣା) ଦ୍ୱାରା ପୁରୁଷ ସ୍ତ୍ରୀଠାରେ ଆନତ ହୁଏ, ପୁରୁଷର brain-centre (ମସ୍ତିଷ-କେନ୍ଦ୍ର)—ମଧ୍ୟ ସେହିପରି ଭାବରେ excited (ଉତ୍ତେଜିତ) ହୁଏ, ଆଉ ସେହି ସମୟରେ ଏହି ଭାବର ranged ର (ସୀମାର) ମଧ୍ୟରେ ଯେତେ soul (ଆତ୍ମା) in tune (ଏକସୁରରେ) ଥାଆନ୍ତି, ସେମାନେ ଆସି ହାଜିର ହୁଅନ୍ତି । Scrotum (ଅଣ୍ଡକୋଷ) ମଧ୍ୟରେ ଯେଉଁ ସମସ୍ତ spermcells (ଶୁକ୍ରାଣୁକୋଷ) ଥାଏ, ସେ-ସମୟରେ ସେଗୁଡ଼ିକ charged (ଶକ୍ତିସମ୍ଭୃତ) ହୋଇ life (ଜୀବନ) ପାଏ ଅର୍ଥାତ୍ ଏହି ଆଗତ soul (ଜୀବାତ୍ମା) ଗୁଡ଼ିକ spermcell (ଶୁକ୍ରାଣୁକୋଷ)-କୁ life (ଜୀବନ) ଦେଇ ଚଳତ୍‌ଶୀଳ, ନଡ଼ନଶୀଳ, ସଜୀବ କରି ତୋଳେ, ମଣିଷର ଶରୀର ମଧ୍ୟରେ ସେତେବେଳେ ଏକ contraction (ଆକୁଞ୍ଚନ)-ର ଭାବ ହୁଏ, ତା ପରେ ସ୍ତ୍ରୀ-ପୁରୁଷର ମିଳନ ସମୟରେ ସେମାନେ ovumର (ଡିମ୍ବାଣୁର) ସହିତ ମିଶିବା ପାଇଁ ଛୁଟି ଯାଆନ୍ତି । ସ୍ତ୍ରୀ ପୁଣି ସ୍ୱାମୀର ଭାବଭଙ୍ଗୀରୁ, ଆଚାର-ବ୍ୟବହାରରୁ ଯେପରି ଭାବରେ impressed (ପ୍ରଭାବିତ) ହୁଏ, ତାର ଭାବ ଭୂମିର ଭିତ୍ତିରେ ଛିଡ଼ା ହୋଇ ovum (ଡିମ୍ବାଣୁ)—ମଧ୍ୟ ସେହିପରି ଭାବରେ impressed (ପ୍ରଭାବିତ) ହୁଏ । ଅବଶ୍ୟ, ପୁରୁଷ ମଧ୍ୟ ଯେ ସ୍ତ୍ରୀର ଭାବ ଦ୍ୱାରା ପ୍ରଭାବିତ ହୋଇଥାଏ, ସେ—କଥା ତ ପୂର୍ବେହିଁ କହିଛି । ସ୍ତ୍ରୀର ଏକନିଷ୍ଠ ଶ୍ରଦ୍ଧାପ୍ଲୁତ ପରିଚର୍ଯ୍ୟା ପୁରୁଷକୁ ଯେତେମାତ୍ରାରେ exalt (ଉନ୍ନୀତ) କରି ତୋଳେ, ସେତେ ଉନ୍ନତ ସ୍ତରର ଆତ୍ମା ଉହ୍ଲାଇ ଆସେ । କିନ୍ତୁ ଶୁକ୍ରାଣୁଗୁଡ଼ିକ ଯେତେ ଉନ୍ନତ ସ୍ତରର ଆତ୍ମା ବହନ କରିହିଁ ଆସୁ ନା କାହିଁକି, ଡିମ୍ବାଣୁ ଯେଉଁପ୍ରକାରରେ impressed (ପ୍ରଭାବିତ) ହୁଏ, ସେହି impression (ପ୍ରଭାବ ଓ ଛାପ) ସହିତ affinity (ସଙ୍ଗତି)—ବାଲା ଯେଉଁ ଶୁକ୍ରାଣୁ ଥାଏ ତାହାରି ସହିତ ମିଳନ ହୁଏ – ଯେପରି ଖାଁଜେ ଖାଁଜେ ପଡ଼ିଗଲା, ଆଉ ଫାଁକ ରହିଲା ନାହିଁ, ଶୁକ୍ରାଣୁ ଡିମ୍ବାଣୁ ସହିତ ମିଶି ଗୋଟିଏ whole entity (ଗୋଟା ସତ୍ତା) ହୋଇ ଗଲା, ତା ପରେ cell-division (କୋଷ-ବିଭାଜନ) ଆରମ୍ଭ ହୁଏ as a whole (ସାମଗ୍ରିକଭାବରେ) – ସେହି ହେଲା ଛୁଆ (ସନ୍ତାନ) ।

ଆ.ପ୍ର. ୧/୧.୧୨.୧୯୪୧

## ।। ମାତୃଗର୍ଭକୁ ଉନ୍ନତ ଆତ୍ମା କେତେବେଳେ ଆସି ପାରିବ ।।

ପୁରୁଷ ଓ ନାରୀ ବାସ୍ତବ ଜୀବନରେ ସ୍ୱଭାବତଃହିଁ ଯଦି ଊର୍ଦ୍ଧ୍ୱମୁଖୀ ନ ହୁଅନ୍ତି, ତେବେ କିନ୍ତୁ ବୁଦ୍ଧି କରି ଏହି (ମିଳନ) ସମୟରେ ଉଚ୍ଚ ଭାବଭୂମିରେ ରହି ପାରନ୍ତି ନାହିଁ। ତେଣୁ ପୁରୁଷର ଇଷ୍ଟନିଷ୍ଠ ଚଳନ ଓ ସ୍ତ୍ରୀର ଇଷ୍ଟାନୁଗ ସ୍ୱାମୀଭକ୍ତି ଉପରେ ଏତେ ଜୋର ଦିଆଯାଏ। ତେବେ ସ୍ୱାମୀ-ସ୍ତ୍ରୀ ଉଭୟଙ୍କ ମଧ୍ୟରେ ଗୋଟିଏ ପାରସ୍ପାରିକତା ଦରକାର, ସଙ୍ଗତି ଦରକାର, ଗଭୀର ପ୍ରୀତି ଦରକାର, ଶରୀର, ମନ, ଚରିତ୍ର ଓ ପ୍ରକୃତିର ସାମଞ୍ଜସ୍ୟ ଦରକାର, ଆଉ ଏହା ପାଇବାକୁ ଗଲେ ବିବାହଟା ବିଧିମାଫିକ୍ ହେବା ଦରକାର। ଏତେଟା ହେଲେ ତେବେ ଯାଇ ଉନ୍ନତ ଆତ୍ମାର ଆବିର୍ଭାବ ସମ୍ଭବ।

ଆ.ପ୍ର. ୧/୧.୧୨.୧୯୪୧

## ।।ପ୍ରଜନନ-ପ୍ରୟୋଜନ ବ୍ୟତୀତ ଶୁକ୍ରାଣୁ ନଷ୍ଟ କରିବ ନାହିଁ କାହିଁକି।।

ମୋର ମନେ ହୁଏ, ପ୍ରତ୍ୟେକଟି sperm (ଶୁକ୍ରାଣୁ)–ହିଁ micro-cosmic formରେ (କ୍ଷୁଦ୍ରାକାରରେ) ଗୋଟିଏ–ଗୋଟିଏ being (ଜୀବ), ଏହା ନଷ୍ଟ କରିବା ମାନେ micro-cosmic form-ର (କ୍ଷୁଦ୍ରାକାରର) ଗୋଟିଏ ମଣିଷ ମାରି ପକାଇବା। ଆମ୍ଭମାନଙ୍କର ବୋଧଶକ୍ତି ଓ ମମତ୍ୱବୋଧ ଜାଗିଲେ ସେତେବେଳେ ଆଉ ଅଯଥା ନିଷ୍ପ୍ରୟୋଜନରେ, ନିଜର ସୁଖ ପାଇଁ, ଇନ୍ଦ୍ରିୟ-ପରିତୃପ୍ତି ପାଇଁ ଲକ୍ଷ-ଲକ୍ଷ ଶୁକ୍ରାଣୁ ନଷ୍ଟ କରି ଏତେଗୁଡ଼ିଏ soul (ଆତ୍ମା)କୁ ମାରିପାରିବୁ ନାହିଁ। ନିଜେ ଜନ୍ମ ନେବାକୁ ଆସି ବାରମ୍ବାର ଯଦି ଏହିପରି ମରିଯାଉଁ, ସେତେବେଳେ କି ଅବସ୍ଥା ହୁଏ, ସେହି କଥା ଚିନ୍ତା କରି ଶିହରି ଉଠିବୁ। ଅବଶ୍ୟ, ଡିମ୍ବାଣୁ ଯେ ସାଧାରଣତଃ ଗୋଟିଏରୁ ବେଶୀ ଶୁକ୍ରାଣୁ ଗ୍ରହଣ କରିପାରେନା ଏବଂ ଗୋଟିଏ ଜୀବନକୁ ରୂପାୟିତ କରି ତୋଳିବା କ୍ଷେତ୍ରରେ ଯେ ବହୁ ଶୁକ୍ରାଣୁର ଜୀବନାହୁତିର ପ୍ରୟୋଜନ ହୁଏ, ପ୍ରକୃତିର ଏହି ବିଧାନ ଉପରେ ତ କାହାରି ହାତ ନାହିଁ। ତେଣୁ ପ୍ରଜନନକଳ୍ପ ବ୍ୟତୀତ ଅନ୍ୟକାରଣରେ ଶୁକ୍ରାଣୁ ଯଥା ସମ୍ଭବ ନଷ୍ଟ ନ କରିବାହିଁ ଉଚିତ୍। ତୁମେ–ମୁଁ ସଭିଏଁ ତ ଏହି living sperm (ଜୀବନ୍ତ ଶୁକ୍ରାଣୁ), ପ୍ରତ୍ୟେକେ ଏହାରି ଉପରେ ଛିଡ଼ା ହୋଇ ଜନ୍ମ ହୋଇଛୁ, ଏହାହିଁ ଆଜି କେତେ କଥା କହୁଛି, ଘୁରୁଛି, ଫେରୁଛି, ହାତୀ-ଘୋଡ଼ା ମାରୁଛି। ତୁମେ ଯେଉଁ-ଦଶା ପସନ୍ଦ କର ନାହିଁ, ଅନର୍ଥକ ସେହି ଦଶାରେ ଏମାନଙ୍କୁ ପକାଇବ? ସେମାନେ ଯେ ତୁମେହିଁ!

ଆ.ପ୍ର. ୧/୧.୧୨.୧୯୪୧

## ।। ବଂଶଗତି ଓ ପାରିପାର୍ଶ୍ୱିକ ଦୁଇଟି ହିଁ ମଣିଷ ଜୀବନରେ କାହିଁକି ଦରକାର ।।

ମଣିଷ heredity (ବଂଶଗତି)ରୁ instinct (ସହଜାତ-ସଂସ୍କାର) ପାଏ, environment (ପାରିପାର୍ଶିକ) ତାକୁ nurture (ପୋଷଣ) ଦିଏ। ସନ୍ତାନ ଜନ୍ମ କରିବା ପାଇଁ ଯେପରି ବାପା-ମା ଦୁଇଜଣଙ୍କର ଦରକାର, ମଣିଷ ଜୀବନରେ ସେହିପରି heredity (ବଂଶଗତି), environment (ପାରିପାର୍ଶିକ) ଦୁଇଟି factor (ଜିନିଷ)–ହିଁ ଦରକାର। ପରିବେଶ ମଧ୍ୟରେ ଅନେକ କିଛିହିଁ ଥାଏ, କିନ୍ତୁ ମଣିଷ ସାଧାରଣତଃ ତାର instinct (ସହଜାତ-ସଂସ୍କାର) ଅନୁଯାୟୀହିଁ pick up (ଗ୍ରହଣ) କରେ। ପ୍ରତ୍ୟେକଙ୍କର specific instinct (ବିଶିଷ୍ଟ ସଂସ୍କାର) ଯେଉଁଥିରେ ପୋଷଣ ପାଏ ସେହିପରି ପାରିବେଶିକ ବିନ୍ୟାସ ଯେତେ ହୁଏ ସେତେହିଁ ଭଲ।

ଆ.ପ୍ର. ୧/୩.୧୨.୧୯୪୧

## ।। ଉଦ୍‌ବର୍ଦ୍ଧନ ଓ ସୁପ୍ରଜନନ କେଉଁଠରେ ସାର୍ଥକ ହୋଇ ଉଠେ ।।

ଆମ୍ଭମାନଙ୍କର ଶାସ୍ତ୍ରରେ... ମନୋବୃତ୍ତ୍ୟାନୁସାରିଣୀ ସ୍ତ୍ରୀର କଥା କୁହାଯାଇଛି, ସ୍ତ୍ରୀ ଯେପରି ସ୍ୱାମୀର ବୃତ୍ତି ଅର୍ଥାତ୍ ଏହି ପୁରୁଷର ପ୍ରକୃତି–ଅଂଶ ଏବଂ ସ୍ୱାମୀ ଯେପରି ସ୍ତ୍ରୀର ସ୍ୱ ଅର୍ଥାତ୍ ଅସ୍ତିତ୍ୱ। ଏହିପରି ସାତ୍ତ୍ୱିକ ମିଳନ ଯେଉଁଠାରେ, ସେହିଠାରେହିଁ ଉଦ୍‌ବର୍ଦ୍ଧନ ଓ ସୁପ୍ରଜନନ ଦୁଇଟି–ହିଁ ସାର୍ଥକ ହୋଇ ଉଠେ।

ଆ.ପ୍ର. ୧/୩.୧୨.୧୯୪୧

## ।। ଏକ ବାପା-ମାର ପାଞ୍ଚଟି ସନ୍ତାନ ପାଞ୍ଚ ରକମର କାହିଁକି ।।

ଦୁନିଆରେ ଦୁଇଟି ଜିନିଷ ଠିକ୍ ଅବିକଳ ବା ଏକରକମ ଦେଖିବାକୁ ପାଇବେ ନାହିଁ, ପ୍ରତ୍ୟେକଟି ଯାହା କିଛିର ଗୋଟିଏ ବିଶିଷ୍ଟତା ଅଛି–ତାହା ଯେପରି ରୂପରେ ସେହିପରି ଗୁଣରେ। ଏକ ବାପା-ମାର ପାଞ୍ଚଟି ସନ୍ତାନ ପାଞ୍ଚ ରକମ ହୁଅନ୍ତି। କାରଣ, ଉପଗତିର ସମୟରେ ନାରୀ ପୁରୁଷକୁ ଯେତେବେଳେ ଯେପରି ପ୍ରେରଣା ଦିଏ, ପୁରୁଷ ଭିତରର ସେହିପରି ଜିନିଷହିଁ ସେତେବେଳେ ବାହାରେ। ସ୍ୱ-ଅୟନସ୍ୟୂତ ବୃତ୍ତ୍ୟଭିଧାନ ତପସ୍ୟାର ଗତି ଓ ଅସ୍ତି ଅଧିଜାତ ହୋଇଛି। ସେଠାରେ ସ୍ୱ ହେଉଛି ଯେପରି ପୁରୁଷ—sperm (ବୀଜ), ବୃତ୍ତି

ଯେପରି ପ୍ରକୃତି—ovum (ଡିମ୍ବକୋଷ), ଆଉ ଅଭିଧାନ ହେଲା cohesive affinity (ଯୋଗାବେଗ)। ପ୍ରକୃତିର ବିଭିନ୍ନ ପ୍ରେରଣାରେ ଏକହିଁ ପୁରୁଷ ଭିତରୁ ବିଭିନ୍ନ ଗୁଣ ସୃଷ୍ଟି ହେଲା। ଆ.ପ୍ର. ୧/୩.୧୨.୧୯୪୧

## ।। ପ୍ରତିଲୋମଜ କନ୍ୟାକୁ କିପରି ଦୋଷମୁକ୍ତ କରା ଯାଏ।।

ମୋର ମନେ ହୁଏ, ପ୍ରତିଲୋମଜାତ କନ୍ୟାମାନଙ୍କର ବଂଶପରମ୍ପରାରେ ଉଚ୍ଚ ଘରେ ବିବାହ ଦେଇ ଉନ୍ନତତର ବୀଜ-ପ୍ରଭାବରେ ସେମାନଙ୍କର ସନ୍ତାନସନ୍ତତିଙ୍କୁ ବହୁପୁରୁଷ ଧରି କ୍ରମଶଃ ଦୋଷମୁକ୍ତ କରି ତୋଳା ଯାଇ ପାରେ।

ଆ.ପ୍ର. ୧/୯.୧୨.୧୯୪୧

## ।। ଝିଅକୁ ବିବାହ ଦେବାକୁ ହେଲେ କ'ଣ ଦେଖିବାକୁ ହେବ।।

ବୟସ୍କା ଝିଅମାନଙ୍କର ବିବାହ ଯେତେ ହୋଇଯାଏ, ସେତେହିଁ ଭଲ। ... ଦେଖିବେ—ପୁଅର ବଂଶ ଯେପରି ଆପଣଙ୍କ ଠାରୁ ନୀଚ ନ ହୁଏ–ସମାନ ସମାନ ଯଦି ହୁଏ ତାହା ବରଂ କିଞ୍ଚିତ୍ ନୀଚ ବୋଲି ଗଣ୍ୟ ହେବାର ଯୋଗ୍ୟ, ଆପଣଙ୍କ ବଂଶ ଠାରୁ କିଛିଟା ଉଚ୍ଚ ହୁଏ ତାହା ଦେଖିବେ, ତାହା ଏକାନ୍ତ ସମ୍ଭବ ନ ହେଲେ ସମାନ ସମାନ ହେବା ଆବଶ୍ୟକ, ଆବଶ୍ୟକ ହିଁ। ଆଉ ପାତ୍ରପାତ୍ରୀର ସ୍ୱାସ୍ଥ୍ୟ, ବୟସ, ଚରିତ୍ର, ପ୍ରକୃତି, ଶିକ୍ଷା ଇତ୍ୟାଦିର ସଙ୍ଗତିର ଦିଗକୁ ଲକ୍ଷ୍ୟ ରଖିବାକୁ ହୁଏ।

ଆ:ପ୍ର: ୨/୨୦.୧୨.୧୯୪୧

## ।। କେଉଁ ବିବାହ ସଫଳ ହୁଏ।।

ବିବାହଟା ଖୁବ୍ ଦେଖିଶୁଣି ଦେବାକୁ ହୁଏ, ସମାଜରେ ପ୍ରତିଲୋମ ବିବାହ ଯେପରି ଗୋଟିଏବି ନ ହୁଏ। ପୁଅ (ପାତ୍ର) ଯେପରି ଝିଅ (ପାତ୍ରୀ) ଅପେକ୍ଷା ସବୁ ଦିଗ ଦେଇ ଉନ୍ନତ ହୁଏ, ଶ୍ରେୟ ହୁଏ। ପୁଣି ପୁଅଝିଅର (ପାତ୍ରପାତ୍ରୀଙ୍କ) ମଧ୍ୟରେ temperamental affinity (ମାନସିକ ସଙ୍ଗତି) ରହିବା ଦରକାର। ବୟସ୍କା ଝିଅମାନଙ୍କର ବିବାହ ଦେବାକୁ ହେଲେ ସାକ୍ଷାତ ସଂସ୍ରବର ସୁଯୋଗ ନ ଦେଇ ପୁଅର (ପାତ୍ରର) ବଂଶ, ଅଭ୍ୟାସ, ବ୍ୟବହାର, ଚରିତ୍ର, ଗୁଣାବଳୀ, ସ୍ୱାସ୍ଥ୍ୟ, ଚେହେରା, ପସନ୍ଦ-ଅପସନ୍ଦ ଇତ୍ୟାଦି ବିଷୟ ତାକୁ ଜଣାଇ ତାର ମତ

ନେଇ ବିବାହ ଦେବା ଭଲ। ସ୍ତ୍ରୀ ଯଦି ସ୍ୱାମୀଙ୍କୁ ଶ୍ରଦ୍ଧା କରେ, ତା ପାଇଁ କଷ୍ଟ ସହି ମଧ୍ୟ ନିଜକୁ ସୁଖୀ ଓ ସାର୍ଥକ ମନେ କରେ, ତାହା ହେଲେ ହିଁ ସେହି ବିବାହ ସଫଳ ହୁଏ।

ଆ.ପ୍ର. ୨/୨୨.୧୨.୧୯୪୧

## ।। ସନ୍ତାନର ସ୍ୱାସ୍ଥ୍ୟ, ବୁଦ୍ଧି, ଆୟୁ, ଇତ୍ୟାଦିର ଉତ୍କର୍ଷ କେଉଁଥିରେ ହୁଏ।।

ଆୟୁର ଏକ ବଂଶଗତ ଧାରା ଅଛି। କିନ୍ତୁ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଯେଉଁଠାରେ ଗଭୀର ପବିତ୍ର ପ୍ରଣୟ ଅଛି, ସ୍ତ୍ରୀ ଯେଉଁଠାରେ ସ୍ୱାମୀଙ୍କୁ ନିଜର ସତ୍ତାଜ୍ଞାନରେ ଭଲପାଏ, ସ୍ୱାମୀ ଯେଉଁଠି ସ୍ତ୍ରୀଙ୍କୁ ନିବିଡ଼ ସ୍ନେହର ଚକ୍ଷୁରେ ଦେଖେ, ସେଠାରେ ସନ୍ତାନର ସ୍ୱାସ୍ଥ୍ୟ, ବୁଦ୍ଧି, ଆୟୁ ଇତ୍ୟାଦିର ଉତ୍କର୍ଷ ହେବହିଁ। ଅବଶ୍ୟ ସ୍ୱାମୀ ଇଷ୍ଟମୁଖୀ ହେବାହିଁ ଦରକାର। ସ୍ୱାମୀ ଯଦି ସ୍ତ୍ରୀମୁଖୀ ହୁଏ, ସେଠାରେ ସ୍ତ୍ରୀ ଏହି ସ୍ୱାମୀଙ୍କୁ ବେଶୀ ଦିନ ଶ୍ରଦ୍ଧାର ଚକ୍ଷୁରେ ଦେଖି ପାରିବ ନାହିଁ। ତା ବ୍ୟତୀତ ସ୍ୱାମୀ-ସ୍ତ୍ରୀ ଉଭୟଙ୍କ ମଧ୍ୟରେ ସେତେବେଳେ ପ୍ରବୃତ୍ତିରହିଁ ପ୍ରାଧାନ୍ୟ ଦେଖା ଯାଏ। ଏହି ଭାବରେ ମଣିଷ ଯଦି ଇଷ୍ଟକୃଷ୍ଟି ଓ ସଦାଚାର–ପରାୟଣ ହୁଏ, ବିବାହ ଯଦି ଠିକ୍ ଭାବରେ ହୁଏ, ଶିକ୍ଷା ଓ ପରିବେଶକୁ ଯଦି କିଛି ପରିମାଣରେ ସୁଗଠିତ କରି ତୋଳା ଯାଏ, ପୁଅ ଓ ଝିଅର ଅବଶ୍ୟଜ୍ଞାତବ୍ୟ ଯାହା, ଅବଶ୍ୟକରଣୀୟ ଯାହା, ସେଗୁଡ଼ିକରେ ଯଦି ସେମାନଙ୍କୁ ସଡ଼ଗଡ଼ ଓ ସକ୍ରିୟ କରି ତୋଳନ୍ତି, ଦେଖିବେ ଦେଶରେ ଲୋକଙ୍କର ସ୍ୱାସ୍ଥ୍ୟ, ଆୟୁ, କର୍ମକ୍ଷମତା କେତେ ମାତ୍ରାରେ ବଢ଼ିଯିବ। ଆଉ ସୁଜନନ ଓ ସୁଯୋଗ୍ୟତା ପାଇଁ ବର୍ଣ୍ଣାଶ୍ରମସମ୍ମତ ଚଳନ ଦରକାର। ଏ ଗୁଡ଼ିକ ସିଧାସଳଖ ବିଜ୍ଞାନର କଥା। ଆମ୍ଭମାନଙ୍କର ହାତ ଭିତରର କଥା।

ଆ.ପ୍ର. ୨/୨୨.୧୨.୧୯୪୧

## ।। ସନ୍ତାନ କେତେବେଳେ ସୁସ୍ଥ ଜୈବୀ-ସଂସ୍ଥିତିର ଅଧିକାରୀ ହୁଏ।।

ପ୍ରଥମେ ଦରକାର ଉପଯୁକ୍ତ ବିବାହ, ଉପଯୁକ୍ତ ଦାମ୍ପତ୍ୟ ଜୀବନ। ପିତାମାତାଙ୍କର ବିବାହ ଓ ଦାମ୍ପତ୍ୟ ଜୀବନରେ ଯଦି ଅସଙ୍ଗତି ଥାଏ, ତେବେ ପୁଅଝିଅ ଶରୀର-ମନରେ ସୁସ୍ଥ ହୋଇ ପାରନ୍ତି ନାହିଁ। ତାପରେ, ଝିଅମାନେ ଋତୁ ସମୟରେ ଓ ଗର୍ଭାବସ୍ଥାରେ କିପରି ଚଳିବେ ଜାଣିବା ଦରକାର। ସହବାସ କାହାକୁ କୁହାଯାଏ – ପୁରୁଷ ନାରୀ କେହି ଜାଣନ୍ତି ବୋଲି ମନେ ହୁଏନା। କ୍ଷଣିକ ଉତ୍ତେଜନାର ବଶରେ ମିଳନଟାହିଁ ସହବାସ

ନୁହେଁ। ସ୍ୱାମୀ-ସ୍ତ୍ରୀ ଉଭୟଙ୍କ ମଧ୍ୟରେ ଗଭୀର ଆଦର୍ଶ ପରାୟଣତା, ଗଭୀର ଅନୁରାଗ୍ୟ ଏହାର ମୂଳ ଜିନିଷ। ସେତେବେଳେ ଉଭୟଙ୍କ ମଧ୍ୟରେ ଥାଏ ପ୍ରୀତ କରି ପ୍ରୀତ ହେବା ବୁଦ୍ଧି, ସେଥିପାଇଁ ଅନେକ ପରିମାଣରେ ସଂଯମ ଓ ସାଧନା ଦରକାର, ନିଜର ସୁଖ କଥା ସେଠାରେ ଗୌଣ, ଅପରର ସୁଖହିଁ ମୁଖ୍ୟ। ଏହାହିଁ ହେଲା ପ୍ରେମର ରୀତି। ଆଉ ସ୍ୱାମୀ-ସ୍ତ୍ରୀ ଯେଉଁଠାରେ ଆଦର୍ଶ ପରାୟଣ, ସେମାନଙ୍କ ଯୌନ-ମିଳନ ପଛରେ ମଧ୍ୟ ବୁଦ୍ଧିଥାଏ – ଏହା ଭିତର ଦେଇ ଯଦି ସନ୍ତାନର ଆବିର୍ଭାବ ହୁଏ, ସେ ସନ୍ତାନ ମଧ୍ୟ ଯେପରି ଇଷ୍ଟଙ୍କ ପୂଜାରେ ଲାଗେ। ସ୍ୱାମୀ-ସ୍ତ୍ରୀର ଦୈହିକ ମିଳନର ପଛଭୂମି ଯଦି ସହଜଭାବରେ ଏହିପରି ହୁଏ, ଇଷ୍ଟଙ୍କର ସ୍ମୃତି, କୃଷ୍ଟିର ସ୍ମୃତି, ଧର୍ମର ସ୍ମୃତି, ପୂର୍ବପୁରୁଷର ସ୍ମୃତି ଯଦି ଜାଗ୍ରତ ଥାଏ, ଆତ୍ମସୁଖର ସ୍ପୃହା ଠାରୁ ପ୍ରୀଣନ ସ୍ପୃହା ଯଦି ପ୍ରତ୍ୟେକଙ୍କ ମଧ୍ୟରେ ପ୍ରବଳ ଥାଏ, ତେବେ ସେଠାରେ ସନ୍ତାନ ଦେହମନରେ ବଳିଷ୍ଠ ହେବହିଁ। ପୁରୁଷ ଯଦି ଇଷ୍ଟନିଷ୍ଠ ହୁଏ, ସ୍ତ୍ରୀ ଯଦି ହୁଏ ସ୍ୱାମୀପ୍ରାଣ। ଇଷ୍ଟପ୍ରାଣା ତଥା ସହଧର୍ମିଣୀ; ଇଷ୍ଟପ୍ରସଙ୍ଗ, ଧର୍ମଚର୍ଯ୍ୟା, ପରିବାର ଓ ପରିବେଶର ଇଷ୍ଟାନୁଗ ସେବା, ସର୍ବପ୍ରକାରର ଉନ୍ନୟନୀ, ଆନନ୍ଦଦାୟକ ଅନୁଶୀଳନ – ଏହିଗୁଡ଼ିକ ଯଦି ସେମାନେ ଯୌଥ ଭାବରେ କରିବାକୁ ଅଭ୍ୟସ୍ତ ହୁଅନ୍ତି, — ପ୍ରତ୍ୟେକେ ଯିଏ ଯାହାର ବୈଶିଷ୍ଟ୍ୟ ଅନୁସାରେ, — ତେବେ ସେମାନଙ୍କର କାମକଳାର କ୍ଷେତ୍ର ମଧ୍ୟ ଅନେକଟା ସୁସ୍ଥ, ଉନ୍ନତ ଓ ପବିତ୍ର ହୁଏ। ପିତାମାତାଙ୍କର ଏମିତି ଶ୍ରଦ୍ଧାନୁଗ ଅନୁଶୀଳନ-ତତ୍ପରତାର ଭିତର ଦେଇ ଯେଉଁ ବୈଧୀ ମିଳନ ସଂଘଟିତ ହୁଏ, ତାହାରି ଭିତର ଦେଇ ସନ୍ତାନ ସୁଷ୍ଠୁ ଜୈବୀ-ସଂସ୍ଥିତିର ଅଧିକାରୀ ହୋଇଉଠେ। ଏହି ଜୈବୀ-ସଂସ୍ଥିତିହିଁ ହେଉଛି ଜୀବନର ଆକର (ଉତ୍ସ)। ଜାତକର ରୋଗ-ନିରୋଗ-କ୍ଷମତା, ଆୟୁ ଓ ବର୍ଦ୍ଧନ ତତ୍ପରତା ଏହି ଜୈବୀ-ସଂସ୍ଥିତିର ଉପରେହିଁ ନିର୍ଭର କରେ। ଆଉ ଏମିତି ଯୌନଚର୍ଯ୍ୟାର ଫଳରେ ସ୍ୱାମୀ-ସ୍ତ୍ରୀର ଶରୀର-ମନ ମଧ୍ୟ ସୁସ୍ଥ ଓ ଦୀପ୍ତ ହୋଇଉଠେ। ରଗ୍ଣ କାମ ଅନେକ ବିପର୍ଯ୍ୟୟର ସୃଷ୍ଟି କରେ। ଆ:ପ୍ର: ୨/୨୩.୧୨.୧୯୪୧

## ।। ସମସ୍ତଙ୍କ ମଧ୍ୟରେ କଣ ସଞ୍ଚାର କରି ଦେବାକୁ ହେବ ।।

ସମାଜ-ବ୍ୟବସ୍ଥା, ବିବାହ-ବ୍ୟବସ୍ଥା ଇତ୍ୟାଦି ସମ୍ବନ୍ଧରେ ଋଷିମାନେ ସଂହିତାରେ ଯେଉଁ ବିଜ୍ଞାନର ନିର୍ଦ୍ଦେଶ କରି ଯାଇଛନ୍ତି, ତାହା ସମସ୍ତଙ୍କ ମଧ୍ୟରେ ଚରେଇ ଦେବାକୁ ହେବ। ପ୍ରତିଲୋମ ସମ୍ବନ୍ଧରେ ଖୁବ୍ ହୁସିଆର ହେବାକୁ ପଡ଼ିବ, ଆଉ ବିଧିମାଫିକ

ଅନୁଲୋମ ଅସବର୍ଣ୍ଣ ବିବାହ ଯେତେ ହେବ, ସେତେହିଁ ଭଲ । ପରିପୂରଣୀ ଏକ ଆଦର୍ଶଙ୍କର ଅନୁସରଣ ଓ ବିହିତ ସବର୍ଣ୍ଣ ଓ ଅନୁଲୋମ ଅସବର୍ଣ୍ଣ ବିବାହ — ଏହି ଦୁଇଟି ଜିନିଷ ସବୁ ସମାଜ ମଧ୍ୟରେ, ସବୁ ସମ୍ପ୍ରଦାୟ ମଧ୍ୟରେ ଚରେଇ ଦିଅନ୍ତୁ, ଦେଖନ୍ତୁ କଣ ହେଉଛି ।

ଆ.ପ୍ର. ୨/୨୩.୧୨.୧୯୪୧

## ।। ଝିଅମାନଙ୍କୁ ସୁଜନନ-ବିଜ୍ଞାନର ଶିକ୍ଷା କିପରି ଦେବାକୁ ହେବ ।।

ପ୍ରଥମ କଥା ହେଲା, ସେମାନଙ୍କୁ ବଂଶ-ମର୍ଯ୍ୟାଦା ଓ ଆଭିଜାତ୍ୟ ସମ୍ବନ୍ଧରେ ସଚେତନ କରିତୋଳିବା ଦରକାର । ଏହି ଗୌରବ ବୋଧ ସେମାନଙ୍କ ମଧ୍ୟରେ ଏତେ ପରିମାଣରେ ତାଜା କରି ତୋଳିବା ଦରକାର, ଯେପରି ସେମାନେ କେତେବେଳେବି ନିକୃଷ୍ଟ ଠାରେ ଆତ୍ମଦାନ ନ କରନ୍ତି । ପ୍ରତିଲୋମ ବିବାହ ପରେ ଝିଅମାନେ ଯେ ମନେ-ମନେ କି ନରକ ଯନ୍ତ୍ରଣା ଭୋଗ କରନ୍ତି, ତାର ଅନେକ confession (ସ୍ୱୀକାରୋକ୍ତି) ମୁଁ ଶୁଣିଛି । ପ୍ରଥମେ ମୋହ ବଶତଃ ହୁଏତ ଆକୃଷ୍ଟ ହୁଅନ୍ତି, କିନ୍ତୁ ସ୍ୱାମୀ ଯେତେବେଳେ ତାଠାରେ ଉପଗତ ହେବାକୁ ଯାଆନ୍ତି, ସେତେବେଳେ ଯେପରି ତାର ଅନ୍ତରାତ୍ମା ବିଳାପ କରି କାନ୍ଦି ଉଠେ । ତାର ପୂର୍ବପୁରୁଷମାନେ ସମସ୍ତେ ଏକ ସ୍ୱରରେ ମିଶି ଯେପରି ଯାଇଛି–ଯାଇଛି କହି ଆର୍ତ୍ତନାଦ କରି ଉଠନ୍ତି । ସେ ଯେ କି ଯନ୍ତ୍ରଣା ତାହା କହି ବୁଝାଇ ହେବ ନାହିଁ । ମଣିଷ ଆତ୍ମହତ୍ୟା ସମୟରେବି ପ୍ରାୟ ଏତେ କଷ୍ଟ ପାଏ ନାହିଁ । ଆଉ ପ୍ରତିଲୋମ ସନ୍ତାନ-ସନ୍ତତିର କି ଦୁର୍ଗତି ହୁଏ, ତାହାତ ତୁମ୍ଭମାନଙ୍କର ଅଜଣା ନାହିଁ । ତେଣୁ ପ୍ରତିଲୋମ ବିଷୟରେ ଏକ ପ୍ରଚଣ୍ଡ ଭୟ ସୃଷ୍ଟି କରି ଦେବାକୁ ହେବ — ବାସ୍ତବ ବୈଜ୍ଞାନିକ ଭିତ୍ତିକୁ ଉଦ୍‌ଘାଟିତ କରି । ଆଉ ଶ୍ରେୟଙ୍କ ପ୍ରତି ସହଜ ଟାଣ ଯେପରି ସୃଷ୍ଟି ହୁଏ ତାହା କରିବାକୁ ହେବ । ଆଉ ଶ୍ରେୟକୁଳସଞ୍ଜାତ ଉପଯୁକ୍ତ ସ୍ୱାମୀ ଲାଭ ହେଲେ ମଧ୍ୟ, କିପରି କରି ତାଙ୍କର ମନୋଜ୍ଞ ଚଳନରେ ଚଳିବାକୁ ହୁଏ, କେମିତି କରି ତାଙ୍କର କୁଳ ସଂସ୍କୃତିକୁ, ତାଙ୍କର ବ୍ୟକ୍ତିଗତ ବୈଶିଷ୍ଟ୍ୟକୁ ସଶ୍ରଦ୍ଧ ସକ୍ରିୟ ସେବା ଦ୍ୱାରା ପୁଷ୍ଟ କରି ଚଳିବାକୁ ହୁଏ, ସେସବୁ ତା ମୁଣ୍ଡରେ ଧରେଇ ଦେବାକୁ ହୁଏ । ଝିଅମାନଙ୍କର ବିବାହ ମାନେ ଜନ୍ମାନ୍ତର, ସ୍ୱାମୀଙ୍କୁ ନେଇ, ତାଙ୍କ ସଂସାରକୁ ନେଇ ସେ ନୂତନ ମଣିଷ ହୋଇ ଉଠିବ । ନିଜକୁ ଯେତେ ପରିମାଣରେ ସେ ସ୍ୱାମୀଙ୍କ ଠାରେ ଉତ୍ସର୍ଗ କରେଇ ପାରିବ ଇଷ୍ଟାନୁଗ ରକମରେ, ସେତେ ପରିମାଣରେ ତାର ସୁସନ୍ତାନ ଲାଭର ସମ୍ଭାବନା । ଏହି ଉତ୍ସର୍ଗ କେବଳ ଗୋଟିଏ ଭାବିବାର ବିଷୟ ନୁହେଁ । ତାର ପ୍ରତିଟି ଚିନ୍ତା, ଚଳନ,

ବାକ୍ୟ ଓ କର୍ମ ପୂଜା ଆରତି ହୋଇ ଫୁଟି ଉଠିବ। ଏହା-ହିଁ ହେବ ତାର ଧ୍ୟାନ, ଜ୍ଞାନ, ଅନୁସନ୍ଧିତ୍ସା; ଦେହରେ, ମନରେ, ପ୍ରାଣରେ, ଅନ୍ତରାତ୍ମାରେ ସେ ନିଜକୁ ନିରଳସ ଭାବରେ ଯେତେ ପରିମାଣରେ ସ୍ୱାମୀ-ତପା କରି ତୋଳି ପାରିବ, ସେତେହିଁ ସ୍ୱାମୀଙ୍କର ସଦ୍‌ଗୁଣଗୁଡ଼ିକ ସନ୍ତାନ ମଧ୍ୟରେ ମୂର୍ତ୍ତ କରି ତୋଳି ପାରିବ — ତାହା ସନ୍ତାନର ସହଜାତ-ସଂସ୍କାରରେ ଓ ତାର ଚରିତ୍ରରେ। ଆ.ପ୍ର. ୨/୨୪.୧୨.୧୯୪୧

## ।। ନାରୀ-ପୁରୁଷର ବୈଶିଷ୍ଟ୍ୟର ମୂଳ କଣ ।।

ଏକ ଢେଉର ଉଦ୍‌ବେଳାୟିତ ଅବସ୍ଥାଟା ଯେପରି ପୁରୁଷ, ଆଉ ଅବବେଳାୟିତ ଅବସ୍ଥାଟା ଯେପରି ନାରୀ। ଅବବେଳାୟିତର ଉପରେ ଭାରା ଦେଇ ଯେପରି ଉଦ୍‌ବେଳାୟିତ ଛିଡ଼ା ହୁଏ। ପ୍ରକୃତି ଯେପରି ପୁରୁଷର ବିଶ୍ରାମର କ୍ଷେତ୍ର। ନାରୀ ପୁରୁଷର ପରିପୋଷକ, ପୁରୁଷ ନାରୀର ପରିପୂରକ, ଉଭୟେ ମିଶି ଯେପରି ଏକ, ନାରୀ ଯେପରି ପୁରୁଷର ସତ୍ତାର ବାକିଟିକକ। ତେଣୁ ମନୋବୃତ୍ତ୍ୟନୁସାରିଣୀ ସ୍ତ୍ରୀର କଥା କହେ, ଆଉ ସ୍ୱାମୀ ଯେପରି ସ୍ତ୍ରୀର ସତ୍ତା। ପୁରୁଷ ନାରୀର ଏହି ଗଭୀର ସମ୍ପର୍କ ଅନେକେ ବୁଝନ୍ତି ନାହିଁ। ତେଣୁ ଜଣେ ଅନ୍ୟ ଜଣକୁ ତଥାକଥିତ ଭୋଗର ଉପକରଣ ମନେ କରନ୍ତି। କିନ୍ତୁ ପ୍ରକୃତ ଦାମ୍ପତ୍ୟ-ମିଳନ ଓ ପ୍ରଣୟ ଯେଉଁଠାରେ, ସେଠାରେ ଠିକ୍ ଲକ୍ଷ୍ମୀନାରାୟଣ ବା ଶିବଦୁର୍ଗାଙ୍କର ଆବିର୍ଭାବ ହୁଏ। ପୁରୁଷର ଏହି ଉଦ୍‌ବେଳାୟିତ ଅବସ୍ଥାଟା ଅତୁଟ ରଖିବା ପାଇଁ ତାକୁ ପୁଣି ପୁରୁଷ-ଶ୍ରେଷ୍ଠଙ୍କଠାରେ ସଂଲଗ୍ନ ରହିବାକୁ ହୁଏ। ନଚେତ୍ ତାର ପୌରୁଷହିଁ ଲୋପ ପାଇବାକୁ ବସେ। ସେ ନାରୀଠାରେ କାମମୁଗ୍ଧ ହୋଇ ଉଠେ, ତାର ପରିପୂରଣୀ ପ୍ରତିଭାହିଁ ନଷ୍ଟ ହୋଇ ଚାଲିଥାଏ। ନାରୀ ସେହିପ୍ରକାରର ପୁରୁଷକୁ ନେଇ ସୁଖୀ ହୋଇ ପାରେନା।

ଆ.ପ୍ର. ୨/୨୪/୧୨.୧୯୪୧

## ।। ବିଶେଷ ଲକ୍ଷ୍ୟ କେଉଁଦିଗକୁ ରଖିବାକୁ ହେବ ।।

ଯେତେ କାମ ହିଁ କରନ୍ତୁ, ବିଶେଷ ଲକ୍ଷ୍ୟ ରଖିବେ, ସର୍ବତ୍ର ବିବାହାଦି ଯେପରି ଠିକ୍‌ଭାବରେ ହୁଏ। କୌଣସି ପ୍ରକାରେ ପ୍ରତିଲୋମ ଯେପରି ନ ଘଟେ। ଏହା ପରି ସର୍ବନାଶର ବିଷୟ ଆଉ ନାହିଁ। ଏଥିରେ ସନ୍ତାନ ବିଶ୍ୱାସଘାତକ ହେବହିଁ ହେବ। ସବର୍ଣ୍ଣ ଓ ଅନୁଲୋମ ବିବାହ ବିଷୟରେ ମଧ୍ୟ ଯେପରି-ଯେପରି କହିଛି, ଶାସ୍ତ୍ରରେ ଯେପରି ଅଛି, ସେହିପରିହିଁ ବିଧିମାଫିକ ହେବା ଦରକାର। ...ଭଲ ବିବାହ ଯଦି ନ ହୁଏ ତେବେ ଭଲ ସନ୍ତାନ

ହେବ ନାହିଁ। ଆଉ ଦେଶରେ ଭଲ ସନ୍ତାନ ଯଦି ନ ଜନ୍ମେ, ତେବେ କିଛିହିଁ କରି ପାରିବେ ନାହିଁ। ଆ.ପ୍ର. ୩/୩୧.୧୨.୧୯୪୧

## ।। ଦାମ୍ପତ୍ୟଜୀବନରେ ଇଷ୍ଟପ୍ରାଣତାର ପ୍ରଭାବରେ କଣ ହୁଏ ।।

ସ୍ୱାମୀ-ସ୍ତ୍ରୀ ଉଭୟେ ଯଦି ଇଷ୍ଟପ୍ରାଣ ହୁଅନ୍ତି, ତେବେ ଉଭୟଙ୍କ ମଧ୍ୟରେ ଅନେକ ପରିମାଣରେ ସଙ୍ଗତି ରହେ। ପୁରୁଷର ଇଷ୍ଟପ୍ରାଣତାରେ ତାର ଅନ୍ତର୍ନିହିତ ଶକ୍ତି ଅନେକ ପରିମାଣରେ ମୁଖର ହୋଇ ଉଠେ। ପୁଣି ଇଷ୍ଟପ୍ରାଣତାର ଫଳରେ ସ୍ତ୍ରୀର ସ୍ୱାମୀଭକ୍ତି ମଧ୍ୟ ବଢ଼ିଯାଏ, ଏହି ସକ୍ରିୟ ଭକ୍ତିର ଫଳରେ ସେ ସ୍ୱାମୀର ଅନେକକିଛି ଗୁଣ ସନ୍ତାନ ଠାରେ ମୂର୍ତ୍ତ କରି ତୋଳି ପାରେ। ପୁଣି ଏହିପରି ସନ୍ତାନର ପିତୃଭକ୍ତ, ମାତୃଭକ୍ତ, ଗୁରୁଭକ୍ତ ହେବାର ସମ୍ଭାବନା ବେଶୀ ଥାଏ। ସେମାନେ ସହଜରେ ସଂଯମୀ ହୁଅନ୍ତି। ବାପା ପାଖରେ ଯଦି ପ୍ରବୃତ୍ତି ବଡ଼ ନ ହୋଇ ପିତାମାତା ଓ ଇଷ୍ଟ ବଡ଼ ହୁଅନ୍ତି ଏବଂ ମା ପାଖରେ ଯଦି ପ୍ରବୃତ୍ତି ବଡ଼ ନ ହୋଇ ସ୍ୱାମୀ, ଶ୍ୱଶୁର, ଶାଶୁ ଓ ଇଷ୍ଟ ବଡ଼ ହୁଅନ୍ତି, ତେବେ ସେମାନଙ୍କ ଠାରୁ ଉଦ୍ଭୂତ ଯେଉଁ ସନ୍ତାନ, ସେହି ସନ୍ତାନ ମଧ୍ୟ ଏହି ପ୍ରକାର ହେବ। ଆଉ ଏହାହିଁ ହେଲା ବଡ଼ ହେବା ଓ ଭଲ ହେବାର ମୂଳ ବୀଜ। ସେମାନଙ୍କର ଶରୀର ମଧ୍ୟ ପଟୁ ହେବ, ବୁଦ୍ଧିବୃତ୍ତି ମଧ୍ୟ ପ୍ରଖର ହେବ। ଏମାନେ ହେବେ ସମାଜର ସମ୍ପଦ। ଏହିପରି ମଣିଷ ଯେତେ ବେଶୀ ଜନ୍ମ ନେବେ, ସେତେହିଁ ଜାତିର ମଙ୍ଗଳ।

ଆ.ପ୍ର. ୩/୩୧.୧୨.୧୯୪୧

## ।। ବିବାହ ବେଳରେ କଣ ବିଚାର କରିବ ।।

ଗୋଟିଏ କଥା ବିଶେଷଭାବରେ ମନେ ରଖିବାକୁ ହେବ – ଶୂଦ୍ର ବ୍ରହ୍ମଜ୍ଞାନ ଲାଭ କରି ବିପ୍ରର ଗୁରୁ ପର୍ଯ୍ୟନ୍ତ ହୋଇ ପାରେ, କିନ୍ତୁ ତାହା ବୋଲି ଉଚ୍ଚବର୍ଣ୍ଣର ଝିଅ ବିବାହ କରି ପାରିବ ନାହିଁ। ବିବାହ ସମୟରେ ପୁରୁଷର ବୀଜବୈଭବ ବିଚାର କରିବାକୁ ହେବ। ପୁରୁଷର ବୀଜବୈଭବ ଯଦି ନାରୀ ଯେଉଁ–ବୀଜୋତ୍ପନ୍ନା ତା ଠାରୁ ସମୃଦ୍ଧତର ନ ହୁଏ, ସମୃଦ୍ଧତର ନ ହେଲେ ମଧ୍ୟ ଅନ୍ତତଃ ତାର ସମାନ ଯଦି ନ ହୁଏ, ତା ହେଲେ ପ୍ରଜନନ କ୍ଷେତ୍ରରେ ବିପର୍ଯ୍ୟୟ ଦେଖା ଦିଏ। ବୀଜ ନିଜର ସ୍ୱାତନ୍ତ୍ର୍ୟ ଠିକ୍ ରଖି ମାଟିକୁ ଆୟତ୍ତରେ ଆଣି ତା ଠାରୁ ନିଜର ଉପଯୋଗୀ ପୁଷ୍ଟି ସଂଗ୍ରହ କରି ପାରେନା ବରଂ ମାଟିହିଁ ତାକୁ ଆତ୍ମସାତ୍ କରି ତାର ବୈଶିଷ୍ଟ୍ୟକୁ ବିକୃତ କରି ତୋଳେ।

ଆ.ପ୍ର. ୩/୬.୧.୧୯୪୨

## ।। କେଉଁ ଦିଗକୁ ଲକ୍ଷ ରଖିବାକୁ ହେବ ।।

ମୋର ମନେ ହୁଏ, ଯେଉଁ ସମୟରେ ପଳ, ବିପଳ, ଅନୁପଳ ଇତ୍ୟାଦିର କଥା ସଦାସର୍ବଦା ପ୍ରଚଳିତ ଥିଲା, ସେତେବେଳେ ସେଗୁଡ଼ିକ କେବଳ ଗାଣିତିକ ସିଦ୍ଧାନ୍ତ ହିସାବରେ ନଥିଲା, ଦୈନନ୍ଦିନ ଜୀବନରେ ଏହାର ପ୍ରୟୋଗ ଥିଲା ଏବଂ ଏହାର ନିର୍ଭୁଲ ନିର୍ଦ୍ଧାରଣ ପାଇଁ ଉପଯୁକ୍ତ ବ୍ୟବସ୍ଥା ମଧ୍ୟ ଥିଲା । ...ଆମେ ଜ୍ୟୋତିଷ-ଗଣନାରେ ଦେଖିବାକୁ ପାଉ, ସମୟର କେତେ କ୍ଷୁଦ୍ରତମ ଅଂଶ ଏହା ମଧ୍ୟରେ କ୍ରିୟାଶୀଳ । ସମୟର ଏହି ସବୁ କ୍ଷୁଦ୍ରତମ ବିଭାଗଗୁଡ଼ିକୁ ନିର୍ଣ୍ଣୟ କରିବା ଭଳି ଯନ୍ତ୍ର ଥିଲା ବୋଲି ମୋର ମନେ ହୁଏ । ଯନ୍ତ୍ରବିଜ୍ଞାନରେ ଆପଣମାନେ ଯେ କମ ଥିଲେ ତା କିନ୍ତୁ ନୁହେଁ । ଅତିଛୋଟ ବା ନଗଣ୍ୟ ଖବର ଯାହା ମିଳେ ସେଥିରେ ତ ଅବାକ ବନି ଯିବାକୁ ହୁଏ । ହଜାର ବର୍ଷ ବିଜିତ ଅବସ୍ଥାରେ ବାସ କରି ଆମେ ଆମର ଇତିହାସ ଭୁଲି ଯାଇଛୁ, କୃଷ୍ଟି ଭୁଲି ଯାଇଛୁ । ଶୁଆପକ୍ଷୀ ପରି ମାଲିକମାନେ ଯାହା ଶିଖାଇଛନ୍ତି ତାହା ଶିଖିଛୁ, ଯାହା କହିଛନ୍ତି ତାହା କହୁଛୁ । ଭଲ କରି ଖୋଜନ୍ତୁ, ଜାତିର ପ୍ରକୃତ ଇତିହାସକୁ ଉଦ୍‌ଘାଟିତ କରି ଦିଅନ୍ତୁ । ଜୀବନର ପ୍ରତ୍ୟେକଟି ବିଭାଗରେ ଆମ୍ଭମାନଙ୍କର ପିତୃପିତାମହମାନେ କେତେପରିମାଣରେ ଉନ୍ନତି କରିଥିଲେ, କଥାରେ-କଥାରେ, ଗାଥାରେ-ଗାଥାରେ ସେଗୁଡ଼ିକୁ ଚରେଇ ଦିଅନ୍ତୁ । ମାଆମାନେ ପିଲାଙ୍କୁ କୋଳରେ ନେଇ ଶୋଇବା ବେଳେ ଏହି ଗଳ୍ପ କରନ୍ତୁ । ପିତା-ପୁତ୍ର, ସ୍ୱାମୀ-ସ୍ତ୍ରୀ, ବନ୍ଧୁ-ବାନ୍ଧବ ଏମାନଙ୍କର ଦୈନିନ୍ଦିନ ଆଲୋଚେନାର ସାମଗ୍ରୀ ଆମ୍ଭମାନଙ୍କର ପୂର୍ବପୁରୁଷଙ୍କର ଗୌରବଗାଥା ହେଉ । କେତେବଡ଼ ଗୋଟିଏ ସଭ୍ୟତା, କେତେବଡ଼ ଗୋଟିଏ କୃଷ୍ଟିର ଅଧିକାରୀ ଯେ ଏମାନେ ଥିଲେ, ତାହା ବୁଝା ଯାଏ ଏହା ଦେଖି ଯେ, ଲକ୍ଷ ଘାତ-ପ୍ରତିଘାତର ମଧ୍ୟରେ ଏତେ ବଡ଼ ପ୍ରାଚୀନ ଜାତି ଆଜି ମଧ୍ୟ ଟେକି ରହିଛି ଏବଂ କେବଳ ଟେକି ରହିବା ନୁହେଁ, ଦୁନିଆକୁ ନିତ୍ୟ-ନୂତନଭାବ ଦେଇ ଚାଲିଛି । ସ୍ୱାମୀ ବିବେକାନନ୍ଦଙ୍କୁ ଯେ ପାଶ୍ଚାତ୍ୟ ଦେଶ ଏତେପରିମାଣରେ ସମ୍ମାନ ଦେଖାଇଲେ, ତାହା ତାଙ୍କର ଚେହେରା ଦେଖି ନୁହେଁ, ତାଙ୍କ ପାଖରୁ ସେମାନେ ଏମିତି କିଛି ପାଇଥିଲେ, ଯାହା ସେମାନେ ଆଉ କେଉଁଠୁ ମଧ୍ୟ ପାଇ ନାହାନ୍ତି । ରବୀନ୍ଦ୍ରନାଥ ଚାଲି ଯାଇଛନ୍ତି କିନ୍ତୁ ଆଜି ମଧ୍ୟ ସାରାବିଶ୍ୱରେ ତାଙ୍କର ସମାଦର । ...ଜାତିର ମଜ୍ଜାରେ ମଜ୍ଜାରେ (ମେରୁରେ) ଅନେକ ଗୁଡ଼ିଏ ମାଲ ନ ଥିଲେ କଣ ଏହିପରି ସବୁ ମଣିଷର ଆମଦାନୀ ହୋଇ ପାରେ ? ...ମୁଁ ସୁଖ ରଖିବାକୁ ଜାଗା ପାଏ ନା, ଯେତେବେଳେ ଭାବେ, ଆଜି ମଧ୍ୟ ଆମ ଦେଶରେ ଭଗବାନ ରାମକୃଷ୍ଣ ଠାକୁରଙ୍କ ପରି ବିଶ୍ୱତ୍ରାତାଙ୍କର ଆବିର୍ଭାବ ହୁଏ । ପରମପିତା ଆପଣମାନଙ୍କ ପ୍ରତି ସୁପ୍ରସନ୍ନ, ତାଙ୍କର ଶୁଭ ଦୃଷ୍ଟିରେ ଆପଣମାନେ

ଅଛନ୍ତି। ଆପଣମାନଙ୍କର ବିନାଶ ନାହିଁ, ସବୁ ନାଶକୁ ବିନାଶ କରିବା ପାଇଁ ଆପଣମାନଙ୍କୁ ଦୁନିଆର ବୁକୁରେ ଅବିନିଶ୍ୱର ହୋଇ ରହିବାକୁ ହେବ। କେବଳ ଲକ୍ଷ୍ୟ ରଖିବେ — ବିବାହାଦିର ଗୋଳମାଳରେ ଭଲ ଗୁଣଗୁଡ଼ିକ ଯେପରି ନଷ୍ଟ ହୋଇ ନ ଯାଉ। ଆଉ ଅନୁଲୋମ ଚଳାଇବାକୁ ଯାଇ ଅଜ୍ଞାତରେ ଯେପରି ପ୍ରତିଲୋମର କାରଣ ଘଟାଇବେ ନାହିଁ, ତାହା ଠାରୁ ବରଂ ସବର୍ଣ୍ଣ ବିବାହ ଭଲ। ଆ.ପ୍ର. ୩/୧୦.୧.୧୯୪୨

## ।। ଅନୁଲୋମ ଚଳାଇବାକୁ ଯାଇ ପ୍ରତିଲୋମ କିପରି ହୁଏ ।।

ଧରନ୍ତୁ ଏହି... ନମଃଶୂଦ୍ର-ମାନେ, ଲୋକେ ଭାବନ୍ତି ଏମାନେ ଶୂଦ୍ର, କିନ୍ତୁ ତାହା ତ ନୁହେଁ, ଏମାନେ ହେଲେ ପାରଶବ ବିପ୍ର, ଏମାନଙ୍କ ଦେହରେ ବ୍ରାହ୍ମଣର ରକ୍ତ, ଏମାନଙ୍କର ଝିଅ ଯଦି କାୟସ୍ଥ ଘରକୁ ଯାଏ, ତା ହେଲେ ତାହା ହେବ ପ୍ରତିଲୋମ। ପୁଣି ବିପ୍ରର ଔରସ ଜାତ ହେଲେ ବି ଏମାନଙ୍କର ମା ହେଲେ ଶୂଦ୍ର। ତେଣୁ ଏମାନଙ୍କର ପୁଅମାନେ କ୍ଷତ୍ରିୟ-କନ୍ୟା ବା ବୈଶ୍ୟ-କନ୍ୟାକୁ ଯଦି ବିବାହ କରନ୍ତି ତେବେ ତାହା ମଧ୍ୟ ହେବ ପ୍ରତିଲୋମ, କାରଣ ଏମାନଙ୍କର ମାତୃବର୍ଣ୍ଣ ନିମ୍ନତର। ଏହି ସବୁଗୁଡ଼ିକ ଲକ୍ଷ୍ୟ କରିବାକୁ ହୁଏ। ତା ବ୍ୟତୀତ ପ୍ରତ୍ୟେକଟି ସମ୍ପ୍ରଦାୟ ଓ ଶ୍ରେଣୀର ଇତିହାସ ଯଥାଯଥ ଭାବରେ ବାହାର କରିବାକୁ ହୁଏ। ନବଶାୟକ ମାନଙ୍କର ପ୍ରତ୍ୟେକଟି ଶ୍ରେଣୀହିଁ ବୈଶ୍ୟ କି ନୁହେଁ ସେ ବିଷୟରେ ସନ୍ଦେହ ଅଛି। ସେମାନଙ୍କ ମଧ୍ୟରେ ଉଚ୍ଚତର ବର୍ଣ୍ଣର ଅନୁଲୋମଜାତ ସନ୍ତାନ ରହିବା ମଧ୍ୟ ଅସମ୍ଭବ ନୁହେଁ।

ଆ.ପ୍ର. ୩/୧୦.୧.୧୯୪୨

## ।। ବିପର୍ଯ୍ୟୟହିଁ ପ୍ରାପ୍ତି କେତେବେଳେ – ଉପାୟ କଣ ।।

ବର୍ଣ୍ଣ, ବଂଶ, ବ୍ୟକ୍ତିଗତ ପ୍ରକୃତି ଓ ଇତିହାସ ଇତ୍ୟାଦିକୁ ବାଦ୍ ଦେଇ ଯଦି ଶିକ୍ଷା, ବିବାହ ଓ ଜୀବିକା ଇତ୍ୟାଦିର ବ୍ୟବସ୍ଥାପନା ହୋଇ ଚାଲେ, ତା ହେଲେ ବିପର୍ଯ୍ୟୟ ବ୍ୟତୀତ ଆଉ କିଛି ହେବ ନାହିଁ। ଆପଣ–ମୁଁ ହୁଏତ ଦେଖି ଯାଇ ନ ପାରୁ, କିନ୍ତୁ ପୃଥିବୀକୁ ଯଦି ବଞ୍ଚାଇବାକୁ ହୁଏ ତେବେ ବର୍ଣ୍ଣଧର୍ମର fundamental principles (ମୌଳିକ ନୀତିଗୁଡ଼ିକ)-କୁ adopt (ଗ୍ରହଣ) କରିବାକୁହିଁ ହେବ। ମୁଁ ଏକଥା ନିଜ ହାତରେ କାଗଜ-କଲମରେ ଲେଖି ଦେଇ ଯାଇ ପାରେ।

ଆ.ପ୍ର. ୩/୧୨.୧.୧୯୪୨

## ।। କାମକୁ, କାମିନୀକୁ ନିୟନ୍ତ୍ରିତ ଓ ପରିଶୁଦ୍ଧ କରି ତୋଳିବ କାହିଁକି।।

ଯେପରି ଶୁଣିଛି, ଶଙ୍କରାଚାର୍ଯ୍ୟଙ୍କ ପାଖରୁ ଆରମ୍ଭ କରି ଏହି ଯେଉଁ... ନାରୀ ନରକର ଦ୍ୱାର ଇତ୍ୟାଦି କଥା ଘୋଷିତ ହୋଇଛି, ତାହା ଦ୍ୱାରା ଆଦୌ ଭଲ ହୋଇ ନାହିଁ। ...ନାରୀକୁ ନରକର ଦ୍ୱାର କରି ରଖିବେ କାହିଁକି ? ସେ ହେଉ ମା, ସେ ହେଉ ସହଧର୍ମିଣୀ, ହେଉ ସେ ଧାତ୍ରୀ, ପାତ୍ରୀ, ବୃଦ୍ଧିଦାତ୍ରୀ। ସେ ସ୍ୱାମୀଙ୍କର ବଂଶାନୁକ୍ରମିକ ଶୁଭ-ସମ୍ପଦଗୁଡ଼ିକୁ ତାର ଗର୍ଭଜାତ ସନ୍ତାନମାନଙ୍କଠାରେ ମୂର୍ତ୍ତ କରି ତୋଳୁ। ସେ ଦେବୀ ହେଉ, ମୂର୍ତ୍ତମତୀ କଲ୍ୟାଣୀ ହେଉ। ସେ ନରକାର ଦ୍ୱାର ହେବାକୁ ଯିବ କାହିଁକି? ସେଥିରେ ତାର ସାର୍ଥକତା କଣ ? ମୋର ମନେ ହୁଏ ଏହିପରି କଥାହିଁ କିଛିଟା obsession (ଅଭିଭୂତ)–ପ୍ରସୂତ। ଅବଶ୍ୟ ମୂଳ ବକ୍ତା କେଉଁ ପ୍ରସଙ୍ଗରେ କେଉଁ ଉଦ୍ଦେଶ୍ୟରେ କହିଛନ୍ତି, ତାହା ନ ବୁଝି ଗୋଟିଏ ମନ୍ତବ୍ୟ ଦେବା ସମୀଚୀନ ନୁହେଁ। ସେ ହୁଏତ କହିବାକୁ ଚାହିଁଛନ୍ତି — ନାରୀକୁ ପୁରୁଷ ଯେଉଁଠାରେ କେବଳ ମାତ୍ର ଭୋଗର ଇନ୍ଧନ କରି ବ୍ୟବହାର କରେ, ନାରୀ ସେହିଠାରେ ନରକର ଦ୍ୱାର ହୋଇ ଉଠେ। ଆଉ ସେହି କଥା ମଧ୍ୟ ଠିକ୍। କିନ୍ତୁ ଏହି abnormal (ଅସ୍ୱାଭାବିକ) ଜିନିଷଟା ଉପରେ ଆମେ ଏତେ ଜୋର ଦେବାକୁ ଯିବୁ କାହିଁକି ? ଋଷି-ମହାପୁରୁଷଙ୍କ ଦେଶରେ ଆମେ ତ ଶ୍ରୀଭଗବାନଙ୍କର ବାଣୀ ଜାଣୁ – 'ଧର୍ମାବିରୁଦ୍ଧୋ ଭୂତେଷୁ କାମୋହସ୍ମି ଭରତର୍ଷଭ' — ଧର୍ମର ଅବିରୁଦ୍ଧ ଯେଉଁ କାମ ସେ କାମ ସେହିଁ, ତା ଅନୀଶ୍ୱର ନୁହେଁ। ଆମେ ଯଦି କାମକୁ, କାମିନୀକୁ ସେପରି ଭାବରେ ନିୟନ୍ତ୍ରିତ ଓ ପରିଶୁଦ୍ଧ କରି ତୋଳୁ, ତା ହେଲେହିଁ ଆମ୍ଭମାନଙ୍କ ଘରେ-ଘରେ ପୁଣି ବାଳ-ଗୋପାଳ ଗୁରୁଣ୍ଡି ଗୁରୁଣ୍ଡି ଘୁରି ବୁଲିବେ। ଯେଉଁ ଭାବରେ କହେ, ସେହି ଭାବରେ ବିବାହାଦି ଓ ଦାମ୍ପତ୍ୟଜୀବନ ସମାଜରେ ନିୟନ୍ତ୍ରଣ କର, ଦେଖ, କିଭଳି ମାଲ୍ ସବୁ ଆସେ। ଏହା ବାବା ବିଜ୍ଞାନ, ଏହା ମଧ୍ୟରେ ଆବୋଲ-ତାବୋଲ ନାହିଁ। ଆ.ପ୍ର. ୩/୧୬.୧.୧୯୪୨

## ।। ବିବାହରେ ଘଟକ ମାନେ କଣ କରୁଥିଲେ।।

ଆଜି ଯଦି ଦେଶରେ ପ୍ରକୃତ ଘଟକ ଥାଆନ୍ତେ ଆଉ ଘଟକମାନଙ୍କର ସମ୍ମାନ ଯଦି ଠିକ୍ ଥାଆନ୍ତା, ତେବେ କଣ ଦେଶର ଏହି ଦଶା ହୁଅନ୍ତା ? ...ଘଟକମାନେ ଆଗରୁ କେତେ-ସବୁ ବଂଶର ବଂଶ-ପରିଚୟ ଜାଣିଥିଲେ, ଆଉ ଏହି ଜାଣିବା ଫଳରେ ସେମାନେ ବିବାହାଦିର ମେଳ ଏପରି ଭାବରେ କରି ଦେଇ ପାରୁଥିଲେ ଯାହାଦ୍ୱାରା

ଦେଶରେ ଭଲ-ଭଲ ମଣିଷର ଆମଦାନୀ ନ ହୋଇ ରହିପାରୁ ନଥିଲା। ବାପାଙ୍କ ପାଖରୁ ଶୁଣିଛି ପ୍ରଥମେ ଘଟକମାନେ ବିବାହ ବିଷୟରେ ଚୂଳ ପରିମାଣରେ ବି ଖୁଣ୍ଟିନାଟି ସବୁ ବିଚାର କରୁଥିଲେ, ବିଚାର-ସଭା ବସୁଥିଲା, ପ୍ରବୀଣ ମାମଲତକାର ଯେଉଁମାନେ ସେମାନେ ଉକ୍ତ ସଭାରେ ଯୋଗ ଦେଉଥିଲେ, ଘଟକର ବିଚାରରେ ଭୂଲ ହେଲେ ଧାନ ଦ୍ୱାରା ସେମାନଙ୍କ କପାଳରେ ଦାଗ କାଟି ଦେଉ ଥିଲେ। ଏହି ସବୁ ଘଟକଙ୍କର କଥା ଶୁଣିଛି, ସେମାନେ ନ କ'ଣ mathematical accuracy (ଗାଣିତିକ ଯଥାର୍ଥତା) ଦ୍ୱାରା କହିଦେଇ ପାରୁଥାନ୍ତି, ଏହି ପୁଅ ସହିତ ଏହି ଝିଅର ବିବାହ ହେଲେ ସେମାନଙ୍କର କେତୋଟି ସନ୍ତାନ ହେବ, ସେମାନଙ୍କ ମଧ୍ୟରେ କେତେଜଣ ପୁଅ, କେତେଜଣ ଝିଅ ତାହା ମଧ୍ୟ କହି ଦେଇ ପାରୁଥାନ୍ତି, କେଉଁ ସନ୍ତାନଟି କେମିତି ପ୍ରକୃତିର ହେବ, ତାହା ମଧ୍ୟ ନା କଣ କହି ଦେଇ ପାରୁଥିଲେ। ଶୁଣିଲେ ରୂପକଥା ପରି ମନେ ହୁଏ, କିନ୍ତୁ କିଛିହିଁ ଅସମ୍ଭବ ନୁହେଁ। ଯୁଗ-ଯୁଗ ଧରି ବଂଶପରମ୍ପରା କ୍ରମେ ଏହି କାମ କରୁ-କରୁ ସେମାନଙ୍କର ଏମିତି ଏକ ଅଭିଜ୍ଞତା ଜନ୍ମିଥିଲା, ଯାହା ଫଳରେ ସେମାନେ ଏହିପରି କରି ପାରୁଥିଲେ। ଆଉ ଏହା ତ ଏକ କାଳ୍ପନିକ ବିଷୟ କିଛି ନୁହେଁ। Science of Genetics (ଜନନ-ବିଜ୍ଞାନ), Science of Eugenics (ସୁପ୍ରଜନନ–ବିଜ୍ଞାନ), Science of Heredity (ବଂଶାନୁକ୍ରମିକତା–ବିଜ୍ଞାନ) ଇତ୍ୟାଦି କଥା ଆମ୍ଭେମାନେ ତ ଆଜିକାଲି ସବୁବେଳେ ଶୁଣୁଛୁ। ସେମାନଙ୍କର ଥିଲା practial knowledge of genetics (ଜନନ–ବିଜ୍ଞାନ ସମ୍ପର୍କରେ ବାସ୍ତବ ଜ୍ଞାନ)। ସେହି ଜ୍ଞାନ ଭଣ୍ଡାର ଉନ୍ମୋଚନ କରିବାକୁ ହୁଏ, ଆଉ ତା ସହିତ ଯୋଡ଼ି ଦେବାକୁ ହେବ genetics, eugenics and heredity ସମ୍ବନ୍ଧରେ ବର୍ତ୍ତମାନ ବିଜ୍ଞାନ ଯେଉଁ–କଥା କହୁଛି ସେହି ଜ୍ଞାନ। ଏହା ଭିତର ଦେଇ ଯେ କେତେ ଉପକାର ହେବ, ତାହା କହି ଶେଷ କରାଯାଏ ନାହିଁ। ବିବାହ ବ୍ୟାପରରେ ପୂର୍ବେ ଘଟକମାନଙ୍କ ଅନୁଶାସନ ନ ମାନି ଉପାୟ ନ ଥିଲା, କିନ୍ତୁ ପରେ ନବ୍ୟଶିକ୍ଷିତ ଯୁବକମାନେ ସେମାନଙ୍କୁ ଆଉ ମାନିବାକୁ ଚାହିଁଲେ ନାହିଁ। ଧରନ୍ତୁ ଆପଣ B.Sc., B.E. Engineer– ଆପଣଙ୍କ ସହିତ ମେଳ କରି ଯଦି ଗୋଟିଏ କଳା ଝିଅ ଠିକ୍‌କରି ଦିଅନ୍ତି, ତା ହେଲେ ତ ଆପଣ ରାଗି ନିଆଁ ବାଣ। କିନ୍ତୁ ସହଧର୍ମିଣୀ ଓ ଜାୟା ହିସାବରେ ସେହି ଝିଅଟିହିଁ ହୁଏତ ଆପଣଙ୍କ ପକ୍ଷରେ ସର୍ବୋତ୍ତମ। କିନ୍ତୁ ଘଟକର କଥା ଯଦି ନ ଚଳେ, ତା ମାନେ ବିଦାୟ ହେବା ବ୍ୟତୀତ ଉପାୟ କଣ ? ଏହିପରି ଭାବରେ ଆସ୍ତେ ଆସ୍ତେ ଘଟକମାନଙ୍କର ପ୍ରଭାବ – ପ୍ରତିପତ୍ତି କମିଯାଇଛି। ଆ.ପ୍ର. ୩/୧୬.୧.୧୯୪୨

## ।। ଦେଶ, ଦୁନିଆ କେତେବେଳେ ରସାତଳକୁ ଯିବାକୁ ବସେ ।।

ଆପଣମାନେ ଯଦି ଲାଗନ୍ତି, ମୋଡ଼ ଫେରାଇ ଦେବାକୁ ବେଶୀ ଦିନ ଲାଗେ ନାହିଁ। ଯେଉଁଠାକୁ ଯେଉଁଠାକୁ ଯିବେ, ଦେଖିବେ ଯେଉଁମାନଙ୍କର ବଂଶାବଳୀ ଅଛି, ସେମାନେ ଯେପରି ତହା ନଷ୍ଟ ନ କରନ୍ତି। ବଂଶାବଳୀମାନେ କୁଳର genealogical (ବଂଶାନୁକ୍ରମିକ) ଇତିହାସ। ମଣିଷ ବଂଶ-ଗରିମା ସମ୍ବନ୍ଧରେ ଯଦି ସଚେତନ ନ ହୁଏ, ସଶ୍ରଦ୍ଧ ନ ହୁଏ, ତେବେ ଦେଶପ୍ରେମ, ବିଶ୍ୱପ୍ରେମ ଇତ୍ୟାଦି ଶିଥିଳ ହେବ, ତାର କୌଣସି ଭିତ୍ତି ରହିବ ନାହିଁ। ଆଉ ବଂଶ ମିଳାଇ ବିବାହ ନ ଦେଲେ, ଦାମ୍ପତ୍ୟ ଜୀବନ ଠିକ୍ ନ ହେଲେ, ଶୁଭସଂସ୍କାର-ସମ୍ପନ୍ନ ମଣିଷ ଜନ୍ମ ନ ହେଲେ – ଦେଶ, ଦୁନିଆ ରସାତଳକୁ ଯିବାକୁ ବସିବ। ଆ.ପ୍ର. ୩/୧୬.୧.୧୯୪୨

## ।। ବିବାହ-ବିଚ୍ଛେଦରେ କେଉଁ ବିଷୟର କଥା ନାହିଁ ।।

ତଥାକଥିତ ସୁଖ, ଆରାମ ଇତ୍ୟାଦି ଜିନିଷ ମଣିଷ ପକ୍ଷରେ ଲାଭଜନକ ମଧ୍ୟ ନୁହେଁ, ଲୋଭନୀୟ ମଧ୍ୟ ନୁହେଁ। ମଣିଷ ପକ୍ଷରେ ଲାଭଜନକ ଓ ଲୋଭନୀୟ ଜିନିଷ ହେଲା ତାର ଇଷ୍ଟାନୁଗ ଆତ୍ମନିୟନ୍ତ୍ରଣ। ଆମ୍ଭମାନଙ୍କର ଆର୍ଯ୍ୟହିନ୍ଦୁସମାଜର ବିଧିବିଧାନ ଏହିଟିକୁ ଲକ୍ଷ୍ୟ କରି। ସବୁ ସମୟ ବୁଦ୍ଧିଥାଏ — କିପରି କରି ଏହାର (ଇଷ୍ଟାନୁଗ ଆତ୍ମନିୟନ୍ତ୍ରଣର) scope (ଅବକାଶ ଓ ସୁଯୋଗ) ବଢ଼ାଇ ଦେଇ ହେବ। Divorce-ର (ବିବାହ-ବିଚ୍ଛେଦର) ମଧ୍ୟରେ ଆତ୍ମନିୟନ୍ତ୍ରଣର ବିଷୟ ହିଁ ଉଠେ ନାହିଁ। ମୁଁ କହେ, ଗୋଟିଏ ବିବାହ ଯଦି ମନଃପୂତ ନ ହୋଇଥାଏ, ତାହା ବୋଲି କଣ ବିବାହକୁ ନାକଚ କରି ଦେବାକୁ ହେବ? ଅବଶ୍ୟ କେତେଗୁଡ଼ିଏ କ୍ଷେତ୍ର ଅଛି ଯେଉଁଠି ବିବାହଟାହିଁ ସିଦ୍ଧ ନୁହେଁ। ଯେପରି ପ୍ରତିଲୋମ ବିବାହ ଶାସ୍ତ୍ରସିଦ୍ଧ ନୁହେଁ, ବିବାହ ଯଦି ସିଦ୍ଧ ନହୁଏ, ସେଠାରେ divorce (ବିବାହ-ବିଚ୍ଛେଦ) ର କଥା ଆସେ ନାହିଁ। ତେବେ କୌଣସି ପ୍ରତିଲୋମ ମିଳନ ହେଲେ ଶାସ୍ତ୍ର କହିଛି—ସେଠାରୁ ସେହି ଝିଅକୁ ହରଣ କରି ଶ୍ରେୟ ବରଠାରେ ଅର୍ପଣ କରିବାହିଁ ପୁଣ୍ୟକର୍ମ। କାରଣ, ତା ଭିତର ଦେଇ ସମାଜ ମହା ଅନିଷ୍ଟର ହାତରୁ ରକ୍ଷା ପାଏ। ଆ.ପ୍ର. ୩/୧୬.୧.୧୯୪୨

## ।। ବିଧବା-ବିବାହ କେଉଁ କ୍ଷେତ୍ରରେ ଦିଆଯାଇ ପାରେ ।।

ଶାସ୍ତ୍ରରେ ଅଛି ନଷ୍ଟେ ମୃତେ ପ୍ରବ୍ରଜିତେ କ୍ଲୀବେ ଚ ପତିତେ ପତୌ, ପଞ୍ଚସ୍ୱାପତ୍ସୁନାରୀଣାଂ ପତିରଣ୍ୟୋ ବିଧିୟତେ।' ...ମୃତେ କଥା ଅଛି ବୋଲି ଅନେକେ

କୁହନ୍ତି ଯେ-କୌଣସି ବିଧବାର ବିବାହ ହୋଇ ପାରେ। କିନ୍ତୁ ସନ୍ତାନବତୀ ବିଧବାର ବିବାହ ହେବା ଉଚିତ ନୁହେଁ। ବାଲବିଧବା ଯେଉଁମାନେ, ସ୍ୱାମୀର ଛାପ ମୁଣ୍ଡରେ ପଡୁ ନ ପଡୁ ଯେଉଁଠାରେ ସ୍ୱାମୀ ମରି ଯାଇଛନ୍ତି, ସେହି ସବୁ ବିଧବାମାନଙ୍କର ବିବାହ ଦେବା ଚଳିପାରେ। ବିଧାନ ଦିଆ ଅଛି ବୋଲି ପ୍ରତ୍ୟେକଙ୍କୁ ଯେ ଅନ୍ୟ ପତି ଗ୍ରହଣ କରିବା ଦରକାର ଏମିତି କଥା ନୁହେଁ। ସେପରି ଖାଁଟି ଝିଅ ଯେଉଁମାନେ ସେମାନେ ପୁନର୍ବିବାହରେ ରାଜି ହେବା ତ ଦୂରର କଥା, ବାଗଦତ୍ତା ହୋଇ ସେହିଠାରେ ବିବାହ ନ ହେଲେ ଅନ୍ୟତ୍ର ବିବାହ କରିବାକୁ ଚାହାଁନ୍ତି ନାହିଁ। ଆ.ପ୍ର. ୩/୧୬.୧.୧୯୪୨

## ।। ଦ୍ୱିଚାରିଣୀ ସ୍ତ୍ରୀ ସୁସନ୍ତାନର ଜନନୀ ହୋଇ ପାରିବ କି ନାହିଁ।।

ଇଉରୋପ, ଆମେରିକାରେ ତ ଡିଭୋର୍ସ ଅଛି, ପ୍ରଥମ ସ୍ୱାମୀକୁ ସାମାନ୍ୟ କାରଣରୁ ଡିଭୋର୍ସ କରି ପୁଣି ବିବାହ କରୁଛନ୍ତି, ଏହିପରି ଝିଅମାନଙ୍କ ଗର୍ଭରୁ କେତେ ଜଣ ମଣିଷ ପରି ମଣିଷ ଜନ୍ମ ନେଇଛନ୍ତି, ଟିକିଏ ଖୋଜି ଦେଖନ୍ତୁ। ମୁଁ ବାସ୍ତବ ଖବର ଜାଣେ ନାହିଁ, ତେବେ ଏହି ଟିକକ ବୁଝେ, ଭଲ ହେବାର ଗୋଟିଏ ବିଧି ଅଛି; ସେହି-ବିଧି ନ ମାନିଲେ ଭଲ ହୋଇ ପାରେ ନାହିଁ। ଦ୍ୱିଚାରିଣୀ ସ୍ତ୍ରୀ ସୁସନ୍ତାନର ଜନନୀ ହେବ — ଏହା ମୁଁ ବିଶ୍ୱାସ କରେ ନାହିଁ। ସେମାନଙ୍କ ମଧ୍ୟରେ କିଛି-କିଛି ପ୍ରତିଭା ଥାଇ ପାରେ, କିନ୍ତୁ ସେମାନେ ଯେ ଏକନିଷ୍ଠ ହେବେ ନାହିଁ, ଆତ୍ମନିୟନ୍ତ୍ରଣ-ବ୍ୟାପାରରେ ଶିଥିଳ ଓ ପରାଙ୍ମୁଖ ହେବେ – ଏହା ନିର୍ଘାତ କଥା। ଆ.ପ୍ର. ୩/୧୬.୧.୧୯୪୨

## ।। ଜାତିର ସମୂହ ସର୍ବନାଶ ଓ ସବୁଠାରୁ ବଡ଼ ବିପର୍ଯ୍ୟୟ କେତେବେଳେ ହୁଏ ।।

ବିବାହ ଗୋଳମାଳର ଭିତର ଦେଇ ବହୁ ପାପ, ବହୁ ଅପରାଧ ସମାଜରେ ପ୍ରବେଶ କରିଛି ଓ କରୁଛି। ତେଣୁ ସମାଜ ଓ ରାଷ୍ଟ୍ରର ଗୋଟିଏ ପ୍ରାଥମିକ ଦାୟିତ୍ୱ ହେଉଛି — ବିବାହ ସୁନିୟନ୍ତ୍ରିତ କରିବା, ଯାହା ଫଳରେ କୁଜନନ ତିରୋହିତ ହୋଇ ସମାଜରେ ସୁସ୍ଥ ଦେହମନବିଶିଷ୍ଟ ଜାତକର ସଂଖ୍ୟା ବଢ଼ି ଯାଏ। ...ଅନ୍ୟ ବିଷୟରେ ଠକି ଶିଖିବା ଚଳେ, କିନ୍ତୁ ଏହି ବିଷୟରେ ଠକି ଶିଖିବାକୁ ଗଲେ ଜାତିର ସମୂହ ସର୍ବନାଶ। ରକ୍ତର ବିପର୍ଯ୍ୟୟ, ଜନନର ବିପର୍ଯ୍ୟୟ ସବୁଠାରୁ ବଡ଼ ବିପର୍ଯ୍ୟୟ। ଏହି ବିପର୍ଯ୍ୟୟର ସମାପ୍ତି ଗୋଟିଏ ପୁରୁଷରେ ହୁଏ ନାହିଁ, ବଂଶପରମ୍ପରା କ୍ରମେ ଏହି ବିପର୍ଯ୍ୟୟ ଗୁଣିତ ହୋଇ ଚାଲେ। ତେଣୁ ଖୁବ୍

ସାବଧାନ ! ...ଦୁନିଆ ଆଗରେ ଏପରି ସର୍ବନାଶ ଆସୁଛି, ଯାହାର ତୁଳନାରେ... ମହାଯୁଦ୍ଧ, ଲୋକକ୍ଷୟ, ସମ୍ପଦର କ୍ଷୟ କିଛିହିଁ ନୁହେଁ। ଗତି ଦେଖି ମନେ ହୁଏ – ମନୁଷ୍ୟତ୍ୱର ମୂଳ ବୁନିୟାଦ ଲୋପ ପାଇଯିବା ଅସମ୍ଭବ ନୁହେଁ। ତେଣୁ ଆପଣମାନେ ଦୀକ୍ଷା, ଶିକ୍ଷା ଓ ବିବାହ ଏହି ତିନୋଟି ଜିନିଷ ଠିକ୍ କରି ଦିଅନ୍ତୁ। ଆ.ପ୍ର. ୩/୧୬.୧.୧୯୪୨

## ।। ବିବାହ ସମ୍ବନ୍ଧରେ ଭୂଲ କରିବା ନାହିଁ କାହିଁକି ।।

ମଣିଷ ଭୂଲ କରେ, କିନ୍ତୁ ଭୁଲଟାକୁ ଶୁଧାରି ନେଇପାରେ। ଏହି ଦୁଇ ପ୍ରକାର କ୍ଷମତାହିଁ ମଣିଷର ଅଛି। ତେଣୁ ଭୂଲତ୍ରୁଟି ସ୍ୱତ୍ତେବି ମଣିଷର ଜୀବନ ଏତେ ମଧୁର। ତେବେ ବିବାହ ସମ୍ବନ୍ଧରେ ଭୂଲ ହେଲେ, ତାର ଫଳ ବହୁଦୂର ଗଡ଼ିଚାଲେ। ସେଥିପାଇଁ ବିବାହ ସମ୍ବନ୍ଧରେ ଯେପରି ଭୂଲ ନ ହୁଏ, ସେ ଦିଗକୁ ତୁମ୍ଭେମାନେ ବିଶେଷ ଲକ୍ଷ୍ୟ ରଖ। ...ତୁମ୍ଭେମାନେ ଏହି ଟିକକହିଁ ଦେଖିବ ଯେପରି ବିବାହଗୁଡ଼ିକ ବିଧିମାଫିକ ହୁଏ, ଗୋଟିଏ ବି ପ୍ରତିଲୋମ ବିବାହ ହୋଇ ନ ପାରେ। ଆ.ପ୍ର. ୩/୧୦.୪.୧୯୪୨

## ।। ବିବାହ ବ୍ୟାପାରରେ ଗୋଟିଏ ପ୍ରଧାନ ଜିନିଷ କଣ ।।

ଝିଅମାନଙ୍କୁ ଶିକ୍ଷିତ କରି ତୋଳିବାକୁ ହୁଏ, କିପରି କରି ବର ନିର୍ବାଚନ କରିବାକୁ ହେବ। ବିବାହ ଆଗରୁ ଝିଅର ଆଭିଭାବକ ପୁଅର ବଂଶ, ଗୁଣପନା, ପ୍ରକୃତି ଇତ୍ୟାଦି ସମ୍ପର୍କରେ ବିସ୍ତାରିତ ଖବର ନେଇ ଯଦି ଝିଅ ପାଖରେ ସେ ବିଷୟରେ ଗଳ୍ପ କରନ୍ତି ଏବଂ ଝିଅର ମତ ନେଇ ତା ପରେ ଯଦି ବିବାହ ଦିଆ ଯାଏ, ତାହା ହେଲେ ଭଲ ହୁଏ। ପାଞ୍ଚଟା ଉପଯୁକ୍ତ ପାତ୍ର ଥିଲେ ପ୍ରତ୍ୟେକଙ୍କର୍ କଥା ଝିଅ ପାଖରେ ଯଥାଯଥ ଭାବରେ କହିବା ଦରକାର, ତା ପରେ ଝିଅ ଯେଉଁଠି ପସନ୍ଦ କରିବ, ସେଠାରେ ବିବାହ ପାଇଁ ଚେଷ୍ଟା କରିବା ଭଲ। ମନେ ରଖିବେ ବିବାହ ବ୍ୟାପାରରେ ଝିଅର ଶ୍ରଦ୍ଧା ଗୋଟିଏ ପ୍ରଧାନ ଜିନିଷ। ବିବାହ–ଇତ୍ୟାଦି ଯଦି ଠିକ୍‌ଭାବରେ ହୁଏ, ଦାମ୍ପତ୍ୟଜୀବନ ଯଦି ସଙ୍ଗତିପୂର୍ଣ୍ଣ ହୁଏ, ତାହେଲେ ପୁରୁଷ, ନାରୀ ଉଭୟେ ଜୀବନରେ ଗୋଟିଏ ରସ ପାଆନ୍ତି, ଉତ୍ସାହ ପାଆନ୍ତି, ସନ୍ତାନାଦି ମଧ୍ୟ ଭଲ ହୁଅନ୍ତି। ବଂଶ ପରମ୍ପରାରେ ସମାଜ ଧିରେ ଧିରେ ବଢ଼ି ଚାଲେ। ବିହିତ ଅନୁଲୋମ ଅସବର୍ଣ୍ଣ ବିବାହ ଯେପରି ବୃଦ୍ଧି ପାଏ, ତା ମଧ୍ୟ କରିବାକୁ ହୁଏ। ଆ.ପ୍ର. ୩/୧୦.୪.୧୯୪୨

## ।। ପ୍ରତିଲୋମରେ ସର୍ବନାଶ, ଧ୍ୱଂସ ରାଷ୍ଟ୍ର ଜାତି ଦାସ – କାହିଁକି ।।

ଜାତିକୁ ଦକ୍ଷ କରି ତୋଳିବାକୁ ହେଲେ Blood (ରକ୍ତ)-ର purity (ପବିତ୍ରତା) ... ଗୋଟିଏ ମୂଳ ବିଷୟ । ଯେଉଁ movement (ଆନ୍ଦୋଳନ)-ହିଁ କରାଯାଉ, racial blood (ଜାତୀୟ ରକ୍ତ) ଯଦି ଠିକ୍ ନ ଥାଏ, ସବୁ ଗୋଳମାଳ ହୋଇ ଯିବ । ମୋର ମନେ ହୁଏ, କୌଣସି ଜାତିର ଯଦି ସର୍ବନାଶ କରିବାକୁ ହୁଏ, ତେବେ ସେମାନଙ୍କ ମଧ୍ୟରେ ପ୍ରତିଲୋମ ପ୍ରବେଶ କରାଇ ଦେଇ ଯେତେ ପରିମାଣରେ ସର୍ବନାଶ କରା ଯାଇ ପାରେ, ଅନ୍ୟ କୌଣସି ଉପାୟରେ ଏତେ ପରିମାଣରେ କରିବା ସମ୍ଭବ ନୁହେଁ । ...(କିନ୍ତୁ) ଅନୁଲୋମ admixture (ମିଶ୍ରଣ)-ରେ ରକ୍ତର ଧାରା ନଷ୍ଟ ହୁଏ ନାହିଁ, ବରଂ vigour (ତେଜ) ବଢ଼େ । ଅନୁଲୋମ ସନ୍ତାନମାନଙ୍କର ସାଧାରଣତଃ fanatic zeal (ପ୍ରତ୍ୟୟପ୍ରବଳ ଉତ୍ସାହ) ଥାଏ । ଆ.ପ୍ର. ୩/୧୪.୪.୧୯୪୨

## ।। ବହୁବିବାହ ନିଷିଦ୍ଧ ହେବା ଭଲ ନୁହେଁ କାହିଁକି ।।

ଯେତେବେଳେ ସବୁ ଦିଗରୁ ଭାବେ, ଆତଙ୍କ ପରି ଲାଗେ । ଶୁଣିଲି polygamy (ବହୁବିବାହ) banned (ନିଷିଦ୍ଧ) ହୋଇଯାଇଛି, ଏହା ଏକ ସର୍ବନାଶର ପଥ, ବିଶେଷ-ମଣିଷର ସଂଖ୍ୟାବୃଦ୍ଧିର ପଥ ରୁଦ୍ଧ ହୋଇଯିବ । ନିକୃଷ୍ଟର ସଂଖ୍ୟା ସମାଜରେ ବେଶୀ, ସୁତରାଂ ସେମାନେ ଆହୁରି ବଢ଼ିବେ । ଶ୍ରେଷ୍ଠର ସଂଖ୍ୟା କମ୍‌ହିଁ ରହିଯିବ, ଆଉ ଆମ ଦେଶର ଝିଅ ଅନ୍ୟ ଦେଶକୁ ଚାଲାଣ ହେବେ । ଯାହାବି କୁହନ୍ତୁ, ସର୍ବାକ୍ଷୟୀ ଯାହା ତାର ପ୍ରତିକାର ନ କରିଲେ କିନ୍ତୁ ନିଜର ଓ ପରିବେଶର ପ୍ରତ୍ୟେକଙ୍କ ବିରୁଦ୍ଧରେହିଁ ଶତ୍ରୁତା ସାଧନ କରା ହେବ । ତାହା କଣ ଭଲ ? ଆ.ପ୍ର. ୩/୮.୬.୧୯୪୨

## ।। ରାଢ଼ୀ-ବାରେନ୍ଦ୍ର-ବୈଦିକଙ୍କ ମଧ୍ୟରେ ବିବାହ ହେବ କି ନାହିଁ ।।

ମୋର କୌଣସି ଆପତ୍ତି ନାହିଁ । ତେବେ ପ୍ରତ୍ୟେକଟି କ୍ଷେତ୍ରରେ ଖୁବ୍ ହିସାବ କରି ଦେବାକୁ ହୁଏ, ଦେଖିବାକୁ ହୁଏ, ଯେଉଁଥିରେ କୌଣସି ପ୍ରକାରେ ପ୍ରତିଲୋମ ସଂସ୍ରବ ପ୍ରବେଶ ନ କରେ, ହିସାବ କରି interprovincial marriage (ଆନ୍ତଃପ୍ରାଦେଶିକ ବିବାହ) ଯଦି ଚଳାଇ ହୁଏ, ସେଥିରେ ସାରା ଭାରତର ସଂହତି ଦିଗରୁ ଅନେକ - ପରିମାଣରେ ସୁବିଧା ହୁଏ । ଆଉ ସ୍ୱାସ୍ଥ୍ୟର ଦିଗ ଦେଇ ମଧ୍ୟ ବୋଧ ହୁଏ ଭଲ ହୁଏ ।
ଆ.ପ୍ର. ୩/୨୨.୭.୧୯୪୨

## ।। ବିବାହ ଓ ଦାମ୍ପତ୍ୟ ଜୀବନ ସୁନିୟନ୍ତ୍ରିତ ନ ହେଲେ କଣ ହୁଏ।।

ଅନେକଙ୍କ ଶରୀର ମନ ଏତେ ଦୁର୍ବଳ ଯେ ମୁଣ୍ଡ ଉପରେ ଟିକିଏ ଚାପ ପଡ଼ିଲେ ତାହା ଆଉ stand (ସହ୍ୟ) କରି ପାରନ୍ତି ନାହିଁ। ନିଦ୍ରା, ଆଳସ୍ୟ, ଅନିଚ୍ଛା ଇତ୍ୟାଦି ଆସି ଘେରି ଧରେ। ଏହା ପଛରେ ଅନେକ ସମୟରେ ଜନ୍ମଗତ କାରଣ ଥାଏ। ପିତାମାତାଙ୍କ ଭିତରେ ଅନୁରାଗ ଓ ଲାଗିରହିବାର ବୁଦ୍ଧିର ଅଭାବ ଥାଏ। ତେଣୁ ସନ୍ତାନ ମଧ୍ୟ ହୁଏ କ୍ଷୀଣମନା। ବାଧାକୁ ବାଧ କରି ଉଦ୍ଦେଶ୍ୟ ସାଧନର ପଥରେ ଆଗେଇ ଯିବା ପରି ଦୃଢ଼ତା ନଥାଏ। Struggle (ସଂଗ୍ରାମ)-ର ଭିତରେ ପଡ଼ିଲେ ଏମାନେ ଜଳରେ ବୁଡ଼ିଯିବା ମଣିଷଙ୍କ ପରି ହୁଅନ୍ତି। ଜୀବନହିଁ ହୋଇ ଉଠେ ଦୁର୍ବହ, ଦୁଃସହ। ଏପରି ହୁଏତ ଭଲ ମଣିଷ, କିନ୍ତୁ କରିତ୍‌କର୍ମା ହୋଇ ପାରନ୍ତି ନାହିଁ। ...ତେଣୁ ବିବାହ ଓ ଦାମ୍ପତ୍ୟଜୀବନ ସୁନିୟନ୍ତ୍ରିତ ନ ହେଲେ ଜାତୀୟ ଉନ୍ନତି କଠିନ କଥା।

ଆ.ପ୍ର. ୩/୧୨.୭.୧୯୪୧

## ।। ମୂଳ ଲକ୍ଷ୍ୟ କେଉଁ ଦିଗରେ ରଖିବାକୁ ହେବ।।

ସଦ୍‌ଗୁଣ ଗୁଡ଼ିକ ଗଛରେ ଫଳେ ନାହିଁ, ଏଗୁଡ଼ିକ ରକ୍ତର ଧାରାରେ ବୋହି ଆସେ, ତେଣୁ ସଦ୍‌ଗୁଣଗୁଡ଼ିକର ରକ୍ଷଣ ଓ ବିକାଶ ପାଇଁ proper eugenic arrangement (ବିହିତ ସୁପ୍ରଜନନର ବ୍ୟବସ୍ଥା) ଓ ବର୍ଣ୍ଣବିଧାନ ପ୍ରୟୋଜନ। ଆଜି ଏହି ଯୁଦ୍ଧର ବଜାରରେ ବିଶେଷ କରି ବୁଝାଯାଉଛି, ବିଶେଷ ବିଶେଷ କାର୍ଯ୍ୟ ପାଇଁ ଜନ୍ମଗତ ଯୋଗ୍ୟତାର କେତେ ପ୍ରୟୋଜନ। Nerve test (ସ୍ନାୟୁପରୀକ୍ଷା) ନ କରି ଯାହାକୁ-ତାହାକୁ pilot (ବିମାନ ଚାଳକ)-ର କାର୍ଯ୍ୟରେ ନିଯୁକ୍ତି ଦିଆ ଯାଉ ନାହିଁ। ସାମୟିକ ଗୋଟିଏ ଯୁଦ୍ଧର ବ୍ୟାପାରରେ ଯଦି ଏତେ କରି ଦେଖିବା ଦରକାର, ତେବେ ଗୋଟିଏ ଜାତିର ନିରନ୍ତର ଜୀବନଯୁଦ୍ଧ ପାଇଁ ପ୍ରତ୍ୟେକଙ୍କର ବ୍ୟକ୍ତିଗତ ଯୋଗ୍ୟତା ଅନୁଯାୟୀ କାର୍ଯ୍ୟ ନିର୍ବାଚନର କଣ ପ୍ରୟୋଜନ ନାହିଁ? ପୁଣି ତାର ବିବାହ ଇତ୍ୟାଦି କଣ ଏପରି ଭାବରେ ହେବା ଉଚିତ ନୁହେଁ, ଯାହାଦ୍ୱାରା ଏହି ଯୋଗ୍ୟତା ବଂଶ-ପରମ୍ପରା ଅନୁଯାୟୀ ଅକ୍ଷୁର୍ଣ୍ଣ ରହେ? ତେଣୁ ଯେତେ କାର୍ଯ୍ୟ କରନ୍ତୁ, ମୂଳ ଲକ୍ଷ୍ୟ ଯେପରି ବର୍ଣ୍ଣାଶ୍ରମ ଓ ବିବାହ ଉପରେ ଥାଏ। ସମସ୍ତଙ୍କ ଦୃଷ୍ଟି ଏ ଦିଗକୁ ଯେପରି ଆକୃଷ୍ଟ ହୁଏ, ତାହାର ବ୍ୟବସ୍ଥା କରନ୍ତୁ। ପ୍ରତ୍ୟେକ ବର୍ଣ୍ଣ ଓ ବଂଶର ଇତିହାସ ଯେପରି ଠିକ୍‌ଭାବରେ ଉଦ୍‌ଘାଟିତ ହୁଏ ତା ମଧ୍ୟ ଆପଣମାନଙ୍କୁ ଦେଖିବାକୁ ହେବ। ଆଉ କେବଳ ଆମ

ଦେଶରେ ନୁହେଁ, ସବୁ ଦେଶରେ ଏହା ଚାଲୁ କରିବାକୁ ହେବ। ଏହାର scientific (ବୈଜ୍ଞାନିକ) ଓ universal background (ସାର୍ବଜନୀନ ପଟ୍ଭୂମିକା)-ଟା ଧରାଇ ଦେବାକୁ ପଡ଼ିବ। ଆ.ପ୍ର. ୩/୨୬.୭.୧୯୪୨

## ।। ଆଦର୍ଶନିଷ୍ଠା ଓ ଦାମ୍ପତ୍ୟଜୀବନ ଠିକ୍ ରଖିବା ଦରକାର କଣ ପାଇଁ ।।

ମଣିଷର ଆଦର୍ଶନିଷ୍ଠା ଓ ଦାମ୍ପତ୍ୟଜୀବନ ଏହି ଦୁଇଟା ଦିଗ ଯଦି ଠିକ୍ ରହେ, ତା ହେଲେ ଅନେକ ପରିମାଣରେ ରକ୍ଷା। ଏହାରି ଭିତର ଦେଇହିଁ କାମର ସୁନିୟନ୍ତ୍ରଣ ହୁଏ। କାମନିୟନ୍ତ୍ରିତ ହେଲେ ଅନ୍ୟାନ୍ୟ ପ୍ରବୃତ୍ତିଗୁଡ଼ିକ ମଧ୍ୟ ପଥକୁ ଆସେ। ତେଣୁ ଦୀକ୍ଷା ଓ ବିବାହ ଏହି ଦୁଇଟି ବିଧିମାଫିକ ହେବା ଦରକାର। ଗୁରୁ ଯଦି ଆଚରଣ-ସିଦ୍ଧ ଆଚାର୍ଯ୍ୟ ନ ହୁଅନ୍ତି, ତା ହେଲେ ମଣିଷର ଭକ୍ତିଟା ସାଧାରଣତଃ ସାର୍ଥକ ହୋଇ ଉଠେ ନାହିଁ। ତେଣୁ ଯତ୍ର-ତତ୍ର (ଯେଉଁଠି-ସେଇଠି) ଦୀକ୍ଷା ନ ନେବାହିଁ ଭଲ।

ଆ.ପ୍ର. ୪/୮.୯.୧୯୪୨

## ।। ବିବାହ ଗୋଲମାଲ ହେଲେ କଣ ହୁଏ ।।

ହିସାବ କରି ବିବାହ କରିବାକୁ ହୁଏ। ପୁଅଝିଅର ବଂଶ, ବ୍ୟକ୍ତିତ୍ୱ ଓ ପ୍ରକୃତିର ସାମଞ୍ଜସ୍ୟ ଯଦି ନଥାଏ, ତେବେ ସେପରି ବିବାହରେ ସ୍ୱାମୀ ବା ସ୍ତ୍ରୀ କେହି ମଧ୍ୟ ସୁଖୀ ହୋଇ ପାରନ୍ତି ନାହିଁ। ଦାମ୍ପତ୍ୟ ପ୍ରଣୟ ଜିନିଷଟା ଯଦି ନ ଗଜାଏ ତେବେ କେବଳ କାମ-ସମ୍ବନ୍ଧରେ ସ୍ୱାମୀ ବା ସ୍ତ୍ରୀର ଜୀବନରେ ପରିତୃପ୍ତି ଜିନିଷଟା ଆସେ ନାହିଁ। ଛାତି ଭିତରେ ଗୋଟିଏ ହାହାକାର ଓ ଶୂନ୍ୟତା ଥାଏ। ସମସ୍ତ ପ୍ରବୃତ୍ତିହିଁ ଉଗ୍ର ହୋଇ ଉଠେ। ସେମାନେ ନିଜେ ମଧ୍ୟ ଶାନ୍ତି ପାଆନ୍ତି ନାହିଁ, କାହାରିକୁ ଶାନ୍ତି ମଧ୍ୟ ଦେଇ ପାରନ୍ତି ନାହିଁ। ନିଜେ ନିସ୍ତେଜ ଓ ହତବଳ ହୋଇ ପଡ଼ନ୍ତି, ସ୍ଫୁର୍ତ୍ତି ରହେ ନାହିଁ, ଆନନ୍ଦ ରହେ ନାହିଁ, ରୁଗ୍ଣ, କୁଟିଳ ଓ ଇନ୍ଦ୍ରିୟପରବଶ ହୋଇ ପଡ଼ନ୍ତି, ସନ୍ତାନମାନେ ମଧ୍ୟ ଏହି ଧାରା ଧରନ୍ତି। Longevity (ପରମାୟୁ) ଓ efficiency (ଦକ୍ଷତା) – ମଧ୍ୟ ସେଠାରେ ଧୀରେ-ଧୀରେ କମିବାକୁ ଲାଗେ। ଗୋଲମାଲ ବିବାହରୁ ଯେ କେତେ ସର୍ବନାଶ ହୁଏ, ତାହା କହି ଶେଷ କରା ଯାଏ ନାହିଁ। ସୁନାର ସଂସାର ଶ୍ମଶାନ ହୋଇଯାଏ। ଆ.ପ୍ର. ୪/୮.୯.୧୯୪୨

## ।। ସ୍ତ୍ରୀର ଦୁର୍ବ୍ୟବହାରରେ କିପରି ଚଳିବ ।।

କଥା ହେଉଛି, ଏତେ ଦିନରେ ତୁମେ ତୁମର ସ୍ତ୍ରୀର ପ୍ରକୃତି ସମ୍ବନ୍ଧରେ ତ ମୋଟାମୁଟି ବୁଝିପାରିଛ, ତେଣୁ ସିଏ ଯାହା, ତା ଅପେକ୍ଷା ଅତିରିକ୍ତ କିଛି ତା ଠାରୁ expectation (ପ୍ରତ୍ୟାଶା) ରଖ ନାହିଁ। ଦୁର୍ବ୍ୟବହାର ପାଇଁ ମନକୁ ପ୍ରସ୍ତୁତ କରି ରଖ। ଅଥଚ ଭିତରେ ତା ପ୍ରତି କୌଣସି ଆକ୍ରୋଶ ପୋଷଣ କର ନାହିଁ। ସହାନୁଭୂତିସହକାରେ ବୁଝି ଦେଖ — ତାର ଜନ୍ମ, କର୍ମ, ପ୍ରକୃତି ତାକୁ ଏପରି କରି ତୋଳିଛି, ଏବଂ ତାହା-ହିଁ ତାକୁ ଅବଶଭାବରେ ଚଳାଇ ନେଇ ଚାଲିଛି। ସୁତରାଂ ସେ ଖରାପ ବ୍ୟବହାର କରିଲେ ମଧ୍ୟ ନିଜକୁ shocked (ଆହତ) ହେବାକୁ ଦିଅ ନାହିଁ। ଫଳକଥା, ସେ ଯାହା କରୁ, ତାହା ତୁମେ ସେତେ ଦେହକୁ ନିଅ ନାହିଁ। ତୁମେ ସଦୟ ବ୍ୟବହାର ହିଁ କର, ଯଦି ଦେଖ ତାହାଦ୍ୱାରା ବେଶୀ ବଢୁଛି, ତା ହେଲେ indifferent (ଉଦାସୀନ) ରୁହ, କିମ୍ବା ପ୍ରୟୋଜନ ହେଲେ ବାହ୍ୟତଃ ଟିକିଏ ରୂଢ଼ ହୋଇ ପାର, କିନ୍ତୁ ତାହା ଅଭିନୟର ଭଙ୍ଗୀରେ, ମନକୁ ତଦ୍ୱାରା affected (ବିଚଳିତ) ହେବାକୁ ଦିଅ ନାହିଁ। ମନକୁ ସବୁ ସମୟରେ ଆହୁରି ଖରାପ ବ୍ୟବହାର ପାଇଁ ପ୍ରସ୍ତୁତ ରଖିବ, ଏବଂ ନିଜକୁ ସୌଭାଗ୍ୟବାନ ମନେ କରିବ ଯେ, ସେ ଆହୁରି ଖରାପ ବ୍ୟବହାର କରୁନାହିଁ। ଏହି ପ୍ରକାର ଗୋଟିଏ ଉଦାରତା, ସହାନୁଭୂତି, ତ୍ୟାଗ, ତିତିକ୍ଷା ଓ ଜ୍ଞାନର ଦୃଷ୍ଟି ଯଦି ତୁମ ଭିତରେ ଖୋଲି ଯାଏ, ତା ହେଲେ ଦେଖିବ, ତୁମ ମନରେ ଚୋଟ କମ୍ ଲାଗିବ, ସ୍ୱାସ୍ଥ୍ୟ ମଧ୍ୟ ଏତେପରିମାଣରେ ବିପନ୍ନ ହେବ ନାହିଁ। ଆଉ ତୁମ ସ୍ତ୍ରୀର ଯଦି କୌଣସି ପରିବର୍ତ୍ତନ ହେବାର ହୁଏ, ତା ହେଲେ ମଧ୍ୟ ଏହି ଭାବରେ ହେବାର ସମ୍ଭାବନା ବେଶୀ। ତୁମର ସ୍ତ୍ରୀ ଖରାପ ଓ ତୁମେ ଭଲ, କିମ୍ବା ତୁମେ ଖରାପ, ତୁମର ସ୍ତ୍ରୀ ଭଲ — ଏକଥା କିନ୍ତୁ ମୋର ମନେ ହୁଏନା। ମୋର ମନେ ହୁଏ, ତୁମ୍ଭମାନଙ୍କ ମଧ୍ୟରେ ପ୍ରକୃତିଗତ ସାମଞ୍ଜସ୍ୟ ନାହିଁ, ସେଥିପାଇଁ ତୁମେ କେହି କାହାକୁ ବରଦାସ୍ତ କରିପାର ନାହିଁ, ତେଣୁ କଳିଗୋଳ ଲାଗେ। ତୁମେ ଯଦି ଏତେ ଟିକିଏ ହିସାବ କରି ଚାଲ, ଦେଖିବ, ଅନେକ ପରିମାଣରେ ସୁଫଳ ଫଳିବ। ଆଉ ଗୋଟିଏ କଥା, ବିଶେଷ ଭାବରେ Solicited (ଅନୁରୁଦ୍ଧ) ନ ହେଲେ କେତେବେଳେବି sexually engaged (ଯୌନ-ସଂଶ୍ରବରେ ଲିପ୍ତ) ହେବ ନାହିଁ।

ଆ.ପ୍ର. ୪/୮.୯.୧୯୪୨

## ।। ଉନ୍ନତିକୁ ଧରି ରଖି ଯାଏ ନା କାହିଁକି ।।

ବିବାହ ଇତ୍ୟାଦି ଠିକ୍‌ଭାବରେ ନ ହେଲେ ପିଲାଛୁଆ ମଧ୍ୟ ଭଲ ହୁଏ ନାହିଁ। ଗୋଟିଏ ମଣିଷ ଯେତେ ବଡ଼ ହିଁ ହେଉ ନା କାହିଁକି, ତାର ବିବାହ ଯଦି ଭଲ ନ ହୁଏ, ସେ ଯଦି ସୁସନ୍ତାନ ରଖି ଯାଇ ନପାରେ, ତା ହେଲେ କିନ୍ତୁ ତାର ମୃତ୍ୟୁର ସଙ୍ଗେ-ସଙ୍ଗେ ତାର ସଧନାର ଧାରା ଲୋପ ପାଇଯିବା ପରି ହୁଏ। ଅବଶ୍ୟ ଗୁଣଗ୍ରାହୀ ବା ଭକ୍ତଜନଙ୍କର ଭିତର ଦେଇ ଅନେକଙ୍କର ସାଧନାର ଧାରା ଦୀର୍ଘକାଳ ଯେ ବଜାୟ ରହେ ନାହିଁ, ତାହା ନୁହେଁ। ତେବେ ଉପଯୁକ୍ତ ସନ୍ତାନ-ସନ୍ତତି ରହିଲେ ରକ୍ତର ଧାରାଟା ବଜାୟ ରହେ ଏବଂ ବିବାହାଦି ଓ ଶିକ୍ଷା-ଦୀକ୍ଷାର ଗୋଳମାଳ ନ ହେଲେ ଅନେକ ସଦ୍‌ଗୁଣହିଁ ବଂଶ ପରମ୍ପରାରେ ପ୍ରବାହିତ ହୋଇ ଚାଲେ। ଏହା ନ ରହିଲେ କୌଣସି ବିଶେଷ ସମୟରେ, ଗୋଟିଏ ବଂଶ ବା ଜାତିର ଯେତେହିଁ ଉନ୍ନତି ହେଉ ନା କାହିଁକି, ସେ ଉନ୍ନତି ଧରି ରଖି ହୁଏ ନା। ଆ.ପ୍ର. ୪/୮.୯.୧୯୪୨

## ।। ବିବାହ ଠିକ୍‌ଭାବରେ ହେବା ମାନେ କଣ ।।

ବିବାହ ଠିକ୍‌ଭାବରେ ହେବା ମାନେହିଁ ମନୋବୃତ୍ତ୍ୟନୁସାରିଣୀ ସ୍ତ୍ରୀ ଲାଭ କରିବା। ସ୍ତ୍ରୀ ଯଦି ମନୋବୃତ୍ତ୍ୟନୁସାରିଣୀ ହୁଏ, ତା ହେଲେ ତା ଗର୍ଭସ୍ଥ ସନ୍ତାନର ମଧ୍ୟରେ ସ୍ୱାମୀର ସଦ୍‌ଗୁଣଗୁଡ଼ିକ ମୂର୍ତ୍ତ ହେବାରହିଁ ସମ୍ଭାବନା ବେଶୀ।

ଆ.ପ୍ର. ୪/୮.୯.୧୯୪୨

## ।। ଅନୁଲୋମ ଅସବର୍ଣ୍ଣ ବିବାହ ଯଦି ହୋଇଚାଲେ ।।

ଅନୁଲୋମ ଅସବର୍ଣ୍ଣ ବିବାହ ଯଦି ହୋଇଚାଲେ, ତେବେ ଦେଶ ମଧ୍ୟରେ ବହୁମୁଖୀ ବିଚିତ୍ର ଗୁଣସମ୍ପନ୍ନ ମଣିଷର ଆବିର୍ଭାବ ହେବାକୁ ଲାଗିବ। ଯେପରି ବିପ୍ର ସହିତ ଯଦି କ୍ଷତ୍ରିୟ-କନ୍ୟାର ବିବାହ ହୁଏ, ତା ହେଲେ ସେମାନଙ୍କ ସନ୍ତାନ ମଧ୍ୟରେ ଉଭୟ ବର୍ଣ୍ଣର ଗୁଣର ସୁଷ୍ଠୁ ସମାବେଶ ଦେଖା ଯିବ। ଏହିପରି ପ୍ରତ୍ୟେକ କ୍ଷେତ୍ରରେ। Sub-class (ଉପଶ୍ରେଣୀ) ଯେଉଁଗୁଡ଼ିକ ହେବ, ସେମାନଙ୍କର ବିବାହାଦି ଯେପରି ବିଧିମତ ହୁଏ, ସେଦିଗକୁ ଲକ୍ଷ୍ୟ ରଖିବାକୁ ହେବ। ଆ.ପ୍ର. ୪/୧୩.୯.୧୯୪୨

## ।। ଅସବର୍ଣ୍ଣ ଅନୁଲୋମଜାତ ସନ୍ତାନମାନେ କିପରି ସେମାନଙ୍କର ପଦବୀ ଲେଖିବେ ।।

ଅସବର୍ଣ୍ଣ, ଅନୁଲୋମଜାତ ସନ୍ତାନମାନଙ୍କର ଉପାଧି (ପଦବୀ) ଲେଖିବା ସମୟରେ ପିତୃବଂଶର ଉପାଧିର (ପଦବୀର) ପାଖରେ ବ୍ରାକେଟର ମଧ୍ୟରେ ନିଜ ଶ୍ରେଣୀର ପରିଚାୟକ କଥା ଉଲ୍ଲେଖ କରିବା ଦରକାର, ଯେମିତି, 'ମୂର୍ଦ୍ଧାବସିକ୍ତ', 'ଅମ୍ବଷ୍ଠ', ଇତ୍ୟାଦି। ନଚେତ୍ କେବଳ ପିତୃ-ଉପାଧି (ପଦବୀ) ଯଦି ଲେଖେ, କାଳେ କାଳେ ଏହାରି ଭିତର ଦେଇ ପ୍ରତିଲୋମ ପ୍ରବେଶ କରି ଯାଇ ପାରେ। ...ଅନୁଲୋମ-ଅସବର୍ଣ୍ଣ ବିବାହ ଯଦି ହେବାକୁ ଲାଗେ ତା ହେଲେ ବିଭିନ୍ନ ବର୍ଣ୍ଣ ଓ ଶ୍ରେଣୀ ଆତ୍ମୀୟତା-ସୂତ୍ରରେ ଆବଦ୍ଧ ହୋଇ ଉଠିବେ।

ଜଣେ ଦାଦା କହିଲେ – ପ୍ରତିଲୋମରେ ମଧ୍ୟ ତ ଏହା ହୋଇପାରେ?

ଶ୍ରୀଶ୍ରୀଠାକୁର – ପ୍ରତିଲୋମ-ସନ୍ତାନ ବାବା ଓ ମା'ର କାହାରି ବୈଶିଷ୍ଟ୍ୟ ପାଏ ନାହିଁ। ସବୁହିଁ ସେ ହରାଇଦିଏ। ଅପକାର ବ୍ୟତୀତ କୌଣସି ଉପକାରରେ ଲେଗେନା। ସମସ୍ତଙ୍କର ଅପକାର ଯଦି କାମ୍ୟ ହୁଏ, ତେବେ ପ୍ରତିଲୋମ ହେବାକୁ ଦିଅ ନା! ପ୍ରତିଲୋମର ଫଳ କଣ ହୁଏ, ତାହା animal breeding (ପଶୁ-ପ୍ରଜନନ)ର report (ବିବରଣ) ଯଦି ଦେଖ, ତାହେଲେହିଁ ଟେର ପାଇବ। ଆ.ପ୍ର. ୪/୧୩.୯.୧୯୪୨

## ।। ପ୍ରଜନନଗତ ସଂସ୍କାରର ବ୍ୟବସ୍ଥା କାହିଁକି ଦରକାର ।।

ଆମ୍ଭମାନଙ୍କ ସମାଜରେ ଉନ୍ନତିର ପଥ ରିତିମତ ଖୋଲା ଥିଲା, ଆଉ ଅବନତିର ପଥ ରୁଦ୍ଧ କରିବା ପାଇଁ ଯେତେରକମର clutch (ଗୋଁଜା) ଦେଇ ରଖାଯାଏ, ତାହା ମଧ୍ୟ ରଖା ହେଉଥିଲା। ପ୍ରଧାନ ଜିନିଷ ଥିଲା Ideal (ଆଦର୍ଶ) ଓ eugenics (ସୁପ୍ରଜନନ)। ଉନ୍ନତିର ଧାରାଟା ଚଳାଇ ରଖିବା ପାଇଁ ବିହିତ ସବର୍ଣ୍ଣ ଓ ଅନୁଲୋମ ଅସବର୍ଣ୍ଣ ବିବାହର ଭିତର ଦେଇ good soulsର (ଭଲ ଆତ୍ମାର) advent ର (ଆଗମନର) ବ୍ୟବସ୍ଥା ଥିଲା। Future ର (ଭବିଷ୍ୟତର) ଦିଗକୁ ଚାହିଁ eugenic reform ର (ପ୍ରଜନନଗତ ସଂସ୍କାରର) ବ୍ୟବସ୍ଥା ଦରକାରହିଁ। ନହେଲେ continuity (କ୍ରମାଗତି) ରହେ ନାହିଁ, ଆଜି ଯେଉଁଠି ବିପୁଳ ଉନ୍ନତି, କାଲି ସେଠାରେ ଶ୍ମଶାନ — ଏହିପରି ହୁଏ। ବହୁ ସଭ୍ୟତା, ବହୁ ଜାତି ଯେ ନିଶ୍ଚିହ୍ନ ହୋଇ ଯାଇଛି ଓ ହୋଇ ଯିବାର ପଥରେ, ତାର ମୂଳ କାରଣ ଏହିଠାରେ ବୋଲି ମୋର ମନେ ହୁଏ। ସେଥିପାଇଁ ପ୍ରତିଲୋମ ଦୃଢ଼ ହସ୍ତରେ

ବନ୍ଦ କରିବା ଦରକାର। ଜାତିର ଅସ୍ତିତ୍ୱ ଯେଉଁମାନେ ଚାହାନ୍ତି, ସେମାନେ କେତେବେଳେ ମଧ୍ୟ ପ୍ରତିଲୋମ ସମର୍ଥନ କରି ପାରିବେ ନାହିଁ। ଅଜ୍ଞତା ବା ଜିଦ୍ ବଶତଃ ଯଦି କେହି ତାହା କରେ, ସେ କିନ୍ତୁ ବାସ୍ତବରେ ଜାତିର ବିନାଶର ପଥହିଁ ଉନ୍ମୁକ୍ତ କରି ଥାଏ। ବିଜ୍ଞାନର ଦୋହାଇ ଦେଇ ମଧ୍ୟ ଯଦି କେହି ଏହା ପ୍ରବର୍ତ୍ତନ କରିବାକୁ ଚାହେଁ, ତା ହେଲେ ମଧ୍ୟ ମୁଁ କହିବି, ସେ ବିଜ୍ଞାନ ମଧ୍ୟରେବି ଅଜ୍ଞାନ-ଭରା, thorough observation ର (ପୂର୍ଣ୍ଣାଙ୍ଗ ପର୍ଯ୍ୟବେକ୍ଷଣର) ଅଭାବ ତା ମଧ୍ୟରେ ଅଛି। Complex ର (ବୃତ୍ତିର) bias (ପକ୍ଷପାତ) ନେଇ research (ଗବେଷଣା) କରିବାକୁ ଗଲେ, ତା ମଧ୍ୟରେ ଅନେକ error (ଭ୍ରାନ୍ତି) ଆସିଥାଏ।

ଆ.ପ୍ର. ୪/୧୪.୯.୧୯୪୨

## ।। ବହୁ ଲବ୍ଧପ୍ରତିଷ୍ଠ ଗଣ୍ୟମାନ୍ୟ ଲୋକ ପ୍ରତିଲୋମ ସମର୍ଥନ କରନ୍ତି କାହିଁକି ।।

ଅନେକେ ସମର୍ଥନ କରନ୍ତି ତାର କୁଫଳ ଜାଣନ୍ତି ନାହିଁ ବୋଲି, ପୁଣି ଅନେକେ ଜାଣିଶୁଣିବି ସମର୍ଥନ କରନ୍ତି, ସେମାନଙ୍କର ମତଲବ ହିଁ ଖରାପ।

ଆ.ପ୍ର. ୪/୧୪.୯.୧୯୪୨

## ।। ଦେଶରେ ମଣିଷ ପରି ମଣିଷର ଅଭାବ କାହିଁକି ।।

ମୂଳ କାରଣ ହେଲା ବର୍ଣ୍ଣାଶ୍ରମ ଓ ବିବାହରେ ଗୋଲମାଳ। ଶୁଣିଛି ପ୍ରତିଲୋମର ସୂତ୍ରପାତ ହୋଇଛି ପ୍ରଥମେ (ରାଜା) ବେନେଙ୍କ ସମୟ ଠାରୁ। ସେ ତ ପୌରାଣିକ ଯୁଗର କଥା। କିନ୍ତୁ ଐତିହାସିକ ଯୁଗରେ ପ୍ରତିଲୋମ ପ୍ରଶ୍ରୟ ପାଏ ଅଶୋକଙ୍କର ପ୍ରବ୍ରଜ୍ୟା ବିଧାନ ଠାରୁ। ସମାଜର ଶ୍ରେଷ୍ଠ ସନ୍ତାନ ଯେଉଁମାନେ, ସେମାନେ ସେତେବେଳେ ବିବାହାଦି ନ କରି ହଜାର-ହଜାର ସଂଖ୍ୟାରେ ସନ୍ୟାସ ଗ୍ରହଣ କରିବାକୁ ଲାଗିଲେ। ଫଳରେ ଅନେକ ଭଲ-ଭଲ (ବଂଶର) ଝିଅ ନିକୃଷ୍ଟ (ବଂଶର) ପୁରୁଷର ସହିତ ବିବାହ ବନ୍ଧନରେ ଆବଦ୍ଧ ହେବାକୁ ବାଧ୍ୟ ହେଲେ। ଏହି ଠାରୁହିଁ ଆସେ ପ୍ରତିଲୋମ। ପ୍ରତିଲୋମରେ ଯେଉଁ ସର୍ବନାଶ ହେବାର ତା ହୋଇ ଚାଲେ। ତାହାର ଗତି ଏବେ ମଧ୍ୟ ଚାଲିଛି।

ଆ.ପ୍ର. ୪/୧୪.୯.୧୯୪୨

## ।। ପ୍ରତିଲୋମ ସମ୍ବନ୍ଧରେ ଘୋରତର ଆପତ୍ତି କାହିଁକି ।।

ଅନେକେ ମନେ କରନ୍ତି, ପ୍ରତିଲୋମ ସମ୍ବନ୍ଧରେ ଆର୍ଯ୍ୟଋଷିମାନଙ୍କର ଯେଉଁ ଘୋରତର ଆପତ୍ତି ତାହା କୁସଂସ୍କାର ଓ ଅନ୍ଧବିଶ୍ୱାସର ଫଳ। କିନ୍ତୁ ମଣିଷ ଜାଣେ ନାହିଁ ବୋଲି ଏପରି ମନେ କରେ। ଏ କଥା ନିଃସନ୍ଦେହ ଯେ, sperm (ଶୁକ୍ର) ଯଦି ova-ର (ଡିମ୍ବକୋଷର) ତୁଳନାରେ less evolved (ସ୍ୱଳ୍ପବିବର୍ତ୍ତିତ) ହୁଏ, ଏବଂ ସେହି less evolved sperm (ସ୍ୱଳ୍ପବିବର୍ତ୍ତିତ ଶୁକ୍ର)-କୁ ଯଦି ଏହି more evolved ova (ଅପେକ୍ଷାକୃତ ବେଶୀ ବିବର୍ତ୍ତିତ ଡିମ୍ବକୋଷ) କୁ fertilize (ଉଦ୍‌ଭିନ୍ନ ବା ଜୀବନ ଦାନ) କରିବାକୁ ହୁଏ, ସେଠାରେ natural law-ର (ପ୍ରାକୃତିକ ନିୟମର) ବିରୁଦ୍ଧରେ ଯେପରି ଗୋଟିଏ outrage (ବଳାତ୍କାର) କରା ହୁଏ। ଏତେବଡ଼ ପ୍ରକୃତି-ବିରୁଦ୍ଧ ଅପଚେଷ୍ଟା ଅନାସୃଷ୍ଟିରହିଁ କାରଣ ହୋଇ ଛିଡ଼ା ହୁଏ। ତେଣୁ ପ୍ରତିଲୋମ ସନ୍ତାନର ପ୍ରତିବାଦ ସତ୍ତାର ବିରୁଦ୍ଧରେ, ଉତ୍ସର ବିରୁଦ୍ଧରେ, କୃଷ୍ଟିର ବିରୁଦ୍ଧରେ ହୁଏ। ଭଲ ଯାହା, ତାହା ନଷ୍ଟ କରି ନ ପାରିଲେ ସେ ଯେପରି ମନେ କରେ ତାର ଜୀବନ ନିଷ୍ଫଳ। ଏହି ଧ୍ୱଂସର ବ୍ୟାପାରରେ ତାର ଉଗ୍ର ଆଗ୍ରହ, ଅସମ୍ଭବ ଦୀପ୍ତି। ପ୍ରତିଲୋମ ସନ୍ତାନମାନଙ୍କୁ ତେଣୁ ଶାସ୍ତ୍ରରେ ବାହ୍ୟଜାତି କରି ରଖା ହୋଇଛି। ଏମାନଙ୍କର ଏପରି ସର୍ବନାଶା ବୁଦ୍ଧି ଯେ, ଏମାନଙ୍କୁ ଯଦି ସମାଜ ମଧ୍ୟରେ ସ୍ଥାନ ଦିଆ ଯାଏ, ତେବେ ସୁସ୍ଥବୁଦ୍ଧିସମ୍ପନ୍ନ ମଣିଷଗୁଡ଼ିକୁ contaminate (ସଂକ୍ରାମିତ) କରି ସମଗ୍ର ସମାଜକୁ ନଷ୍ଟ କରି ଦେଇ ପାରେ। ତେଣୁ ଆମ ସମାଜରେ ଏକ ତୀବ୍ର ଦୃଷ୍ଟି ଥିଲା ଯେପରି କୌଣସି ପ୍ରକାରେ ପ୍ରତିଲୋମ ନ ଘଟିପାରେ। ଆମ୍ଭମାନଙ୍କର ସମାଜ କୌଣସି ଦିନ ବ୍ୟଭିଚାରକୁ ବରଦାସ୍ତ କରି ନାହିଁ। ତେବେ ସବର୍ଣ୍ଣ ଓ ଅନୁଲୋମ ବ୍ୟଭିଚାରକୁ ବରଂ ପରିଶୁଦ୍ଧ କରି ତୋଳିବାର ଉପାୟ ବତାଇଛି, କିନ୍ତୁ ପ୍ରତିଲୋମକୁ ପରିଶୁଦ୍ଧ କରି ତୋଳିବାର ପନ୍ଥା ବତାଇ ପାରିନାହିଁ।
ଆ.ପ୍ର. ୪/୧୪.୯.୧୯୪୨

## ।। ବର୍ଣ୍ଣାଶ୍ରମ ଓ ବିହିତ ବିବାହ ପ୍ରଥାର ପ୍ରବର୍ତ୍ତନ କାହିଁକି ଦରକାର ।।

ଯଦି ବୈଶିଷ୍ଟ୍ୟାନୁପାତିକ grouping (ବିଭାଗ) ଓ proper marriage system (ବିହିତ ବିବାହ ପ୍ରଥା) introduced (ପ୍ରବର୍ତ୍ତିତ) ନ ହୁଏ, ତାହା ହେଲେ (ଜାତିର) ଭିତ୍ତିଟାହିଁ କଞ୍ଚା ରହିଯାଏ। Religion (ଧର୍ମ) ବା morality (ନୈତିକତା) ସେଠାରେ ଭଲ ଭାବରେ ଗଜେଇ ପାରେ ନାହିଁ। ଇଉରୋପରେ

ବିଜ୍ଞାନର ଚର୍ଚ୍ଚା ଯଥେଷ୍ଟ ହେଲେ ମଧ୍ୟ ସମାଜବ୍ୟବସ୍ଥା ବା ବିବାହ-ସମ୍ବନ୍ଧରେ ସେଠାରେ ବର୍ତ୍ତମାନ ସୁଦ୍ଧା ଖାଣ୍ଟି-ଖାଣ୍ଟି ବୈଜ୍ଞାନିକ ବିଧାନ ଚାଲୁ ହୋଇନାହିଁ। କିନ୍ତୁ ଆମ୍ଭମାନଙ୍କର ଦେଶରେ ତଥାକଥିତ ବିଜ୍ଞାନର ଚର୍ଚ୍ଚା ବର୍ତ୍ତମାନ କମ୍‌ହେଲେ ମଧ୍ୟ, ପୂର୍ବରୁ ଆମ୍ଭମାନଙ୍କର ଋଷିମାନେ ଥିଲେ ଅତ୍ୟନ୍ତ science-minded (ବୈଜ୍ଞାନିକ ମନୋବୃତ୍ତିସମ୍ପନ୍ନ ବା ବିଜ୍ଞାନମନସ୍କ)। ସମାଜ-ସଂସ୍ଥିତି ପାଇଁ ଯେଉଁ ବିଜ୍ଞାନ ସବୁଠାରୁ ବେଶୀ ପ୍ରୟୋଜନ ସେହି ବିଜ୍ଞାନ ପ୍ରତି ସେମାନଙ୍କର ପ୍ରଖର ଦୃଷ୍ଟି ଥିଲା। ତେଣୁ ସଂହିତାଗୁଡ଼ିକ ଭିତରେ ଦେଖା ଯାଏ, ବର୍ଣ୍ଣ-ବିଧାନ ଓ ବିବାହ ପ୍ରତି କେତେ ପରିମାଣରେ ତୀକ୍ଷ୍ଣ ନଜର। ସେମାନେ ସୂତ୍ର ଆକାରରେ କଥାଗୁଡ଼ିକୁ କହି ଯାଇଛନ୍ତି, ସବୁ ଜାଗାରେ reasoning (ଯୁକ୍ତି)-ଗୁଡ଼ିକୁ unfold (ପ୍ରକାଶ) କରିନାହାଁନ୍ତି। ତେଣୁ ଅନେକ ସମୟରେ ଏ ଗୁଡ଼ିକ narrow dogmatic assertion ର (ସଂକୀର୍ଣ୍ଣ ସ୍ୱମତପୋଷକ ସଦମ୍ଭ ଉକ୍ତିର) ପରି ମନେ ହୁଏ, କିନ୍ତୁ ଅସଲରେ ତାହା ନୁହେଁ। ଅନେକ experiment (ପରୀକ୍ଷା) ଓ observation (ପର୍ଯ୍ୟବେକ୍ଷଣ) ର ଫଳରେ ଏହି ସବୁ generalization (ସାଧାରଣ ନୀତି-ନିର୍ଦ୍ଧାରଣ) ସେମାନେ କରିଛନ୍ତି। ଏହିଗୁଡ଼ିକର scientific casual relation (ବୈଜ୍ଞାନିକ କାର୍ଯ୍ୟକାରଣ-ସମ୍ପର୍କ) unfold (ଉଦ୍‌ଘାଟିତ) କରିବା ଦରକାର। ଇଉରୋପ, ଆମେରିକାର ଅସ୍ତିତ୍ୱ ରକ୍ଷା ପାଇଁ ସେଠାରେ ଏହି ତତ୍ତ୍ୱର ଉଦ୍‌ଘାଟନର ପ୍ରୟୋଜନ ଅଛି। ସେଠାରେ ସାମାଜିକ ପ୍ରଥା ହିସାବରେ କେତେଗୁଡ଼ିଏ ଭଲ ଜିନିଷ ଅଛି, ତେଣୁ ଏବେ ମଧ୍ୟ ସ୍ଥିତି ବଜାୟ ରହିଛି। କିନ୍ତୁ ସେଠାକାର ସମାଜ ବ୍ୟବସ୍ଥା ଓ ବିବାହ ପଦ୍ଧତି ଯଦି ଶାଶ୍ୱତ ବିଜ୍ଞାନ ଉପରେ ସୁପ୍ରତିଷ୍ଠିତ ନ ହୁଏ, ତାହେଲେ କିନ୍ତୁ ଇଉରୋପ, ଆମେରିକା, ସେମାନଙ୍କର ସବୁ ଉନ୍ନତି ସତ୍ତ୍ୱେବି ଆତ୍ମରକ୍ଷା କରି ପାରିବେ ନାହିଁ। ମୁଁ ତ ଭଲ ଭାବରେ ସବୁ ଖବର ରଖେ ନାହିଁ। ...ଯାହା ଶୁଣେ ସେଇଥିରେ ଏହିପରି ମନେ ହୁଏ। କେବଳ ଇଉରୋପ, ଆମେରିକା କାହିଁକି, ଯେଉଁ ଦେଶ ହିଁ ସୁପ୍ରଜନନର ଉପଯୋଗୀ ବୈଜ୍ଞାନିକ ସମାଜବିଧାନ ଓ ବିବାହ-ପ୍ରଥାର ଆଶ୍ରୟ ଗ୍ରହଣ ନ କରିବ, ସେ ଦେଶହିଁ କାଳର କବଳରେ ପଡ଼ି ଯିବ। ସେମାନଙ୍କର ହଜାରେ achievment (କୃତିତ୍ୱ)-ମଧ୍ୟ ସେମାନଙ୍କୁ ଦୀର୍ଘଦିନ ଟେକି ରଖି ପାରିବ ନାହିଁ। ହାବାଳି ପରି ସେମାନେ ଦପ୍‌କରି ଜଳି ଉଠି ଫଟ୍‌କରି ଲିଭି ଯିବେ। ଭାରତ ଯେ ସହସ୍ର ସହସ୍ର ବର୍ଷ ଧରି ତାର କୃଷ୍ଟି ଓ ସଭ୍ୟତା ନେଇ ବଞ୍ଚି ଅଛି, ଏବେ ମଧ୍ୟ ଯେ ଏ ଦେଶରେ ଭଗବାନ ଶ୍ରୀରାମକୃଷ୍ଣଙ୍କ

ପରି ମଣିଷ ଜନ୍ମ ନେଉଛନ୍ତି, ତାର ମୂଳରେ ଅଛି ଭାରତର ଋଷି-ପ୍ରବର୍ତ୍ତିତ ବର୍ଣ୍ଣାଶ୍ରମ ଓ ବିବାହପ୍ରଥା । ଆ.ପ୍ର. ୪/୨୪.୯.୧୯୪୨

## ।। ସ୍ତ୍ରୀ ସହିତ ସମ୍ମାନଯୋଗ୍ୟ ଦୂରତ୍ୱ ବଜାଇ ରଖିବା ଅପରିହାର୍ଯ୍ୟ କାହିଁକି ।।

ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଯେ ଏତେ ଗଭୀର ଓ ନିବିଡ଼ ସମ୍ପର୍କ ସେଠାରେ ମଧ୍ୟ ସ୍ୱାମୀ ଯଦି ସ୍ତ୍ରୀ ସହିତ ସମ୍ମାନଯୋଗ୍ୟ ଦୂରତ୍ୱ ବଜାଇ ରଖି ନ ଚଳେ, ତାହେଲେ ସ୍ତ୍ରୀ କିଛିଦିନ ପରେ ତାକୁ ତୁଚ୍ଛ-ତାଚ୍ଛଲ୍ୟ କରିବାକୁ ଆରମ୍ଭ କରି ଦେବ । ତେଣୁ ଏହି ସମ୍ମାନଯୋଗ୍ୟ ଦୂରତ୍ୱ ସେଠାରେ ଦାମ୍ପତ୍ୟ-ପ୍ରଣୟ ଓ ପାରସ୍ପାରିକ ଶ୍ରଦ୍ଧାବୋଧ ପାଇଁ ଅପରିହାର୍ଯ୍ୟ । ଆ.ପ୍ର. ୪/୨୬.୯.୧୯୪୨

## ।। ସ୍ୱାମୀ ସ୍ତ୍ରୀ ସହିତ ସଶ୍ରଦ୍ଧ ବ୍ୟବହାର କରିବ କାହିଁକି ।।

ସ୍ତ୍ରୀ ପ୍ରତି, ସହଧର୍ମିଣୀ ପ୍ରତି ସ୍ୱାମୀର ମଧ୍ୟ ଗୋଟିଏ ସ୍ନେହଳ ଶ୍ରଦ୍ଧା ଥାଏ । ପ୍ରତ୍ୟେକଙ୍କର ବ୍ୟକ୍ତିତ୍ୱର ହିଁ ଗୋଟିଏ ମର୍ଯ୍ୟାଦା ଅଛି । ଯେଉଁମାନେ ଆତ୍ମମର୍ଯ୍ୟାଦାଶୀଳ, ସେମାନେ ଅନ୍ୟକୁ ମଧ୍ୟ ଯଥାଯୋଗ୍ୟ ମର୍ଯ୍ୟାଦା ଦେଇ ଚାଲନ୍ତି । ପାରସ୍ପରିକ ମର୍ଯ୍ୟାଦାଦାନ ଅନ୍ତର୍ନିହିତ ଶ୍ରଦ୍ଧାବୋଧର ହିଁ ପରିଚୟ ଦିଏ । ଯାହାର ଯେତେ ଟିକିଏ ମର୍ଯ୍ୟାଦା ପ୍ରାପ୍ୟ, ତାକୁ ଯଦି ସେତେଟିକିଏ ମର୍ଯ୍ୟାଦା ଦିଆ ନଯାଏ, ତେବେ ପାରସ୍ପରିକ ସମ୍ପର୍କ ସୁସ୍ଥ ଓ ସ୍ୱାଭାବିକ ରହେ ନାହିଁ, ଅନ୍ତରର ବନ୍ଧନ ମଧ୍ୟ ଶିଥିଳ ହୋଇ ଉଠିବାକୁ ଚାହେଁ । ...ସ୍ତ୍ରୀ ପ୍ରତି ସଶ୍ରଦ୍ଧ ବ୍ୟବହାରର ଆହୁରି ଗୋଟିଏ ବିଶେଷ ପ୍ରୟୋଜନ ଅଛି । ମାର ସ୍ୱାମୀ ଭକ୍ତି ଦେଖି ସନ୍ତାନର ପିତୃଭକ୍ତି ଯେପରି ବଢ଼େ, ମା ପ୍ରତି ବାପାଙ୍କର ସ୍ନେହଳ ଶ୍ରଦ୍ଧାଯୁକ୍ତ ଆଚରଣ ଦେଖି ସନ୍ତାନର ମାତୃଭକ୍ତି ପୁଣି ସେହିପରି ପୁଷ୍ଟ ହୁଏ ।

ଆ.ପ୍ର. ୪/୨୬.୯.୧୯୪୨

## ।। କେଉଁମାନଙ୍କର ବିବାହ ଆଇନ କରି ବନ୍ଦ କରି ଦେବା ଭଲ ।।

ଏକଥା ଠିକ୍ ଜାଣ, born incorrigible (ଜନ୍ମଗତଭାବରେ ଅସଂଶୋଧନୀୟ) ଗୋଟିଏଦଳ ଅଛନ୍ତି, ସେମାନଙ୍କର ଅନ୍ତତଃ ଏହି ଛାଞ୍ଚ ଥିବା ପର୍ଯ୍ୟନ୍ତ କୌଣସି ପ୍ରକାରେ କିଛି ହେବ ନାହିଁ । ଶରୀର ବଦଳେଇ ଆସିଲେ ଯଦି କିଛି ହୁଏ, ହୋଇ ମଧ୍ୟପାରେ । ସାଧାରଣତଃ ପ୍ରତିଲୋମ ଛିଟିକା ରହିଲେ ଏହି ଧରଣର ହୁଏ । ମୋର ମନେ ହୁଏ,

criminality runs in families (ଅପରାଧପ୍ରବଣତା ବଂଶଧାରାରେ ପ୍ରବାହିତ ହୁଏ)। ଏହିପରି ଧାରା ଯେଉଁ-ସବୁ ପରିବାରରେ ଚାଲିଛି, ଆଇନ କରି ସେମାନଙ୍କର ବିବାହ ବନ୍ଦ କରି ଦେବା ଭଲ। ଆଉ ବିବାହ କରିଲେ ମଧ୍ୟ ସନ୍ତାନ-ସନ୍ତତି ଯେପରି ନ ହୋଇପାରେ ତାର ବ୍ୟବସ୍ଥା କରିବା ଦରକାର।

ଆ.ପ୍ର. ୪/୨.୧୦.୧୯୪୨

## ।। ଜନ୍ମ ଓ କର୍ମର ସଂଗତି ଓ ସଂଯୋଗ ଦରକାର କି ନାହିଁ।।

ଅନୁଚିତ ବିବାହର ଭିତର ଦେଇ ମଣିଷର ଯେପରି ପାତିତ୍ୟ ଆସେ, ଅନୁଚିତ ଜୀବିକା ଗ୍ରହଣର ଭିତର ଦେଇ ମଧ୍ୟ ପୁଣି ସେହିପରି ପାତିତ୍ୟ ଆସେ। କଥାରେ କହନ୍ତି – କର୍ମଣା ବାଧ୍ୟତେ ବୁଦ୍ଧିଃ। ଯେ ଯେପରି କର୍ମ କରେ, ତାର ବୁଦ୍ଧି ଓ ଚଳନ ମଧ୍ୟ ତା ଦ୍ୱାରା ବିଭାବିତ ହୁଏ। ତେବେ ଏହି କର୍ମଜନିତ ପାତିତ୍ୟ କିନ୍ତୁ ମଣିଷର ମୌଳିକ ରକ୍ତଗତ କୌଳିନ୍ୟ ଓ ବୀଜଗତ ସଂସ୍କାରକୁ ବିପର୍ଯ୍ୟସ୍ତ କରି ପାରେନା। ତେଣୁ ସେହିଟା ଶୁଧାରି ନେବାକୁ ଡେରି ହୁଏ ନା। ମୋର ମନେ ହୁଏ, ଆମ୍ଭମାନଙ୍କ ଦେଶରେ ବିଭିନ୍ନ ବର୍ଣ୍ଣ ମଧ୍ୟରେ ବହୁ ପରିବାରରେ ରକ୍ତଧାରା ଅକ୍ଷୁର୍ଣ୍ଣ ଅଛି, କିନ୍ତୁ ପାତିତ୍ୟ ଯାହା ଆସିଛି ତାହା ବର୍ଣ୍ଣୋଚିତ ଆଚରଣ ନ କରାଯାଇ ଏବଂ ବର୍ଣ୍ଣାନୁଚିତ ଆଚରଣ କରିବାର ଭିତର ଦେଇ। ତେବେ ଏହିଗୁଡ଼ିକ ଯେତେ ଠିକ୍ କରି ନିଆ ଯାଏ, ସେତେହିଁ ମଣିଷର ଉତ୍ସାହ ବଢ଼େ। ଜନ୍ମ ଓ କର୍ମ ଏହି ଦୁଇରହିଁ ସଙ୍ଗତି ଓ ସଂଯୋଗର ପ୍ରୟୋଜନ ଅଛି। ଏହାଦ୍ୱାରା ବଂଶ ପରମ୍ପରାକ୍ରମେ ମଣିଷ ସ୍ୱବୈଶିଷ୍ଟ୍ୟରେ ବଢ଼ି ଚାଲେ। ଗୋଟିଏ ଗୋଟିଏ ବର୍ଣ୍ଣ ହେଉଛି ବିଶିଷ୍ଟ ସଂସ୍କାର ଅର୍ଥାତ୍ instinct ର ସଂସ୍କରଣ।

ଆ.ପ୍ର. ୪/୧୯.୧୦.୧୯୪୨

## ।। ଅନୁଲୋମ ଅସବର୍ଣ୍ଣ ବିବାହ କିପରି ଭାବରେ ପ୍ରସାରିତ ହେବ।।

ପ୍ରଥମେ ସତ୍ସଙ୍ଗୀ ପରିବାରଗୁଡ଼ିକରେ ସବର୍ଣ୍ଣ ବିବାହ ଯେପରି ଠିକ୍ ଭାବରେ ହୁଏ, ତାର ବ୍ୟବସ୍ଥା କରନ୍ତୁ। ଆପଣମାନଙ୍କର ପରିସରରେ ଅବିହିତ ଗୋଟିଏ ବିବାହ ମଧ୍ୟ ଯେପରି ଆଉ ନ ହୋଇ ପାରେ, ଆଉ ଅନୁଲୋମର idea (ଧାରଣା) ଦେଇ ଚାଲନ୍ତୁ, ground (କ୍ଷେତ୍ର) prepared (ପ୍ରସ୍ତୁତ) ହେଉ, individually (ବ୍ୟକ୍ତିଗତଭାବରେ) କେହି କରିବାକୁ ଚାହିଁଲେ, ବିଧିମାଫିକ କରୁ।

ଆ.ପ୍ର. ୪/୧୯.୧୦.୧୯୪୨

## ।। ଅବାଧ ବିବାହ ପ୍ରଥା ଚାଲୁ ହେଲେ କଣ ହେବ ।।

ସଂସ୍କାରର ନାମ ନେଇ ତଥାକଥିତ ବ୍ରହ୍ମଜ୍ଞାନୀମାନେ ଯେ ଅନେକ ବର୍ଣ୍ଣଗତ ବୈଶିଷ୍ଟ୍ୟ, କୁଳଗତ ବୈଶିଷ୍ଟ୍ୟ, ବ୍ୟକ୍ତିଗତ ବୈଶିଷ୍ଟ୍ୟ ଇତ୍ୟାଦିକୁ ଉଲ୍ଲଙ୍ଘନ କରି ଯଥେଚ୍ଛ ବିବାହ ଓ ଏକପ୍ରକାର ଆଚାରର ପ୍ରବର୍ତ୍ତନ କରିବାକୁ ଚାହିଁଛନ୍ତି, ତାର ଫଳ କିନ୍ତୁ ଆଦୌ ଭଲ ହୋଇନାହିଁ। ଏହା ପଛରେ କୌଣସି ଗଭୀର ବୈଜ୍ଞାନିକ ଦୃଷ୍ଟି ଅଛି ବୋଲି ମନେ ହୁଏ ନା। ଗୋଟିଏ ରସାୟନବିଜ୍ଞାନର ପରୀକ୍ଷାଗାରରେ ଯଦି ଗୋଟିଏ ଶିଶୁକୁ ଛାଡ଼ି ଦିଆ ଯାଏ, ଏବଂ ସେ ଯଦି ଖେଳିବା ଛଳରେ ମନକୁମନ ବିଭିନ୍ନ ବୋତଲର ଜିନିଷ ଢାଳାଢାଳି କରି ମିଶାଏ, ତାହେଲେ ତା ଭିତର ଦେଇ ଯେପରି ବିପର୍ଯ୍ୟୟୀ କାଣ୍ଡ ଘଟି ପାରେ, ଦେଶରେ ଅବାଧ ବିବାହ ପ୍ରଥା ଯଦି ଆରମ୍ଭ ହୁଏ, ତେବେ ତା ଭିତର ଦେଇ ତତୋଧିକ ବିପର୍ଯ୍ୟୟ ଘଟିବା ଅବଶ୍ୟମ୍ଭାବୀ। chemical combination (ରସାୟନିକ ମିଶ୍ରଣ)-ର ବିଷୟରେ ଯେପରି ପ୍ରତ୍ୟେକଟି chemical substance (ରସାୟନିକ ପଦାର୍ଥ)-ର property (ଗୁଣସମ୍ପଦ) ଓ character (ଚରିତ୍ର) ଜାଣିବାକୁ ହୁଏ, ଏବଂ ତା ପରେ ବିହିତ ଭାବରେ ସଂମିଶ୍ରଣ ଘଟାଇବାକୁ ହୁଏ, ନାରୀପୁରୁଷର ବିବାହ-ସମ୍ବନ୍ଧରେ ମଧ୍ୟ ସେହିପରି ଉଭୟଙ୍କର କୁଳଗତ ଓ ବ୍ୟକ୍ତିଗତ ବୈଶିଷ୍ଟ୍ୟ ସମ୍ବନ୍ଧରେ ସମ୍ୟକ ଅବହିତ ହୋଇ ସେମାନଙ୍କର ମିଳନ କେତେ ପରିମାଣରେ ଶୁଭାବହ ହୋଇ ପାରେ ଏବଂ ସୁପ୍ରଜନନର ଦିଗ ଦେଇ ।ା କେତେପରିମାଣରେ ସାର୍ଥକ ହୋଇପାରେ, ଇତ୍ୟାଦି ବିଷୟ ଚିନ୍ତା କରି ବିଧିବଦ୍ଧ-ଭାବରେ ଏହି ଯୋଗାଯୋଗ କରିବା ବାଞ୍ଛନୀୟ। ବିବାହ ସହିତ ଜନନ ଓ ଜାତି ଜଡ଼ିତ ଅଛି। ତେଣୁ ଏହା ନେଇ ପିଲାଖେଳ କରିବା ସର୍ବନାଶର ବିଷୟ।

ଆ.ପ୍ର. ୪/୨୩.୧୦.୧୯୪୨

## ।। ପ୍ରକୃତିଗତ ସାମଞ୍ଜସ୍ୟ ଦେଖି ବିବାହ ନ ଦେଲେ କଣ ହୁଏ ।।

ପ୍ରକୃତିଗତ ସାମଞ୍ଜସ୍ୟ ଦେଖି ବିବାହ ନ ଦେଲେ ସ୍ୱାମୀ ସ୍ତ୍ରୀ ଉଭୟଙ୍କର ଜୀବନ ବିଧ୍ୱସ୍ତ ହୋଇଯାଏ। ...ମୁଁ ବହୁ କ୍ଷେତ୍ରରେ ଦେଖିଛି, ସ୍ତ୍ରୀ ପରି ସ୍ତ୍ରୀ ମଧ୍ୟ ଖରାପ ନୁହେଁ, ସ୍ୱାମୀ ପରି ସ୍ୱାମୀ ମଧ୍ୟ ଖରାପ ନୁହେଁ। ଭଲ ଲୋକ ବୋଲି ବାହାରେ ଉଭୟଙ୍କର ସୁନାମ ଅଛି, ସମସ୍ତଙ୍କ ସହିତ ସେମାନଙ୍କର ବ୍ୟବହାର ଭଲ, କିନ୍ତୁ ଉଭୟଙ୍କ ମଧ୍ୟରେ ଆଉ କୌଣସି ପ୍ରକାରରେ ବୁଝାମଣା ହୁଏ ନା। ବିବାହାଦିର ଏହିପରି ଅମେଳ ଯଦି କେଉଁଠି ଘଟି ଥାଏ, ସେଠାରେ ସ୍ତ୍ରୀର ଉଚିତ ସ୍ୱାମୀଙ୍କର ପ୍ରକୃତିଟାକୁ ବୁଝିବାକୁ ଚେଷ୍ଟା

କରିବା, ଏବଂ ସ୍ୱାମୀଙ୍କର ଯେପରି ଭଲ ଲାଗେ ଓ ଭଲ ହୁଏ ସେହିପରି ଭାବରେ ନିଜର ବ୍ୟବହାରକୁ ନିୟନ୍ତ୍ରିତ କରିବାକୁ ଚେଷ୍ଟା କରିବା। ଜଣେ ଜୀବନ୍ତ ମଣିଷ ସହିତ ବ୍ୟବହାର କରିବାକୁ ହେଲେ ସବୁ ସମୟରେ ସ୍ମରଣ ରଖିବା ଉଚିତ, ମୁଁ ଇଟା, କାଠ କିମ୍ବା ପଥର ସହିତ ବ୍ୟବହାର କରୁ ନାହିଁ। ଯାହା ସହିତ ବ୍ୟବହାର କରୁଛି, ତାର ଗୋଟିଏ ରୁଚି ଅଛି, ପସନ୍ଦ ଅଛି, ପ୍ରକୃତି ଅଛି, ମେଜାଜ ଅଛି, ଧରଣ ଅଛି। ବୈଦ୍ୟ ଯେପରି ନାଡ଼ୀ ଚିପି ଧାତୁ ବୁଝି ଔଷଧ ଦିଅନ୍ତି, ମଣିଷର ସହିତ ବ୍ୟବହାରର ଔଷଧ ସେହିପରି ଧାତୁ ବୁଝି ପ୍ରୟୋଗ କରିବାକୁ ହୁଏ। ଏକ କଥାରେ ମଣିଷର ମନ-ମେଜାଜ ବୁଝି ଚଳିବାକୁ ହୁଏ। ...ପରସ୍ପର ହିସାବ କରି ନ ଚଳିବା ଯୋଗୁଁ ଅନେକ ଗୋଳମାଳର ସୂତ୍ରପାତ ହୁଏ। ଝିଅମାନଙ୍କ ବିଶେଷ ବିଶେଷ ଶାରୀରିକ ଅବସ୍ଥାରେ ବିଶେଷ ବିଶେଷ ମେଜାଜର ସୃଷ୍ଟି ହୁଏ, ତାହା ହେଲା ସାମୟିକ ବ୍ୟାପାର ଓ ଶାରୀରିକ ଅବସ୍ଥା ସହିତ ଜଡ଼ିତ। ପୁଅମାନଙ୍କର ଏହା ସମ୍ବନ୍ଧରେ ଯଦି କୌଣସି ଜ୍ଞାନ ନ ଥାଏ ଏବଂ ସେ ସମୟର ସ୍ୱାଭାବିକ ବୈଲକ୍ଷଣ ଯୋଗୁଁ ଯଦି ଅଯଥା ଶାସନ ଓ ତାଡ଼ନା କରିବାକୁ ଯାଏ, ତାହେଲେ କିନ୍ତୁ ହିତେ ବିପରୀତ ହୁଏ।

ଆ.ପ୍ର. ୪/୨୩.୧୦.୧୯୪୨

## ।। ଜାତିର ଉନ୍ନତି ପାଇଁ କେଉଁ ଦିଗକୁ ବେଶୀ ଲକ୍ଷ୍ୟ ରଖିବାକୁ ହେବ ।।

ସବୁଠାରୁ ବେଶୀ ଲକ୍ଷ୍ୟ ରଖିବାକୁ ହେବ ବିବାହ ଓ ସୁପ୍ରଜନନର ଦିଗକୁ। ବିବାହ ଓ ସୁପ୍ରଜନନ ଯଦି ଠିକ୍ ଥାଏ, ତାହେଲେ ତାରି ଭିତର ଦେଇ ଆଉ ସବୁ ଗଜେଇ ଉଠିବ। ଦୁଇ-ଏକ ପୁରୁଷ ଧରି ମଣିଷ ଯଦି ଲେଖା ପଢ଼ା ନ ବି ଶିଖେ, କଠୋର ଦାରିଦ୍ର୍ୟ ମଧ୍ୟରେ ବି ଯଦି ରହେ, ସୁଖ-ସୁବିଧା ଓ ସ୍ୱାଚ୍ଛନ୍ଦ୍ୟର ମୁଖ ଯଦି ଆଦୌ ନ ଦେଖେ, ଅଥଚ ସେ ଯଦି ସଦ୍‌ବଂଶ ଜାତ ହୁଏ, ଏବଂ ତାର କୁଳ କୃଷ୍ଟି ଯଦି ଠିକ୍‌ଥାଏ, ତାହେଲେ କିନ୍ତୁ ତାର ଉନ୍ନତିର ଭୂମିଟା ନଷ୍ଟ ହୁଏ ନାହିଁ। ପୁଣି, ଏହି ଉନ୍ନତିର ଭୂମିଟା ନଷ୍ଟ କରି ଦେଇ ତାକୁ ଯେତେ ସୁଶିକ୍ଷା, ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟ ଓ ସ୍ୱାଚ୍ଛନ୍ଦ୍ୟ ମଧ୍ୟରେ ରଖା ଯାଉ ନା କାହିଁକି, ସେ କିନ୍ତୁ କୌଣସି ପ୍ରକାରରେ ମଣିଷ ହୋଇ ଉଠିବ ନାହିଁ। ମଣିଷ ହୋଇ ଉଠିବ କିଏ ? ସେ ତ ଜନନବିଧିର ଅନାଚାରରେ ଅପହୃତ ହୋଇଯାଇଛି। ତାକୁ ଆଉ ଖୋଜି ପାଇବ ନାହିଁ। ଖିଆଲର ଖେଳରେ ଚିରଦିନ ପାଇଁ ନଷ୍ଟ ହୋଇଯାଇଛି –

''ପାପାଚାରେ, କଦାଚାରେ ସନ୍ଦୂଷିତ ଯେଥା
ବିଧିରୋଷ ନିଃସନ୍ଦେହେ ଜାନିଓ ତଥା,
ନିଷ୍ଫଳ ପୁରୁଷକାର, ଦୈବ ବଳବାନ।''

ଆ.ପ୍ର. ୪/୧୨.୧୨.୧୯୪୨

## ।। ସୁଶିକ୍ଷାର ମୂଳରେ ସୁଜନନ କାହିଁକି ।।

ଶିକ୍ଷାର ବ୍ୟାପାରରେ ମଧ୍ୟ ପ୍ରଧାନ କଥା ଜନ୍ମ। ଶୁଭ ସଂସ୍କାର ଓ ସମ୍ଭବ୍ୟତା ସମ୍ପନ୍ନ ମଣିଷ ଯଦି ଜନ୍ମ ନ ନିଏ, ତେବେ କେବଳ ଶିକ୍ଷା-ବ୍ୟବସ୍ଥାର ଭିତର ଦେଇ ମଣିଷ ତିଆରି ହୋଇ ପାରିବ ନାହିଁ। ଆ.ପ୍ର. ୪/୨୭.୧୨.୧୯୪୨

## ।। ଜନ୍ମ ଉପରେ ମଣିଷର କୌଣସି ହାତ ଅଛି କି ନାହିଁ ।।

ମଣିଷର କୌଣସି ହାତ ନାହିଁ! କହୁଛନ୍ତି କଣ ? ବିଧିମାଫିକ ଚଳିଲେ ବିହିତ ଫଳ ମିଳେ, ସେ ବିଷୟରେ କଣ କୌଣସି ସନ୍ଦେହ ଅଛି ? ଭାଗବାନଙ୍କର ଏକ ନାମ ବିଧି ଆଉ ଭଗବାନ ମାନେ ଭଜମାନ, ସେବମାନ। ତାଙ୍କର ବିଧିର ସେବା କରିବାକୁ ହେବ, ତେବେ ଯାଇ ଆମେ ବାଞ୍ଛିତ ଫଳର ଅଧିକାରୀ ହେବୁ।

ଆ.ପ୍ର. ୪/୨୭.୧୨.୧୯୪୨

## ।। ମଣିଷ ତିଆରି କରିବା ପାଇଁ ଆମ୍ଭମାନଙ୍କୁ କଣ କରିବାକୁ ହେବ ।।

ବିବାହାଦି ଠିକ୍‌ଭାବରେ ଦେବାକୁ ହେବ। (ବିବାହର ନିୟମ ଯେଉଁମାନଙ୍କ ମଧ୍ୟରେ ଯେପରି ଅଛି) ସେହି ନିୟମଟା ଠିକ୍ ହେବା ଦରକାର। ବିବାହ ଏପରି ଭାବରେ ଦେବାକୁ ହେବ ଯେପରି ଦାମ୍ପତ୍ୟ ପ୍ରଣୟର ଫଳରେ ସ୍ୱାମୀ-ସ୍ତ୍ରୀ ଉଭୟେ ଶରୀରରେ, ମନରେ ଓ ଚରିତ୍ରରେ ଉତ୍କର୍ଷ ଲାଭ କରନ୍ତି ଏବଂ ସନ୍ତାନସନ୍ତତି ମଧ୍ୟ ଉନ୍ନତତର ହୁଅନ୍ତି। ବଂଶପରମ୍ପରାକ୍ରମେ ମଣିଷ ଯଦି ବଢ଼ି ନ ଚାଲନ୍ତି, ବାପାଙ୍କ ଠାରୁ ପୁଅ ଯଦି ଆହୁରି ବଡ଼ ନ ହୁଏ, ଆହୁରି ଭଲ ନ ହୁଏ, ତାହା ହେଲେ ହେଲା କଣ ? ପାତ୍ର ଓ ପାତ୍ରୀର ବଂଶ, ବିଦ୍ୟା, ସ୍ୱାସ୍ଥ୍ୟ, ଚରିତ୍ର, ଇଷ୍ଟପ୍ରାଣତା, ଦକ୍ଷତା, ଗୁଣପନା, ବୟସ, ପ୍ରକୃତି ଇତ୍ୟାଦି ଦିଗ ଦେଇ ସମ୍ୟକ୍ ସଙ୍ଗତି ଅଛି କି ନାହିଁ ଭଲ କରି ଦେଖିବା ଦରକାର।

ଆ.ପ୍ର. ୪/୨୭.୧୨.୧୯୪୨

## ।। ସୁସନ୍ତାନର ଜନ୍ମ କେତେବବେଳେ ସମ୍ଭବ ହେବ ।। ୩୯

ପ୍ରତ୍ୟେକଙ୍କର ଜୈବୀ ସଂସ୍ଥିତିର ଗୋଟିଏ ଔପାଦାନିକ ସମାବେଶ ଓ ସଂଗଠନ ଅଛି, ତାହା ପୁଣି ବୈଶିଷ୍ଟ୍ୟାନୁଗ ଉତ୍କର୍ଷମୁଖୀ ଅନୁଶୀଳନର ଭିତର ଦେଇ ସୁସ୍ଥ, ସତେଜ ଓ ସଜାଗ ଥାଏ, ତାରି ଭିତର ଦେଇ ବଂଶାନୁଗ ଓ ବ୍ୟକ୍ତିଗତ ସଦ୍‌ଗୁଣଗୁଡ଼ିକ dominant (ପ୍ରଭାବଶାଳୀ) ହୋଇଥାଏ । ପୁରୁଷର ବଂଶାନୁକ୍ରମିକ ଓ ବ୍ୟକ୍ତିଗତ ଗୁଣଗୁଡ଼ିକ ଯେଉଁଠାରେ dominant (ପ୍ରଭାବଶାଳୀ), ନାରୀର ବଂଶାନୁକ୍ରମିକ ଓ ବ୍ୟକ୍ତିଗତ ଗୁଣଗୁଡ଼ିକ ମଧ୍ୟ ସେଠାରେ ଯଦି dominant (ପ୍ରଭାବଶାଳୀ) ଓ nurturing (ପରିପୋଷଣୀ) ହୁଏ, ଆଉ ଉଭୟଙ୍କର psycho-physical constitution (ମାନସିକ ଓ ଦୈହିକ ସଂଗଠନ) ଯଦି compatible (ସାମଞ୍ଜସ୍ୟପୂର୍ଣ୍ଣ) ହୁଏ, ଅର୍ଥାତ୍ ସେମାନେ ଯଦି ସମଜାତୀୟ କୃଷ୍ଟି, ଐତିହ୍ୟ ଓ ସଂସ୍କାରସମ୍ପନ୍ନ ଅଥଚ ଭିନ୍ନ ଗୋତ୍ରୀୟ ହୁଅନ୍ତି, ଏକ କଥାରେ ସଦୃଶ ସମ୍ମିଳନ ଯଦି ଘଟେ, ତାହେଲେ ତା ଫଳରେ ସନ୍ତାନ-ସନ୍ତତିମାନଙ୍କର ଉନ୍ନତତର ହୋଇ ଉଠିବାର ସମ୍ଭାବନା ହିଁ ବେଶୀ ।

କାରଣ, ସେଠାରେ ସ୍ତ୍ରୀର ଡିମ୍ବକୋଷ ଓ ପୁରୁଷର ଶୁକ୍ରକୀଟର stucture, tone, time and temper (ଗଠନ, ଧାତ ଓ ଗତି-ପ୍ରକୃତି)-ର ମଧ୍ୟରେ ଏପରି ଗୋଟିଏ affinity (ମେଳ) ଥାଏ ଯେ, ଦୁଇଜଣଙ୍କର highest ଓ best qualities (ସର୍ବୋଚ୍ଚ ଓ ସର୍ବୋତ୍ତମ ଗୁଣଗୁଡ଼ିକ) ଯେପରି blend କରି (ମିଶିଯାଇ) ଏକ ହୋଇ ସନ୍ତାନଠାରେ ରୂପ ପରିଗ୍ରହ କରେ । କାରଣ ସେଠାରେ ସ୍ୱାମୀ-ସ୍ତ୍ରୀ ପରସ୍ପର ପରସ୍ପରର fulfilling ଓ nurturing (ପରିପୂରଣୀ ଓ ପରିପୋଷଣୀ) ଏବଂ ତାହା biologically, genetically, socially, temperamentally, culturally (ଜୀବବିଦ୍ୟାର ଦିଗରୁ, ଜନନବିଦ୍ୟାର ଦିଗରୁ, ସାମାଜିକ ଦିଗରୁ, ପ୍ରକୃତିଗତ ଦିଗରୁ, କୃଷ୍ଟିଗତ ଦିଗରୁ) – ସବୁ ଦିଗରୁ । ମୂଳ କଥା ହେଲା sperm (ଶୁକ୍ରକୀଟ) ଓ ovumରେ (ଡିମ୍ବକୋଷରେ) ନିହିତ gene (ଜିନ)-ର ଭିତରେ hereditary instinct (ବଂଶଗତ ସହଜାତ ସଂସ୍କାର)-ଗୁଡ଼ିକ supermicroscopic granules (ସୂକ୍ଷ୍ମାତିସୂକ୍ଷ୍ମ ଦାନା)-ପରି ଥାଏ, ନାରୀ-ପୁରୁଷର ଏହି instinctive granule (ସହଜାତ ସଂସ୍କାରର ଦାନା)-ଗୁଡ଼ିକ ସଙ୍ଗତିଶୀଳ ହେବା ପ୍ରୟୋଜନ, ଏବଂ ସେହିପ୍ରକାରର ସଂଯୋଗରେହିଁ ସନ୍ତାନ ଭଲ ହୋଇ ପାରେ । କାରଣ, ଏହି ସଙ୍ଗତିଶୀଳ ସଂଯୋଗସମ୍ଭୂତ ଜୀବନକଣାହିଁ ହେଲା ତାର inner core of being (ସତ୍ତାର ଅନ୍ତରମର୍ମ୍ମ) ।

ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଏହି harmony (ସଙ୍ଗତି) ର ଅଭାବ ଯେଉଁଠାରେ ଯେତେ ବେଶୀ, ସନ୍ତାନ ମଧ୍ୟ ସେଠାରେ ସେତେ ଅପକୃଷ୍ଟ ହୁଏ । ସେଠାରେ ସଦ୍‌ଗୁଣଗୁଡ଼ିକ dominant (ପ୍ରଭାବଶାଳୀ) ନ ହୋଇ ଅବଗୁଣଗୁଡ଼ିକହିଁ dominant (ପ୍ରଭାବଶାଳୀ) ହୁଏ ଏବଂ ସଦ୍‌ଗୁଣଗୁଡ଼ିକ କ୍ରମଶଃ recessive (ଅପସୃୟମାନ) ହେବାକୁ ଲାଗେ। କାରଣ, ସଦ୍‌ଗୁଣଗୁଡ଼ିକର ବିକାଶ ପାଇଁ ଯେଉଁ nurture, effinity ଓ tuning (ପୋଷଣ, ମେଳ ଓ ଏକତାନତା) ପ୍ରୟୋଜନ, ସେଠାରେ ସେ ଗୁଡ଼ିକର ଅଭାବ ଥାଏ । ତେଣୁ ବାହା-ସାହା ଖୁବ୍ ହିସାବ କରି ଦେବାକୁ ହୁଏ, ଆଉ ପ୍ରତ୍ୟେକ ପରିବାରରେ ସେମାନଙ୍କର କୂଳଗତ ବୈଶିଷ୍ଟ୍ୟ-ଅନୁଯାୟୀ ଉତ୍କର୍ଷ-ମୁଖୀ ଆଚାର, ଅନୁଷ୍ଠାନ, ନୀତି, ପଦ୍ଧତି, କୃଷ୍ଟି ଓ ଐତିହ୍ୟର ଅନୁଶୀଳନ ଯେପରି ପୂର୍ଣ୍ଣମାତ୍ରାରେ ଚାଲେ ସେ ଦିଗରେ ଲକ୍ଷ୍ୟ ରଖିବା ଏକାନ୍ତ ଦରକାର। ନାରୀ-ପୁରୁଷର ଅନ୍ତରରେ ଯଦି ଏକ ସକ୍ରିୟ ସୁନିଷ୍ଠ ବୃଦ୍ଧିମୁଖୀ ସାଧନାର ସ୍ୱର ନିରନ୍ତର ଧ୍ୱନିତ ନ ହୁଏ, ତାହେଲେ ସେମାନଙ୍କ ମାଧ୍ୟମରେ ମହତ୍ ମଣିଷର ଆବିର୍ଭାବ ହୋଇ ପାରେ ନାହିଁ। କେବଳ ସବର୍ଣ୍ଣ ବିବାହର ବେଳରେ ନୁହେଁ, ଅନୁଲୋମ ଅସବର୍ଣ୍ଣ ବିବାହର କ୍ଷେତ୍ରରେ ମଧ୍ୟ ନାରୀ-ପୁରୁଷର ବର୍ଣ୍ଣ, ବଂଶ ଓ ବ୍ୟକ୍ତିଗତ ପ୍ରକୃତିର ସଙ୍ଗତି ଦିଗକୁ ଲକ୍ଷ୍ୟ ରଖି ତାହା କରିବାକୁ ହୁଏ ।

ଆ.ପ୍ର. ୪/୨୭.୧୨.୧୯୪୨

## ।। ପ୍ରତିଲୋମ ବିବାହ ନିଷିଦ୍ଧ କାହିଁକି ।।

ମୋର ମନେ ହୁଏ, less evolved sperm (ସ୍ୱଳ୍ପ ବିବର୍ତ୍ତିତ ଶୁକ୍ରକୀଟ) ଯଦି more evolved ovum (ଅଧିକତର ବିବର୍ତ୍ତିତ ଡିମ୍ବକୋଷ) ର fertilising agent (ଉଦ୍‌ଗମୟକ ବା ଜୀବନଦାନକାରୀ ଶକ୍ତି) ହିସାବରେ କାମ କରିବାକୁ ଯାଏ, ସେଠାରେ biological law (ଜୀବବିଜ୍ଞାନସମ୍ମତ ବିଧି)-ର ଉପରେ ଗୋଟିଏ outrage (ଅତ୍ୟାଚାର ବା ବଳାତ୍କାର) କରାହୁଏ। ତେଣୁ ovum (ଡିମ୍ବକୋଷ) ସେଠାରେ sperm (ଶୁକ୍ରକୀଟ)-କୁ repel (ପ୍ରତିରୋଧ ବା ପ୍ରତିହତ) କରିବାକୁ ଚାହେଁ, ମିଳନସମୟର ଏହି ଦ୍ୱନ୍ଦର ଫଳରେ ମାତୃଧାତୁ ଓ ପିତୃବୀଜର ବୈଶିଷ୍ଟ୍ୟ ବିଧ୍ୱସ୍ତ, ବିକୃତ ଓ ବିପର୍ଯ୍ୟସ୍ତ ହୋଇପଡ଼େ। ସନ୍ତାନ ନା ପାଏ ମାଆର ଭଲଟା, ନା ପାଏ ବାପାର ଭଲଟା। ସେ କିମ୍ଭୁତକିମାକାର ପଦାର୍ଥରେ ପରିଣତ ହୁଏ।

ଆ.ପ୍ର. ୪/୨୭.୧୨.୧୯୪୨

## ।। ପ୍ରତିଲୋମଜ ସନ୍ତାନର ପ୍ରକୃତି କିପରି ହୁଏ ।।

ତାର (ପ୍ରତିଲୋମଜ ସନ୍ତାନର) ପ୍ରକୃତି ହୁଏ ସାମ୍ୟହାରା, ଦ୍ୱନ୍ଦ-ପ୍ରବଣ, ପରିଧ୍ୱଂସ-ପ୍ରସୂ। ବିପର୍ଯ୍ୟୟୀ ସ୍ୱଭାବ ଯୋଗୁଁ ସେ ନିଜ ସହିତ ନିଜେ ପାରି ଉଠେ ନାହିଁ। ଯାହା କିଛି ସୁନ୍ଦର ଓ ମହତ୍, ତା ବିରୁଦ୍ଧରେ ତାର ହୁଏ ଅଭିଯାନ। ତାର innate luxury (ଅନ୍ତଃସ୍ୟୂତ ବା ଜନ୍ମଗତ ବିଳାସ) ହୁଏ to discard the great (ମହତକୁ ବର୍ଜନ ବା ଅଗ୍ରାହ୍ୟ କରିବା)। ଏକ କଥାରେ ତାର ପ୍ରୟାସ ହୁଏ ଶ୍ରେୟ-ବିରୋଧୀ ଅସ୍ତିତ୍ୱ-ବିଲୋପୀ। ଯେଉଁ ନୀତି ଜାତିର ପକ୍ଷରେ ଯେତେ କଲ୍ୟାଣକର, ସେ ସେହି ନୀତିର ପରିପନ୍ଥୀ ସେତେ ପରିମାଣରେ। ସେ ଯେ କେତେ ପରିମାଣରେ ଅବ୍ୟବସ୍ଥ, ସେ ଯେ କେତେବେଳେ କଣ କରିବ, ତାହା ସେ ନିଜେ ବି ଜାଣେ ନାହିଁ। ଏପରି ଲୋକ ଆଦୌ ନିର୍ଭରଯୋଗ୍ୟ ହୋଇ ପାରେ ନା, ସେମାନେ ବିଶ୍ୱାସଘାତକ ହେବେହିଁ। ବିରୁଦ୍ଧ ସଂଯୋଗରେ ରଜୋବୀଜର ଉପାଦାନର ମଧ୍ୟରେ ଗୋଟିଏ ବିସ୍ଫୋରଣ ଓ ଭାଙ୍ଗନ (break) ସଂଘଟିତ ହୁଏ, ପ୍ରତିଲୋମ—ଜାତକ ମଧ୍ୟରେ ବି ଏହି ବୈଶିଷ୍ଟ୍ୟ ସେହିପରି ସ୍ୱଭାବସିଦ୍ଧ ଦେଖାଯାଏ। ସେମାନେ ଯେଉଁଠାକୁ ଯିବେ ସଂହତିରେ ଭାଙ୍ଗନ (break) ଆଣିବେ ହିଁ। ସେମାନେ ଯଦି ମହା genius (ପ୍ରତିଭାଧର)-ବି ହୁଅନ୍ତି, ତାର ମଧ୍ୟ effect (ଫଳ) ପ୍ରାୟହିଁ destructive (ବିଧ୍ୱଂସୀ) ହେବ। ଫଳକଥା ସେମାନେ ଅପକର୍ଷୀ ବ୍ୟତ୍ୟୟୀ ଚଳନରେ ନ ଚଳି ପାରିବେ ନାହିଁ, ଏବଂ ଏହିଥିରେହିଁ ଗୌରବ ବୋଧ କରନ୍ତି। ଏହି ଚଳନରେ ଚଳି ନ ପାରିଲେ ଅସ୍ୱସ୍ତି ବୋଧ କରନ୍ତି। ...ଏମାନେ ସବୁ ସମୟରେ extremeରେ (ଚରମରେ) ଚଳନ୍ତି, କୌଣସି ସମୟରେ ହୁଏତ ଅତ୍ୟନ୍ତ ବଦ୍‌ରାଗୀ, ପୁଣି କେତେବେଳେ ହୁଏତ ମାତ୍ରାଧିକ ଥଣ୍ଡା-ମେଜାଜୀ, କେତେବେଳେ ହୁଏତ ଉଗ୍ର ଆସୁରିକ ଭାବସମ୍ପନ୍ନ ଓ ଅତିମାତ୍ରାରେ ତେଜୀ, ପୁଣି କେତେବେଳେ ହୁଏତ ମ୍ରିୟମାଣ, ବିଷନ୍ନ ଓ କାପୁରୁଷ ପରି ଭୀରୁ ଓ ଦୁର୍ବଳ। କାହାର କାହାର ଚରିତ୍ରରେ ପୁଣି ବିଶେଷ ଗୋଟିଏ extreme (ଚରମ ଭାବ)-ହିଁ prominent (ପ୍ରଧାନ) ଓ permanent (ସ୍ଥାୟୀ) ଦେଖା ଯାଏ। ମୋଟଉପରେ ସାମ୍ୟସଙ୍ଗତ ଚଳନ ଏମାନଙ୍କ ମଧ୍ୟରେ ପାଇବାହିଁ ଦୁର୍ଲଭ।

ଆ.ପ୍ର. ୪/୨୭.୧୨.୧୯୪୨

## ।। ପ୍ରତିଲୋମ ଯୌନ-ମିଳନସମୟରେ କିପରି ଅବସ୍ଥା ହୁଏ।।

କେତେଜଣ ଝିଅ ମୋ ପାଖରେ confess (ସ୍ୱୀକାର) କରିଛନ୍ତି ଯେ, ପ୍ରତିଲୋମ କୌଣସି ସଂଯୋଗ ହେବା ସମୟରେ ସେମାନଙ୍କର ଯେପରି ଜଳରେ ବୁଡ଼ି ଯାଉଥିବା ମଣିଷଙ୍କ ପରି ଅବସ୍ଥା ହୁଏ। ପୂର୍ବପୁରୁଷଗଣ ଏକ ସ୍ୱରରେ ଯେପରି ତ୍ରାହି ତ୍ରାହି ଚିତ୍କାର କରିବାକୁ ଲାଗନ୍ତି, ଆର୍ତ୍ତକଣ୍ଠରେ କହିବାକୁ ଲାଗନ୍ତି — "ବଞ୍ଚାଅ ! ଆମ୍ଭମାନଙ୍କୁ ବଞ୍ଚାଅ। ଆମ୍ଭମାନଙ୍କର ଏପରି କରି ସର୍ବନାଶ କର ନାହିଁ, ଏପରିକରି ଅଧୋଗାମୀ କରନାହିଁ।" ସେମାନଙ୍କର ଛାତି ଫାଟିଗଲା ପରି ହୁଏ, ମୃତ୍ୟୁଯନ୍ତ୍ରଣା ପାଇଲା ପରି ମନେ ହୁଏ। ମନେ ହୁଏ, 'ଗଲି, ଗଲି।' ଅନେକ ସମୟରେ unconsciously (ଅଜ୍ଞାତସାରରେ) ପୁରୁଷଟାକୁ ଗୋଇଠା ମାରି ବସେ। ଏହି ଯେ ଗୋଇଠା ମାରେ, ସେ ତାର ସତ୍ତା ପ୍ରତିଘାତ କରେ ବୋଲି। ପରେ ହୁଏତ blunt (ନିର୍ବୋଧ) ହୋଇଯାଏ। କିନ୍ତୁ pure breed (ଖାଁଟି ଜନ୍ମ) ହେଲେ ପ୍ରତିଲୋମ–ସଙ୍ଗତିର ସମୟରେ ପ୍ରଥମଟାହିଁ ସେ କୌଣସି ପ୍ରକାରେ ସମ୍ମତି ଦେବ ନାହିଁ। ପୁଣି ପ୍ରତିଲୋମ ଯୌନ-ସଂସ୍ରବ ଫଳରେ ପ୍ରାୟହିଁ ଦେଖା ଯାଏ ନାରୀ-ପୁରୁଷ ରୁଗ୍ଣ ଓ ବିକୃତିଗ୍ରସ୍ତ ହୋଇ ଉଠନ୍ତି। ପୃଥିବୀରେ ଯଦି କୌଣସି ଜିନିଷ ଥାଏ ଯାହା ସବୁଠାରୁ ଅକଲ୍ୟାଣକର, ଯାହାର କୌଣସି ଦିଗ ଦେଇ କୌଣସି ପ୍ରକାର redeeming feature (ଉଦ୍ଧାରଣୀ ଲକ୍ଷଣ) ନାହିଁ, ତାହା ହେଲା ପ୍ରତିଲୋମ। ଏହିପରି ଏକ ପାପ ଆଉ ଖୋଜିଲେ ପାଇବ ନାହିଁ। ଏହାର ସର୍ବ ଅଙ୍ଗରେ ସର୍ବନାଶ।

ଆ.ପ୍ର. ୪/୨୭.୧୨.୧୯୪୨

## ।। ପ୍ରତିଲୋମ ସମ୍ବନ୍ଧରେ ଧାରଣା ନ ରହିଲେ ମଧ୍ୟ କ୍ଷତି ହେବ କି ନାହିଁ।।

ବିରୁଦ୍ଧ ସଂଯୋଗ ଘଟାଇଲେ biological plane (ଜୀବବିଜ୍ଞାନଗତସ୍ତର) ରେ ଯେଉଁ ସବୁ action, reaction (କ୍ରିୟା ପ୍ରତିକ୍ରିୟା) ହେବା କଥା ତାହା ହେବ ହିଁ। ସନ୍ତାନ-ସନ୍ତତି ମଧ୍ୟ ଭଲ ହୁଅନ୍ତି ନାହିଁ। ଆଉ ମୂଳଗତ ଅମେଳ ଯେଉଁଠାରେ, ମନର ମେଳ ସେଠାରେ ହୁଏ ବୋଲି ମନେ ହୁଏ ନା। ମନ ତ ଶରୀର, ଜୀବନ, କୁଳପ୍ରବାହିତ ସଂସ୍କାର, ଐତିହ୍ୟ, କୃଷ୍ଟି ଇତ୍ୟାଦିକୁ ବାଦ୍ ଦେଇ ନୁହେଁ। ତା ବ୍ୟତୀତ ସ୍ୱାମୀ ସ୍ତ୍ରୀର ମଧ୍ୟରେ ପରସ୍ପର ପରସ୍ପରକୁ ସହିବା-ବୋହିବା ଓ ଭଲପାଇବାର କଥା ଆସେ। ଉପରଠାକୀ ମେଳ ହେଲେ ହେବ ନାହିଁ।

ଆ.ପ୍ର. ୪/୨୭.୧୨.୧୯୪୨

## ॥ ପ୍ରତିଲୋମ ଯୌନ-ସଂଶ୍ରବ ପ୍ରକୃତି-ବିରୁଦ୍ଧ ହେବା ସତ୍ତ୍ୱେ ବି ସନ୍ତାନର ଜନ୍ମ ହୋଇପାରେ କାହିଁକି ॥

ମୋର ମନେ ହୁଏ, ଉଭୟେ ହିଁ ମନୁଷ୍ୟଜାତିଭୁକ୍ତ ବୋଲି ସନ୍ତାନ ଜନ୍ମଗ୍ରହଣ କରିପାରେ କିନ୍ତୁ ମୌଳିକ ନୀତିର ବ୍ୟତ୍ୟୟ ହୁଏ ବୋଲି ସନ୍ତାନ ଜୀବନୀୟ-ଗୁଣପନା ଓ ସମ୍ପଦରେ ସମୃଦ୍ଧ ହୋଇ ପାରେ ନାହିଁ, ବରଂ ଅସ୍ତିତ୍ୱ-ଅପଲାପୀ ଅସଦ୍‌ଗୁଣରହିଁ ପ୍ରାବଲ୍ୟ ଦେଖା ଯାଏ। ସମଗ୍ର ଜାତି ଭିତରେ ଏହିପରି ଚାଲିଲେ, ଏହାର ପରିଣାମ କଣ ହୋଇ ପାରେ ତାହା ସହଜରେ ଅନୁମେୟ। ଆ.ପ୍ର. ୪/୨୭.୧୨.୧୯୪୨

## ॥ ସୁସଙ୍ଗତ ବିବାହ (Compatible Marriage) କାହାକୁ କହନ୍ତି ॥

ଯେଉଁମାନେ ଈଶ୍ୱରଙ୍କୁ ମାନନ୍ତି, ପ୍ରେରିତ ପରମ୍ପରାକୁ ସ୍ୱୀକାର କରନ୍ତି, ପିତୃପୁରୁଷଙ୍କୁ ସ୍ୱୀକାର କରନ୍ତି ଓ ସେମାନଙ୍କ ନାମରେ ଭଣ୍ଡାମି କରନ୍ତି ନାହିଁ, ବର୍ଣ୍ଣ-ଧର୍ମର ବୈଜ୍ଞାନିକ ଭିତ୍ତିକୁ ଯେଉଁମାନେ ଅନୁଶୀଳନ କରି ଚାଲନ୍ତି, ସତ୍ତାସମ୍ବର୍ଦ୍ଧନୀ ଶାଶ୍ୱତ ପ୍ରାଚୀନ ବିଧାନ ଓ କୁଳକୃଷ୍ଟିକୁ ଯେଉଁମାନେ ପରିତ୍ୟାଗ ତ କରନ୍ତି ନାହିଁ ବରଂ ତାର ପରିପୂରଣରେ ତତ୍ପର ଯେଉଁମାନେ, ଯେଉଁମାନେ ନିଜର ବୈଶିଷ୍ଟ୍ୟ ହରାନ୍ତି ନାହିଁ ଏବଂ ଅନ୍ୟର ବୈଶିଷ୍ଟ୍ୟକୁ ଶ୍ରଦ୍ଧା କରନ୍ତି ଓ ପୋଷଣ ଦିଅନ୍ତି, ଯେଉଁମାନେ ପ୍ରତିଲୋମ-ପରିଣୟ, ବିବାହ-ବିଚ୍ଛେଦ ବା ଆପଦଧର୍ମ ହିସାବ ବ୍ୟତୀତ ନାରୀର ପତ୍ୟନ୍ତର ଗ୍ରହଣର ଅନୁମୋଦନ କରନ୍ତି ନାହିଁ, ବ୍ୟାଭିଚାରକୁ ଯେଉଁମାନେ ପ୍ରଶ୍ରୟ ଦିଅନ୍ତି ନାହିଁ ବରଂ ନିୟତ ପରିଶୁଦ୍ଧି ପ୍ରୟାସଶୀଳ, ଶୁଚିତା ଓ ସତୀତ୍ୱ ସମ୍ପୂଜିତ ଯେଉଁଠାରେ, ଯେଉଁମାନେ ସତ୍‌ଦୀକ୍ଷା ଓ ସଦାଚାର ଅନୁପାଳନଶୀଳ, ସେମାନେ ଯେ କୌଣସି ସମ୍ପ୍ରଦାୟ-ଭୁକ୍ତ ହୁଅନ୍ତୁ ନା କାହିଁକି, ସେମାନଙ୍କର ପରସ୍ପର ମଧ୍ୟରେ ସଦୃଶ ଘରେ ଓ ସମୀଚୀନ ଅନୁଲୋମକ୍ରମେ ନାରୀ-ପୁରୁଷର ସର୍ବାଙ୍ଗୀନ ସଙ୍ଗତି ଦେଖି ବିବାହାଦି ଚଳିପାରେ। ଏହାକୁ କହନ୍ତି compatible marriage (ସୁସଙ୍ଗତ ବିବାହ)।

ଆ.ପ୍ର. ୪/୨୭.୧୨.୧୯୪୨

## ॥ ବିଭିନ୍ନ ଧର୍ମ-ସମ୍ପ୍ରଦାୟ ମଧ୍ୟରେ ବିବାହ ହୋଇପାରେ କି ନାହିଁ ॥

ବିବାହର ମୂଳ principle (ନୀତି)-ଗୁଡ଼ିକ fulfilled (ପରିପୂରିତ) ହୁଏ ଯେଉଁଠାରେ, ସେହିଠାରେହିଁ ବିବାହ ହୋଇପାରେ। ...କୁଳ, ଶୀଳ ଯଦି ମିଶେ ତାହେଲେ

ବୈଷ୍ଣବ ଓ ଶାକ୍ତ ପରିବାରର ମଧ୍ୟରେ କଣ ବିବାହାଦି ଚଳିବ ନାହିଁ? ତାହା ଯଦି ଚଳେ, ତେବେ ଯେଉଁଭାବରେ (compatible marriage) କିମ୍ବା ସୁସଙ୍ଗତ ବିବାହର କଥା) କହିଲି ଏହି ଭାବରେ ମେଳ କରି ବିଭିନ୍ନ ସମ୍ପ୍ରଦାୟର ମଧ୍ୟରେ ବିଧି-ଅନୁକ୍ରମିକ ବିବାହ ଚଳିବାରେ ବାଧା କଣ? ଆ.ପ୍ର. ୪/୨୭.୧୨.୧୯୪୨

## ।। ବିଭିନ୍ନ ପ୍ରଦେଶର ହିନ୍ଦୁମାନଙ୍କ ମଧ୍ୟରେ ସବର୍ଣ୍ଣ ଓ ଅନୁଲୋମ ବିବାହ ଚଳିବ କି ନାହିଁ ।।

ମୋର ମନେ ହୁଏ, ବିବାହର ଶାସ୍ତ୍ରସମ୍ମତ ବିଧିକୁ ଅକ୍ଷୁର୍ଣ୍ଣ ରଖି ବିଭିନ୍ନ ପ୍ରଦେଶର ହିନ୍ଦୁମାନଙ୍କ ମଧ୍ୟରେ ସବର୍ଣ୍ଣ ଓ ଅନୁଲୋମ ବିବାହ ଆମେ ଖୁବ୍‌ଶୀଘ୍ର ପ୍ରବର୍ତ୍ତନ କରିପାରୁ, ଅବଶ୍ୟ ସବୁ ଦିଗରୁ compatibility-ର (ସୁସଙ୍ଗତିର) ସହିତ ଗୋଟିଏ compatible sense of understanding (ସୁସଙ୍ଗତ ପାରସ୍ପରିକ ବୁଝାମଣା) ଯଦି ଥାଏ। ତାହା ଯଦି ଦେଖିଶୁଣି କରା ହୁଏ, ମୋର ମନେ ହୁଏ, ହାରାହାରି ଭାବରେ ସ୍ୱାସ୍ଥ୍ୟ, ଆୟୁ, ବୁଦ୍ଧି, ବଳ, ବୀର୍ଯ୍ୟ, କର୍ମକ୍ଷମତା ବଢ଼ି ଯିବ। ତା ବ୍ୟତୀତ ଜାତୀୟ ସଂହତି ଓ ଐକ୍ୟର ଦିଗ ଦେଇ ଲାଭ ହେବ। ବଙ୍ଗାଳୀ, ବିହାରୀ, ଓଡ଼ିଆ, ଅସମୀୟ, ମାନ୍ଦ୍ରାଜୀ, ଗୁଜରାଟି, ମରାଠୀ ଇତ୍ୟାଦିଙ୍କ ମଧ୍ୟରେ ଯଦି ବିଧିମାଫିକ୍ ବୈବାହିକ ସମ୍ପର୍କ ସ୍ଥାପିତ ହୁଏ, ତାହେଲେ ପରସ୍ପର ପରସ୍ପରକୁ ଆହୁରି ଭଲପାଇବାକୁ ଓ ଶ୍ରଦ୍ଧା କରିବାକୁ ଶିଖିବେ। ପରସ୍ପର ପରସ୍ପରର ଭାଷା ମଧ୍ୟ ଅନେକ ପରିମାଣରେ ଶିଖି ପାରିବେ, ଏବଂ ସେଥିରେ ପ୍ରତ୍ୟେକ ପ୍ରଦେଶର ଭାଷା ହିଁ ସମୃଦ୍ଧ ହୋଇ ଉଠି ପାରିବ। ...ସମାଜର ପ୍ରଧାନ ଯେଉଁମାନେ, ସେମାନଙ୍କର ସବୁ ସମୟରେ ଭାବିବା ଦରକାର, ଚେଷ୍ଟା କରିବା ଦରକାର – ସମାଜରେ କିପରି ବୈଶିଷ୍ଟ୍ୟ ସମନ୍ୱିତ–ସଂହତି ବୃଦ୍ଧି ପାଇବ। ମଣିଷର ପ୍ରକୃତ ମଙ୍ଗଳର କଥା କିଏ ଭାବେ? ବେଶୀ ଭାଗ ଖିଆଲ ମାଫିକ ଭାଷାର ବିସ୍ଫୋରଣ କରି ଶସ୍ତାରେ ନାମ କିଣାର ମତଲବ ଦେଖିବାକୁ ପାଏ।

ଆ.ପ୍ର. ୪/୨୭.୧୨.୧୯୪୨

## ।। ସୁଜନନ ଯଦି ନ ହୁଏ କଣ ହେବ ।।

ଭଲ ବିବାହ, ଭଲ ଜନ୍ମ ଓ ଭଲ ଶିକ୍ଷା ଏହି ତିନୋଟିର ସମାବେଶ ଦରକାର। ଶିକ୍ଷା-ଦୀକ୍ଷାର ବ୍ୟବସ୍ଥା ଯେତେହିଁ ଥାଉନା କାହିଁକି, ସୁଜନନ ଯଦି ନ ହୁଏ, ଜନ୍ମଗତ

ସତ୍-ସଂସ୍କାର ଯଦି ନ ଥାଏ, ତାହେଲେ ସତ୍‌ଶିକ୍ଷା କମ୍‌ହିଁ ଗ୍ରହଣ କରିପାରେ। 'ମାତୃଦୋଷେଣ ଛନ୍ନତା, ପିତୃଦୋଷେଣ ମୂର୍ଖତା'। ଆ.ପ୍ର. ୫/୯.୧.୧୯୪୩

## ।। ବିବାହ ବ୍ୟାପାରରେ ପୁଅ-ଝିଅର ବଂଶ ଇତ୍ୟାଦି ଦେଖିବା କୁସଂସ୍କାର କି ନୁହେଁ।।

(ବିବାହ ବ୍ୟାପରରେ ପୂର୍ବେ ଆମ ଦେଶରେ ଯେପରି–କରି ପୁଅ ଓ ଝିଅର ବଂଶ ଇତ୍ୟାଦି ଦେଖା ଯାଉଥିଲା, ବର୍ତ୍ତମାନ ତାକୁ ଅନେକେ କୁସଂସ୍କାର କହନ୍ତି) ମନେ ତ କରିବେହିଁ, ତା ନହେଲେ ନିଜ ନିଜର ସର୍ବନାଶ କରିବେ କିପରି? ଏହା ଯେ କେତେ ବଡ଼ ବିଜ୍ଞାନ, ତାହା ଆଉ ବୁଝନ୍ତି ନାହିଁ। ଅତ୍ୟନ୍ତ ଦୁର୍ବୁଦ୍ଧି ନ ହେଲେ ମଣିଷ କେତେବେଳେ ମଧ୍ୟ ନିଜ ନିଜର ଶୁଭ ଐତିହ୍ୟ ଓ କୃଷ୍ଟିକୁ ଅବଜ୍ଞା କରେ ନାହିଁ। ଏହା ହେଲା inferiority (ହୀନତ୍ୱବୁଦ୍ଧି)-ର ଲକ୍ଷଣ। ଏହା ଦ୍ୱାରା ମଣିଷ କେତେବେଳେ ମଧ୍ୟ ବଡ଼ ହୋଇ ପାରେ ନା। ବଡ଼ ହେବାକୁ ହେଲେ ଦରକାର ଶ୍ରଦ୍ଧା। ଯିଏ ନିଜର କୃଷ୍ଟି ଓ ଐତିହ୍ୟକୁ ଶ୍ରଦ୍ଧା କରେ ନାହିଁ, ସେ ଅନ୍ୟର ଭଲଟା ମଧ୍ୟ ଗ୍ରହଣ କରିପାରେ ନାହିଁ। ଅନୁକରଣପ୍ରିୟ ହୋଇ ଅନ୍ୟର ଖରାପଟାହିଁ ଧରେ। ଯାହାର ନିଜର କୌଣସି ଆଶ୍ରୟ ନାହିଁ, ଆଦର୍ଶ ନାହିଁ, ବ୍ୟକ୍ତିତ୍ୱ ନାହିଁ, ଅନ୍ୟର ଖୋରାକ ହେବା ବ୍ୟତୀତ ତାର ଆଉ ଉପାୟ କଣ ଅଛି। ଏହି ହେଲା ପରାଧୀନତାର ଅସଲ ରୂପ। ଏହି servile attitude (ଦାସମନୋଭାବ) ନ ଯିବା ପର୍ଯ୍ୟନ୍ତ ମଣିଷ କେତେବେଳେବି ପ୍ରକୃତ ସ୍ୱାଧୀନତାର ଅଧିକାରୀ ହୋଇ ପାରେ ନା। ଆ.ପ୍ର. ୫/୯.୧.୧୯୪୩

## ।। ଜନ୍ମଗତଭାବରେ ଅପରାଧପ୍ରବଣ ଓ ଅଯୋଗ୍ୟମାନଙ୍କର କଣ ହେବ।।

ସାମାଜିକ ଓ ପାରିବେଶିକ ବ୍ୟବସ୍ଥାହିଁ ଏପରି କରିବା ଦରକାର ଯାହାଦ୍ୱାରା ମଣିଷ ଅପରାଧ କରିବାର ସୁଯୋଗ କମ୍ ପାଏ। ସମାଜରେ ବିବାହାଦି ଯଦି ଠିକ୍ ଭାବରେ ହୁଏ, ମଣିଷର ଶିକ୍ଷା, ଦୀକ୍ଷା ଓ ଜୀବିକାର ବ୍ୟବସ୍ଥା ଯଦି ସୁଷ୍ଠୁ ହୁଏ, ଅପରାଧପ୍ରବଣ ମନୋବୃତ୍ତି ଯେଉଁମାନଙ୍କ ଭିତରେ ଲକ୍ଷ୍ୟ କରାଯାଏ, ସେମାନଙ୍କୁ ଯଦି ଏପରି କାର୍ଯ୍ୟକର୍ମ ଦେଇ ଏହିପରି ପରିବେଶର ଭିତରେ ପକାଇ ରଖାଯାଏ – ଯେଉଁଠାରେ ସେମାନେ ଏହି ପ୍ରବୃତ୍ତି-ପରିଚାଳନାର ସୁଯୋଗ କମ୍‌ହିଁ ପାଇବେ, ତାହେଲେ କିନ୍ତୁ

ଶାସ୍ତି ନ ଦେଇ ମଧ୍ୟ ସେମାନଙ୍କର ସଂଶୋଧନ ହୋଇପାରେ। ...ମୋର ତ ମନେ ହୁଏ—ଜନ୍ମଗତଭାବରେ ଅପରାଧପ୍ରବଣ ଓ ଅଯୋଗ୍ୟ ଯେଉଁମାନେ, ସେମାନଙ୍କର ବଂଶ ବିସ୍ତାର କରିବାର ସୁଯୋଗ ନ ରହିବା ଭଲ। ସୁବିବାହ ଓ ସୁଜନନ ଯଦି ଦେଶରେ ନ ହୁଏ, ତାହେଲେ ସାରା ଦେଶଟାକୁ ଜେଲଖାନା କରିଲେ ମଧ୍ୟ ନିସ୍ତାର ମିଳିବ ନାହିଁ। ଆ.ପ୍ର. ୫/୧୦.୫.୧୯୪୩

## ॥ ପୁରୁଷମାନଙ୍କର ବେଶୀ ଇଷ୍ଟ-ଝୋଙ୍କା ହେବା ଦରକାର କାହିଁକି ॥

ଯେଉଁ training (ଶିକ୍ଷା) ନେଇ ଗାର୍ହସ୍ଥ୍ୟାଶ୍ରମରେ ପ୍ରବେଶ କରିବାକୁ ହୁଏ, ସେ training (ଶିକ୍ଷା)-ହିଁ ଆମ୍ଭମାନଙ୍କର ନିଆହୁଏ ନାହିଁ। ମଣିଷ ଗୁରୁଗ୍ରହଣ ନ କରିଲେ, ନିଷ୍ଠାସହକାରେ ଗୁରୁସେବା ନ-କରିଲେ ଇନ୍ଦ୍ରିୟଗୁଡ଼ିକ ଆୟତ୍ତକୁ ଆସେ ନାହିଁ। ସେହି ଅବସ୍ଥାରେ ବିବାହ କରିଲେ ସ୍ତ୍ରୀ-ମୁଖୀ ହୋଇପଡ଼େ। ସ୍ୱାମୀ ଯେଉଁଠାରେ ସ୍ତ୍ରୀ-ମୁଖୀ, ସ୍ତ୍ରୀ ସେଠାରେ ସ୍ୱାମୀ-ମୁଖୀ ହେବାକୁ ଦରକାର ମନେ କରେ ନା, —ବରଂ ଖିଆଲମୁଖୀ ହୁଏ ଏବଂ ସ୍ୱାମୀଙ୍କୁ ମଧ୍ୟ ନିଜର ଖିଆଲର ଇନ୍ଧନ କରି ନିଏ। ସେଥିରେ ସଂସାରରେ ସୁଖ ହୁଏ ନା, ଛୁଆପିଲା ମଧ୍ୟ ଭଲ ହୁଅନ୍ତି ନାହିଁ। ସଂସାର ଭଲ କରି କରିବା ପାଇଁ ହିଁ ପୁରୁଷମାନଙ୍କୁ ପ୍ରବୃତ୍ତି-ଝୋଙ୍କା ଠାରୁ ଇଷ୍ଟ-ଝୋଙ୍କା ବେଶୀ ହେବା ଦରକାର। କୌଣସି ଜିନିଷର above-ରେ (ଊର୍ଦ୍ଧ୍ୱରେ) ନ ରହିଲେ ତା control (ନିୟନ୍ତ୍ରଣ) ବା enjoy (ଉପଭୋଗ) କରା ଯାଏ ନାହିଁ।

ଧର, ତୁମେ ପହଁରିବାକୁ ଜାଣ ନାହିଁ, ବେଶୀ ଜଳ ମଧ୍ୟରେ ପଡ଼ିଲେ ହିଁ ତୁମେ ବୁଡି ଯିବ, ସେଥିରେ କଣ ତୁମେ ଅଥଳ ଜଳ ମଧ୍ୟରେ ପଡ଼ି ଆନନ୍ଦ ପାଅ ? ପହଁରା ଜାଣିଲେ କିନ୍ତୁ ଗଭୀର ଜଳ ପାଇଲେ ତୁମର ଆନନ୍ଦ କହିଲେ ନ ସରେ। କାରଣ, ସେତେବେଳେ ଜଳ ତୁମର ଅଧୀନ, ତୁମେ ଜଳର ଅଧୀନ ନୁହଁ। ଇଷ୍ଟଙ୍କୁ ଜାବୁଡ଼ି ଧରି ତୁମେ ଯେତେ ପରିମାଣରେ ପ୍ରବୃତ୍ତି ଉପରେ ରହି ପାରିବ, ସେତେହିଁ ସଂସାର ତୁମର ଅଧୀନରେ ରହିବ, ଆଉ ତୁମେ ସଂସାରରେ ରହି ମଧ୍ୟ କିଛିଟା ତାର ଊର୍ଦ୍ଧ୍ୱରେ ରହିପାରିବ। ସଂସାର ନେଇ ସେତେବେଳେ ତୁମେ ବିବ୍ରତ ହେବ ନାହିଁ, ଅଥଚ ଯାହା କରଣୀୟ ତା କରିବାର କୌଣସି ବ୍ୟାଘାତ ହେବ ନାହିଁ।

(ସେଥି ପାଇଁ) ଇଷ୍ଟଙ୍କୁ ଜୀବନରେ ସର୍ବପ୍ରଥମ ଓ ସର୍ବପ୍ରଧାନ କରି ରଖିବାକୁ ହେବ। ଆଉ ଯାହା କିଛିର ସ୍ଥାନ ରହିବ ତାଙ୍କ ପରେ। ସେତେବେଳେ ଯାହା-କିଛି ହେବ ଇଷ୍ଟାର୍ଥେ। ସଂସାର କରିବାକୁ ଯାଇ ମଧ୍ୟ ଲକ୍ଷ୍ୟ ରହିବ — ତା ଭିତର ଦେଇ

ଇଷ୍ଟାର୍ଥ କେତେ ପରିମାଣରେ ପରିପୂରିତ ହେଉଛି, — ତା କେତେ ପରିମାଣରେ ଇଷ୍ଟଙ୍କର ହୋଇ ଉଠିଛି। ସଂସାରର ଭିତର-ଦେଇ ଯଦି ଇଷ୍ଟାର୍ଥ-ସାଧନ ନ-ହୁଏ, ତାହେଲେ ସେ-ସଂସାର କରିବା ତ ଭୂତର ବେଗାରି ଖଟିବା। ଜୀବନହିଁ କୁହ, ସଂସାରହିଁ କୁହ, ସବୁ-କିଛିର ସ୍ୱାର୍ଥ ମଧ୍ୟ ଇଷ୍ଟ, ପରମାର୍ଥ ମଧ୍ୟ ଇଷ୍ଟ। ଆମେ ଜାଣୁ ବା ନ ଜାଣୁ, ବୁଝୁ ବା ନ ବୁଝୁ — ଏହା ହେଲା fact (ବାସ୍ତବ ତଥ୍ୟ)। ଏହା ଖିଆଲରେ ରହିଲେ ଆଉ କିଛି ଭାବନା ନାହିଁ। ଆ.ପ୍ର. ୫/୨୧.୫.୧୯୪୩

## ॥ କେତେବେଳେ ସୁଫଳ କମ୍ ଫଳିବ ॥

ବିବାହ ମଧ୍ୟରେ ଯଦି ଗୋଳମାଳ ପ୍ରବେଶ କରେ, ତାହେଲେ ଜାତିର ଶିରରେ ସର୍ପାଘାତ ହୋଇ ଯିବ, ତାପରେ ଆଉ ଓଝା-ଗିରି କରିବାର ସ୍ଥାନ ରହିବ ନାହିଁ। ଭଲ ମଣିଷ ହିଁ ଜନ୍ମିବ ନାହିଁ। ବାହାରେ ଦେଖିବାକୁ ମଣିଷର ଚେହେରା ଅଥଚ ଭିତରେ ଯଦି ମଣିଷର ସତ୍ତା ନ-ରହେ, ତାହେଲେ ସେମାନଙ୍କ ଉପରେ ଯେତେହିଁ ଋତ୍ୱିକତା କର-ନା-କାହିଁକି, ସେଥିରେ ସୁଫଳ କମ୍‌ହିଁ ଫଳିବ।

ଆ.ପ୍ର. ୫/୧୮.୭.୧୯୪୩

## ॥ ମାନସିକ ବ୍ୟାଧିଗ୍ରସ୍ତର ସଂଖ୍ୟା ବୃଦ୍ଧିର ପ୍ରତିକାର କଣ ॥

ମୋର ମନେ ହୁଏ, ପ୍ରତିକାରର କଥା ଭାବିବା ଆଗରୁ ଏହାର କାରଣର କଥା ଭାବିବାକୁ ହେବ। କାରଣ ଖୋଜିବାକୁ ଗଲେ ଦେଖିବାକୁ ପାଇବେ, ସେମାନେ weak nerve ଓ brain (ଦୁର୍ବଳ ସ୍ନାୟୁ ଓ ମସ୍ତିଷ୍କ) ନେଇ ଜନ୍ମିଛନ୍ତି। ଜୀବନ ସଂଗ୍ରାମର ଧକ୍କା ସହ୍ୟ କରିବା ପରି କ୍ଷମତା ସେମାନଙ୍କର ନାହିଁ। କିନ୍ତୁ ଏହି ଜନ୍ମଗତ ଦୁର୍ବଳତାର କାରଣ ଯଦି ବିଶ୍ଳେଷଣ କରା ଯାଏ, ତାହେଲେ ଦେଖା-ଯିବ, ହୁଏତ ସେମାନଙ୍କ ପିତାମାତାଙ୍କ ଭିତରେ ଗୋଳମାଳ ଅଛି, ନ-ହେଲେ ସେମାନଙ୍କର compatible marriage (ସୁସଙ୍ଗତ ବିବାହ) ହୋଇନାହିଁ। ତେଣୁ ବିବାହ ଯଦି ଠିକ୍-ଠିକ୍ ଭାବରେ ନ-ହୁଏ, ତାହେଲେ ଏହାର ପ୍ରତିକାର ହେବ ନାହିଁ। ତେଣୁ, ବିବାହ ଠିକ୍‌ଭାବରେ ଦେବାକୁ ଗଲେ ବଂଶଗୁଡ଼ିକର କୁଳାଚାର, ଐତିହ୍ୟ, ସଂସ୍କାର ଓ ରକ୍ତଧାରା ଯେପରି ଠିକ୍ ରହେ, ତାର ବ୍ୟବସ୍ଥା କରିବାକୁ ହେବ। ପୁଣି, ବିବାହ ଆଗରୁ ପୁରୁଷ ଓ ନାରୀର ବଂଶଗତ ଓ ପ୍ରକୃତିଗତ ସଙ୍ଗତି ଦେଖିବାକୁ ହେବ। ଏହିସବୁ କରିବାକୁ

ଗଲେ ହିଁ ମୋର ମନେ ହୁଏ, ଯେଉଁ–ନାମରେ କରନ୍ତୁ hereditary grouping (ବଂଶଗତ ବିଭାଗ) introduce (ପ୍ରବର୍ତ୍ତନ) କରିବା ଦରକାର।

ଆ.ପ୍ର. ୫/୫.୧୦.୧୯୪୩

## ।। ବିହିତ ବିବାହ ଓ ସୁପ୍ରଜନନ ଏତେ ପ୍ରୟୋଜନ କାହିଁକି ।।

ଜନ୍ମଗତ ସମ୍ପଦ ଯାହାର ଯେପରି, ତାର ସମ୍ଭାବନା ମଧ୍ୟ ସେହିପରି। ଅନୁଶୀଳନର ଭିତର-ଦେଇ ଭିତରର ସମ୍ଭାବନା ବାସ୍ତବରେ ରୂପ ନିଏ। ଭିତରେ ସମ୍ଭାବନା ଯଦି ନ-ଥାଏ ତାହେଲେ ହୁଏ ନାହିଁ। ସେଥିପାଇଁ ବିହିତ ବିବାହ ଓ ସୁପ୍ରଜନନ ଏତେ ପ୍ରୟୋଜନ। ଆ.ପ୍ର. ୫/୫.୧୦.୧୯୪୩

## ।। ଇଷ୍ଟକୃଷ୍ଟିର ଧାରା ଜାଗ୍ରତ ଓ ଜୀବନ୍ତ ରଖିବାକୁ ହୁଏ କାହିଁକି ।।

ମଣିଷ ନ-ରହିଲେ, କେତେଗୁଡ଼ିଏ ବଡ଼-ବଡ଼ ପ୍ରତିଷ୍ଠାନ ଗଢ଼ିଲେବି କାମ ହୁଏ ନାହିଁ। ମଣିଷ ଠିକ୍ ହେଲେ ଆଉ ସବୁ ଆପେ ଆପେ ହୁଏ। ଦୁଃଖ କଷ୍ଟ ସହି ମଧ୍ୟ ଯେଉଁମାନେ ହସ ହସ ମୁହଁରେ ଲାଗି ରହନ୍ତି, ଆନନ୍ଦର ସହିତ (ଇଷ୍ଟଙ୍କର) ନିର୍ଦ୍ଦେଶଗୁଡ଼ିକ ପାଳନ କରି ଚାଲନ୍ତି, ସେମାନଙ୍କର ଏହାରି ଭିତର-ଦେଇ ଅନେକ କାମ ହୋଇ ଯାଏ। ଆଉ–ଏକ ବଡ଼ ଜିନିଷ ହେଲା — ଭଲ-ଭଲ ପରିବାରଗୁଡ଼ିକ ମଧ୍ୟରେ ଇଷ୍ଟ କୃଷ୍ଟିର ଧାରାଟା ବଂଶପରମ୍ପରାକ୍ରମେ ଜାଗ୍ରତ ଓ ଜୀବନ୍ତ କରି ରଖିବା – ଆଚାରରେ, ଆଚରଣରେ, ଅନୁଷ୍ଠାନରେ — ଗୋଟିଏ କଥାରେ ସୁସଂସ୍କୃତିର ଅନୁନୟନରେ। ଏହାରି ଭିତର-ଦେଇ କ୍ରମାନ୍ୱୟରେ ଭଲ-ଭଲ ମଣିଷର ଜନ୍ମ ହେବାର ସମ୍ଭାବନା ଥାଏ ଏବଂ ଏହି ପାରିବାରିକ ଆବହାଓୟାରେ ସେମାନଙ୍କର ମଣିଷ ହୋଇ ଗଢ଼ି ଉଠଇବାର ସୁଯୋଗ ହୁଏ। କେତେଗୁଡ଼ିଏ ପରିବାର ଭିତରେ ଆଦର୍ଶପ୍ରାଣତା ଯଦି ଗଜେଇ ଉଠେ, ତାହେଲେ ଆଉ ଭାବନା ନାହିଁ। ...ବେଶୀ ମଣିଷ ଦରକାର ନାହିଁ। ଅଳ୍ପ କିଛିଜଣ ମଣିଷ ହେଲେ ଦୁନିଆ ଓଲଟପାଲଟ କରି ଦେଇ ପାରନ୍ତି। ଆ.ପ୍ର. ୫/୫.୧୦.୧୯୪୩

## ।। ସୁପ୍ରଜନନ ପାଇଁ କଣ କରିବାକୁ ହେବ ।।

ବିବାହଗୁଡ଼ିକୁ ଭଲ-କରି ଦେଖି-ଶୁଣି ଦେବାକୁ ହେବ। ବଂଶ, ବିଦ୍ୟା, ସ୍ୱାସ୍ଥ୍ୟ, ଆୟୁ, ଇଷ୍ଟପ୍ରାଣତା, ଚରିତ୍ର, ପ୍ରକୃତି, ବୟସ, ଯୋଗ୍ୟତା ଇତ୍ୟାଦି ବିଷୟରେ ମେଳ-

କରି ପୁଅଝିଅର ବିବାହ ଦେବାକୁ ହୁଏ। ପ୍ରାପ୍ତବୟସ୍କା ହେଲେ ସାଧାରଣତଃ ବିବାହ ଆଗରୁ ଝିଅ ପାଖରୁ ବୁଝି ଯେଉଁ – ପୁଅ ପ୍ରତି ତାର ଶ୍ରଦ୍ଧା ହୁଏ ଏପରି ସ୍ଥାନରେ ବିବାହ ଦେବା ଭଲ। ଶାସ୍ତ୍ରରେ ଯେଉଁ ମନୋବୃତ୍ତ୍ୟନୁସାରିଣୀ ସ୍ତ୍ରୀର କଥା ଅଛି, ଝିଅର ମତ ନେଇ ବିବାହ ଦେଲେ ତାହା ଅନେକ ପରିମାଣରେ ସମ୍ଭବ ହୋଇପାରେ। କାରଣ, ଯାହାକୁ ସେ ସହି-ବୋହି ପୋଷଣ କରି ତୃପ୍ତି ପାଏ ଓ ନିଜକୁ ସାର୍ଥକ ବୋଧ କରେ, ତାକୁ ହିଁ ସେ ପସନ୍ଦ କରିବ। ପୁଣି, ଝିଅମାନଙ୍କୁ ଭଲ-କରି training (ଶିକ୍ଷା) ଦେବାକୁ ହୁଏ — ବିବାହ ବ୍ୟାପାରଟା କଣ ଏବଂ କିଭଳି ପୁରୁଷ ସ୍ୱାମୀ ହେବାର ଯୋଗ୍ୟ ଇତ୍ୟାଦି। ଅବଶ୍ୟ, ବିବାହ ଆଗରୁ କାହାକୁ ଯେପରି ସ୍ୱାମୀ ବୋଲି ନ-ଭାବେ, ବା ଏହି-ପ୍ରକାର କଳ୍ପନା କରି କାହାରି ସହିତ ମିଳାମିଶା ନ-କରେ। ଏହା ଭିତର-ଦେଇ କ୍ଷତିର ସମ୍ଭାବନା ଥାଏ। ...ଗୋଟିଏ ଛୋଟ କଥା ଝିଅମାନଙ୍କ ମୁଣ୍ଡରେ ପ୍ରବେଶ କରାଇ ଦେବାକୁ ହୁଏ। ତାହା ହେଉଛି ଏହା — ଯେଉଁ-ପୁରୁଷ ନାରୀମୁଖୀ ଏବଂ ଝିଅମାନଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ଘୁରି ବୁଲେ, ତାକୁ କେତେବେଳେ ମଧ୍ୟ ସ୍ୱାମୀ-ହିସାବରେ ନିର୍ବାଚନ କରିବ ନାହିଁ। ତାର ପ୍ରଧାନ ସମ୍ପଦ ହେବା ଦରକାର ଆଦର୍ଶପ୍ରାଣତା। ଆଉ କୁଳଶୀଳରେ ପୁରୁଷ ଉନ୍ନତ, କିମ୍ବା ଅନ୍ତତଃ ସଦୃଶ ହେବା ଦରକାର। ନିମ୍ନକୁଳଶୀଳସମ୍ପନ୍ନ ପୁରୁଷକୁ ବିବାହ କରିଲେ ଯେ ତାର ହିଁ କ୍ଷତି — ଏହା ବୁଝାଇ ଦେବା ଦରକାର। କ୍ଷତି ଏହି ଦିଗଦେଇ ଯେ ତାର ପିତୃପୁରୁଷାଗତ ସଂସ୍କାର ସ୍ୱାମୀର ମାଧ୍ୟମରେ ପରିପୂରିତ ନ-ହୋଇ ବରଂ ଅବଦଳିତ ହୁଏ ଏବଂ ତା ଫଳରେ ତାର ସନ୍ତାନସନ୍ତତି ବିକୃତ-ପ୍ରକୃତିରହିଁ ହୋଇ ଥାଏ। ଫଳକଥା, ସର୍ବପ୍ରକାର ପ୍ରତିଲୋମ–ସଂଶ୍ରବ ଯେପରି ରହିତ ହୁଏ, ତାର ବ୍ୟବସ୍ଥା କରିବା ଦରକାର। ସବର୍ଣ୍ଣ ଓ ଅନୁଲୋମ ବିବାହ ଯେଗୁଡ଼ିକ ହେବ, ସେ ଗୁଡ଼ିକ ଯେପରି ବିଧିମାଫିକ୍ ହୁଏ, ତାର ବ୍ୟବସ୍ଥା କରିବାକୁ ହୁଏ। ଘରେ-ଘରେ ଏସବୁ ବିଷୟରେ ଯାଜନ କରିବା ଦରକାର। ଆଗରୁ ଯାହା ହୋଇଛି ତାହା ହୋଇଛି, ଏବେ ଯେପରି ଆଉ ଗୋଟିଏ ବି ବିବାହ ଅବିହିତ ରକମରେ ନ-ହୁଏ। ବିବାହାଦି ଠିକ୍‌ଭାବରେ ହେଲେ ତା ଭିତର-ଦେଇ ଅନେକ ଭଲ ମଣିଷ ଜନ୍ମ ନେବେ।

ଆ.ପ୍ର. ୫/୨୯.୧୨.୧୯୪୩

## ।। ପଣପ୍ରଥା ସମ୍ବନ୍ଧରେ କଣ କରିବେ ।।

ପଣପ୍ରଥା ରହିବା ଭଲ ନୁହେଁ। ଏହା ଯେପରି ନ-ରହେ, ସେହିପରି ଭାବରେ ଲୋକମତ ଗଠନ କରିବା ଦରକାର। ସତ୍‌ସଙ୍ଗୀ ପୁଅର ବିବାହ ସମୟରେ ଯଦି

କୌଣସି ଦାବିଦାଓ୍ୱା ନ କରେ, ଏବଂ ଏହା ସହିତ ଯାଜନ ଓ ଆଳାପ-ଆଲୋଚନା ଯଦି ଚାଲୁ ରଖାଯାଏ, ତାହେଲେ ଏହି ରକମଟା ଚରେଇ ଯାଇ ପାରେ।

ଆ.ପ୍ର. ୫/୨୯.୧୨.୧୯୪୩

## ।। ଗାର୍ହସ୍ଥ୍ୟ-ଆଶ୍ରମରେ ପ୍ରବେଶ ନ-କଲେ କଣ ହୁଏ ।।

୨/୪ ଜଣ ହୁଏତ ଏପରି ରହିପାରନ୍ତି, ଯେଉଁମାନଙ୍କ ପକ୍ଷରେ ଚିରକୁମାର ରହି ନୈଷ୍ଠିକ ବ୍ରହ୍ମଚାରୀର ଜୀବନ ଯାପନ କରିବାହିଁ ଶ୍ରେୟ। କିନ୍ତୁ ତାହା ସାଧାରଣ ନିୟମର ବ୍ୟତିକ୍ରମ। ...ଗାର୍ହସ୍ଥ୍ୟ ଆଶ୍ରମରେ ପ୍ରବେଶ ନ-କରିଲେ ସୁପ୍ରଜନନର ସମ୍ଭାବନା ନଷ୍ଟ ହୋଇ ଯାଏ, ଗୋଟିଏ ବଂଶର ଉନ୍ନତି-ପ୍ରଗତିର ଧାରାଟା ବନ୍ଦ ହୋଇ ଗଲେ, ତାହା ଯେ ପ୍ରକାରାନ୍ତରେ ବ୍ୟକ୍ତିର, ବଂଶର ଓ ସମାଜର ଅଧୋଗତିର କାରଣ ହୋଇ ଛିଡ଼ା ହୁଏ, ସେ ବିଷୟରେ କି କୌଣସି ସନ୍ଦେହ ଅଛି ? କିଏ ଜାଣେ କାହାର ସନ୍ତାନ-ଧାରାର ଭିତର-ଦେଇ କାଳେ କେତେ ବଡ଼ ଜଣେ ବିରାଟ ମଣିଷର ଆବିର୍ଭାବ ହୋଇ ପାରେ ? ସେ ଶୁଭ ସମ୍ଭାବନାକୁ କଣ ନଷ୍ଟ କରିବା ଭଲ ? ସ୍ୱାର୍ଥପର ପରି କେବଳ ନିଜର କାମ ଶେଷ ହେଲେ ହେବ ନାହିଁ, ସମାଜସଂସ୍ଥିତିର କଥା ଭାବିବାକୁ ହେବ, ସମାଜର ଭାବୀ କଲ୍ୟାଣର କଥା ଭାବିବାକୁ ହେବ। ଏ-ଭାବନା ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାର ସହିତ ଜଡ଼ିତ। ସ୍ୱାର୍ଥପର ଖାମଖିଆଲିରେ ବା ଝାମେଲା ଏଡ଼ାଇବା ପାଇଁ ଏ-ଭାବନାରୁ ବିଚ୍ୟୁତ ହେଲେ ଉନ୍ନତିର ବଦଳରେ ଅବନତି, ବିସ୍ତାରର ବଦଳରେ ସଂକୀର୍ଣ୍ଣତା ହିଁ ଆସିବା ସମ୍ଭବ।

ଆ.ପ୍ର. ୫/୫.୧.୧୯୪୪

## ।। ଝିଅର ବିବାହ ଖରାପ ବଂଶରେ ଦେବ ନାହିଁ କାହିଁକି ।।

ଝିଅ କେତେବେଳେ ଖରାପ ବଂଶରେ ଦେବା ଉଚିତ ନୁହେଁ। କ୍ଷେତ ଯେତେହିଁ ଭଲ ହେଉ-ନା-କାହିଁକି, ବିହନ ଯଦି କ୍ଷେତ୍ରର ଉପଯୁକ୍ତ ନ-ହୁଏ, ତାହେଲେ ଯେପରି ଫସଲ ଭଲ ହେବ ନାହିଁ, ସେହିପରି ଝିଅ ଯେତେହିଁ ଭଲ-ହେଉ-ନା କାହିଁକି, ପୁଅ ଯଦି ତାର ଯୋଗ୍ୟ ନ-ହୁଏ, ତାହେଲେ କିନ୍ତୁ ପିଲା-ଛୁଆ ଭଲ ହୁଏ ନାହିଁ। ଝିଅ ମଧ୍ୟ ସେ-ପୁଅ ସହ ଘର କରି ସୁଖ ପାଏ ନା।

ଆ.ପ୍ର. ୫/୫.୧.୧୯୪୪

## ।। ବଂଶମର୍ଯ୍ୟାଦାବୋଧ ନ ରହିଲେ କଣ ହୁଏ ।।

(ଆଜିକାଲି ବଂଶମର୍ଯ୍ୟାଦାର କଥା କହିଲେ ଅନେକେ ଯେ ତାହାକୁ ସଂକୀର୍ଣ୍ଣତାର ପରିଚାୟକ ବୋଲି ମନେ କରନ୍ତି) ତା ମାନେ, ପିତୃପୁରୁଷର କଥା କହି ବା ଭାବି ଗୌରବ ବୋଧ କରନ୍ତି ନାହିଁ। ଉସ୍-ସମ୍ବନ୍ଧରେ ଯେଉଁମାନଙ୍କର ଏହି ଅବଜ୍ଞା, ସେମାନେ ଭଗବତ୍‌ଭକ୍ତ ହେବେ ବା ଦେଶପ୍ରେମିକ ହେବେ ବା ଅନ୍ୟକୁ ନାର୍ଯ୍ୟ ମର୍ଯ୍ୟାଦା ଦେଇ ଚାଲିବେ, ତାହା ବଡ଼ କଠିନ କଥା। ଯିଏ ପିତୃପୁରୁଷଙ୍କର ମର୍ଯ୍ୟାଦା ବୁଝେନା, ସେ ନିଜର ମର୍ଯ୍ୟାଦା ମଧ୍ୟ ବୁଝେନା, ଆଉ ଯିଏ ନିଜର ମର୍ଯ୍ୟାଦା ବୁଝେ ନା, ସେ ଅନ୍ୟର ମର୍ଯ୍ୟାଦା ମଧ୍ୟ ବୁଝେନା। ମଣିଷ ଭିତରେ କେତେଗୁଡ଼ିଏ basic sentiment (ମୌଳିକ ଭାବାନୁକମ୍ପିତା) ଥାଏ, ସେହିଗୁଡ଼ିକୁ ଆଶ୍ରୟ କରି ଆହୁରି ବହୁତ healthy sentiment (ଜୀବନୀୟ ଭାବାନୁକମ୍ପିତା) ଦାନା ବାନ୍ଧି ଉଠେ। ବଂଶମର୍ଯ୍ୟାଦାବୋଧ, ପିତୃଭକ୍ତି, ମାତୃଭକ୍ତି ଇତ୍ୟାଦି ହେଲା basic sentiment (ମୌଳିକ ଭାବାନୁକମ୍ପିତା)-ର ଅନ୍ତର୍ଗତ। ଏ ଗୁଡ଼ିକ ନଷ୍ଟ ହୋଇ ଗଲେ ଅନ୍ୟ ସଦ୍‌ଗୁଣଗୁଡ଼ିକ ଛିଡ଼ା ହେବ କାହା ଉପରେ ? କୌଣସି-କିଛି ଗଜାଇ ତୋଳିବାକୁ ହେଲେ ତା ପାଇଁ ଜମିର ଆବଶ୍ୟକତା ଅଛି ତ !

ଆ.ପ୍ର. ୫/୫.୧.୧୯୪୪

## ।। ଅର୍ଥନୈତିକ ସମସ୍ୟାର ସମାଧାନର ମୂଳ କଥା କଣ ।।

ଆଦର୍ଶପ୍ରାଣ ହେବା ମଧ୍ୟରେହିଁ ଅଛି ବଞ୍ଚିବା ବଢ଼ିବା ପଥରେ ଯେତେ ପ୍ରକାର ସମସ୍ୟା ଅଛି, ସେଗୁଡ଼ିକର ସମାଧାନ କରି ଚାଲିବା। ତାହାକୁ କହନ୍ତି ଧର୍ମ, ତେଣୁ ତାହା ବ୍ୟକ୍ତିମାତ୍ରେରହିଁ ସମ୍ବର୍ଦ୍ଧନୀ କଲ୍ୟାଣ-ଉସ୍। ଧର୍ମର ସହିତ ଜଡ଼ିତ ଅଛି ବୈଶିଷ୍ଟ୍ୟ-ସମ୍ମତ ଶିକ୍ଷାରେ ଉପଯୁକ୍ତ ହୋଇ ସମୃଦ୍ଧିର ପଥରେ ଚାଲିବା। ଆଉ, ତାର ଅପରିହାର୍ଯ୍ୟ ଅଙ୍ଗ ହେଲା — କୃଷି, ଶିଳ୍ପ, ବ୍ୟବସାୟ, ବାଣିଜ୍ୟ ଇତ୍ୟାଦିର ଉତ୍କର୍ଷ-ସାଧନ। ତେଣୁ ଅର୍ଥନୈତିକ ସମସ୍ୟାକୁ ବିଚ୍ଛିନ୍ନଭାବରେ ଭାବିଲେ ଚଳିବ ନାହିଁ। ଅର୍ଥନୈତିକ ସମସ୍ୟାର ସମାଧାନ କରିବାକୁ ଗଲେ ଦରକାର ସୁଷ୍ଠୁ ଯୋଗ୍ୟତା। ଆଉ, ଏହି ଯୋଗ୍ୟତା ଲାଭ କରିବାକୁ ଗଲେ ସୁପ୍ରଜନନ ଦରକାର। ସୁପ୍ରଜନନର ଭିତ୍ତି ହିସାବରେ ସୁବିବାହ ଦରକାର। ସବୁ ଦିଗକୁ ସମାନ ତାଳରେ ନଜର ଦେବାକୁ ହେବ। ନ ହେଲେ ଘରେ କୁହ ବା ବାହାରେ କୁହ – ଅସମୀଚୀନ ସୁପ୍ରତିଷ୍ଠ ହୋଇ, — ବର୍ଦ୍ଧନାର କୃଷ୍ଟି ନେଇ,

ତାର ପରିଚର୍ଯ୍ୟା କରି ପ୍ରତ୍ୟେକ ବ୍ୟଷ୍ଟିର ଉନ୍ନତି କରିବା ସମ୍ଭବ ହୋଇ ଉଠିବ କି ନା ସନ୍ଦେହ। ଦୁଃଖ-ଦୁର୍ଦ୍ଦଶାର ଝଡ଼-ଝାପଟା ଆସିଲେ, ତା ହାତରୁ ଆତ୍ମରକ୍ଷା କରିବା କଠିନ ହୋଇ ଉଠିବ। ଯାହା କରିବ କର — ଅନ୍ୟର ଆହାର୍ଯ୍ୟ ହେବା ବ୍ୟତୀତ ଉପାୟ ରହିବ ନାହିଁ। ଆ.ପ୍ର. ୫/୬.୧.୧୯୪୪

## ॥ ବିବାହ-ବିଚ୍ଛେଦ ପ୍ରଥାର ପରିଣାମ କିପରି ଭୟାବହ ହେବ ॥

(ପାଶ୍ଚାତ୍ୟରେ) ସେମାନେ ଯାହା କରି ପସ୍ତାଉଛନ୍ତି, ଆମ୍ଭେମାନେ ତା ନ କଲେ ଚଳିବ କିପରି ? ଯେଉଁଗୁଡ଼ିକ ଆମ ସମାଜ ପକ୍ଷରେ ଗୌରବର ବିଷୟ, ସେହିଗୁଡ଼ିକୁ ନେଇ ଆମେ ବିବ୍ରତ ଓ ଲଜ୍ଜିତ ବୋଧ କରୁ, ଏହା ଯେ କେତେ ପରିମାଣରେ ଅନ୍ତଃସାରଶୂନ୍ୟତା ଓ ଅଦୂରଦର୍ଶିତାର ପରିଚାୟକ ତାହା କହି ଶେଷ କରା ଯାଏ ନାହିଁ। ବିବାହ-ବିଚ୍ଛେଦ ପ୍ରଥା ଯଦି ଚାଲୁ ହୁଏ, ତାର ପରିଣାମ ଅତ୍ୟନ୍ତ ଭୟାବହ। ପରିବାରରେ ଓ ସମାଜରେ ଏବେ ମଧ୍ୟ ଯେଉଁ ସୁଖଶାନ୍ତିଟିକକ ଅଛି, ତାହା ଆଉ ରହିବ ନାହିଁ। ପୁରୁଷ ଓ ନାରୀ ଯେଉଁଥିରେ ସୁସ୍ଥ ରହି ପାରନ୍ତି, ସ୍ୱସ୍ଥ ରହି ପାରନ୍ତି, ଆତ୍ମସ୍ଥ ରହି ପାରନ୍ତି, ତୃପ୍ତ ରହି ପାରନ୍ତି ଏବଂ ସ୍ୱ-ସ୍ୱ ସହଜାତ ସଂସ୍କାର-ଅନୁଯାୟୀ ଜୀବନ-ସଂଗ୍ରାମର ସବୁ ଘାତ-ପ୍ରତିଘାତ ସହ୍ୟ କରି ସତ୍ତାକୁ ଆପୂରିତ କରି ଚାଲି ପାରନ୍ତି, ସେହି ଅବଲମ୍ବନଟାହିଁ ନଷ୍ଟ ହୋଇ ଯିବ। ଚିରଦିନ ପାଇଁ ନାରୀର ସତୀତ୍ୱ ବିଦାୟ ନେବ। ଅଚ୍ଛେଦ୍ୟ ପ୍ରୀତି-ବନ୍ଧନର ବଦଳରେ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଆସିବ ସନ୍ଦେହ ଓ ଅବିଶ୍ୱାସ। କେହି ନିଜକୁ ନିରାପଦ ମନେ କରିବେ ନାହିଁ। କାମ-ଲାଲସାହିଁ ହେବ ପରସ୍ପରର ବନ୍ଧନର ଏକମାତ୍ର ସୂତ୍ର। ପରସ୍ପରକୁ ସହି-ବୋହି ସନ୍ତାନ-ସନ୍ତତି, ଆତ୍ମୀୟ-ସ୍ୱଜନ, ପରିବାର-ପରିବେଶ ସମସ୍ତଙ୍କ ପ୍ରତି ମମତାବଦ୍ଧ ହୋଇ ସାରା ଜୀବନ ମିଳିତ ସତ୍ତା ନେଇ ସଂସାର କରିବାର ପରିକଳ୍ପନା ଉଭେଇ ଯିବ, ତେଣୁ ଭଲପାଇବା ଗଜାଇବାର ସୁଯୋଗ ପାଇବ କମ୍। କାରଣ ପାରସ୍ପରିକ ବାସ୍ତବ ଅନୁକମ୍ପାର ଭିତର ଦେଇ ଯେଉଁ ସ୍ୱତଃସ୍ୱେଚ୍ଛ ପ୍ରୀତି ସହଜ ହୋଇ ଉଠେ, ତାର ଭିତ୍ତିଟା ହିଁ ଅଲଗା ହୋଇ ଯିବ। ସାମାନ୍ୟ ଦୁଃଖ, ଦାରିଦ୍ର୍ୟ, ମନୋମାଳିନ୍ୟ, ସଙ୍କଟ ଓ ସଂକ୍ଷୋଭର ସମୟରେ ମନେ ହେବ ବିବାହ ବନ୍ଧନରୁ ନିଷ୍କୃତ ପାଇବା କଥା। ଏକ କଥାରେ ଭଲପାଇବା, ଶ୍ରଦ୍ଧା ଓ ପ୍ରୀତିର ଆପ୍ରାଣ ଉନ୍ମାଦନା, ଯାହା ଅନ୍ତକରଣକୁ ସୁସଂସ୍ଥ କରି ସୁସନ୍ଦୀପନାରେ ସ୍ତ୍ରୀ-ପୁରୁଷର ସତ୍ତାକୁ ଐକ୍ୟସମ୍ବନ୍ଧ କରି ତୋଳେ, ତାର କର୍ମ ତ ନିଃଶେଷ ହେବାକୁ ଲାଗିବ। ତା ବ୍ୟତୀତ ଏପରି ଦିନ ଆସି ପାରେ, ଯେତେବେଳେ ହୁଏତ ମଣିଷ ଜାଣିବ ନାହିଁ,

କେହି ତା ର ମା ଅଛି, ବା ସ୍ତ୍ରୀ, କନ୍ୟା, ଭଗିନୀ ଇତ୍ୟାଦି ବୋଲି କେହି ଅଛି। ସ୍ନେହପ୍ରୀତିର ବନ୍ଧନ ବା ଆଶ୍ରୟ ବୋଲି କାହାରି କିଛି ରହିବ ନାହିଁ। ସେଦିନ ବାଉରା ପରି (ପାଗଳ ପରି) ହତାଶ ବୁକୁରେ ପଥେ-ପଥେ ଘୁରି ବୁଲିବା ବ୍ୟତୀତ ତାର ଆଉ କଣ କରଣୀୟ ରହିବ ବୁଝି ପାରିବ ନାହିଁ। ଲୋକସମାଜରେ ରହି ସମୃଦ୍ଧିର ଦିଗରେ ସୁଚେତନ ହୋଇ ସବୁ ବାଧାବିଘ୍ନକୁ ଅତିକ୍ରମ କରି ଚାଲିବାହିଁ କଠିନ ହୋଇ ଉଠିବ। କାରଣ, ଅନ୍ତଃକରଣରେ ଗୋଟିଏ ସ୍ଥିର ଅଭିନିବେଶ ବଦ୍ଧମୂଳ ହୋଇ ଉଠିବ – ତାର ଆପଣାର ବୋଲି କେହି ନାହିଁ – ପୃଥିବୀର ବୁକୁରେ ସେ ନିଚ୍ଛକ ଏକା। ଆଜି ଯେ ତାର ସ୍ତ୍ରୀ, କାଲି ସେ ଅନ୍ୟର ସ୍ତ୍ରୀ, ଆଜି ଯେ ଜଣକର ମା, କାଲି ସେ ତାର ପିତା ବ୍ୟତୀତ ଅନ୍ୟ ପୁରୁଷର ପିଲାର ମା। ଆଜି ଯେ ଗୃହିଣୀକୁ ଅବଲମ୍ବନ କରି ଗୃହସ୍ଥଳୀ ଉଜ୍ଜ୍ୱଳ ହୋଇ ଚାଲୁଛି, ତା ଚାଲିପାରିବ ନାହିଁ। ସେ ହୁଏତ ହେବ ଅନ୍ୟର ସ୍ୱାର୍ଥସମ୍ଭୋଗର କ୍ରୀଡ଼ନକମାତ୍ର। ଏହି ଭାବରେ ଜୀବନର ସ୍ଥାୟିତ୍ୱର ସୁସଂସ୍ଥ ଛାଞ୍ଚଟା ଚୁରମାର ହୋଇ ଭାଙ୍ଗି ପଡ଼ିବ। ଭଲ ଯେଉଁମାନେ ଅଛନ୍ତି, ସେମାନେ ମଧ୍ୟ ପରିବେଶର ଏହି ପ୍ରଭାବରେ ସଂକ୍ରାମିତ ହୋଇ ଉଠିବେ। ଅନେକେହିଁ ଏହି ଆବହାଓ୍ୱାରେ ପଡ଼ି ବିବେକକୁ ନିର୍ବୋଧ କରି ତାରି ସମର୍ଥନ କରି ଚାଲିବାକୁ ଆରମ୍ଭ କରିବେ, ଫଳରେ ଉଚ୍ଛୃଙ୍ଖଳ, ବିଶୃଙ୍ଖଳା ସମସ୍ତ ରାଷ୍ଟ୍ରକୁ, ସମାଜକୁ, ପରିବାର ଓ ପରିବେଶକୁ ଶାସନ କରିବାକୁ ଲାଗିବ। ସେମାନଙ୍କୁ ସୁନିୟନ୍ତ୍ରିତ କରିବାକୁ ସଂବର୍ଦ୍ଧନାରେ ସନ୍ଦୀପ୍ତ କରିବାକୁ କେହି ରହିବେ ନାହିଁ। ଦୁର୍ନୀତି ଦୁର୍ଦ୍ଦଣ୍ଡ-ପ୍ରତାପରେ ଦେଶ ଉପରେ ଆଧିପତ୍ୟ କରିବାକୁ ଲାଗିବ। ଏହା ଭିତର ଦେଇ ଯେଉଁସବୁ ଜାତକର ଆବିର୍ଭାବ ହେବ, ସେମାନେ ମଧ୍ୟ ହେବେ ସମ୍ବର୍ଦ୍ଧନ-ବିରୋଧୀ। ପୁଣି, ପିତାମାତାଙ୍କର ଦାମ୍ପତ୍ୟ-ଜୀବନ ବ୍ୟତୀକ୍ରମ-ଦୁଷ୍ଟ ହେବା ଫଳରେ ସନ୍ତାନ-ସନ୍ତତି ଭିତରେ ମସ୍ତିଷ୍କ-ବିକୃତି, ବ୍ୟତିକ୍ରମୀ ଚିନ୍ତା-ଚଳନ, ବିଧ୍ୱସ୍ତ, ଛେଦପ୍ରବଣ ବ୍ୟକ୍ତିତ୍ୱର ବହୁଳ ଆବିର୍ଭାବ ହେବାକୁ ଲାଗିବ। ସତ୍ତାବିରୋଧୀ, ସଂହତି-ବିରୋଧୀ ଓ କୃଷ୍ଟି-ବିରୋଧୀ ଚଳନହିଁ ହେବ ସେମାନଙ୍କର ସ୍ୱଭାବ-ଧର୍ମ। ସେମାନେ ନିଜେ ଭ୍ରଷ୍ଟ-ଚରିତ୍ର ହୋଇ ପରିବେଶକୁ ମଧ୍ୟ ସର୍ବହରାର ପଥରେ ବିଭ୍ରାନ୍ତ କରି ଚାଲିବାକୁ ଲାଗିବେ।

ଆ.ପ୍ର. ୫/୬.୧.୧୯୪୪

## ।। ବିବାହ-ବନ୍ଧନ ଅଚ୍ଛେଦ୍ୟ ଓ ଅଚ୍ୟୁତ—ଏହି ସ୍ୱୀକୃତି କାହିଁକି ଦରକାର ।।

କେତେଗୁଡ଼ିଏ କ୍ଷେତ୍ର ଅଛି, ଯେଉଁଠାରେ ଶାସ୍ତ୍ର ଅନୁଯାୟୀ ବିବାହ ହିଁ ଅସିଦ୍ଧ। ଯେପରି ପ୍ରତିଲୋମ ବିବାହ। ବିବାହ ଯେଉଁଠାରେ ଅସିଦ୍ଧ, ସେଠାରେ ବିଚ୍ଛେଦର କଥା ଆସେ ନା।

ନହେଲେ ଶାସ୍ତ୍ର ସିଦ୍ଧ ବିବାହ ଯେଉଁଠାରେ, ତାହା ଅଚ୍ଛେଦ୍ୟ ଓ ଅଚ୍ୟୁତ ହେବା ହିଁ ବାଞ୍ଛନୀୟ। ଫଳକଥା, ସଦୃଶଘରେ ବିଧି ମାଫିକ୍ ସଙ୍ଗତିଶୀଳ ବିବାହ ଯଦି ହୁଏ, ସେଠାରେ ମେଳ ହେବାର ସମ୍ଭାବନାହିଁ ବେଶୀ। ବିବାହ ଆଗରୁ ସବୁ ଦିଗ ଦେଖିଶୁଣି ମେଳ କରି ବିବାହ ଦେବାକୁ ହୁଏ। ବିବାହ ବନ୍ଧନ ଅଚ୍ଛେଦ୍ୟ ଓ ଅଚ୍ୟୁତ—ସ୍ୱାମୀ-ସ୍ତ୍ରୀର ମନରେ ଏହି ସ୍ୱୀକୃତି ରହିଲେ, ସେଥିରେ ପାରସ୍ପରିକ ପ୍ରୀତି, କ୍ଷମା, ସହ୍ୟ, ଧୈର୍ଯ୍ୟ, ଅଧ୍ୟବସାୟ ଓ ସେବାର ଭିତର-ଦେଇ ଉଭୟଙ୍କର ବ୍ୟତୟୀ ଚଳନ କ୍ରମନିୟନ୍ତ୍ରଣରେ ସଙ୍ଗତିଶୀଳ ହୋଇ ଉଠିବାର ସମ୍ଭାବନା ହିଁ ବେଶୀ। ସେଥିରେ ବିଶୃଙ୍ଖଳା ଅନେକ ପରିମାଣରେ ସୁଶୃଙ୍ଖଳ ହୋଇ ଉଠିବାକୁ ଲାଗେ। ସୁପ୍ରଜନନର ଆଶା ମଧ୍ୟ ଅନେକ ପରିମାଣରେ ମୂର୍ତ୍ତ ହୋଇ ଉଠେ, ଏବଂ ଛିନ୍ନବ୍ୟକ୍ତିତ୍ୱର ଆମଦାନୀ କମ୍ ହୁଏ। ଆଉ, ମଣିଷ ଯଦି ଦୁଃଖ କଷ୍ଟ ସତ୍ତ୍ୱେ ବି ଆପଣା ଲୋକ ସହିତ ବନ୍ଧନ ଛିନ୍ନ ନ-କରେ, ତାର ଦୋଷ-ତ୍ରୁଟି ରହିଲେ ମଧ୍ୟ ଦରଦର ସହିତ ସହି-ବୋହି ଚାଲେ, ସେଥିରେ ଯେ ତାର ଯେ ଖୁବ୍-ଗୋଟିଏ କ୍ଷତି ହୁଏ, ତା କିନ୍ତୁ ନୁହେଁ। ବରଂ ନାରୀପୁରୁଷ ଏହାରି ଭିତର-ଦେଇ ଅନେକ ପରିମାଣରେ ମହତ୍ୱ ଅର୍ଜନ କରନ୍ତି। ଭଲ ଯିଏ, ତାକୁ ତ ସମସ୍ତେ ଭଲ ପାଆନ୍ତି, ମନ୍ଦ ଯିଏ, ତାକୁ କେତେଜଣ ଭଲ ପାଇପାରନ୍ତି? ଏହି ଭଲପାଇବା ପାଇ ପୁଣି ଦେଖା ଯାଏ, କେତେଜଣଙ୍କର ଜୀବନ ବଦଳି ଯାଏ। ସ୍ୱାମୀ ହୁଏତ ମାତାଲ, ବେଶ୍ୟାସକ୍ତ, ସ୍ତ୍ରୀ ଉପରେ ଅକଥ୍ୟ ଅତ୍ୟାଚାର କରେ; ସେହି ସ୍ୱାମୀ ସ୍ତ୍ରୀର ସେବା-ପରିଚର୍ଯ୍ୟାରେ ସୁନାର ମଣିଷ ହୋଇ ଯାଏ। ଏହି ପ୍ରକାର ଘଟଣା ଯଥେଷ୍ଟ ଘଟେ। ସ୍ତ୍ରୀର ଅତ୍ୟାଚାର ମଧ୍ୟ ପୁରୁଷମାନେ କମ୍ ସହ୍ୟ କରନ୍ତି ନାହିଁ। ଏହି ଭାବରେ ସଂସାର ଚାଲେ। ...ଭଲପାଇବାହିଁ ତ ମଣିଷକୁ ବଞ୍ଚାଏ, ଭଲପାଇବାହିଁ ତ ମଣିଷକୁ ଫେରାଏ। ସଂସାରରେ ଯଦି ତାର ଅନଟନ ପଡ଼ିଯାଏ, ତେବେ ସଂସାର ଚାଲିବ କିପରି? ସହି-ବୋହି ରହିବେ କିପରି?

ବିଶେଷ ପ୍ରୟୋଜନୀୟ କ୍ଷେତ୍ରରେ ସ୍ୱାମୀ-ସ୍ତ୍ରୀ ଉଭୟେ ସାମୟିକ ଅଲଗା ରହି ପାରନ୍ତି। କିନ୍ତୁ ନାରାୟଣ ସାକ୍ଷୀ ରହି ଯେଉଁ ବିବାହ ହୁଏ, ସେ ବିବାହ ହେଲା ଗୋଟିଏ sacrament (ପୂତ ଅନୁଷ୍ଠାନ), ତାର ବିଚ୍ଛେଦ ହେବ କାହିଁକି? ଦୁଇ-ଚାରିଟା କ୍ଷେତ୍ରରେ ବିବାହ-ବିଚ୍ଛେଦର ଅନୁମୋଦନ ଯଦି ରହେ, ତାହେଲେ ଦେଖାଯାଏ, ଅନେକହିଁ ତାର ସୁଯୋଗ ଗ୍ରହଣ କରିବାକୁ ଚେଷ୍ଟା କରନ୍ତି। ବ୍ୟତୟୀ ଚଳନ ବାଲା ଯେଉଁମାନେ, ସେମାନେ ପୁଣି ନିଜ ନିଜର ଦଳ ବଢ଼ାଇବାକୁ ଛାଡ଼ିବେ ନାହିଁ। ...ଯେଉଁସବୁ ଦେଶରେ ବିବାହ ବିଚ୍ଛେଦ ଅଛି, ଶୁଣିବାକୁ ପାଏ, ସେମାନଙ୍କର ପାରିବାରିକ ଜୀବନରେ ଅଶାନ୍ତିର ଅନ୍ତ ନାହିଁ। ଆମେ କଣ ଖାଲ କାଟି କୁମ୍ଭୀର ଡ଼ାକି ଆଣିବା?

ଆ.ପ୍ର. ୫/୬.୧.୧୯୪୪

## ।। ପିତାଙ୍କର ଗୁଣାବଳୀ କେତେବେଳେ ସନ୍ତାନଠାରେ ସଞ୍ଚାରିତ ହୁଏ ।।

ମଣିଷ ଯଦି ବଂଶପରମ୍ପରାରେ କୌଣସି ବିଶେଷ ଜିନିଷର (ଗୁଣର) ଚର୍ଚ୍ଚା କରେ, ତାହେଲେ ସେଇଟା କ୍ରମେ ଫୁଟି ଉଠି ପାରେ। ଅବଶ୍ୟ ବିବାହ ଠିକ୍ ଭାବରେ ହେବା ଦରକାର। ସଙ୍ଗତିଶୀଳ ଘରର ସଙ୍ଗତିଶୀଳ ପ୍ରକୃତିର ଝିଅ ଯଦି ହୁଏ, ଆଉ ଏହି ସ୍ତ୍ରୀର ସ୍ୱାମୀଙ୍କ ପ୍ରତି ପ୍ରବଳ ଶ୍ରଦ୍ଧା ଓ ନିଷ୍ଠା ଯଦି ଥାଏ ଓ ତାଙ୍କର ଗୁଣପନାରେ ଯଦି ମୁଗ୍ଧ ହୁଏ, ତାହେଲେ ତାର ଗର୍ଭର ସନ୍ତାନ ମଧ୍ୟରେ ପିତାର ଗୁଣାବଳୀ ସଂକ୍ରମିତ ହେବାର ସମ୍ଭାବନା ବେଶୀ ଥାଏ।

ଆ.ପ୍ର. ୫/୩.୪.୧୯୪୪

## ।। ପିତାର ଗୁଣାବଳୀ ସନ୍ତାନଠାରେ ମୂର୍ତ୍ତ ହୋଇ ପାରେ ନା କେତେବେଳେ ।।

ତାର ଅନେକ କାରଣ ଥାଏ। ମଣିଷ ଯଦି ଶ୍ରଦ୍ଧା ଓ ଆଗ୍ରହରୁ କୌଣସି ଗୁଣ acquire (ଅର୍ଜ୍ଜନ) ନ-କରେ, inferiority (ହୀନମନ୍ୟତା) ଓ ambition (ଉଚ୍ଚାକାଂକ୍ଷା)-ରୁ ତାହା କରେ, ତାହେଲେ ସେଥିରେ କୃତିତ୍ୱ ଅର୍ଜ୍ଜନ କରିଲେ ମଧ୍ୟ ସେଇଟା କିନ୍ତୁ ତାର ସତ୍ତାର ସହିତ ମିଶି ଯାଏ ନା। ପୁଣି ଶ୍ରଦ୍ଧା ଓ ଆଗ୍ରହଜନିତ ଅନୁଶୀଳନର ଫଳରେ କୌଣସି ଗୁଣ ଯଦି ତାର ସତ୍ତାରେ ଗୁନ୍ଥି ବି ଯାଏ, ତାହା ମଧ୍ୟ ସନ୍ତାନ ଠାରେ ମୂର୍ତ୍ତ ହୋଇ ପାରେନା, ଯଦି ବିବାହ ଓ ଦାମ୍ପତ୍ୟଜୀବନ ସୁପରିଚାଳିତ ନ ହୁଏ। ପୁଣି ସନ୍ତାନର ଯେଉଁ inherent trait (ଅନ୍ତର୍ନିହିତ ଗୁଣ) ଥାଏ, ତାର ମଧ୍ୟ unfurlment (ବିକାଶ) ର ପାଇଁ ଯେଉଁ nurture (ପୋଷଣ) ପ୍ରୟୋଜନ, ତା ମଧ୍ୟ ଯଦି ଉପଯୁକ୍ତ ସମୟରେ ଉପଯୁକ୍ତ ରକମରେ ଦିଆ ନ ଯାଏ, ସେଥିରେ ମଧ୍ୟ ଭିତରେ ସମ୍ଭାବନା ଥିବା-ସତ୍ତ୍ୱେବି ତାହା ପ୍ରକାଶ ପାଏ ନା। ସେଥିପାଇଁ ସବୁଦିଗକୁ ନଜର ଦେବାକୁ ହୁଏ। (ତା ମାନେ) ଯୁଗୋପଯୋଗୀ ଭାବରେ ବର୍ଣ୍ଣଧର୍ମ, ଆଶ୍ରମଧର୍ମ, ଦଶବିଧ-ସଂସ୍କାର ଇତ୍ୟାଦି ପରିପାଳନ କରି ଚାଲିବାକୁ ହୁଏ। ଏହି-ସବୁର ଭିତର-ଦେଇ ମଣିଷର ସହଜାତ-ସଂସ୍କାରଗୁଡ଼ିକ ବଂଶପରମ୍ପରାରେ ବଜାଇ ରହେ ଓ ମଣିଷ ସୁଶିକ୍ଷିତ, ସୁନିୟନ୍ତ୍ରିତ ଓ ସୁଯୋଗ୍ୟ ହୋଇ ଉଠେ।

ଆ.ପ୍ର. ୫/୩.୪.୧୯୪୪

## ।। ବିବାହ ଠିକ ରହିଲେ କଣ ଠିକ ରହେ ।।

ବିବାହ ବ୍ୟାପାରରେ ଯେପରି କୌଣସି ବ୍ୟତିକ୍ରମ ନ ହୁଏ, ଅନ୍ତତଃ ସେଦିଗରେ ଲକ୍ଷ୍ୟ ରଖିବା ଦରକାର। ଏହା ଠିକ ରହିଲେ instinct (ସହଜାତ-ସଂସ୍କାର)-ର spine (ମେରୁଦଣ୍ଡ)-ଟା ଠିକ ରହେ। ବୁଝାପଡ଼େ, ଗୋଟିଏ ମଣିଷ କଣ ନା କଣ! ସେ ଏପରି ଏକ ବହୁରୂପୀ ହୋଇ ଉଠେ ନା, ଯାହାର ଅସଲ ରୂପଟା ତା ନିଜ ପାଖରେ ବା ଅନ୍ୟ ପାଖରେ ଧରା ହିଁ ପଡ଼େ ନା। ତେଣୁ ସେମାନଙ୍କୁ ଦେଇ ବରଂ କିଛି ଆଶା କରା ଯାଏ। ଆ.ପ୍ର. ୫/୩.୪.୧୯୪୪

## ।। ବଂଶଗତି ବା ସହଜାତ-ସଂସ୍କାର ସମ୍ବନ୍ଧରେ କଣ ମନେ ରଖିବାକୁ ହେବ ।।

Heredity (ବଂଶଗତି) ବା instinct (ସହଜାତ-ସଂସ୍କାର)–ସମ୍ବନ୍ଧରେ ଏହି କଥାଟା ମନେ ରଖ ଯେ acquisition (ଅର୍ଜିତ ବିଦ୍ୟା ବା ଗୁଣ) ଦିନେ instinct (ସହଜାତ-ସଂସ୍କାର) ହୁଏ, instinct (ସହଜାତ-ସଂସ୍କାର) ଦିନେ super-instinct (ମହା-ସହଜାତ-ସଂସ୍କାର) ହୁଏ। ଏହିପରି କରି ହିଁ evolution (ବିବର୍ତ୍ତନ)।

ଆ.ପ୍ର. ୬/୩.୧୨.୧୯୪୪

## ।। କେଉଁ ବ୍ୟବସ୍ଥାରେ ମଣିଷ ଭଲ ହେବ, ଭଲ ପଥରେ ଚାଲିବ ।।

ସେଥିପାଇଁ ପ୍ରଥମେ ଦରକାର good breeding (ଭଲ ଜନ୍ମ)। ଭଲ ଜନ୍ମ ହେବାକୁ ଗଲେ ପିତାମାତାର instinct (ଜନ୍ମଗତ-ସଂସ୍କାର)ଭଲ ହେବା ଦରକାର ଏବଂ ସେମାନଙ୍କର ବିବାହ ମଧ୍ୟ ସବୁ ଦିଗରୁ ମେଳ କରି ହେବା ଦରକାର। ତା ପରେ ପାରିବାରିକ ଚାଲିଚଳନ ଏପରି ହେବା ଦରକାର, ଯାହାଦ୍ୱାରା ପୁଅଝିଅମାନେ ପ୍ରଥମରୁ ସତ୍ ଦୃଷ୍ଟାନ୍ତ ଦେଖି ଭଲ ହେବାର ଅନୁପ୍ରେରଣା ପାଆନ୍ତି। ପାରିବାରିକ ଶିକ୍ଷା ଯଦି ଭଲ ନ ହୁଏ, ତାହେଲେ ପୋଥିଗତ ଶିକ୍ଷା ଯେତେହିଁ ହେଉ ନା କାହିଁକି, ସେଥିରେ ମଣିଷର habits, behaviour, (ଅଭ୍ୟାସ, ବ୍ୟବହାର) adjusted (ସୁନିୟନ୍ତ୍ରିତ) ହୁଏ ନାହିଁ। ତାପରେ ଦରକାର ସତ୍‌ଗୁରୁଙ୍କ ଠାରୁ ଦୀକ୍ଷିତ ହୋଇ ଶ୍ରଦ୍ଧା ଓ ନିଷ୍ଠା ସହକାରେ ତାଙ୍କର ନିର୍ଦ୍ଦେଶ ମାନି ଚାଲିବା। ଶିକ୍ଷା-ବ୍ୟବସ୍ଥା ମଧ୍ୟ ଏପରି ହେବା ଦରକାର, ଯେପରି ପ୍ରତ୍ୟେକେ ତାର ବୈଶିଷ୍ଟ୍ୟର ଉପରେ ଛିଡ଼ା ହୋଇ ଚୌକସ ହୋଇ

ଉଠିପାରନ୍ତି। ସ୍ୱତଃଦାୟିତ୍ୱରେ environment (ପରିବେଶ)-ର ପ୍ରୟୋଜନ କିଏ କେତେପରିମାଣରେ ପୂରଣ କରି ଚାଲି ପାରେ, ଅନ୍ୟର ଜୀବନୀୟ ସ୍ୱାର୍ଥକୁ କିଏ କେତେ ପରିମାଣରେ ବାସ୍ତବରେ ନିଜର ସ୍ୱାର୍ଥ କରି ତୋଳି ପାରେ, ମୋଟ କଥାରେ ତାହାହିଁ ଶିକ୍ଷାର ବଡ଼ ପ୍ରମାଣ। ଆଉ ଜୀବିକାର ବ୍ୟବସ୍ଥା ଯଥାସମ୍ଭବ ବର୍ଣ୍ଣବୈଶିଷ୍ଟ୍ୟାନୁଗ ଓ ସ୍ୱାଧୀନ ହେବା ଦରକାର। ଉପାର୍ଜ୍ଜନର ଅନ୍ୟ ଯେ-କୌଣସି ପଥହିଁ ଥାଉ, cottage-industry (କୁଟୀରଶିଳ୍ପ) ଓ agriculture (କୃଷି) ସବୁ ପରିବାରରେ କିଛି ନା କିଛି ରହିବା ଦରକାର। ଆଉ ଦରକାର ଗୋ-ପାଳନ। ଜୀବିକା ପାଇଁ ଯଦି ଅନ୍ୟର ଦାସତ୍ୱ କରିବାକୁ ନ ହୁଏ ବା dishonesty (ଅସାଧୁତା) କରିବାକୁ ନ ହୁଏ, ତାହେଲେ କିନ୍ତୁ ମଣିଷ ଅନେକ ପରିମାଣରେ ଠିକ୍ ଥାଏ। ଆଉ ଦରକାର ଭଲ-ଭଲ ଋତ୍ୱିକ୍, ଅଧ୍ୱର୍ଯ୍ୟୁ, ଯାଜକ। ସେମାନେ ସେମାନଙ୍କର ଉନ୍ନତ ଚରିତ୍ର, ସେବା ଓ ଯାଜନର ଭିତର-ଦେଇ ସାରା ଦେଶର ମଣିଷକୁ ସତ୍ତାପୋଷଣୀ ଚଳନରେ ଅଭ୍ୟସ୍ତ କରି ତୋଳିବେ, ଧର୍ମ, ଇଷ୍ଟ, କୃଷ୍ଟିର ଭିତ୍ତିରେ integrated (ସଂହତ) କରି ତୋଳିବେ। ସଙ୍ଗେ-ସଙ୍ଗେ ଦେଖିବେ ଅସତ୍ ଅର୍ଥାତ୍ ସତ୍ତାପରିପନ୍ଥୀ ରକମଗୁଡ଼ିକ ଯେପରି ଦାନାବାନ୍ଧି ଉଠି ନ ପାରେ। Simultaneously (ଯୁଗପତ୍) ଏହି ସବୁଗୁଡ଼ିକର ଦିଗକୁ ନଜର ଦେଇ ଯଦି ଚାଲନ୍ତି, ତାହେଲେ ଦେଶର ଆବହାଓ୍ୱା ବଦଳି ଯିବ। ସେତେବେଳେ ମଣିଷର ଭଲ ହେବାର ସମ୍ଭାବନା ବେଶୀ ରହିବ। ଖରାପ ଯେଉଁମାନେ ରହିବେ, ସେମାନେ ମଧ୍ୟ ଉପଯୁକ୍ତ ଶାସନ-ତୋଷଣ ଓ ପ୍ରେରଣାର ଭିତର-ଦେଇ ଅନେକପରିମାଣରେ ଠିକ୍ ହୋଇ ଉଠିବେ। ଆ.ପ୍ର. ୬/୯.୧୨.୧୯୪୪

## ।। ଉପଯୁକ୍ତ ବିବାହ ଉପରେ ଜୋର ଦେବାକୁ ହେବ କାହିଁକି ।।

Bad instinct (ଖରାପ ସଂସ୍କାର)–ବାଲା progeny (ସନ୍ତତି) ଯେପରି ସମାଜରେ ବଢ଼ି ନପାରେ, ତାର ବ୍ୟବସ୍ଥା ନ କଲେ ନ ହୁଏ। ସେଥିପାଇଁ ମୁଁ proper marriage (ଉପଯୁକ୍ତ ବିବାହ)-ର ଉପରେ ଏତେ ଜୋର ଦିଏ। ଏହି ଜାଗାରେ ହାତ ନ ଦେଲେ ସବୁ programme (କର୍ମସୂଚୀ)-ହିଁ fail କରିବ (ଅକୃତକାର୍ଯ୍ୟ ହେବ)। ମୁଁ ମୂର୍ଖ ମଣିଷ, ମୋ କଥାର ତ କୌଣସି ଦାମ୍ ନାହିଁ। କିନ୍ତୁ ଦାସୀର କଥା ବାସି ହେଲେ କାମରେ ଲାଗିବ।

ଆ.ପ୍ର. ୬/୯.୧୨.୧୯୪୪

## ।। ଜନ୍ମଗତ ସଂସ୍କାର ଭଲ ନ ହେଲେ କଣ ହୁଏ ।।

ମଣିଷ ପରିବେଶ ବା ଶିକ୍ଷାରୁ ତାହା-ହିଁ ନେଇ ପାରେ, ଯାହା ତାର ନେବାର କ୍ଷମତା ଅଛି। ଯାହା ତାର ନେବାର କ୍ଷମତା ନାହିଁ, ତାହା କିନ୍ତୁ ସେ ନେଇ ପାରେ ନା। ସମାନ ଜମି, ସମାନ ମାଟି — ସେହି ମାଟିର ରସ ଟାଣି ଗୋଟିଏ ହେଉଛି ଆମ୍ବଗଛ, ଗୋଟିଏ ହେଉଛି ପଣସଗଛ, ଆଉ ଗୋଟିଏ ହେଉଛି ଲିଚୁଗଛ, ଆହୁରି କେତେ କଣ ? ପରିବେଶ ତ ସମାନ, ତା ମଧ୍ୟରେ ଏତେ ପ୍ରକାରର ହେଉଛି କାହିଁକି? ତାର କାରଣ, ବୀଜର ପାର୍ଥକ୍ୟ। ମଣିଷ ବେଳକୁ ସେହିପରି ପ୍ରତ୍ୟେକେ ତାର ବୀଜଗତ ସଂସ୍କାର-ଅନୁଯାୟୀ ପୋଷଣ ସଂଗ୍ରହ କରି ସ୍ୱାତନ୍ତ୍ର୍ୟରେ ଉଦ୍‌ଭିନ୍ନ ହୋଇ ଉଠନ୍ତି। ଭଲ ହେଉ, ମନ୍ଦ ହେଉ, ଆମ୍ବ ଆମ୍ବ ହୋଇ ରହେ, ଆମ୍ବ କେତେବେଳେବି ପଣସ ହୁଏ ନା, ପୁଣି ପଣସ କେତେବେଳେବି ଆମ୍ବ ହୋଇ ଯାଏ ନା। ଯେ ଯାହା ସେ ତାହା-ହିଁ, ତା-ବ୍ୟତୀତ ଅନ୍ୟ କିଛି ନୁହେଁ ବା ଅନ୍ୟ କିଛି କମ୍‌ହିଁ ହୋଇ ପାରେ। ହେଲେ ମଧ୍ୟ ସିଏ ଆଉ ସିଏ ରହେ ନାହିଁ। ତେଣୁ ଜନ୍ମଗତ ସଂସ୍କାର ଯଦି ଭଲ ନ ରହେ, ତେବେ ଶିକ୍ଷା ବା ପରିବେଶ ଦ୍ୱାରା ମଣିଷର ଭଲ କମ୍‌ହିଁ କରା ଯାଏ। ଭ୍ରଷ୍ଟ ପ୍ରକୃତି ଯାହାର ତାକୁ ଯଦି ସୁଶିକ୍ଷିତ କରି ତୋଳନ୍ତି, ସେ ସେହି ଶିକ୍ଷାର ଶକ୍ତିରେ ଦୁଷ୍କର୍ମ ଆହୁରି ଭଲ କରି କରିବ। ଜନ୍ମଗତ ବୈଶିଷ୍ଟ୍ୟ ବଦଳା ଯାଏ ନା।

ଆ.ପ୍ର. ୬/୯.୧୨.୧୯୪୪

## ।। ଶିକ୍ଷା-ଦୀକ୍ଷାର ଏତେ ଆୟୋଜନ କାହିଁକି ।।

ଶିକ୍ଷା-ଦୀକ୍ଷାର ଆୟୋଜନ ଏଇଥିପାଇଁ, ଯାହାଦ୍ୱାରା ମଣିଷର ଅନ୍ତର୍ନିହିତ ସଦ୍‌ଗୁଣ ଯାହା, ତାକୁ ପୋଷଣ ଦେଇ ବିକଶିତ କରି ତୋଳା ଯାଏ ଏବଂ ଅନିୟନ୍ତ୍ରିତ ପ୍ରବୃତ୍ତି ଯେଗୁଡ଼ିକ, ସେଗୁଡ଼ିକୁ ନିୟନ୍ତ୍ରିତ କରି ତୋଳାଯାଏ। ଶିକ୍ଷା-ଦୀକ୍ଷାରେ ମଣିଷର ପ୍ରକୃତି ବଦଳାଇ ହୁଏ ବୋଲି ମୋର ମନେ ହୁଏ ନା।

ଆ.ପ୍ର. ୬/୯.୧୨.୧୯୪୪

## ।। ପ୍ରତିଟି ମଣିଷହିଁ ଗୋଟିଏ ସ୍ୱତନ୍ତ୍ର ଶ୍ରେଣୀର କାହିଁକି ।।

ଜନ୍ମଗତ ବିନ୍ୟାସ ଓ ସଂସ୍ଥିତି ପ୍ରତ୍ୟେକଟି ମଣିଷର ହିଁ ଅଲଗା। ତାହା ନେଇ ହିଁ ତାର ବୈଶିଷ୍ଟ୍ୟ। ତେଣୁ କୌଣସି ଦୁଇଟି ମଣିଷ ଦେଖିବାକୁ ଏକ ପ୍ରକାର ନୁହେଁ।

ଦୁଇଟି ଆମ୍ବଗଛ, ଦୁଇଟି ପଣସଗଛ, ଦୁଇଟି ଧାନଗଛ — ତାହା ମଧ୍ୟ ଅଲଗା — ରୂପରେ, ଗୁଣରେ, ବର୍ଦ୍ଧନାରେ, — ଏକଜାତୀୟ ହେଲେ ମଧ୍ୟ। ମଣିଷ କାହିଁକି, ସୃଷ୍ଟିର ପ୍ରତିଟି ଯାହା-କିଛି ହିଁ ସ୍ୱତନ୍ତ୍ର–ବୈଶିଷ୍ଟ୍ୟ–ସମନ୍ୱିତ। ସୂକ୍ଷ୍ମଭାବରେ ଦେଖିବାକୁ ଗଲେ each individual is a class by himself (ପ୍ରତ୍ୟେକଟି ବ୍ୟଷ୍ଟିହିଁ ଗୋଟିଏ ସ୍ୱତନ୍ତ୍ର ଶ୍ରେଣୀ)। ଆ.ପ୍ର. ୬/୯.୧୨.୧୯୪୪

## ।। ଖରାପ ଲୋକର ମଧ୍ୟ ଭଲ ପିଲା କେତେବେଳେ ହୁଏ ।।

ଅସଂଯତ ବା ଅନିୟନ୍ତ୍ରିତ ଚରିତ୍ର ଓ ଖରାପ ପ୍ରକୃତି କିନ୍ତୁ ଏକ ଜିନିଷ ନୁହେଁ। ଯେଉଁମାନଙ୍କର ପ୍ରକୃତି ଖରାପ, ସେମାନେ କେତେବେଳେ ମଧ୍ୟ ଶ୍ରଦ୍ଧାବନତ ହୋଇ ପାରନ୍ତି ନାହିଁ, ଏକନିଷ୍ଠ ହୋଇ ପାରନ୍ତି ନାହିଁ, ବିଶ୍ୱସ୍ତ ହୋଇ ପାରନ୍ତି ନାହିଁ। ସେମାନଙ୍କର ବୁଦ୍ଧି ଥାଏ ଅନ୍ୟର କ୍ଷତି-ସାଧନ — nurture (ପୋଷଣ) ନ-ଦେଇ exploit (ଶୋଷଣ) କରିବା। ମୋର ପ୍ରୟୋଜନ ସମୟରେ ଜଣକ ପାଖରୁ ସେବା ନେଲି, କିନ୍ତୁ ତାର ପ୍ରୟୋଜନ ସମୟରେ ମୋର ସାଧ୍ୟମତ ବାସ୍ତବରେ କିଛି ତ କରିଲିହିଁ ନାହିଁ, ଏପରିକି ଗତର (ବଳ) ଖଟାଇ କିଛି କରିଲି ନାହିଁ – ଏହା ମଧ୍ୟ exploitation (ଶୋଷଣ)। ଯଦିବା ଲୁବ୍ଧ ହୋଇ ସେବା କରିବା ଉଚିତ ନୁହେଁ, ବରଂ ପାଇବା ନ-ପାଇବାର ହିସାବ ନ-କରି ଲୋକଙ୍କର ସ୍ୱସ୍ତିବିଧାନରେ ବ୍ୟାପୃତ ରହିବା ଭଲ। ଅସତ୍-ପ୍ରକୃତି-ସମ୍ପନ୍ନ ଯେଉଁମାନେ, ଧର୍ମ, କୃଷ୍ଟି ଓ ମହାନମାନଙ୍କ ବିରୁଦ୍ଧରେହିଁ ସେମାନଙ୍କର ଅଭିଯାନ। ଏହି ଉଦ୍ଦେଶ୍ୟ ସଫଳ କରିବା ପାଇଁ ସେମାନେ ତଥାକଥିତ ଲୋକ ଦରଦୀ ସାଜି ମଣିଷ ବାଗେଇବା ପାଇଁ ପଛଘୁଞ୍ଚା (କସୁର) ଦିଅନ୍ତି ନାହିଁ। ଏହି ଯେ ଲୋକ ଦରଦ ତାର ଉଦ୍ଦେଶ୍ୟ କିନ୍ତୁ ଲୋକକଲ୍ୟାଣ ନୁହେଁ — ଲୋକଙ୍କୁ ତା ଆଡ଼କୁ ଆକର୍ଷଣ କରି ସେମାନଙ୍କ ସାହାଯ୍ୟରେ ଧର୍ମ, କୃଷ୍ଟି ଓ ମହାନମାନଙ୍କୁ ବିଧ୍ୱସ୍ତ କରିବା। ଏମାନଙ୍କ ସମ୍ବନ୍ଧରେ ଖୁବ୍‌ହିଁ ସାବଧାନ ହେବା ଦରକାର। ଜନ୍ମଗତ ପ୍ରକୃତି ଯେଉଁମାନଙ୍କର ଏହିପରି, ସେମାନଙ୍କର ସନ୍ତାନ ସନ୍ତତି ମଧ୍ୟ ଭଲ ହେବାର ଆଶା କମ୍। କିନ୍ତୁ ବହୁ ଅନିୟନ୍ତ୍ରିତ ଚରିତ୍ରର ଲୋକ ଦେଖା ଯାଏ, ଯେଉଁମାନେ ଶ୍ରଦ୍ଧା ଓ ନିଷ୍ଠାର ଭିତର-ଦେଇ changed (ପରିବର୍ତ୍ତିତ) ହୋଇ ଯାଆନ୍ତି। ଅନିୟନ୍ତ୍ରିତ ଚରିତ୍ରର ଯେଉଁମାନେ, ଅଥଚ instinct (ସହଜାତ-ସଂସ୍କାର) ଠିକ୍ ଅଛି, ସେମାଙ୍କର ବିବାହାଦି ଯଦି ଗଣ୍ଡୋଗୋଳ ନହୁଏ ଏବଂ ଦାମ୍ପତ୍ୟ ପ୍ରଣୟ ଯଦି ଅବ୍ୟାହତ ରହେ, ତାହେଲେ ସେମାନଙ୍କର ଛୁଆପିଲା ଭଲ ହେବା ଅସମ୍ଭବ ନୁହେଁ। ଆ.ପ୍ର. ୬/୯.୧୨.୧୯୪୪

## ।। ଜାତିର ସବୁ-ଠାରୁ ବଡ଼ ସମ୍ପଦ କଣ ।। ୬୦

ଜାତିର ସବୁ-ଠାରୁ ବଡ଼ asset (ସମ୍ପଦ) ହେଉଛି ପିତୃପୁରୁଷାଗତ ଶ୍ରେଷ୍ଠ ସଂସ୍କାର ବାହୀ ବୀଜଧାରା। ଅତି ସନ୍ତର୍ପଣରେ ଏହି ମହାର୍ଘ୍ୟ ସମ୍ପଦ ସୁରକ୍ଷିତ ରଖିବାକୁ ହୁଏ। ଏହାର ବ୍ୟତୟ ହେଲେ ମୂଳ ଜିନିଷ ଆଉ ଫେରି ପାଇବାର ଉପାୟ ନାହିଁ। ତେଣୁ କୌଣସି ପ୍ରକାରରେ ଯେପରି ପ୍ରତିଲୋମ ବା ଅସଙ୍ଗତିପୂର୍ଣ୍ଣ ବିବାହ ନ ହୁଏ ଆଖି ଆଗରେ ଯଦି ଏପରି କୌଣସି ବିଷୟ ଘଟିବାକୁ ଯାଏ, ତେବେ ପ୍ରାଣପଣେ ତାକୁ ଅଟକାଇବାକୁ ହୁଏ। ବିବାହ ସମ୍ବନ୍ଧରେ ଯଦି ଗୋଳମାଳ ପ୍ରବେଶ କରେ, ତାହେଲେ ଜାତିର ଭବିଷ୍ୟତ ଅନ୍ଧକାର। ଆ.ପ୍ର. ୬/୯.୧୨.୧୯୪୪

## ।। ଜାତିର ଭଲ ଯେଉଁମାନେ ଚାହାଁନ୍ତି, ସେମାନଙ୍କୁ କଣ କରିବାକୁ ହେବ ।।

ପ୍ରତ୍ୟେକଙ୍କର ଯେପରି ଭଲ ହେବ ଛଳେ, ବଳେ, କୌଶଳରେ ତାହାହିଁ କରିବାକୁ ହେବ। ଯଦି ଜଣେ ମଣିଷର ଖରାପ ଟା ତାହାରି ମଧ୍ୟରେ ସୀମାବଦ୍ଧ ଥାଆନ୍ତା, ତାହେଲେ ଏତେ ଭାବନା ନ ଥିଲା। କିନ୍ତୁ ତା ଭିତର ଦେଇ ପରିବେଶ infected (ସଂକ୍ରମିତ) ହେବାକୁ ଲାଗେ, ତାହାହିଁ ଭୟ। ତେଣୁ ଏହାର ବିହିତ ଯାହା ତାହା କରିବା ଦରକାର। ପରିବେଶ ଯେପରି ଠିକ୍ କରିବା ଦରକାର, ମଣିଷର ଜନ୍ମ ଦିଗକୁ ସେହିପରି ନଜର ଦେବାକୁ ହୁଏ। ଜନ୍ମ ଭଲ ନ ହେଲେ ବାହାରୁ ତାଲିମାରି ବେଶି କିଛି କରାଯାଏ ନା। ଆମ୍ଭମାନଙ୍କର ଋଷିମାନେ ତେଣୁ ବିବାହ-ବିଧାନ ସମ୍ବନ୍ଧରେ ଏତେ କଠୋର ଥିଲେ। ଜାତିର ଭଲ ଯେଉଁମାନେ ଚାହାନ୍ତି, ପ୍ରଥମେ ସେମାନଙ୍କୁ ଏହି ଦିଗକୁ ନଜର ଦେବାକୁ ହେବ।

ଆ.ପ୍ର. ୬/୨୦.୩.୧୯୪୫

## ।। ଆଜିକାଲି ଆଉ ଆଗ ପରି ବିଦ୍ୟା, ବୁଦ୍ଧି, ଚରିତ୍ର ଓ ବ୍ୟକ୍ତିତ୍ୱ-ସମ୍ପନ୍ନ ଲୋକ ଜନ୍ମ ନେଉ ନାହାନ୍ତି କାହିଁକି ।।

ଏହାର ବିଭିନ୍ନ କାରଣ ଥାଏ, ତା ମଧ୍ୟରେ ପ୍ରଧାନ ହେଉଛି ବିବାହ-ବିଭ୍ରାଟ। ତା ବ୍ୟତୀତ ଉତ୍କର୍ଷ-ସହାୟୀ ଆଚାର, ନିୟମ, ନିଷ୍ଠା, କୁଳପ୍ରଥା ଇତ୍ୟାଦି ଯଦି କୁସଂସ୍କାର ବୋଲି ଉଡାଇ ଦିଆଯାଏ, ତାହେଲେ କିନ୍ତୁ instinct (ସଂସ୍କାର)-ଗୁଡ଼ିକ nurture (ପୋଷଣ)

ଯ ଅଭାବରେ ଧିମେଇ ଯାଏ। ଶାସ୍ତ୍ରୀୟ ଅନୁଶାସନଗୁଡ଼ିକ ଯଥାସମ୍ଭବ ମାନି ଚାଲିବା ଭଲ। ବ୍ରାହ୍ମଣ ସନ୍ତାନ ଯଦି ଠିକ୍‌ଭାବରେ ଗାୟତ୍ରୀ ଜପ ନ-କରେ, ସାଧାରଣ ସଦାଚାରଗୁଡ଼ିକୁ ପାଳନ ନ-କରେ, ଯଜନ-ଯାଜନ-ଅଧ୍ୟୟନ-ଅଧ୍ୟାପନା-ଦାନ-ପ୍ରତିଗ୍ରହ – ଏହି ଷଟ୍‌କର୍ମର ସହିତ କୌଣସି ସମ୍ପର୍କ ନ ରଖେ, ତାହେଲେ ତାର ଭିତରର ଜିନିଷଟା ଖୋଲିବ କିପରି? ...ଅବସ୍ଥା ଚାପରେ ପଡ଼ି ତା ଯଦି ଏକାନ୍ତହିଁ ନପାରେ, ପାରିବାରିକ ଆଚାର-ଆଚରଣଗୁଡ଼ିକ ଯଥାସମ୍ଭବ ଧରି ରଖିବାରେ ବାଧା କେଉଁଠି? ଜଣେ ଚାକିରୀ କରେ ବୋଲି, ତାର ଗୀତା ପଢ଼ିବାରେ ଅସୁବିଧା କେଉଁଠି? ପ୍ରସାଦ କରି ଜଳଟା ନେଲେ ବାଧା ଦେବ କିଏ? ଉପଯୁକ୍ତ ଜାହାଙ୍କୁ ଗୁରୁ ବୋଲି ଗ୍ରହଣ କରି ତାଙ୍କର ନିର୍ଦ୍ଦେଶ ମାନି ଚାଲିବାରେ ତ ଆଉ କୌଣସି ନିଷେଧ ନାହିଁ। ସଦ୍‌ଗୁରୁ ଗ୍ରହଣ ଓ ତାଙ୍କୁ ଅନୁସରଣ କରିବାର ପ୍ରଥାଟା ଯଦି ପରିବାର ପରିବାର ମଧ୍ୟରେ ବଜାୟ ରହେ, ତାହେଲେ ତାହାରି ଭିତର-ଦେଇ ପୁଣି ସବୁ-କିଛି ଗଜେଇ ଉଠିପାରିବ। ଆ.ପ୍ର. ୬/୨୦.୩.୧୯୪୫

## ॥ ଉନ୍ନତତର ମଣିଷର ଅଭ୍ୟୁତ୍ଥାନ ପାଇଁ କଣ କରିବାକୁ ହେବ ॥

ଆଉ-ଗୋଟିଏ ବିଦ୍ୟା ଆମ ଜାତିର ଜଣା ଥିଲା, ତାହା ହେଲା ବିବାହ କିପରି ଫଳପ୍ରସୂ କରିବାକୁ ହୁଏ। ବିବାହଟା ସେହି ଭାବରେ reform (ସଂସ୍କାର) କରିବା ଦରକାର। ବୈଶିଷ୍ଟ୍ୟବାନ ପୁରୁଷମାନଙ୍କର ଯଦି ୨/୩-ଟା ବିବାହ ହୁଏ, ତେବେ ଦେଶରେ ଶକ୍ତିବାନ୍ ମନୁଷ୍ୟର ଆଧିକ୍ୟ ହେବ, ନିକୃଷ୍ଟ ମଣିଷର ଜନ୍ମ କମ୍ ହେବ, ଏବଂ ଏମାନଙ୍କୁ ଚାଳନା କରିବାର ଲୋକଙ୍କ ସଂଖ୍ୟାମଧ୍ୟ ବୃଦ୍ଧି ହେବ। ଏଥିପାଇଁ ଦରକାର ପ୍ରଧାନତଃ ସବର୍ଣ୍ଣରେ ସଦୃଶଘରେ ଉପଯୁକ୍ତ ବିବାହ ଏବଂ ତତ୍‌ସହିତ ବିଧିମାଫିକ ଅନୁଲୋମ ଅସବର୍ଣ୍ଣ ବିବାହ। ଅନୁଲୋମ ଧର୍ମଦ, ଆଉ ଏହା ବିଜ୍ଞାନସମ୍ମତ ଅଟେ। Animal world-ରେ (ପଶୁ ଜଗତରେ), plant world-ରେ (ଉଦ୍ଭିଦ ଜଗତରେ) ଆମେ ଏହାର application (ପ୍ରୟୋଗ) ଦେଖିବାକୁ ପାଉ। ଗୋରୁ, ଘୋଡ଼ା, କୁକୁରର geneology (ବଂଶାବଳୀ), pedigree (ଜନ୍ମଜାତ) ଆମେ ଦେଖୁ, ସେମାନଙ୍କର ଧରଣ ଉନ୍ନତ କରି ତୋଳିବାକୁ ବିଜ୍ଞାନସମ୍ମତ ଉପାୟରେ ଆମେ ଏତେ ଚେଷ୍ଟା କରୁ, କିନ୍ତୁ ଉନ୍ନତତର ମଣିଷର ଅଭ୍ୟୁତ୍‌ଥାନ ଯେ କିପରି ହେବ, ସେ-ବିଷୟରେ ଆମ୍ଭମାନଙ୍କର ଖିଆଲ ନାହିଁ।

ଆ.ପ୍ର. ୬/୪.୮.୧୯୪୫

## ।। ଉପଜାତି-ସମସ୍ୟାର ସମାଧାନ କିପରି କରା ଯିବ ।।

ଅନୁଲୋମ ବିବାହ ସାହାଯ୍ୟରେ ଏହି ସବୁ (ଉପଜାତିମାନଙ୍କୁ) absorb (ଅଙ୍ଗୀଭୂତ କରି) ନିଆ ହୁଏ। ଘଟୋତ୍କଚ, ବଭ୍ରୁବାହନର କଥା ତ ଜାଣନ୍ତି। ଏହି ପ୍ରଥା ଯେ ଦିନେ ପ୍ରଚଳିତ ଥିଲା ତାହା ଏହିଥିରୁ ବୁଝା ଯାଏ।

ଆ.ପ୍ର. ୬/୪.୮.୧୯୪୫

## ।। ଆଦର୍ଶ ସବର୍ଣ୍ଣ ଓ ଅନୁଲୋମ ବିବାହ କାହିଁକି ପ୍ରବର୍ତ୍ତନ କରିବାକୁ ହେବ ।।

ଆଜି ସାରା ଦେଶକୁ ଚାହିଁ ଦେଖିଛନ୍ତି ? କହନ୍ତୁ ତ କେତେଜଣ ମଣିଷ ଅଛନ୍ତି? Helmsman type-ର (ଚାଳକ ଧରଣର) ମଣିଷ ଆଜି କେଉଁଠି ? ଜଣେ ରବୀନ୍ଦ୍ର-ନାଥଙ୍କର ତିରୋଧାନ ହୋଇଛି, କିନ୍ତୁ ସେହି ଧରଣର କିମ୍ବା ତାଙ୍କ ପାଖାପାଖି ପ୍ରତିଭା କଣ ଦେଶରେ ଆଉ ଜଣେ ଦେଖା ଯାଉଛି ? ଏହି ସମସ୍ୟାର ସମାଧାନ ପାଇଁ ଆଦର୍ଶ ସବର୍ଣ୍ଣ ଓ ଅନୁଲୋମ ବିବାହର ପ୍ରବର୍ତ୍ତନ କରିବାକୁ ହେବ। 'ସ୍ତ୍ରୀରତ୍ନଂ ଦୁଷ୍କୁଳାଦପି' — ଅନୁଲୋମର support (ସମର୍ଥନ) ସର୍ବତ୍ର। ବୀଜରହିଁ ଗଛ — ମାଟିର ଗଛ ନୁହେଁ — ବୀଜ ଅନୁପାତିକ ମାଟି ତିଆରି କରିବା ଏହି ପର୍ଯ୍ୟନ୍ତ। ପଣସ ମଞ୍ଜିରୁ ଆମ୍ବ ଗଛ ହୁଏନା। ତେଣୁ ଉନ୍ନତ ବୀଜ ଯାହା ଅଛି ତାର ସଦ୍‌ବ୍ୟବହାର ଦରକାର।

ଆ.ପ୍ର. ୬/୪.୮.୧୯୪୫

## ।। ଅନୁଲୋମ ବିବାହ କିପରି କରିବାକୁ ହେବ ।।

ଅନୁଲୋମ (ବିବାହ) ହେବାକୁ ଗଲେମଧ୍ୟ ପ୍ରଥମେ ବିଧିମାଫିକ ସବର୍ଣ୍ଣରେ ସମାନ ଘରେ ବିବାହ ହେବା ଦରକାର, ନ ହେଲେ ବଂଶର ମୂଳ ଧାରା ଓ ସ୍ୱାଭାବିକ ପ୍ରବଣତା ଠିକ୍ ରହେ ନାହିଁ। ସଦୃଶ ଘରେ ଉପଯୁକ୍ତ ବିବାହ ଫଳରେ ସାଧାରଣତଃ ସନ୍ତାନର ପ୍ରକୃତି balanced (ସାମ୍ୟସଙ୍ଗତ) ହୁଏ। ଅନୁଲୋମରେ ସନ୍ତାନ ହୁଏ ଝାଞ୍ଜି, ଯେପରି ଥିଲେ ବ୍ୟାସ, ବଶିଷ୍ଠ, ବିଦୁର, ନାରଦ। ତେବେ (ବର୍ଣ୍ଣର) ବେଶୀ defference (ପାର୍ଥକ୍ୟ) ଖରାପ। ଫଳକଥା, newer blood (ନୂତନ ରକ୍ତ) ସବୁ ସମୟରେ ପ୍ରୟୋଜନ, ନଚେତ୍ ମଣିଷଗୁଡ଼ିକ ଧୀରେ ଧୀରେ dwarf (ଖର୍ବାକୃତି),

dull (ମୂଢ଼) weak in body and mind (ଶରୀର-ମନରେ ଦୁର୍ବଳ) ହୁଏ।

ଆ.ପ୍ର. ୬/୪.୮.୧୯୪୫

## ।। ଆନ୍ଦୋଳନରେ ସୁସଙ୍ଗତ ସୁପ୍ରଜନନ ଓ ବର୍ଣ୍ଣବିଧାନ ଉପେକ୍ଷିତ ହେଲେ କଣ ହୁଏ ।।

କୌଣସି movement-ରେ (ଆନ୍ଦୋଳନରେ) compatible eugenic aspect (ସୁସଙ୍ଗତ ସୁପ୍ରଜନନର ଦିଗଟା) ଯଦି ignored (ଉପେକ୍ଷିତ) ହୁଏ, ସବୁ ବ୍ୟର୍ଥ ହୋଇ ଯାଏ। Caste system (ବର୍ଣ୍ଣବିଧାନ) କି ଚମତ୍କାର ବୈଜ୍ଞାନିକ ବ୍ୟବସ୍ଥା ! Caste (ବର୍ଣ୍ଣ) ମାନେ pedigree (ବଂଶ)। Caste (ବର୍ଣ୍ଣ) ଦେଖି ବୁଝାଯାଏ, କାହାର breeding capacity (ସୁପ୍ରଜନନ-ଶକ୍ତି) ବା instinct (ସହଜାତ ସଂସ୍କାର) କେତେ ପରିମାଣରେ ଉନ୍ନତ। ଗୋଟିଏ ଭଲ ବଂଶର ପୁଅ ଖରାପ ହେଲେ ମଧ୍ୟ ଉପଯୁକ୍ତ nurture (ପୋଷଣ) ପାଇଲେ ତାହାର ଭଲ ହେବାକୁ କେତେ ସମୟ ! ଆଉ ଯଦି କୌଣସି ପ୍ରକାର interpolation (ପ୍ରତିଲୋମ ସଂମିଶ୍ରଣ) ନ ହୁଏ, ତେବେ ଦେଖାଯିବ, ଜଣେ ନିଜେ ହୁଏତ ବାହ୍ୟତଃ ସେପରି କିଛି ନୁହେଁ କିନ୍ତୁ ତାର ପିଲା ହୋଇ ଗଲା ବିରାଟ କିଛି। ଦେଖି ମନେ ହୁଏ, ଗୋବରରେ ପଦ୍ମଫୁଲ। କିନ୍ତୁ ଅସଲ କଥା ହେଲା, ସେହି ଲୋକଟିର acquisition (ଅର୍ଜନ) ଆଶାପ୍ରଦ ନ-ହେଲେ ବି ତାର superior breeding capacity (ଉନ୍ନତ ପ୍ରଜନନ-କ୍ଷମତା) intact (ଅଟୁଟ) ଥିଲା। ବିବାହ-ସଂସ୍କାର ନ-ହେଲେ ବୈଶିଷ୍ଟ୍ୟହୀନ ମଣିଷର ସଂଖ୍ୟା ବଢ଼ି ଯାଏ। ଆଉ ଅନୁଲୋମ ବିବାହର ଫଳରେ ସମାଜରେ lower strataରେ (ନିମ୍ନସ୍ତରରେ) ଝିଅ ଯେତେ କମ୍‌ହୁଏ ସେତେହିଁ ଭଲ। ସେମାନଙ୍କ ଅପେକ୍ଷା lower (ନିମ୍ନତର) ରୁ ସେତେବେଳେ ଅଭାବ ପଡ଼େ – ସମାଜର ପରିଧି ଉନ୍ନତିର ଅନୁକୂଳରେ ବଢ଼ି ଚାଲେ। ଆମ୍ଭମାନଙ୍କର ବାପ, ବଡ଼ ବାପ, ଋଷି, ସେମାନେ ସବୁ ପ୍ରକାର experiment ପରୀକ୍ଷା କରି ଯାଇଛନ୍ତି। ସେହି ପ୍ରକାରଟା ଧରି ଚଳାଅ, ଦେଖ କଣ ହେଉଛି ! ସେତେବେଳେ ତୁମ୍ଭେମାନେ କେବଳ ବୃଦ୍ଧି ପାଇ ପାଇ ଚାଲିବ।

ଆ.ପ୍ର. ୬/୫.୮.୧୯୪୫

## ।। ଧର୍ମ, ଇଷ୍ଟ, କୃଷ୍ଟି ଓ ବୈଶିଷ୍ଟ୍ୟକୁ ବିପର୍ଯ୍ୟସ୍ତ ହେବାକୁ ଦେବେ ନାହିଁ କାହିଁକି ।।

ଆତ୍ମରକ୍ଷାର ଗୋଟିଏ ଦିଗ ଅଛି। ତା ବ୍ୟତୀତ, ସାମାଜିକ ଶାସନ ବୋଲି ମଧ୍ୟ ଗୋଟିଏ ଜିନିଷ ଅଛି। ଲୋକ ଯଦି ଜାଣନ୍ତି ଯେ ଇଷ୍ଟକୃଷ୍ଟିର againstରେ (ବିରୁଦ୍ଧରେ) ଗଲେ ସମାଜରେ ପତ୍ତା ମିଳିବ ନାହିଁ, ସମସ୍ତେ ତ୍ୟାଗ କରିବେ, ତାହେଲେ ସେହି ଭୟରେ ମଧ୍ୟ ମଣିଷ ଅନେକ ପରିମାଣରେ ନିୟନ୍ତ୍ରିତ ହୋଇଯିବେ। ଆଜିକାଲି ପ୍ରତିଲୋମ ବିବାହ କରି ମଧ୍ୟ ସମାଜରେ କେତେଜଣ ବେଶ୍ ମର୍ଯ୍ୟାଦାର ସହିତ ଘୁରି ବୁଲୁଛନ୍ତି। ଆଗରୁ ଏପରି ହେବାର ଶକ୍ତି ନ ଥିଲା। ଧର୍ମ, ଇଷ୍ଟ, କୃଷ୍ଟି ଓ ବୈଶିଷ୍ଟ୍ୟ ଯେପରି ବିପର୍ଯ୍ୟସ୍ତ ନ ହୁଏ, ସେ ଦିଗରେ ଖୁବ୍ କଡ଼ା ନଜର ରଖିବା ଦରକାର। ଇଷ୍ଟନିଷ୍ଠା ହିଁ ହେଲା ମଣିଷର ଶୁଭଦ ମସ୍ତିଷ୍କ-କେନ୍ଦ୍ର, ଯାହା-ଦେଇ ସେ ସତ୍‌ପଥରେ ଚାଳିତ ହୁଏ। ସବୁ-କିଛିକୁ ନେଇ ଚାଲିବାର, ଭଲ ହେବାର, ଭଲ ରହିବାର ମୂଳ ସେହିଠାରେ। ଏହି spine (ମେରୁଦଣ୍ଡ)-ଟା ଭାଙ୍ଗି ଗଲେ କୌଣସିଥିରେ କିଛି ହେବ ନାହିଁ। ସବୁ ଚେଷ୍ଟା ଫିକା ହୋଇଯିବ। ଆ.ପ୍ର. ୬/୧୯.୮.୧୯୪୫

## ।। ପୁରୁଷ ଓ ନାରୀର ସହଶିକ୍ଷାରେ କଣ ହୁଏ ।।

ସେଥିରେ (ସହଶିକ୍ଷାରେ) ଭଲ ହୁଏ ନାହିଁ। ଅତିନୈକଟ୍ୟରେ relishing indulgence of weakness (ତୃପ୍ତିର ସହିତ ଦୁର୍ବଳତାର ପ୍ରଶ୍ରୟ)-ଯୋଗୁଁ ପୁରୁଷ ଓ ନାରୀ ଉଭୟଙ୍କ ପ୍ରତି ଉଭୟଙ୍କର ଆମନ୍ତ୍ରଣୀ ଆକର୍ଷଣରେ ପ୍ରତ୍ୟେକେ ପ୍ରକୃତିଗତ ବୈଶିଷ୍ଟ୍ୟ ହରାଇ ବହୁମିଶ୍ରିତ ଖେଚୁଡ଼ି ପ୍ରସ୍ତୁତ କରି maso-effeminacy (ପୁରୁଷାଳୀ ନାରୀସୁଲଭତା)-ର ଗୋଟିଏ-ଗୋଟିଏ ଉଦ୍ଭଟ ସଂସ୍କରଣ ହୋଇ ଛିଡ଼ାହୁଅନ୍ତି। ଐକାନ୍ତିକ ମୋହରେ ପୁରୁଷ ତାର ଚିନ୍ତା ଚଳନ, ହାବଭାବ, ପୋଷକ-ପରିଚ୍ଛଦରେ ନାରୀ-ସାରୂପ୍ୟ ଲାଭର ସାଧନାରେ ମସଗୁଲ ହୁଏ। ନାରୀ ମଧ୍ୟ ହୁଏ ସେହିପରିଭାବରେ ଅସ୍ୱାଭାବିକ ରକମର masculine air, attitude and pose (ପୁରୁଷୋଚିତ ହାବ, ଭାବ ଓ ଭଙ୍ଗୀ)-ସମ୍ପନ୍ନ। ସେହି ହିସାବରେ ସବୁଗୁଡ଼ିକ factors or faculties (ଉପାଦାନ ଓ ଶକ୍ତି) damaged nature (ବିକୃତ ପ୍ରକୃତି) ଧରେ। ଏହା ଦ୍ୱାରା chastity of complexes (ପ୍ରବୃତ୍ତିର ପବିତ୍ରତା) loosened (ସ୍ଖଳିତ) ହୋଇ

ପଡ଼େ, eugenic product (ସନ୍ତାନ-ସନ୍ତତି)-ମାନେ fall କରନ୍ତି (ନିକୃଷ୍ଟ ହୁଅନ୍ତି), generation (ବଂଶ)-ଗୁଡ଼ିକ generally (ସାଧାରଣତଃ) weak and distorted (ଦୁର୍ବଳ ଓ ବିକୃତ) ହୁଏ ଇତ୍ୟାଦି ଅନେକ କିଛି କୁଫଳ ଫଳେ । ସେଥିପାଇଁ ମୋ ମତରେ mother (ମା)-ମାନଙ୍କର domestic tutorial class (ପାରିବାରିକ ଶିକ୍ଷାସ୍ତର)-ର ପରେ co-education (ସହଶିକ୍ଷା) ହେବା ଉଚିତ ନୁହେଁ।

Co-education-ର (ସହଶିକ୍ଷାର) କୁଫଳ ଅନନ୍ତ। ଏଥିରେ ନାରୀ-ସମ୍ବନ୍ଧରେ prolonged, unnecessary, abnormal, futile, sex-imagination (କ୍ରମାଗତ, ନିଷ୍ପ୍ରୟୋଜନ, ଅସ୍ୱାଭାବିକ, ନିଷ୍ଫଳ, ଯୌନ-କଳ୍ପନା)-ର ଫଳରେ ପୁରୁଷର psychological impotecny (ମାନସିକ ପୁରୁଷତ୍ୱ-ହୀନତା) ଦେଖା ଦିଏ, ଏବଂ ନାରୀ masculine nature (ପୁରୁଷୋଚିତ ପ୍ରକୃତି) imbibe (ଆୟତ୍ତ) କରିବା ଫଳରେ ଦାମ୍ପତ୍ୟ ଜୀବନରେ ପୁରୁଷ ଭଳି adoration (ପୂଜା) ଚାହେଁ ଏବଂ ତା ଫଳରେ ସ୍ୱତଃହିଁ inferior (ନିକୃଷ୍ଟ)-ର ପ୍ରତି inclined (ଆନତ) ହୁଏ, ଯିଏ କି-ନା ତାର ହୁକୁମର ଗୋଲାମ ହୋଇ ଚଳିବ। ଏହା ଦ୍ୱାରା ଅଗଣିତ inferior, perverted issue (ନିକୃଷ୍ଟ, ବିକୃତ ସନ୍ତାନ) ଦେଶରେ ଜନ୍ମ ହୁଏ। ନାରୀ-ପୁରୁଷ ମଧ୍ୟରେ ଯଦି honourable distance (ସମ୍ମାନ ଯୋଗ୍ୟ ବ୍ୟବଧାନ) ନ ଥାଏ ଉଭୟର healthy, normal sex-propensity (ସୁସ୍ଥ, ସ୍ୱାଭାବିକ ଯୌନ-ସମ୍ବେଗ) die out କରେ (ଲୋପ ପାଏ)। Lifeless, artificial, debilitated sex life (ପ୍ରାଣହୀନ, କୃତ୍ରିମ, ଦୁର୍ବଳ, ଯୌନ-ଜୀବନ) ଠାରୁ vigorous life (ଶକ୍ତିମାନ ଜୀବନ) ଗଜାଏ ନାହିଁ। Nation fall କରେ (ଜାତି ପଡ଼ି ଯାଏ)। ମୋର ମନେ ହୁଏ, ଏତଜ୍ଜାତୀୟ ନୈତିକ ଦୁର୍ବଳତାହିଁ ଫରାସୀମାନଙ୍କର ପତନରଂ ଅନ୍ୟତମ କାରଣ। ସମଗ୍ର ଇଉରୋପ, ଆମେରିକା ଆଜି ମଧ୍ୟ ଯଦି ଏ ବିଷୟରେ ସାବଧାନ ନ ହୁଅନ୍ତି, ଅଦୂର-ଭବିଷ୍ୟତରେ ସେମାନେ ତାର ବିଷମୟ ଫଳ ବୁଝି ପାରିବେ।

ଧର୍ମ, କୃଷ୍ଟି ଓ ବୈଶିଷ୍ଟ୍ୟ-ବିଧ୍ୱଂସୀ ବୁଦ୍ଧି ଏବଂ co-education (ସହଶିକ୍ଷା)-ଏହି ଦୁଇଟି ଜିନିଷ ଆମ ଦେଶର ମେରୁଦଣ୍ଡ ଅନେକ ପରିମାଣରେ ଭାଙ୍ଗି ଦେଇଛି। ଯେଉଁ ଆଘାତ ଆଣିଛି ତାହା ସମ୍ଭାଳି ଭାରତ କେଉଁଦିନ ଯେ ପୁଣି ସୁସ୍ଥ, ସ୍ୱସ୍ଥ ହେବ, ପରମପିତାହିଁ ଜାଣନ୍ତି। ଏହି ଦୁଇଟି ଜିନିଷ ଭାରତର ମାଟିରେ ଯେଉଁ ମାରଣ-ପ୍ରଭାବ

ବିସ୍ତାର କରିଛି, ତାହାର କାଳକବଳରୁ ସମ୍ପୂର୍ଣ୍ଣ ମୁକ୍ତ ହେବା ସମ୍ଭବ କି-ନୁହେଁ, ତା ମଧ୍ଯ କହି ପାରିବି ନାହିଁ। ଆ.ପ୍ର. ୬/୩୦.୧୦.୧୯୪୫

## ।। ଜୀବାତ୍ମାର ଜନ୍ମ-କଥା ।।

ମୃତ୍ୟୁ ସମୟରେ ମଣିଷ ଗୋଟିଏ ଭାବ ବା ଚିନ୍ତାର ଭିତରେ ଲୟ ପାଇ ଯାଏ। ଏହି ଭାବ ବା ଚିନ୍ତାର ଭିତରେ ତାର ଯାହା କିଛି deeper impression ଓ inclination (ଗଭୀରତର ଛାପ ଓ ଝୋଙ୍କ) concentrated (ଏକାଗ୍ର) ହୋଇ ଥାଏ। କୌଣସି ଦମ୍ପତ୍ତିର ମିଳନକାଳରେ ଏହି ଭାବର ସଙ୍ଗତି ଯେଉଁଠାରେ ସୃଷ୍ଟି ହୁଏ, ସେଠାରେ ତାର ଆସିବା ସମ୍ଭବ ହୁଏ। ଜନ୍ମ ପରେ ପ୍ରତ୍ୟେକଙ୍କ ଭିତରେହିଁ ବିଶେଷ ବିଶେଷ ସଂସ୍କାର ବା ଝୋଙ୍କ ଦେଖା ଯାଏ। ସେ ଗୁଡ଼ିକ ଜନ୍ମଜନ୍ମାନ୍ତରରେ ଅର୍ଜିତ କହିଲେ ଚଳେ। ଏହି ସଂସ୍କାର ସହିତ ତାର ପିତୃପୁରୁଷର ସଂସ୍କାରର ସାଧାରଣତଃ ଯୋଗ ଥାଏ। ତେଣୁ ସେ ସେଠାରେ ଆସି ପାରେ।

ଆ.ପ୍ର. ୬/୧୩.୧୧.୧୯୪୫

ଜୀବାତ୍ମା ମାନେ, ଜୀବନ ଧରି ଯେ ଚାଲେ ସେହିଁ। ...ମଣିଷ ଯଦି ଜାଣନ୍ତା, କେତେ କଷ୍ଟ କରି ସେ ଜନ୍ମ ନେଇପାରିଛି, ତାହେଲେ ଆଉ ମରିବାକୁ ଚାହଁନ୍ତା ନାହିଁ। କୌଣସି sexual congress (ଯୌନ ମିଳନ)-ର ସମୟରେ ଲକ୍ଷ-ଲକ୍ଷ ଜୀବତ୍ମା ଆସି ଜନ୍ମଗ୍ରହଣର ପାଇଁ ଚେଷ୍ଟା କରନ୍ତି। ଭାଗ୍ୟକ୍ରମରେ ଗୋଟିଏ ହୁଏତ ସ୍ଥାନ ପାଏ ବା ପାଏ ନା, ଆଉ-ସବୁଗୁଡ଼ିକ ବିଫଳ-ମନୋରଥ ହୋଇ ଫେରି ଯାଏ। କେତେ ସ୍ଥାନରେ ବ୍ୟର୍ଥ ହୋଇ ଯେ ଶେଷରେ କୃତକାର୍ଯ୍ୟ ହୁଏ ତାର କଣ ଇୟତ୍ତା ଅଛି? ଏ ବଡ଼ କଷ୍ଟ। ସ୍ମୃତି ରହେ ନା ତେଣୁ ବୁଝୁ ନା। ବୁଝି ପାରିଲେ ହେଳାରେ-ହେଳାରେ ଜୀବନ ନଷ୍ଟ କରାଯାଏ ନାହିଁ। ଅଗମ୍ୟଗମନ ଯେ ମହାପାପ କହୁଁ ତାର ବ୍ୟକ୍ତିଗତ, ସାମାଜିକ ଓ ନୈତିକ ଦିଗ ବ୍ୟତୀତ ଆଉ ଗୋଟିଏ ଦିଗ ଅଛି। ଆପଣଙ୍କର ମୃତ ପିତା ହୁଏତ ଆପଣଙ୍କ ଔରସରୁ ଜନ୍ମ ଗ୍ରହଣ କରିବା ପାଇଁ ଘୁରି ବୁଲୁଛନ୍ତି, ଆପଣ ହୁଏତ ତାଙ୍କୁ ପଠାଇ ଦେଲେ ଏକ ମେହେନ୍ତରାଣୀର କୋଳକୁ। ଦେଖୁଛନ୍ତି ତ କି ବିଭତ୍ସ ବ୍ୟାପାର! ଆ.ପ୍ର. ୬/୨୦.୧୧.୧୯୪୫

## ॥ ବିନ୍ଦୁଧାରଣ କରିବା, ଉର୍ଦ୍ଧ୍ୱରେତା ହେବା ମାନେ କଣ ॥

ବିନ୍ଦୁ ମାନେ centre (କେନ୍ଦ୍ର) ଅର୍ଥାତ୍ Ideal (ଇଷ୍ଟ)। ବିନ୍ଦୁଧାରଣ ମାନେ Ideal (ଇଷ୍ଟ)-କୁ ଧରି ଚାଲିବା, concentrated run (ଏକାଗ୍ର ଚଳନ)। ଏପରି ଚଳନରେ ଯିଏ ଚାଲେ, ସେ ଧର୍ମବିରୁଦ୍ଧ କାମର ପ୍ରଶ୍ରୟ ଦିଏ ନାହିଁ, ଅନର୍ଥକ ରେତଃପାତ କରେ ନାହିଁ। ଅନର୍ଥକ ରେତଃପାତ ଶରୀର–ମନର ଅପକର୍ଷ ନେଇ ଆସେ, ତେଣୁ ତାହା ଜୀବନର ପକ୍ଷରେ ହାନିକର।

(ଅନର୍ଥକ ରେତଃପାତ ମାନେ) ଯେପରି ଧରନ୍ତୁ masturbation (ହସ୍ତମୈଥୁନ)। ତାହା ଖରାପ ଜିନିଷ। ମୋର ମନେ ହୁଏ, ପ୍ରତ୍ୟେକଟି sperm (ଶୁକ୍ରକୀଟ)-ହିଁ ଗୋଟିଏ-ଗୋଟିଏ ସତ୍ତା–ମଣିଷ–ଆପଣଙ୍କ–ମୋ ପରି ମଣିଷ। Ovum (ଡିମ୍ବକୋଷ) ଯଦି ଧରେଇ ଦିଆଯାଇଥାନ୍ତା, ତା ହେଲେ ଏତେଗୁଡ଼ିଏ ମଣିଷ ହୋଇ ପାରିଥାନ୍ତେ। ଟେଷ୍ଟଟିଉବ ବେବୀ (ନଳଜାତ ଶିଶୁ)-ର କଥା ତ ଶୁଣିଛନ୍ତି। ଦ୍ରୋଣାଚାର୍ଯ୍ୟଙ୍କ କଥା ତ ଜାଣନ୍ତି। କେତେ ଆଚାର୍ଯ୍ୟଙ୍କ ସର୍ବନାଶ କରେ ମଣିଷ, ତାର କଣ ଠିକ୍ ଅଛି ? ପୁଣି ଦାମ୍ପତ୍ୟ-ଜୀବନରେ ମଧ୍ୟ ଅସଂଯମ ଭଲ ନୁହେଁ। ...ଉର୍ଦ୍ଧ୍ୱରେତା ହେବାର କଥା କହେ। ତାମାନେ ଉର୍ଦ୍ଧ୍ୱଦିଗକୁ ଅର୍ଥାତ୍ଶ୍ରେୟଙ୍କ ପ୍ରତି ଟାଣ ନେଇ ତଦଭିମୁଖୀ ଗତିରେ ଚାଲିବା। ଉର୍ଦ୍ଧ୍ୱରେତା ହେଲେ ଅଶିଷ୍ଟ କାମ ଶିଷ୍ଟ ହୁଏ। ମଣିଷ ଉର୍ଦ୍ଧ୍ୱଗତିସମ୍ପନ୍ନ ହେଲେ ଯେ ସନ୍ତାନ ଜନ୍ମ ଦେଇପାରିବ ନାହିଁ, ତାହା କିନ୍ତୁ ନୁହେଁ। ବରଂ ଏପରି ନ ହେଲେ ସନ୍ତାନର ଜନ୍ମଦାନର ଯୋଗ୍ୟତା ହୁଏ ନାହିଁ। ଯେପରି- ସେପରି ଭାବରେ ବିବାହ କରି, ଯେପରି-ସେପରି ଭାବରେ ସନ୍ତାନର ଜନ୍ମ ଦେଉ, ସେଇଥିପାଇଁ ତ ଆଉ ମଣିଷ ଖୋଜି ପାଉନା। ମଣିଷ ଯଦି ବାସ୍ତବରେ ଶ୍ରେୟୋନିଷ୍ଠଗତିସମ୍ପନ୍ନ ନ ହୁଏ, ତା ହେଲେ ଉର୍ଦ୍ଧ୍ୱରେତା ହୁଏ ନାହିଁ। ଆ.ପ୍ର. ୬/୨୦.୧୧.୧୯୪୫

## ॥ ପ୍ରତିଲୋମ ସନ୍ତାନ ବିଶ୍ୱାସଘାତକ ହୁଏ କାହିଁକି ॥

ବାପା-ମା sexual propensity (ଯୌନ ପ୍ରବୃତ୍ତି)-ର ପାଇଁ Ideal, cult, clan (ଇଷ୍ଟ, କୃଷ୍ଟି ଏବଂ ବଂଶ)-କୁ ପ୍ରଥମରୁହିଁ ଅସ୍ୱୀକାର କରନ୍ତି। ସେହିଠାରୁ ହିଁ ତ ଜନ୍ମ। ବିଶ୍ୱାସ ଘାତକ କାହିଁକି ହେବ ନାହିଁ ତାହାହିଁ ତ ବୁଝାଯାଏ ନା। ଏମାନେ ସମସ୍ତ ସମାଜକୁ ହିଁ ଦୂଷିତ କରି ତୋଳନ୍ତି। ଏମାନଙ୍କର ସଂଖ୍ୟା ବଢ଼ିଲେ ହିଁ ସର୍ବନାଶ।

ଆ.ପ୍ର. ୬/୬.୧୨.୧୯୪୫

## ।। ଅନୁନ୍ନତ ଜାତିର ଉନ୍ନତ ପୁରୁଷ ଉନ୍ନତ ଜାତିର ଝିଅକୁ ବିବାହ କଲେ କଣ ଦୋଷ ହୁଏ ।।

ଜାତି ନ କହି ବର୍ଣ୍ଣ କହିବା ଭଲ। ବର୍ଣ୍ଣମାନେ grouping of varieties of similar instincts (ସମଜାତୀୟ ସଂସ୍କାରର ବୈଚିତ୍ର୍ୟ ଗୁଚ୍ଛ)। ଜଣେ ପୁରୁଷର inborn instinct (ଜନ୍ମଗତ ସଂସ୍କାର) ଦେଖି ବୁଝା ଯାଏ, ସେ କେତେ ଉନ୍ନତ instinct (ସଂସ୍କାର)-ସମ୍ପନ୍ନ ସନ୍ତାନର ଜନକ ହୋଇ ପାରିବ। ସେ ଯେଉଁ-ଝିଅକୁ ବିବାହ କରିବ ତାର instinct (ସଂସ୍କାର) ଯଦି ତାର ନିଜର instinct (ସଂସ୍କାର) ଠାରୁ richer (ସମୃଦ୍ଧତର) ହୁଏ, ତେବେ ଏହି poorer genetic wealth (ଦୀନତର ଜନନ-ସମ୍ପଦ)—ସମ୍ପନ୍ନ sperm (ଶୁକ୍ର) ଏହି richer genetic wealth (ସମୃଦ୍ଧତର ଜନନ-ସମ୍ପଦ)—ସମ୍ପନ୍ନ Ovum (ଡିମ୍ବକୋଷ)-ର impregnating factor (ଗର୍ଭଧାନକାରୀ ଉପାଦାନ) ହିସାବରେ misfit (ଅଯୋଗ୍ୟ) ହୋଇ ଛିଡ଼ା ହୁଏ। Biologically (ଜୀବବିଜ୍ଞାନର ଦିଗ ଦେଇ) ଏହିଟା ଏକ ପ୍ରକୃତି ବିରୁଦ୍ଧ ମିଳନ। Sperm (ଶୁକ୍ର) ଓ ovum (ଡିମ୍ବକୋଷ) ଉଭହେଁ ଦିଗହରା ଓ ବିପର୍ଯ୍ୟସ୍ତ ହୋଇ ପଡ଼ନ୍ତି। Ovum (ଡିମ୍ବାକୋଷ) feel (ଅନୁଭବ) କରେ ଯେ, ତା ଉପରେ ଗୋଟିଏ satanic tyranny (ସଇତାନୀ ଅତ୍ୟାଚାର) ହେଉଛି। ଏହି ପ୍ରକାର ବିଧିବିରୁଦ୍ଧ ମିଳନର ଫଳ କେତେବେଳେ ମଧ ଭଲ ହୁଏ ନାହିଁ। ସନ୍ତାନ ବାପା-ମା କାହାରବି ଭଲଟା ପାଏ ନାହିଁ। ସତ୍ ଯାହା, ସତ୍ତା-ପୋଷଣୀ ଯାହା ତାହା ଧ୍ୱଂସ କରିବାର ଉଦଗ୍ର ଝୋଙ୍କ ନେଇ ସେମାନଙ୍କର ଜନ୍ମ। ମନେ ରଖ, instinct (ସଂସ୍କାର) ଓ acquisition (ଅର୍ଜିତ ବିଦ୍ୟା) କିନ୍ତୁ ଏକ ନୁହେଁ। ଜଣେ ଶୂଦ୍ର ଯଦି ବ୍ରହ୍ମଜ୍ଞ ହୁଏ, ତାକୁ ତୁମେ ଗୁରୁ ହିସାବରେ ଗ୍ରହଣ କରିପାର, କିନ୍ତୁ ତା ସହିତ ତୁମ ଝିଅକୁ ବିବାହ ଦେଇ ପାରିବ ନାହିଁ। କାରଣ, ସେ breeder (ଜନ୍ମଦାତା) ହିସାବରେ ତୁମ rank (ପର୍ଯ୍ୟାୟ)-ରୁ ନୀଚ। ଆ.ପ୍ର. ୬/୬.୧୨.୧୯୪୫

## ।। ବଞ୍ଚିବାର ଶକ୍ତି ରହିବ ନାହିଁ କେତେବେଳେ ।।

ଅଜ୍ଞତା ଯୋଗୁଁ ଅନେକ ଜାଗାରେ ଅନେକ ଗୋଳମାଳ ପଶି ଯାଇଛି। ବିବାହାଦିର ଗୋଳମାଳ ହେଲେ କିନ୍ତୁ ଖୁବ୍ ମୁସ୍କିଲ। ତେଣୁ ଲୋକଙ୍କୁ educate (ଶିକ୍ଷିତ) କରିବା ଦରକାର। ସେଥିପାଇଁ ଦରକାର ଯାଜନ। ପ୍ରଥମେ କେତେଜଣ whip of the coun-

try (ଦେଶର ପରିଚାଳକ-ଶ୍ରେଣୀର ଲୋକଙ୍କୁ) adhered (ଅନୁରକ୍ତ) କରି ନେଇ ଖୁବ୍‌ଜୋରରେ ଚଳାଇବା ଦରକାର। ତୁମ୍ଭମାନଙ୍କର ଆର୍ଯ୍ୟକୃଷ୍ଟିର movement (ଆନ୍ଦୋଳନ) start (ଆରମ୍ଭ) କରିବା ଦରକାର। ବର୍ଣ୍ଣାଶ୍ରମ ଓ ବିହିତ ବିବାହ ସମ୍ବନ୍ଧରେ ସମସ୍ତଙ୍କୁ ସଚେତନ କରି ତୋଳିବା ଦରକାର। ଖୁବ୍ enthusiastic, loyal, ferocious whip (ଉତ୍ସାହୀ, ଏକନିଷ୍ଠ, ପରାକ୍ରମୀ ପରିଚାଳକ) ଯୋଗାଡ଼ କରି vigorous push (ପ୍ରବଳ ଧକ୍କା) ଦେବାକୁ ହେବ। ତା ନ ହେଲେ ବଞ୍ଚିବାର ଶକ୍ତି ନାହିଁ। ଆ.ପ୍ର. ୬/୮.୧୨.୧୯୪୫

## ।। କାମ-ପ୍ରବୃତ୍ତିକୁ ପ୍ରଶ୍ରୟ ଦେବ ନାହିଁ କାହିଁକି ।।

ଏହାକୁ (କାମ ପ୍ରବୃତ୍ତିକୁ) idulgence (ପ୍ରଶ୍ରୟ) ଦେଲେହିଁ ପାଇ ବସେ, ତେଣୁ actively ignore (ସକ୍ରିୟଭାବରେ ଉପେକ୍ଷା) କରିବା ଦରକାର। ଝିଅମାନଙ୍କ ପ୍ରତି କାମବେଗ ମନେ ମନେ ignore (ଉପେକ୍ଷା) କରିବାକୁ ହୁଏ, ପୁଣି ବାହାରେ ଏପରି environment (ପରିବେଶ) create (ସୃଷ୍ଟି) କରିବାକୁ ହୁଏ, ଯେପରି ସେ ଦିଗକୁ ମନ ନ ଯାଏ। ସତ୍‌କର୍ମ, ପବିତ୍ର ଦାୟିତ୍ୱ ଓ ଧନ୍ଦାରେ ନିଜକୁ ବ୍ୟାପୃତ କରି ରଖିବାକୁ ହୁଏ। କୌଣସି ପ୍ରକାରେ Complex (ପ୍ରବୃତ୍ତି)-ର ଅଧୀନ ହେବ ନାହିଁ। ପଞ୍ଚ-ଇନ୍ଦ୍ରିୟ ଟାଣୁଛି, ସେଥିପାଇଁ (ଇଷ୍ଟଙ୍କ ଠାରେ) surrender (ଆତ୍ମସମର୍ପଣ) କରିବାକୁ ପଡ଼ିବ। ମୌଖିକ surrender (ଆତ୍ମସମର୍ପଣ) ହେଲେ ହୁଏ ନାହିଁ, ବାସ୍ତବରେ ଇଷ୍ଟ ସେବାରେ ନିଜକୁ ନିୟୋଜିତ କରିବାକୁ ହୁଏ - ଯାହା ପକ୍ଷରେ ଯେତେବେଳେ ଯେଉଁଠାରେ ଯେପରି ସମ୍ଭବ, ସେହିପରି କରି। ଆ.ପ୍ର. ୬/୮.୧୨.୧୯୪୫

## ।। ପ୍ରାଚୀନ ସମାଜ ବ୍ୟବସ୍ଥା କିପରି ଥିଲା ।।

ଜଗତରେ ଗୋଟିଏ ପରି ଠିକ୍ ଆଉ–ଗୋଟିଏ ଦେଖିବାକୁ ପାଇବ ନାହିଁ। ଗୋଟିଏ ଗଛ ପରି ଆଉ–ଗୋଟିଏ ଗଛ ନୁହେଁ, ଗୋଟିଏ–ପତ୍ର ପରି ଆଉ ଗୋଟିଏ–ପତ୍ର ନୁହେଁ, ଗୋଟିଏ–ମଣିଷ ପରି ଆଉ ଗୋଟିଏ–ମଣିଷ ନୁହେଁ। ପ୍ରତ୍ୟେକଙ୍କର ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଅଛି। ଆଉ ଏହି ବୈଶିଷ୍ଟ୍ୟର ପଛରେ ଅଛି inborn instinct, trait ଓ temperament (ସହଜାତ ସଂସ୍କାର, ଗୁଣ ଓ ଧାତୁ)। Temperament ମାନେ ଧାତୁ, ଧାତୁ ମାନେ ଯାହା ଧାରଣ କରେ। ଏହି ଧାତୁକୁ ଯେଉଁ ତାଳରେ

ଯେପରି ବ୍ୟବହାର କରାହୁଏ, ଯେଉଁ ପ୍ରକାରରେ—ଏହି ଧାତୁ ଦେଇ ଯାହାକୁ ଯେପରି ପରିଚର୍ଯ୍ୟା କରାହୁଏ ଅସ୍ଖଳିତ ତତ୍ପରତାରେ—ବ୍ୟକ୍ତିତ୍ୱ ମଧ୍ୟ ସେହିପରି ହୋଇ ଉଠେ। ଏହି ବୈଶିଷ୍ଟ୍ୟର ତାରତମ୍ୟ ଅନୁଯାୟୀ ଚାରୋଟି grand division (ପ୍ରଧାନ ଭାଗ) କରା ହୁଏ। ମଣିଷ, ଅନ୍ୟାନ୍ୟ ଜୀବଜନ୍ତୁ, ପଶୁପକ୍ଷୀ, ଗଛପତ୍ର ସବୁ-କିଛିର ମଧ୍ୟରେ ହିଁ ଏହି division (ଭାଗ) ଅଛି। ଏହି ଚାରୋଟି ବିଭାଗ ହେଲା ବିପ୍ର, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର। ପ୍ରତ୍ୟେକଟି ବର୍ଣ୍ଣହିଁ ତାର ବୈଶିଷ୍ଟ୍ୟ-ଅନୁଯାୟୀ ସମାଜର ସେବା କରୁଥିଲେ। ଯାହାର ବୈଶିଷ୍ଟ୍ୟ ଯେପରି ଉନ୍ନତ ଧରଣର, ସେ ସେହିପରି ଶ୍ରଦ୍ଧା ପାଉଥିଲା। ପରସ୍ପର ମଧ୍ୟରେ ଅଙ୍ଗାଙ୍ଗୀ ଭାବ ଥିଲା। କାହାରିକୁ ବାଦ୍‌ଦେଇ କାହାରି ଚାଲିବାର ଶକ୍ତି ନ ଥିଲା। ତେଣୁ କାହାରିକୁ କେହି ଅବଜ୍ଞା କରିବାର ଅବକାଶ ନ ଥିଲା। ଏମାନଙ୍କ ମଧ୍ୟରେ ପୁଣି ଅନୁଲୋମ-କ୍ରମରେ ବିବାହାଦି ହେଉଥିଲା। ତେଣୁ ସବୁ ବର୍ଣ୍ଣ ହିଁ ଆତ୍ମୀୟତାସୂତ୍ରରେ ଜଡ଼ିତ ହୋଇ ପଡୁଥିଲେ। ସମାଜବ୍ୟବସ୍ଥା ଏପରି ଥିଲା, ଯେଉଁଥିରେ ନୀଚ ଉପରକୁ ଉଠି ଯାଏ। ତେଣୁ ଅନୁଲୋମ ଅସବର୍ଣ୍ଣ ବିବାହର ପ୍ରଚଳନ ରହିଲେ ମଧ୍ୟ ପ୍ରତିଲୋମ ସମ୍ବନ୍ଧରେ କଠୋର ନିଷେଧ ଥିଲା। କାରଣ, ପ୍ରତିଲୋମରେ ପରିଧ୍ୱଂସର ସୃଷ୍ଟି ହୁଏ। ମନୁ କହିଛନ୍ତି –

'ଯତ୍ରତ୍ୱେତେ ପରିଧ୍ୱଂସା ଜାୟନ୍ତେ ବର୍ଣ୍ଣଦୂଷକାଃ
ରାଷ୍ଟ୍ରକୈଃ ସହ ତଦ୍ରାଷ୍ଟ୍ରଂ କ୍ଷିପ୍ରମେବ ବିନଶ୍ୟତି।

ଆ.ପ୍ର. ୬/୧୩.୧୨.୧୯୪୫

## ।। ଆଦର୍ଶ ଓ ବିବାହ ଏହି ଦୁଇଟି ବନ୍ଧନୀ ତ୍ୟାଗ କରିବା ନାହିଁ କାହିଁକି।।

ତପସ୍ୟା ଓ ବିହିତ ଯୌନ-ସଂଶ୍ରବ ଏହି ଦୁଇଟି ଦ୍ୱାରା ମଣିଷର becoming (ବୃଦ୍ଧି) ହୁଏ। ତେଣୁ ଜାତିକୁ ଯଦି ବୃଦ୍ଧିର ପଥରେ ଚଳାଇବାକୁ ହୁଏ, Ideal (ଆଦର୍ଶ) ଓ marriage (ବିବାହ) ଏହି ଦୁଇଟି bracket (ବନ୍ଧନୀ) ଠିକ୍ ରଖିବା ଦରକାର। ଏହି ଦୁଇଟି bracket (ବନ୍ଧନୀ)-ର ମଧ୍ୟରେ ହିଁ ଜନ ଓ ଜାତି ବଞ୍ଚି ରହେ ଓ ବଢ଼ି ଚାଲେ। ଆଦର୍ଶାନୁଗ ତପସ୍ୟାର ମଧ୍ୟରେ ପୁଣି ବର୍ଣ୍ଣାନୁଗ କର୍ମ ଜଡ଼ିତ ଅଛି। ବୈଶିଷ୍ଟ୍ୟ-ସମ୍ମତ କର୍ମକୁ ignore (ଉପେକ୍ଷା) କରି କେହି ବ୍ରହ୍ମଜ୍ଞ ଅର୍ଥାତ୍ ବ୍ରାହ୍ମଣ ହୋଇ ପାରେନା, କାରଣ instinctive channel (ସଂସ୍କାରଗତ ପଥ) ବାଦ୍‌ଦେଇ ଅନ୍ୟ ପଥରେ ଗଲେ ପ୍ରକୃତ ଜ୍ଞାନ ବା ଅଭିଜ୍ଞତା ହୁଏ ନା, ଉପର-ଠାଉରିଆ କିଛି ହେଲେ ମଧ୍ୟ ତାହା ସତ୍ତାର

ସହିତ ଯୋଡ଼ି ହୁଏ ନା। ପୁଣି ବର୍ଣ୍ଣଗତ କର୍ମ ନଷ୍ଟ କରିଲେ ସମାଜ-ଜୀବନ ମଧ୍ୟ ବିକ୍ଷୁବ୍ଧ ଓ ବିଶୃଙ୍ଖଳ ହୋଇଉଠେ। ବର୍ଣ୍ଣଗତ କର୍ମ ଠିକ୍ ରହିଲେ unemployment, undue competition, unrest, inefficiency (ବେକାର, ଅସ୍ୱାଭାବିକ ପ୍ରତିଯୋଗିତା, ଅଶାନ୍ତ ଅବସ୍ଥା, ଅଯୋଗ୍ୟତା) ଅନେକ କମି ଯାଏ। ତେଣୁ ଯେଉଁଦିଗ ଦେଇହିଁ ଯାଅ, ବର୍ଣ୍ଣ ନ ମାନି ଗତ୍ୟନ୍ତର ନାହିଁ। କାମଦାମ କରି ଖାଇବାକୁ ଗଲେ ଯାହାକୁ ଯେଉଁଟା ସାଜେ ତାର ସେହି କାମ କରିବା ଭଲ, ବାହା-ସାହା ହୋଇ ଘର-ସଂସାର କରିବାକୁ ଗଲେ ମଧ୍ୟ ଏପରି ଭାବରେ ବିବାହ କରିବା ଭଲ, ଯାହାଦ୍ୱାରା ଦାମ୍ପତ୍ୟ ଜୀବନରେ ସବୁଦିଗ ଦେଇ ମେଳ ହୁଏ ଏବଂ ସନ୍ତାନ-ସନ୍ତତି ମଧ୍ୟ ବଂଶର ଧାରାଟା ପାଆନ୍ତି, ପୁଣି ସାଧନା-ତପସ୍ୟା କରିବାକୁ ଗଲେ ମଧ୍ୟ ଏପରି ଭାବରେ କରିବାକୁ ହୁଏ, ଯେପରି ଜନ୍ମଗତ ବୈଶିଷ୍ଟ୍ୟର ଉପରେ ଛିଡ଼ା ହୋଇ further evolution (ଆହୁରି ବିବର୍ତ୍ତନ)-ର ଦିଗକୁ ହାତ ବଢ଼ାଯାଏ। ଯାହାଦ୍ୱାରା କୌଣସି ଦିଗ ଦେଇ କ୍ଷତି ନାହିଁ, ସବୁ ଦିଗରୁହିଁ ଲାଭ, ଏପରି କେଉଁ ପାଗଳ ଅଛି ଯେ ସେ ତାହା ତ୍ୟାଗ କରିବାକୁ ଚାହିଁବ ?

ଆ.ପ୍ର. ୬/୧୩.୧୨.୧୯୪୫

## ।। ଅନୁଲୋମ ଜାତ ପୁରୁଷମାନେ କାହାକୁ ବିବାହ କରିବେ ।।

ଅନୁଲୋମ ଜାତ ପୁରୁଷ ଯେଉଁମାନେ, ସେମାନେ କିନ୍ତୁ ମାତୃବର୍ଣ୍ଣର ଉପର ବର୍ଣ୍ଣର କନ୍ୟାକୁ ବିବାହ କରି ପାରିବେ ନାହିଁ। ପାରଶବମାନେ ବିପ୍ର ବର୍ଣ୍ଣର ଗୋଟିଏ ଥାକ ହେଲେ ମଧ୍ୟ ସେମାନେ କିନ୍ତୁ କ୍ଷତ୍ରିୟ ବା ବୈଶ୍ୟ କନ୍ୟା ବିବାହ କରି ପାରିବେ ନାହିଁ। ପୁଣି କ୍ଷତ୍ରିୟ-ବୈଶ୍ୟ ମଧ୍ୟ ପାରଶବର ଝିଅକୁ ବିବାହ କରି ପାରିବେନାହିଁ।

ଆ.ପ୍ର. ୬/୧୩.୧୨.୧୯୪୫

## ।। ସୁପ୍ରଜନନ କାହାକୁ କହନ୍ତି ।।

ଇଷ୍ଟ-କୃଷ୍ଟି ଧରି ବର୍ଣ୍ଣୋଚିତ ଆଚାର-ଆଚରଣ ନ କରିଲେ (ମଣିଷ) ପତିତ ହୋଇ ଯାଏ। ପତିତ ହେଲେ ଗୁଣଗୁଡ଼ିକ ମଳିନ ହୁଏ, ଅବଗୁଣ ଗୁଡ଼ିକ ଭାସି ଉଠେ। Acquisition (ଅର୍ଜିତ ଗୁଣ) ବଂଶପରମ୍ପରାରେ ଯେତେବେଳେ instinct-ରେ (ସଂସ୍କାରରେ) ପରିଣତ ହୁଏ, ତାହା ଏତେଶୀଘ୍ର ନଷ୍ଟ ହୋଇ ଯାଇ ପାରେ ନାହିଁ, ଯଦି ବିବାହରେ ବିପର୍ଯ୍ୟୟ ନ ହୁଏ। Instinct (ସଂସ୍କାର) ହେଲେ ସେହି ପର୍ଯ୍ୟାୟର

breeding capacity (ଜନନ-କ୍ଷମତା) ହୁଏ। Culture (ଅନୁଶୀଳନ) ନ କରିଲେ ମଣିଷ progressive (ଉନ୍ନତିମୁଖର) ହୁଏ ନା, କିନ୍ତୁ ତାର ଅନ୍ତର୍ନିହିତ immortal necklace of germcells (ବୀଜକୋଷର ଅବିନଶ୍ୱର ମାଳା) ବଜାଇ ରହିଥିବା ଯୋଗୁଁ, ସେତେବେଳେ ପର୍ଯ୍ୟନ୍ତ ତାର ସୁସନ୍ତାନର ଜନକ ହେବାର ସମ୍ଭାବନା ଥାଏ। କିନ୍ତୁ କୌଣସି ବଂଶରେ undesirable marriage (ଅବାଞ୍ଛିତ ବିବାହ) ହେଲେ, ତା ଠାରୁ ଯେଉଁ ଉତ୍ପାତର ସୃଷ୍ଟି ହୁଏ, ସହଜରେ ତାହା ଦୂର ହୁଏ ନାହିଁ। ତେଣୁ କହେ culture (ଅନୁଶୀଳନ)-କୁ ignore (ଉପେକ୍ଷା) କର ନାହିଁ, ତା ହେଲେ ତୁମେ ଠକି ଗଲ, ତୁମର କିଛି ହେଲା ନାହିଁ; ସଙ୍ଗେ ସଙ୍ଗେ hereditary excellence (ବଂଶଗତ ଉତ୍କର୍ଷ) ଯେପରି ଆହୁରି excel (ଉତ୍କର୍ଷ ଲାଭ) କରେ, ସେ ଦିଗକୁ ମଧ୍ୟ ନଜର ରଖିବାକୁ ହୁଏ। ତାହାକୁ କହନ୍ତି ସୁପ୍ରଜନନ। ଦେଶୀ ଷଣ୍ଢ ଯେତେ ବଡ଼ ହେଉ ନା କାହିଁକି, ତାର breed (ବାଛା) ମୂଲତାନୀ ଷଣ୍ଢର breed (ଛୁଆ) ପରି ହେବ ନାହିଁ। ଜେବ୍ରା ଦ୍ୱାରା ଘୋଡ଼ାର breeding (ସନ୍ତାନ ଉତ୍ପାଦନ) ହେଲେ ଜେବ୍ରାର instinct tempered by ଘୋଡ଼ା - temperament (ଘୋଡ଼ାର ଧାତୁ ଦ୍ୱାରା ପ୍ରଭାବିତ ଜେବ୍ରା-ସଂସ୍କାର) -ଏହାହିଁ ହେବ, ଘୋଡ଼ା ହେବ ନାହିଁ। ଫଳ ଜଗତରେ ଦେଖ ନାହିଁ କାହିଁକି ? ଏକ ସ୍ଥାନରେ କମଳା ଦୁଧରେ ଖିଆଯାଏ, ଆଉ ଏକ ସ୍ଥାନରେ ଟଭା ପରି। ବୀଜ ଓ ମାଟିର ସଙ୍ଗତି ଦରକାର। ଭଲ ଯଦି ଚାହୁଁ, ଯାହା ଭିତର ଦେଇ ଭଲ ହୋଇ ପାରିବ ଏହିପରି ସମ୍ମିଳନ ଘଟାଇବାକୁ ହେବ। Anomalous interpolation (ପ୍ରତିଲୋମ ସଂଶ୍ରବ) ଠାରୁ ଜାତ ଅଥଚ interpolluted (ଭିତରେ ଦୂଷିତ) ନୁହେଁ ଏପରି ଗୋଟିଏ ବି ଜଗତରେ ଦେଖାଇ ପାରିବ ନାହିଁ। କିନ୍ତୁ ଅନୁଲୋମ ସନ୍ତାନ ବେଳକୁ ତାହା ନୁହେଁ। ବେଦବ୍ୟାସ ଅନୁଲୋମ-ସନ୍ତାନ ଆଜି ମଧ୍ୟ ପୂଜା ପାଆନ୍ତି। ଏଟମ୍ ବମ୍‌ର ଆବିଷ୍କାରକଙ୍କର କଥା ଶୁଣିଛି ବାପା ଜର୍ମାନୀ, ମା ଇହୁଦୀ। ଏହା ମଧ୍ୟ ଅନୁଲୋମ। ଏକପ୍ରକାର ଆଖୁ ଅଛି, ବାପ ଧଳୀ, ମା ନଟା, ସାନୀ ବା କାଶର ପରି। ସେହି ଆଖୁ ଭିତରେ ନଟା, ସାନି ବା କାଶର ଧାଁଜ ଅଛି, ଧଳୀର ସବୁ ଗୁଣ ଅଛି। ଟିକିଏ ଟକ, ଏମିତି ଶକ୍ତ—ଶିଆଳ ଖାଇ ପାରେ ନାହିଁ। ଆ.ପ୍ର. ୬/୧୩.୧୨.୧୯୪୫

## ।। ବିବାହ କରି ପ୍ରଥମେ କଣ କରିବାକୁ ହୁଏ ।।

ବିବାହ କରି ପ୍ରଥମେ ସ୍ତ୍ରୀ ପାଖରେ ବାପା ମାଙ୍କର ଗଳ୍ପ କରି ତାଙ୍କ ପ୍ରତି ତାର ମନ ମଜାଇ ରଖିବାକୁ ହୁଏ । ସେମାନଙ୍କର ସେବା କରାଇବା ଦରକାର ହୁଏ । ସେମାନେ କିଛି (କରିବାକୁ) କୁହନ୍ତୁ ନା ନ କୁହନ୍ତୁ, ବୁଝି ବୁଝି କରିବ । ନ କହିବା ଆଗରୁ ବୁଝି କରିବ କାମ, ସେଇ ତ ସେବକ ନାମ । ଏହାଦ୍ୱାରା ଛୁଆ-ପିଲା keen (ତୀକ୍ଷ୍ଣ) ହେବେ, alert (ସତର୍କ) ହେବେ, ସତେଜ ହୋଇ ଉଠିବେ । ସ୍ତ୍ରୀର ହାତ ଧରି ତୁମେ ଖୋଲା ରାସ୍ତାରେ ଘୁରି ବୁଲିବାକୁ ଚାହଁ, ସ୍ତ୍ରୀ ମଧ୍ୟ ତାହା ପସନ୍ଦ କରେ । ବାପା ବାଧା ଦେଲେ । ତୁମେ ସ୍ତ୍ରୀ ଆଗରେ ବାପାଙ୍କର ସମାଲୋଚନା କରୁଛ, ବାପାଙ୍କ ପରି ପାଗଳ ଆଉ ଦେଖିନାହିଁ । ଯେତେ ସବୁ କୁସଂସ୍କାର ! ସ୍ତ୍ରୀ ଭାବେ, ଶଳା ପାଇଛି ତ complex-ର (ବୃତ୍ତିର) food (ଖୋରାକ) ! କାମ (କାର୍ଯ୍ୟ) ଜଖମ କରିଲ ଏହିଠାରୁ, ଟିକିଏ ଟିକିଏ ବାଙ୍କ ଧରିଲା । ଶେଷରେ ତୁମକୁ ମଧ୍ୟ ଯେ ମାନିବ ନାହିଁ, ସେଥିରେ ଆଉ ସନ୍ଦେହ କଣ ? ଗୁରୁଜନଙ୍କୁ ଆଶ୍ରଦ୍ଧା କରିବାର ଦୀକ୍ଷାରେ ଦୀକ୍ଷିତ କରିଛ ତାକୁ ତୁମେ ନିଜେ ।

ଆ.ପ୍ର. ୬/୧୩.୧୨.୧୯୪୫

## ।। ସୁପ୍ରଜନନ ଏବଂ ଦାମ୍ପତ୍ୟଜୀବନରେ ଯୌନ-ଉପଭୋଗ ଏ ଦୁଇଟିର ସଙ୍ଗତି କେଉଁଠି ।।

ସୁପ୍ରଜନନ ସହିତ ଯୌନ-ଉପଭୋଗର କୌଣସି ଅସଙ୍ଗତି ନାହିଁ । Self-control (ଆତ୍ମ-ସଂଯମ) ନ-ରହିଲେ ଉପଭୋଗହିଁ ହୁଏ ନାହିଁ । ଉପଭୋଗ କରିବାକୁ ଗଲେ ଉପଭୋଗ୍ୟ ବସ୍ତୁର ଊର୍ଦ୍ଧ୍ୱରେ ରହିବାକୁ ହୁଏ । ସୁପ୍ରଜନନ ଯଦି କାମ୍ୟ ହୁଏ, ତାହେଲେ ସ୍ତ୍ରୀର ଚାହିଦା ବ୍ୟତୀତ ସହବାସ କରିବା ଉଚିତ ନୁହେଁ । ସେପରି ସହବାସ ସ୍ତ୍ରୀ ପାଖରେ ପ୍ରୀତିକର ହୁଏ ନା । କାରଣ, ଅନେକ ସମୟରେ ସେମାନଙ୍କର physiological demand (ଶାରୀରିକ ଚାହିଦା) ରହେ ନାହିଁ । ଜଣଙ୍କ ପାଖରେ ପ୍ରୀତିକର ନ ହେଲେ ତାହା କାହାରି ପକ୍ଷରେ ଉପଭୋଗ୍ୟ ହୁଏ ନାହିଁ । ବଳାତ୍କାର ପରି ହୁଏ । ଉପଭୋଗ ମଧ୍ୟରେ ଅଛି ପାରସ୍ପରିକତା, ପରସ୍ପର ପରସ୍ପରକୁ ଖୁସି କରି ଆହୁରି ଖୁସି ହୋଇ ଉଠିବା । ଏହିଭାବରେ ସ୍ତ୍ରୀର ଆଗ୍ରହ – ଅନୁଯାୟୀ sexually engaged (ସହବାସ) ହେଲେ ସେଥିରେ ଉପଭୋଗ ମଧ୍ୟ ହୁଏ, ସନ୍ତାନ ମଧ୍ୟ ଭଲ ହୁଏ । ସ୍ୱାମୀ ଯଦି ଇଷ୍ଟନିଷ୍ଠ ଓ ସଦ୍‌ଭାବାପନ୍ନ ହୁଏ, ଏବଂ ସେ ଯଦି ସ୍ୱଭାବତଃହିଁ higher pursuit (ଉନ୍ନତ ଚଳନ) ନେଇ ମତ୍ତ ରହେ, ତେବେ

ସ୍ତ୍ରୀ ତାକୁ ତା ପ୍ରତି ଆନତ କରାଇବାକୁ ଗଲେ ଉନ୍ନତ ଓ ପବିତ୍ର ପ୍ରେରଣା ଓ ଭାବଭଙ୍ଗୀ ନେଇ ଅଗ୍ରସର ହେବାକୁ ବାଧ୍ୟ ହୁଏ - ଅବଶ୍ୟ ସେ ଯଦି ମନୋବୃତ୍ତ୍ୟନୁସାରିଣୀ ସ୍ତ୍ରୀ ହୁଏ। ସ୍ତ୍ରୀ ଯଦି ଏହି ସମୟରେ ସ୍ୱାମୀଙ୍କର ଦେବଭାବକୁ ଉଦ୍ଦୀପିତ କରି ତୋଳିପାରେ, ତାହେଲେ ଦୈବୀଭାବାପନ୍ନ ସନ୍ତାନର ଆଗମନର ସମ୍ଭାବନା ଥାଏ। ପୁଣି ଯେଉଁମାନେ ସଂଯତ ଓ ଉନ୍ନତଭାବାପନ୍ନ, ସେମାନେ ସ୍ୱଭାବତଃହିଁ virile (ବୀର୍ଯ୍ୟବାନ) ହୋଇ ଉଠନ୍ତି। ଏଥି ଭିତର-ଦେଇ ଉଭଙ୍କର ଯେଉଁ satisfaction (ତୃପ୍ତି) ହୁଏ, ଅସଂଯତ ଓ debilitated (ଦୁର୍ବଳ) ଯେଉଁମାନେ, ସେମାନେ ତାର କଳ୍ପନା ମଧ୍ୟ କରି ପାରନ୍ତି ନାହିଁ। କାମ-ଅଭିଭୂତ ଯେଉଁମାନେ ସେମାନେ କାମକୁ rightly handle ଓ enjoy (ଠିକ୍‌ଭାବରେ ପରିଚାଳନା ଓ ଉପଭୋଗ) କରିବେ କିପରି? ଆର୍ଯ୍ୟ ମତରେ ସେମାନେ ଗାର୍ହସ୍ଥ୍ୟ ଆଶ୍ରମରେ ପ୍ରବେଶ କରିବା ପାଇଁ ଅନୁପଯୁକ୍ତ। କାରଣ, ଗୃହସ୍ଥ ହୋଇ ସେମାନେ ସୁସନ୍ତାନର ଜନ୍ମ ଦେଇ ପାରିବେ ନାହିଁ, ସୁନିୟନ୍ତ୍ରିତ ଦାମ୍ପତ୍ୟ-ଜୀବନ ଯାପନ ମଧ୍ୟ କରି ପାରିବେ ନାହିଁ। ଏହା ଠିକ୍ ଜାଣିରଖିବେ - ନାରୀ ମୁଖୀ କାମୁକ ପୁରୁଷକୁ ନାରୀମାନେ କେତେବେଳେବି ଶ୍ରଦ୍ଧାର ଆଖିରେ ଦେଖନ୍ତି ନାହିଁ। ଆଉ ଏହି ଅଶ୍ରଦ୍ଧାରୁ ବିଭିନ୍ନ ଗୋଳମାଳର ସୂତ୍ରପାତ ହୁଏ। ତେଣୁ ପୁରୁଷ ଇଷ୍ଟନିଷ୍ଠ ନ ହେଲେ ତାର ବିବାହ କରିବାର ଅଧିକାର ହୁଏ ନାହିଁ। ଏହି ସବୁ କଥା ସମାଜରେ ଖୁବ୍ ଭଲକରି ଜଣାଇବା ଦରକାର। ଏହି ସବୁ ସମ୍ବନ୍ଧରେ ଲୋକଙ୍କର ଭାବ ସୃଷ୍ଟି କରିବା ଦରକାର। ଦେଖୁଛନ୍ତି ନା, ଜାତିଟା ଦିନକୁ-ଦିନ କଣ ହୋଇ ଯାଉଛି! ଯେଉଁ ଦେଶର ଘରେ-ଘରେ ଦେବତା ପରି ମଣିଷ ଜନ୍ମ ନେଉ ଥିଲେ, ସେହି ଦେଶରେ ଆଉ ମଣିଷ ମିଳୁ ନାହିଁ! ନିଜକୁ ପ୍ରବୃତ୍ତି ପାଖରେ ବିକ୍ରି କରି ଦେଇଛନ୍ତି। ଏହି ବାସ୍ତବ ଅବସ୍ଥାର କଥା ଏବଂ ଏହାର ପ୍ରତିକାରର କଥା ଯଦି ମଣିଷ ପାଖରେ କହନ୍ତି, କାହିଁକି ବା ସେମାନେ ବୁଝିବେ ନାହିଁ? ମୋର ଏପରି କୌଣସି ଅହଂକାର ନାହିଁ ଯେ ମୋ କଥା ଲୋକେ ଶୁଣନ୍ତୁ। ମୁଁ କହେ ତୁମେ ତାହାହିଁ କର, ଯେଉଁଥିରେ ତୁମେ ବଞ୍ଚିପାର, ଭଲରେ ରହିପାର, ସୁଖରେ ରହିପାର, ଉନ୍ନତି ଦିଗରେ ଆଗେଇ ଯାଇ ପାର। ବିଧିକୁ ଅମାନ୍ୟ କରି ତାହା କିନ୍ତୁ କୌଣସି କାଳରେ ହେବ ନାହିଁ। ଆ.ପ୍ର. ୬/୨୪.୧୨.୧୯୪୫

## ।। ହିସାବ କରି ବିବାହ ଦେବାକୁ ହୁଏ କାହିଁକି ।।

ମୁଁ ଯେତେ ଟିକିଏ ଦେଖିଛି - ଆର୍ଯ୍ୟକୃଷ୍ଟି ମଣିଷ-ଗଢ଼ିବାର ବିଧିବିଧାନରେ ଭର୍ତ୍ତି, ତେଣୁ ଆର୍ଯ୍ୟକୃଷ୍ଟିର କଥା ଏତେ କରି କହେଁ। ନିଜନିଜର ଐତିହ୍ୟ ଉପରେ

ଛିଡ଼ାହୋଇ ଜୀବନୀୟ ଯାହା-କିଛି ଯେଉଁଠାରୁ ମିଳୁ ନା କାହିଁକି, ତାହା ଗ୍ରହଣ କରିବାରେ ତ କୌଣସି ବାଧା ନାହିଁ। କିନ୍ତୁ ଜୀବନୀୟ କି ନୁହେଁ ତାହା ତ ଦେଖିବାକୁ ହେବ! ଧରନ୍ତୁ, ପାଶ୍ଚାତ୍ୟରୁ ଦେଖି ଆମ୍ଭମାନଙ୍କ ଦେଶରେ ଅନେକ ସ୍ଥାନରେ ବିବାହ ଆଗରୁ ପୁଅଝିଅ ପରସ୍ପର ଅବାଧଭାବରେ ମିଳାମିଶା କରନ୍ତି। ଏହି ଯେଉଁ courtship (ପ୍ରଣୟ)-ର ରୀତି, ଏହାର ଫଳ କିନ୍ତୁ ପ୍ରାୟ ଭଲ ହେବାର ଦେଖା ଯାଏ ନାହିଁ। ପ୍ରଥମରୁ sexual inclination (ଯୌନ ଆନତି) ଆସି ଯାଏ, ସେଥିରେ balanced consideration (ସାମ୍ୟସଙ୍ଗତ ବିବେଚନା) ରହେ ନାହିଁ। ଫଳରେ ଭୂଲ ହେବାର ସମ୍ଭାବନା ଥାଏ। ଦୂରରୁ ଦେଖି ମଧ୍ୟ ପୁରୁଷର ବଂଶ, ଇଷ୍ଟନିଷ୍ଠା, ଚାରିତ୍ରିକ ମହତ୍ତ୍ୱ, ଗୁଣପନା ଓ ଶୌର୍ଯ୍ୟ ବୀର୍ଯ୍ୟର କଥା ଶୁଣି ତା ପ୍ରତି ଯଦି ଝିଅର admiration (ଶ୍ରଦ୍ଧା) ଆସେ, ଏବଂ ଝିଅର ଅଭିଭାବକ ଯଦି ତାକୁ ଉପଯୁକ୍ତ ପାତ୍ର ବୋଲି ମନେ କରନ୍ତି ଏବଂ ବିହିତ ସନ୍ଧାନ ନେଇ ଯୋଗାଯୋଗ କରନ୍ତି, ତାହେଲେ ଭଲ ହୁଏ। ଆଉ ପ୍ରାପ୍ତ ବୟସ୍କ ଝିଅକୁ ବିବାହ ଦେବାକୁ ଗଲେ, ପୁଅ ଓ ତାର ବଂଶ ସମ୍ପର୍କରେ ସବୁ କଥା କହି ତାର consent (ମତ) ନେଇ ବିବାହ ଦେବା ଭଲ। ପୁଅ ଝିଅର ପ୍ରକୃତିଗତ ସାମଞ୍ଜସ୍ୟର ଦିଗଟା ବିଶେଷ କରି ଦେଖିବାକୁ ହୁଏ। ଝିଅ ହୁଏ ତ ଚାହେଁ ଯେ ତାର ଯିଏ ସ୍ୱାମୀ ହେବ ସେ ପରୋପକାରୀ ହେଉ, କିନ୍ତୁ ଯାହା ସହିତ ବିବାହ ହେଲା, ସେ ହୁଏତ ସଂକୀର୍ଣ୍ଣ ଆତ୍ମସ୍ୱାର୍ଥ ବ୍ୟତୀତ ଆଉ କିଛି ବୁଝେ ନାହିଁ। ସେଠାରେ ସେହି ଝିଅର ସେହି ସ୍ୱାମୀକୁ ଶ୍ରଦ୍ଧା କରିବା କଠିନ କଥା ହୋଇ ଛିଡ଼ା ହୁଏ। ତେଣୁ ହିସାବ କରି ବିବାହ ଦେବାକୁ ହୁଏ। ଠିକ୍ ଠିକ୍ ବିବାହ ଯଦି ହୁଏ ଏବଂ କୌଣସି ଝିଅ ଯଦି ସ୍ୱାମୀଙ୍କୁ ମନ-ପ୍ରାଣରେ ସର୍ବାତୋଭାବରେ ଗ୍ରହଣ କରିପାରେ, ସେ ଯେ ସେହି ସ୍ୱାମୀର କେତେବେଡ଼ ସମ୍ପଦ ହୋଇ ଛିଡ଼ା ହୁଏ, ତାହା କହି ଶେଷ କରା ଯାଏ ନାହିଁ। ସ୍ୱାମୀ ତା ପାଖରେ ନିଜ ଅସ୍ତିତ୍ୱସ୍ୱରୂପ ହୋଇଉଠେ, ନିଜ ଅସ୍ତିତ୍ୱ-ରକ୍ଷାରେ ଓ ତାର ବର୍ଦ୍ଧନରେ ମଣିଷ ଯେପରି ଆପ୍ରାଣ ହୋଇ ଉଠେ, ସ୍ୱାମୀର ଅସ୍ତିବୃଦ୍ଧିର ବ୍ୟାପରରେ ମଧ୍ୟ ସେ ସେହିପରି active (ସକ୍ରିୟ) ହୋଇ ଉଠେ। ଅବଳା ନାରୀ ସେଠାରେ ଶକ୍ତି-ସ୍ୱରୂପିଣୀ ହୋଇଉଠେ। ଏହିପରି ଏକନିଷ୍ଠ ନାରୀ ସହିତ ମିଳନରେ ପୁରୁଷର ଆୟୁ, ବଳ, ମେଧା, କାନ୍ତି, ଶୌର୍ଯ୍ୟ, ବୀର୍ଯ୍ୟ ସବୁହିଁ ବଢ଼ି ଉଠେ। ଆଉ ପୁଅଝିଅ ମଧ୍ୟ ହୁଅନ୍ତି ଗୋଟିଏ ଗୋଟିଏ ହୀରା-ଖଣ୍ଡ। ପୁଅଝିଅମାନଙ୍କୁ ଦେଖି ମଣିଷ ଧନ୍ୟ-ଧନ୍ୟ କରେ ଆଉ କହେ, ରତ୍ନଗର୍ଭା ଜନନୀ ବୋଲି। ମାର ଯେଉଁ ଦୁର୍ଲଭ ସ୍ୱାମୀଭକ୍ତି, ତାହାହିଁ କିନ୍ତୁ ତାର ଗର୍ଭକୁ ରତ୍ନପ୍ରସୂ କରି ତୋଳିଛି। ଆ.ପ୍ର. ୬/୨୪.୧୨.୧୯୪୫

## ।। ବିବାହ ନିରର୍ଥକ କେତେବେଳେ ।।

ଆଦର୍ଶ ହେଲା ସୁପୁତ୍ରଲାଭ। ତାହା ନ ହେଲେ ବିବାହ ନିରର୍ଥକ। ସୁପ୍ରଜନନ-ସଙ୍ଗତ କାମର ସେବାରେ ଯୌନସମ୍ଭୋଗ ମଧ୍ୟ ଯାହା ହୁଏ, ତାହା ହୁଏ ପରମ ତୃପ୍ତିଦାୟକ। ତେଣୁ ଏକ ଅତୃପ୍ତ କାମ-ବାସନା ନେଇ ମଣିଷ ନିରନ୍ତର unbalanced (ସାମ୍ୟହରା) ହୋଇ ଘୁରି ବୁଲେ ନାହିଁ। Sex-life (ଯୌନ-ଜୀବନ) ଯେଉଁମାନଙ୍କର healthy (ସୁସ୍ଥ), ସେମାନେ ଅନେକ ପରିମାଣରେ normal (ସ୍ୱାଭାବିକ) ହୁଅନ୍ତି। କେବଳ ପାରିବାରିକ ଜୀବନରେ ନୁହେଁ, ଜଗତର ଅନେକ ଅଶାନ୍ତି ଓ ବିକୃତିର ମୂଳରେ ଅଛି unadjusted sex-life (ଅନିୟନ୍ତ୍ରିତ ଯୌନ ଜୀବନ) । Repression (ନିପୀଡ଼ନ)-ମଧ୍ୟ ଭଲ ନୁହେଁ, indulgence (ପ୍ରଶ୍ରୟ)- ମଧ୍ୟ ଭଲ ନୁହେଁ, ଧର୍ମସଙ୍ଗତ ନିୟନ୍ତ୍ରଣ ଓ ବିନିଯୋଗ ଦରକାର। ଧର୍ମ ତାହା, ଯାହା ସତ୍ତାସମ୍ବର୍ଦ୍ଧନାକୁ ଧରି ରଖେ। ଆଉ ସେଥିପାଇଁ ଦରକାର ଜୀବନ୍ତ ଆଦର୍ଶଙ୍କ ଠାରେ ଅନୁରାଗ। ଏହି ଟିକକ ହେଲେ କାମ (କାର୍ଯ୍ୟ) ସଫା। ଆ.ପ୍ର. ୬/୨୪.୧୨.୧୯୪୫

## ।। ସୁପ୍ରଜନନ ଉପରେ ଜୋର ଦେବାକୁ ହୁଏ କାହିଁକି ।।

ଆର୍ଯ୍ୟମାନଙ୍କର ଘରେ-ଘରେ ଭଗବାନ ସୃଷ୍ଟି କରିବାର ବୁଦ୍ଧି, ତେଣୁ eu-genics (ସୁପ୍ରଜନନ)-ର ଉପରେ ଏତେ ଜୋର ଦେଇଛନ୍ତି। ବଂଶପରମ୍ପରାରେ ବାହା-ସାହା ଓ ଆଚାର-ଆଚରଣ ବିଧିବଦ୍ଧ ଭାବରେ ଚାଲୁ ରହଲେ ସନ୍ତାନ-ସନ୍ତତି ଉତ୍ତରୋତ୍ତର ଉନ୍ନତିର ପଥରେ ଚାଲନ୍ତି, ବୃଦ୍ଧିର ପଥରେ ଚାଲନ୍ତି – ନଷ୍ଟ ହୁଅନ୍ତି ନାହିଁ, ନଷ୍ଟ ହୋଇ ପାରନ୍ତି ନାହିଁ। ବର୍ତ୍ତମାନ ଠାରୁ ଠିକ୍‌ଭାବରେ ଆରମ୍ଭ କରିଲେ ଶହେ ବର୍ଷ ପରେ ଦେଖା ଯିବ, ମଣିଷ କେତେ ପରିମାଣରେ ଆଗେଇ ଯାଇଛି। ବିବାହ, ଦୀକ୍ଷା, ଶିକ୍ଷା ଏହି ତିନୋଟି ଯଦି ସମାନତାଳରେ ନିର୍ଭୁଲ ଭାବରେ ଚାଲେ, ତାହେଲେ ତ ଆଉ କଥା ହିଁ ନାହିଁ। ଆ.ପ୍ର. ୬/୨୫.୧୨.୧୯୪୫

## ।। ଜନ୍ମ ବ୍ୟାପାରରେ ପିତାମାତାଙ୍କ ମଧ୍ୟରୁ କାହାର ଅବଦାନ କେତେଟିକିଏ ।।

ମା ପରିମାପ କରିଦିଏ, ଆଉ ଦିଏ temperament (ପ୍ରକୃତି)। ବାପ ମାନେ ଯିଏ ବପନ କରେ। କଣ ବପନ କରେ ? ବପନ କରେ instinct (ସହଜାତ-

ସଂସ୍କାର)। ସମୀଚୀନ ପ୍ରାଣନ-ସ୍ପନ୍ଦନ-ସଞ୍ଚାରଣାର ଭିତର-ଦେଇ ବାପ ଯାହା ବପନ କରିଲା, ତାର ପରିମାପ କରିଲା ମା—ବାପର ରୂପ ରୂପାୟିତ ହେଲା ମାର ମଧ୍ୟ ଦେଇ। ଆ.ପ୍ର. ୬/୨୬.୧୨.୧୯୪୫

## ।। ପିତାମାତାଙ୍କର ପାଞ୍ଚଟି ସନ୍ତାନ ପାଞ୍ଚ ପ୍ରକାରର ହୁଏ କାହିଁକି ? ।।

ପିତାମାତାଙ୍କର ଉପଗତି ସମୟରେ ଯେଉଁ—ଭାବଟା predominant (ପ୍ରଧାନ) ଥାଏ, ତାହା ଦ୍ୱାରା ଅନେକ ପରିମାଣରେ ରଞ୍ଜିତ ହୁଏ। ଗୌରାଙ୍ଗଦେବଙ୍କ ସମ୍ବନ୍ଧରେ ଦୁଇଜଣ ଥିଏଟର ଦେଖି ଆସିଲେ, ଏହି-ସବୁ କଥାହିଁ ହେଉଛି, ଭାବୁଛନ୍ତି, ସେତେବେଳେ ମିଳନ ହୋଇ conception (ଗର୍ଭସଞ୍ଚାର) ହେଲା। ପିଲା ହୁଏତ ପାଟି ଫିଟୁଣୁ ନ ଫିଟୁଣୁ ହରିବୋଲ ହରିବୋଲ, କରିବାକୁ ଲାଗିବ। ଗର୍ଭରେ ଆସିବା ସମୟରେ ପିତାମାତାଙ୍କର ଭାବଭୂମି-ଅନୁଯାୟୀ ଆଉ-ଜଣେ ହୁଏତ ଟିକିଏ ବଡ଼ ହେଉଣୁ ନ ହେଉଣୁ କୁଆ ମାରି ଘୋଡ଼ାଇବ। ଆ.ପ୍ର. ୬/୨୬.୧୨.୧୯୪୫

## ।। ମାଆ କଣ ପରିମାପ କରନ୍ତି ।।

ବାପର instinct (ସହଜାତ-ସଂସ୍କାର) ମାଆର temperament (ପ୍ରକୃତି)-ର ଭିତର ଦେଇ measured ଓ moulded (ପରିମାପିତ ଓ ଗଠିତ) ହୋଇ ଆସେ। ଦୁଇଜଣଙ୍କ ଭିତରେ all-consistent affinity (ସର୍ବ-ସଙ୍ଗତିଶୀଳ ଟାଣ) ନ ରହିଲେ ବାପର ଅନେକ ଗୁଣ ସନ୍ତାନଠାରେ ବର୍ତ୍ତାଇ (ମୂର୍ତ୍ତ) କରିପାରେ ନାହିଁ। ହୁଏତ ଖରାପ ଦିଗ ଗୁଡ଼ିକ ଭାସି ଉଠିଲା, ଭଲ ଦିଗଗୁଡ଼ିକ ଚାପା ପଡ଼ି ଗଲା। ଆ.ପ୍ର. ୬/୨୬.୧୨.୧୯୪୫

## ।। ସେସମୟର ବିବାହରେ କଡ଼ାକଡ଼ି ଥିଲା କାହିଁକି ।।

ନୀଚଘରେ ଝିଅ ଦେବା ପରି ପାପ-କାର୍ଯ୍ୟ କମ୍‌ହିଁ ଅଛି। ସେହିପରି କାର୍ଯ୍ୟ କରିଲେ ସମାଜ ସେମାନଙ୍କୁ କେତେବେଳେବି ଛାଡ଼ୁ ନଥାନ୍ତି। Penal measure ନେଉଥାନ୍ତି (ଶାସ୍ତିର ବ୍ୟବସ୍ଥା କରୁଥାନ୍ତି)। ଏହି ଭାବରେ କେତେ କୂଳୀନ ବଂଶଜ ହୋଇ ଯାଇଛନ୍ତି। ଆଗରୁ ବଡ଼ଲୋକମାନେ କୁଳୀନ ପୋଷୁଥିଲେ, ଜମି ଦେଉଥିଲେ, ଜାଗା ଦେଉଥିଲେ, ଲେଖାପଢ଼ା ଶିଖାଇ ମଣିଷ କରୁଥିଲେ, ତା ପରେ ସେହି ସବୁ

ପିଲାମାନଙ୍କ ସହିତ ଝିଅକୁ ବିବାହ ଦେଉଥିଲେ। ଯେଉଁମାନଙ୍କୁ ଏହି ଭାବରେ ଏକ ସ୍ଥାନରୁ ଉଠାଇ ଆଣି ଅନ୍ୟ ଏକ ସ୍ଥାନରେ ବସାଉ ଥିଲେ, ସେମାନଙ୍କୁ ସ୍ଥାପିତ କୁହା-ଯାଉଥିଲା। ଉନ୍ନତ instinct (ସହଜାତ ସଂସ୍କାର) ଯେଉଁଗୁଡ଼ିକ, ସେଗୁଡ଼ିକ ଯେପରି ବଜାୟ ରହେ ଓ ବୃଦ୍ଧି ପାଏ - ସେହି ବୁଦ୍ଧି ଥିଲା। ବିହିତ ବୈବାହିକ ସମ୍ବନ୍ଧର ଭିତରେ - ଦେଇ ଘରେ ଘରେ ବଶିଷ୍ଠ ତିଆରି କରିବାର ପରିକଳ୍ପନା ଚାଲୁଥିଲା। ଉଚ୍ଚକୁ ନୀଚ କରା ହେଉ ନ ଥିଲା, କିନ୍ତୁ ନୀଚକୁ ଉଚ୍ଚ କରା ହେଉଥିଲା। ଏଥି ପାଇଁ ଥିଲା ଅନୁଲୋମ ବିବାହର ବ୍ୟବସ୍ଥା। ଏକ ଆଦର୍ଶଙ୍କ ଅନୁସରଣ ଓ ଅନୁଲୋମ ଅସବର୍ଣ୍ଣ ବିବାହର ବ୍ୟବସ୍ଥା ଯଦି ଥାଏ, ତେବେ integration (ସଂହତି) ଗୋଟିଏ rocky stand (ପାଷାଣଦୃଢ଼ ସ୍ଥିତି) ପାଏ। ଆଜି ଗୁରୁଙ୍କର ଆଦର କମି ଯାଇଛି, କିନ୍ତୁ ଜ୍ୱାଇଁ ଘରକୁ ଆସିଲେ ଏକଦମ ତତ୍ପର। ଶ୍ୱଶୁରଘର ଲୋକ ଠିକ୍‌କରି ପାରନ୍ତି ନାହିଁ, କିପରି-ଭାବରେ ତାକୁ ଆଦର ଯତ୍ନ କରିବେ। ଅବସ୍ଥାର ବାହାରକୁ ଯାଇ ମଧ୍ୟ ଖର୍ଚ୍ଚ କରନ୍ତି। ଆଉ ଜ୍ୱାଇଁ ଯଦି ଉଚ୍ଚବର୍ଣ୍ଣର ହୁଅନ୍ତି, ତାହେଲେ ତ କଥା ହିଁ ନାହିଁ। ଏହା ଦ୍ୱାରା ବିଭିନ୍ନ ବର୍ଣ୍ଣର ମଧ୍ୟରେ ଏକ ଆତ୍ମୀୟତାର ଭାବ ବଢ଼ିଉଠେ। ସନ୍ତାନ ମଧ୍ୟ ଉତ୍କର୍ଷୀ ଓ ତେଜୀୟାନ ହୁଏ। ଆଉ ପ୍ରତିଲୋମରେ ଏହାର ଓଲଟା ହୁଏ। ପ୍ରତିଲୋମ ଜାତକର ତେଜ ରହିଲେ ମଧ୍ୟ, ସେ ତେଜ ଧ୍ୱଂସ ଦିଗରେ ଲଗାଏ। ବିଶ୍ୱାସଘାତକତା ତାର ମଜ୍ଜାଗତ।

ଆ.ପ୍ର. ୬/୨୬.୧୨.୧୯୪୫

## ।। ଅପ-ବିବାହ ଠାରୁ ଅବିବାହ ଭଲ ।।

Evolution (ବିବର୍ତ୍ତନ) ଯଦି ଚାହଁ, ତା ହେଲେ ବର୍ଣ୍ଣଗତ ବୈଶିଷ୍ଟ୍ୟ ଭାଙ୍ଗିଲେ ଚଳିବ ନାହିଁ। ଭାଙ୍ଗିଲେ chaos (ବିଶୃଙ୍ଖଳା) ଆସି ଯିବ। ଜନ୍ମଗତ ବୈଶିଷ୍ଟ୍ୟକୁ ଉପେକ୍ଷା କରିଲେ, କାହା ପାଖରୁ ତୁମେ କଣ ପାଇବ ? ଆଉ କିଏ ବା ତୁମକୁ କଣ ଦେବ ? ଷଣ୍ଢ ତୁମକୁ କୌଣସି ପ୍ରକାରେ ଦୁଧ ଦେବ ନାହିଁ ଯଦିଓ ସେ ଗରୁର ଜାତି। ଏହି ବୈଶିଷ୍ଟ୍ୟର ରେଖା ବା ଲେଖା ଠିକ୍ ରଖିବାକୁ ଗଲେ ବାହା-ସାହା ଠିକ୍‌ଭାବରେ ଦେବାକୁ ହେବ। ପ୍ରତିଲୋମ ଯେପରି ନ ହୁଏ, ତାହା ତ ଦେଖିବାକୁ ହିଁ ହେବ। କିନ୍ତୁ ସବର୍ଣ୍ଣ ବା ଅନୁଲୋମ ହେଲେହିଁ ଯେ ସବୁ-ସମୟରେ ଆଶାନୁରୂପ ଫଳ ହେବ ତାହା କିନ୍ତୁ ନୁହେଁ। ପ୍ରକୃତିଗତ ମେଳ ଓ ପସନ୍ଦ ଗୋଟିଏ ବଡ଼ କଥା। ତା ବ୍ୟତୀତ ଶ୍ରଦ୍ଧା, ଶିକ୍ଷା, ସ୍ୱାସ୍ଥ୍ୟ, ବୟସ, ଯୋଗ୍ୟତା ଇତ୍ୟାଦି ବିଷୟରେ ମଧ୍ୟ ସାମଞ୍ଜସ୍ୟ ଦେଖିବାକୁ

ହୁଏ। ଝିଅ ବା ପୁଅର ବଂଶରେ ଅବାଞ୍ଛନୀୟ ରୋଗ, ବିକୃତି, ପାପ, ସ୍ୱଳ୍ପାୟୁ, ପାତିତ୍ୟ ଇତ୍ୟାଦି ଅଛି କି ନାହିଁ, ତାହା ମଧ୍ୟ ନଜର କରି ଦେଖିବାକୁ ହୁଏ। ବାଜପକ୍ଷୀ ପରି ଚକ୍ଷୁ ନେଇ ତନ୍ନ ତନ୍ନ କରି ଦେଖିବାକୁ ହୁଏ। ଅପ-ବିବାହ ଠାରୁ ଅବିବାହ ଭଲ।

ଆ.ପ୍ର. ୬/୨୬.୧୨.୧୯୪୫

## ।। ବିବାହ ବ୍ୟାପାରରେ କେବଳ ରାଶିଚକ୍ର ଉପରେହିଁ ନିର୍ଭର କରିବାଟା କିପରି ।।

ନା ପେୟେ ନାତି-ଭାତାର (ନାହିଁ ମାମୁଁ ଠାରୁ କଣା ମାମୁଁ ଭଲ)। ଠିକ୍‌କରି ନେଇଛି। କିଛି ଜାଣେ ନାହିଁ। ଜାଣିବାର ହାଙ୍ଗାମା କିଏ ସହିବାକୁ ଯାଉଛି। ଜାଣିଲେ ପୁଣି କରିବାକୁ ହେବ। ଦୁଇପୁରୁଷ ପୂର୍ବର ଲୋକେ ବଞ୍ଚିବା ବଢ଼ିବାର ନିୟମ କାନୁନ ଯାହା ଜାଣିଥିଲେ, ଯାହା ପାଳନ କରି ଚାଲୁଥିଲେ, ଆଜି ତାହା ଜାଣନ୍ତି ମଧ୍ୟ ନାହିଁ, ପାଳନ୍ତିମଧ୍ୟ ନାହିଁ। ବାହାରର ଚଳନ ବଢ଼ି ଯାଇଛି। ନିଜନିଜକୁ କେତେ ବଡ଼ ପଣ୍ଡିତ ଭାବୁଁ। କିନ୍ତୁ ପ୍ରକୃତ ଜ୍ଞାନ ଫମ୍ପା। ବାହାରେ ବିଜ୍ଞ ବୋଲି ଚାଲାକି ମାରି ପାରିଲେ ହିଁ ଖୁସି। ଆ.ପ୍ର. ୬/୨୬.୧୨.୧୯୪୫

## ।। ନାରୀର ଶିକ୍ଷା କିପରି ହେବ ।।

ଝିଅମାନଙ୍କୁ ଭଲ କରି ଶିଖାଇବାକୁ ହୁଏ କିପରି ସଂସାରଟାକୁ ସୁଖମୟ କରି ତୋଳିବାକୁ ହୁଏ। ନକହିବା ଆଗରୁ ପ୍ରୟୋଜନ ବୁଝି ଯାହାକୁ ଯେପରି ସେବା କରିବା ପ୍ରୟୋଜନ, ତାହା ଯେପରି ସେମାନେ କରିବାକୁ ଶିଖନ୍ତି। ଏଥିପାଇଁ ଜ୍ଞାନ ଦରକାର। ଶରୀରର କେଉଁ ଅବସ୍ଥାରେ କି ପ୍ରକାର ଖାଦ୍ୟ ଉପଯୋଗୀ ତାହା ଜାଣିବା ଦରକାର। କେଉଁ ଖାଦ୍ୟ ଓ କେଉଁ ଗଛର କଣ ଗୁଣାଗୁଣ ତାହା ସେମାନଙ୍କୁ ଶିଖାଇବାକୁ ହୁଏ। ପ୍ରତ୍ୟେକ ପରିବାରରେ କିଛି-କିଛି କୁଟୀର-ଶିଳ୍ପର ବ୍ୟବସ୍ଥା ରଖିବା ଦରକାର, ଯାହାଦ୍ୱାରା ଝିଅମାନେ ଘରେ ବସି ନିଜେ ଦୁଇ ପଇସା ରୋଜଗାର କରି ପାରନ୍ତି। ଅଳ୍ପର ଭିତର-ଦେଇ ସୁଶୃଙ୍ଖଳଭାବରେ ସଂସାର କିପରି କରିବାକୁ ହୁଏ ତାହା ଜାଣିବା ଦରକାର। ସଂରକ୍ଷଣ ବୁଦ୍ଧି ଝିଅମାଙ୍କର ଏକାନ୍ତ ପ୍ରୟୋଜନ। କୌଣସି ଜିନିଷ ନଷ୍ଟ କରିବା ଉଚିତ ନୁହେଁ। କେଉଁ ସମୟରେ କେଉଁଟା କାମରେ ଲାଗିବ ତାର କଣ ଠିକ୍ ଅଛି ? ସଂସାରର ପରିଷ୍କାର-ପରିଚ୍ଛନ୍ନତା, ସଦାଚାର, ସୁରୁଚି ଓ ସୌନ୍ଦର୍ଯ୍ୟବୋଧ ଝିଅମାନଙ୍କ ଉପରେ

ନିର୍ଭର କରେ। ଗୋଟିଏ ବଡ଼ ଜିନିଷ ହେଲା ପ୍ରୀତିପୂର୍ଣ୍ଣ ବ୍ୟବହାର। ପୁଅ-ପିଲାର ମେଜାଜ ଯେତେବି ଖରାପ ହେଉ ନା କାହିଁକି, ଘରର ସ୍ତ୍ରୀ ଲୋକ ଯଦି ସହନଶୀଳ, ଧୈର୍ଯ୍ୟଶୀଳ ଓ ସୁକୌଶଳୀ ହୁଏ, ତା ହେଲେ ଘରର ଆବହାଓ୍ୱା (ପରିବେଶ) ଅନେକ ପରିମାଣରେ ଶାନ୍ତିପୂର୍ଣ୍ଣ ହୋଇ ପାରେ। ଝିଅମାନଙ୍କୁ ବିଶେଷ କରି ଲକ୍ଷ୍ୟ ରଖିବାକୁ ହେବ, ସଂସାରରେ ଯେପରି ମିଳାମିଶା ଓ ଭଲପାଇବା ଥାଏ। ଭଲପାଇବାର ସଂସାରରେ ବିଦ୍ୟା, ବୁଦ୍ଧି, ପ୍ରାଚୁର୍ଯ୍ୟ ସହଜ ହୋଇ ଉଠେ। ସମସ୍ତେ ଭଲ ହୋଇ ଉଠନ୍ତି। ଝିଅମାନେ ହେଲେ ସଂସାରର ଲକ୍ଷ୍ମୀ, ସରସ୍ୱତୀ। ଏମାନେ ମାଆର ଜାତି। ଏମାନଙ୍କର କ୍ଷମତାର ତୁଳନା ନାହିଁ। ଏମାନେ ଯଦି ଇଚ୍ଛା କରିବେ, ଏମାନେ ଜଗତଟାକୁ ସ୍ୱର୍ଗ କରି ତୋଳି ପାରିବେ।...

ଯେଉଁ—ଦେଶହିଁ ହେଉ, ଝିଅମାନଙ୍କର ଶିକ୍ଷା ହେବା ଉଚିତ ସେମାନଙ୍କର ବୈଶିଷ୍ଟ୍ୟ—ଅନୁଯାୟୀ ଉତ୍କର୍ଷ ଏବଂ nurture-ର (ପୋଷଣର) ପାଇଁ, ଏବଂ ପୁରୁଷମାନଙ୍କର ଶିକ୍ଷା ହେବା ଉଚିତ ସେମାନଙ୍କର ସ୍ୱଭାବଗତ ବୈଶିଷ୍ଟ୍ୟର ବିକାଶ ପାଇଁ। ପୁରୁଷମାନଙ୍କର ଝିଅ ସାଜିବା ଭଲ ନୁହେଁ। ଝିଅମାନଙ୍କର ମଧ୍ୟ ପୁରୁଷ ସାଜିବା ଭଲ ନୁହେଁ। ଝିଅ-ପୁଅର ଶିକ୍ଷା ସ୍ୱତନ୍ତ୍ର ଧରଣର ହେବାହିଁ ଭଲ। ହଜାରେ ଚେଷ୍ଟା କର, ପୁରୁଷ ପେଟରୁ କୌଣସି ଦିନ ପିଲାପିଲି ଜନ୍ମ ହେବ ନାହିଁ। ପୁରୁଷ କୌଣସି ଦିନ ମା ହେବ ନାହିଁ। ଝିଅମାନେ ମାର ଜାତି। ସେମାନେ ଯେଉଁଥିରେ ଭଲ ଗୃହିଣୀ ହେବେ, ଭଲ ମା ହେବେ, ସେହି ଭାବରେ ସେମାନଙ୍କର ଶିକ୍ଷା ହେବା ଦରକାର। ଏହି ଭିତ୍ତି ଉପରେ ଛିଡ଼ାହୋଇ ବିଦୁଷୀ ଓ କାର୍ଯ୍ୟକ୍ଷମ ଯେତେ ହେବେ, ସେତେହିଁ ତ ଭଲ। ବୈଶିଷ୍ଟ୍ୟକୁ ବରବାଦ କରି ଦେଲେ ଭଲ ହେବ ନାହିଁ। ଘର ସମ୍ଭାଳନ୍ତି ଝିଅମାନେ। ଘର ଯଦି ଠିକ୍‌ଥାଏ, ମଣିଷ ବାହାରେ କୁଦା ମାରି ବୁଲି ପାରନ୍ତି। ଘରେ ଯଦି ଶାନ୍ତି ନ ଥାଏ, ସାନ୍ତ୍ୱନା ନ ଥାଏ, ସେବାଯତ୍ନ ନ ଥାଏ, ମଣିଷଗୁଡ଼ିକ ଯେ ଶୁଖିଯିବେ। ବାହାରେ ଲଢ଼େଇ କରିବେ କାହା ବଳରେ? ମା—ହିଁ ସନ୍ତାନମାନଙ୍କୁ ମାପି ଦିଏ, ଅର୍ଥାତ୍ ତାର ନିଷ୍ଠା, ଭକ୍ତି, ଶ୍ରଦ୍ଧା ଓ ଚରିତ୍ର-ଅନୁଯାୟୀ ସନ୍ତାନମାନେ ସଦ୍‌ଗୁଣର ଅଧିକାରୀ ହୁଅନ୍ତି-ଅବଶ୍ୟ ବିବାହ ଯଦି ବିହିତ ରକମରେ ହୋଇ ଥାଏ। ଆଉ ଏହି ସନ୍ତାନ କହିଲେ କିନ୍ତୁ ପୁଅ-ଝିଅ ଦୁଇ-ହିଁ। ପ୍ରକୃତପକ୍ଷେ fundametal (ମୌଳିକ) ସବୁହିଁ ମା କରି ଦିଏ। ତା ବ୍ୟତୀତ (ନୂତନ) ଆଉ କିଛି ହୁଏ ନାହିଁ – ତାରହିଁ ଉତ୍କର୍ଷ-ସାଧନ ହୁଏ। ଝିଅମାନେ ମଣିଷ-ଜନ୍ମାଇବାର ଦାୟିତ୍ୱ ଯେପରି ସୁଷ୍ଠୁଭାବରେ

ପାଳନ କରି ପାରନ୍ତି ସେହି ଭାବରେ ସେମାନଙ୍କୁ ଶିକ୍ଷିତ ଓ ଯୋଗ୍ୟ କରି ତୋଳିବାକୁ ହେବ । ଏହି ଜନ୍ମ-ବ୍ୟାପାର ମଧ୍ୟରେ ପୁଣି ଅଛି ସେବାଯନ୍ ଓ ଆଦର ଆପ୍ୟାୟନର ଭିତର-ଦେଇ ପ୍ରାଣନ-ସମ୍ବେଗକୁ ବଢ଼ାଇ ତୋଳିବା । ଝିଅମାନଙ୍କର ସେବା କିନ୍ତୁ ସଂସାରର ସମସ୍ତଙ୍କୁ ବଡ଼ କରି ତୋଳେ । ତେଣୁ ଝିଅମାନେ ଯେଉଁଠାରେ ସହ୍ୟ, ଧୈର୍ଯ୍ୟ, ଅଧ୍ୟବସାୟ ନେଇ ପ୍ରୀତି-ଉଚ୍ଛଳ ସେବା ପ୍ରାଣ ଓ ସମ୍ବର୍ଦ୍ଧନାପଟୁ, ସଂସାର ସେଠାରେ ସ୍ୱତଃହିଁ ଉନ୍ନତିମୁଖର । ଆ.ପ୍ର. ୭/୨୭.୧୨.୧୯୪୫

## ।। କେବଳ ଶାରୀରିକ ସତୀତ୍ୱର ଖୁବ୍ ଗୋଟିଏ ଦାମ୍ ନାହିଁ କାହିଁକି ।।

ଆଧ୍ୟାତ୍ମିକ ଓ ମାନସିକ ସତୀତ୍ୱକୁ ବାଦ୍ ଦେଇ ଶାରୀରିକ ସତୀତ୍ୱର ଉଜ୍ଜ୍ୱଳତା ନ ଥାଏ । ଇଷ୍ଟପ୍ରାଣ ସ୍ୱାମୀପ୍ରୀତି ଯଦି ତୁମର ଅସ୍ତିତ୍ୱକୁ ଏପରି କରି ପାଇ ବସେ ଯେ ସ୍ୱାମୀଙ୍କର ଅସ୍ତିବୃଦ୍ଧିର ପ୍ରଚେଷ୍ଟାହିଁ ନିରନ୍ତର ତୁମକୁ ଅନିବାର୍ଯ୍ୟଭାବରେ ଚଳାଇ ନେଇ ଘୁରେ, ତାକୁହିଁ କୁହାଯାଏ ଆଧ୍ୟାତ୍ମିକ ସତୀତ୍ୱ । Adherence (ଅନୁରାଗ) shift (ସ୍ଥାନ ପରିବର୍ତ୍ତନ) କରିଲେ, deviation (ବିଚ୍ୟୁତି) ହେଲେ, tenacity (ଲାଗି ରହିବା) ନ ରହିଲେ ଆଧ୍ୟାତ୍ମିକ ହେଲା ନାହିଁ । କାରଣ, surrender (ଆତ୍ମସମର୍ପଣ) ରହିଲା ନାହିଁ, ଅବଲମ୍ବନ କରି ଚାଲିବା ହେଲା ନାହିଁ । ମାନସିକ ସତୀତ୍ୱ ହେଲା – ସକ୍ରିୟ ଓ ସଚେତନ ମନନ ନେଇ ଏହି ସ୍ୱାମୀଙ୍କର ସୁଖ ସୁବିଧା ଓ ବଞ୍ଚିବା ବଢ଼ିବାର ଚେଷ୍ଟା କରିବା । ସବୁ ସମୟରେ ଏହି ସ୍ୱାମୀଙ୍କର ସ୍ମୃତି ଜାଗେ । ଯତ୍ର ଯତ୍ର ନେତ୍ର ପଡ଼େ, ତତ୍ର ତତ୍ର ସ୍ୱାମୀ ସ୍ଫୁରେ । ନିଜର ଭୋଗ ସୁଖର କଥା ମନେ ପଡ଼େ ନାହିଁ । ସବୁ ସମୟରେ ଭାବେ, ସ୍ୱାମୀ କେଉଁଥିରେ ପ୍ରକୃତ ସୁଖୀ ହେବେ । ସ୍ୱାମୀ ଯେପରି ନିଜର ଅସ୍ତିତ୍ୱ । କୌଣସି-କିଛି ସ୍ୱାମୀଙ୍କ କାମରେ ନ ଲାଗିଲେ ଭାବେ, ଧେତ୍‌ତେରେ ! ଏହା ଦେଇ କଣ ହେବ ? ସେଇଥିରେ ତାର ପରମ ବୈରାଗ୍ୟ । ପୁଣି, ସ୍ୱାମୀର କାମରେ ଯଦି କିଛି ଲାଗେ, ସେଥିପାଇଁ ତାର କି ଗଭୀର ଆଗ୍ରହ ! ତାର ଖାଇବା, ପିନ୍ଧିବା, ବୁଲିବା, ଇଚ୍ଛା, ଆଗ୍ରହ – ସବୁ ସ୍ୱାମୀଙ୍କର ଖୁସିକୁ କେନ୍ଦ୍ର କରି । ଏହା ଏକ ମହାସାଧନା । ସ୍ୱାମୀଙ୍କ ତରଫରୁ ହୁଏ ତ କୌଣସି ଶାସନ ନାହିଁ, ତଥାପି ମନେ-ମନେ ସର୍ବଦା ଶଙ୍କିତ ହୋଇ ରହିଥାଏ – କାଳେ ତାଙ୍କର କୌଣସି ଅସୁବିଧା ହେବ, ସେ ମନରେ କିଛି କଷ୍ଟ ପାଇବେ । ଏହି ଟାଣ ଯାହା ମଧ୍ୟରେ ପ୍ରବେଶ କରେ, ତାକୁ ଟାଣି ଲମ୍ବା କରି ତୋଳେ । ତାର ବୁଦ୍ଧି, ବିବେଚନା, ଚାଲିଚଳନ ସବୁକିଛି

ନିଖୁଁତ ହୋଇ ଉଠିବାକୁ ଲାଗେ। ଦେଖନା, ଗୋଟିଏ ପ୍ରସବକରିଥିବା ଗାଈର କଣ ହୁଏ! ଛୁଆ ପ୍ରତି ଟାଣ ଯୋଗୁଁ କିପରି ହୁସିଆର ହୋଇ ଉଠେ। ଭଲପାଇବାର ଯେଉଁ ତପସ୍ୟା ହୁଏ ତାର ତୁଳନା ନାହିଁ। ଏହାକୁ ବାଦ୍‌ଦେଇ ଯେଉଁ physical chastity (ଶାରୀରିକ ସତୀତ୍ୱ) ତାର ଖୁବ୍ ଗୋଟିଏ ଦାମ୍ ନାହିଁ। ସେ ଯେପରି କାଗଜର ପଇସା। ତଥାପି ତାହା ମନ୍ଦ ମଧ୍ୟରେ ଭଲ। ଏହିଟା ଯଦି ଯାଏ, ତେବେ ଭଲ ମଣିଷ ଜନ୍ମ ଗ୍ରହଣ କରିବାର ସ୍ଥାନ ପାଇବେ ନାହିଁ। ଏହା ଯେପରି ଅଛି, ସେହିପରି ପୁଣି ପୁରୁଷ ମଧ୍ୟ ଯଦି ଇଷ୍ଟନିଷ୍ଠ ନ ହୁଏ ଅର୍ଥାତ୍ ପତିତ ହୁଏ, ତା ହେଲେ ଜାତିର upward trend (ଉର୍ଦ୍ଧ୍ୱମୁଖୀ ଧରଣ) ନଷ୍ଟ ହେବାକୁ ଲାଗିବ। ଆ.ପ୍ର. ୭/୨୭.୧୨.୧୯୪୫

## ॥ ରେଜେଷ୍ଟ୍ରି ବିବାହ କିପରି ଲାଗେ ॥

ଆଇନର ଆଶ୍ରୟରେ ଚୁକ୍ତି ପରି କରି ବିବାହ ହୁଏ, ତାହା ମୋତେ ଭଲ ଲାଗେ ନାହିଁ। ଦେବ, ଦ୍ୱିଜ ଓ ସମାଜ ଆଗରେ ନାରାୟଣଙ୍କୁ ସାକ୍ଷୀ ରଖି ପବିତ୍ର ଧର୍ମୀୟ ଅନୁଷ୍ଠାନର ଭିତର-ଦେଇ ଯଦି ବିବାହ ହୁଏ, ପୂତ ମନ୍ତ୍ରବାକ୍ୟଗୁଡ଼ିକର ତାତ୍ପର୍ଯ୍ୟ ଯଦି ଟିକିଏ ବୁଝେଇ ଦିଆ ହୁଏ, ମନ ଉପରେ ତାର ଗୋଟିଏ ପ୍ରଭାବ ପଡ଼େ। ସ୍ୱାମୀ-ସ୍ତ୍ରୀ ପରସ୍ପର ଯଦି ଭାବନ୍ତି ଯେ ବିବାହ-ବନ୍ଧନ ଅଚ୍ଛେଦ୍ୟ, ତେବେ ପରସ୍ପରର ପରସ୍ପରକୁ ସହି-ବୋହି ନେବାର ପ୍ରବୃତ୍ତି ପ୍ରବଳ ହୁଏ। ଆ.ପ୍ର. ୭/୨୭.୧୨.୧୯୪୫

## ॥ ବିବାହ-ବିଚ୍ଛେଦରେ କଣ ହୁଏ ॥

ବିବାହ-ବିଚ୍ଛେଦର ପରିକଳ୍ପନା ଆଦୌ ଭଲ ନୁହେଁ। ଏଥିରେ ସମାଜ, ସଂସାରର ଭିତ୍ତି ଶିଥିଳ ହୋଇଯାଏ। ପ୍ରତ୍ୟେକେହିଁ ସବୁ ସମୟରେ ଗୋଟିଏ ଅନିଶ୍ଚିତତା ଭିତରେ ରହନ୍ତି। ସ୍ୱାମୀ ଜାଣେ ନାହିଁ, କେତେବେଳେ ତାର ସ୍ତ୍ରୀ ତାକୁ ତ୍ୟାଗ କରି ଚାଲିଯିବ। ସ୍ତ୍ରୀ ଜାଣେ ନାହିଁ, ସ୍ୱାମୀ କେତେବେଳେ ତାକୁ ତ୍ୟାଗ କରି ଯିବ। ସନ୍ତାନମାନଙ୍କର ଅବସ୍ଥା ଆହୁରି ଦୁରୂହ। ଭାବିଲେ ମଧ୍ୟ ହୃଦୟ କମ୍ପିଉଠେ। ମୁଁ କହେ, ବିବାହ ଆଗରୁ ତନ୍ନ-ତନ୍ନ କରି ବିଚାର କର, ଭଲ କରି ଦେଖିଶୁଣି ତା ପରେ ବିଧି ବଦ୍ଧ ଭାବରେ ବିବାହ କର। କିନ୍ତୁ ବିଧି ମତରେ ବିବାହ କରି ସେ ବିବାହ ନାକଚ କର ନାହିଁ। ଅବଶ୍ୟ ବିବାହ ଯଦି କେଉଁଠି ଅସିଦ୍ଧ ହୋଇଥାଏ, ତା ହେଲେ ତାକୁ ବିବାହ ବୋଲି ଗଣ୍ୟ କରିବା ଚଳେ ନାହିଁ। ଆ.ପ୍ର. ୭/୨୭.୧୨.୧୯୪୫

## ।। ବିଧିମତ ବିବାହ ହୋଇ ମଧ୍ୟ ସ୍ୱାମୀ-ସ୍ତ୍ରୀ ଏକସଙ୍ଗରେ ରହିବା ଅସମ୍ଭବ ହେଲେ କଣ କରିବ ।।

ବିଧିମତ ବିବାହ ହୋଇ ମଧ୍ୟ ଯଦି ବିଶେଷ କୌଣସି କାରଣରେ ସ୍ୱାମୀ-ସ୍ତ୍ରୀ ଏକ ସଙ୍ଗରେ ବସବାସ କରିବା ଅସମ୍ଭବ ହୋଇ ଉଠେ, ତେବେ ସ୍ୱାମୀ-ସ୍ତ୍ରୀ ଅଲଗା ରହିପାରନ୍ତି, କିନ୍ତୁ ଏହି ସ୍ତ୍ରୀର ଭରଣପୋଷଣର ଦାୟିତ୍ୱ ସ୍ୱାମୀଙ୍କୁ ହିଁ ବହନ କରିବାକୁ ହେବ। ସ୍ୱାମୀ-ସ୍ତ୍ରୀର ପରସ୍ପର ମଧ୍ୟରେ ଦରଦ ଓ ଦାୟିତ୍ୱବୋଧ ରହିଲେ କେହି ନିଜକୁ ଅସହାୟ ମନେ କରେ ନାହିଁ। ପୁଣି ପରସ୍ପର ପରସ୍ପରର ଦୋଷତ୍ରୁଟି ଯଦି କିଛିଟା ହଜମ କରି ଚାଲିବାକୁ ନ ଶିଖନ୍ତି, ତାହେଲେ କିନ୍ତୁ ଦାମ୍ପତ୍ୟଜୀବନ ସୁଖକର ହୁଏ ନାହିଁ। ଦାମ୍ପତ୍ୟଜୀବନରେ ଯଦି ସହ୍ୟ, ଧୈର୍ଯ୍ୟର ଅନୁଶୀଳନ ହୁଏ, ତା ହେଲେ ତା ଫଳରେ ପାରିବାରିକ ଓ ସାମାଜିକ ଜୀବନରେ ମଧ୍ୟ ଲାଭ ହୁଏ। ଯେଉଁମାନଙ୍କର ସହ୍ୟ-ଧୈର୍ଯ୍ୟ ଥାଏ, ସେହିମାନେହିଁ ସମୟ ବୁଝି ଅନ୍ୟକୁ ଭଲ ଦିଗରେ ନିୟନ୍ତ୍ରିତ କରି ପାରନ୍ତି। ଆ.ପ୍ର. ୭/୨୭.୧୨.୧୯୪୫

## ।। ନାରୀ-ପୁରୁଷର ଆଚରଣ କିପରି ହେବ ।।

ନାରୀ-ପୁରୁଷର ଦୂରତ୍ୱ ରହିବାହିଁ ଭଲ। ଆଗରୁ ଝିଅମାନେ ପ୍ରଧାନତଃ ଅନ୍ତଃପୁରରେ ହିଁ ରହୁଥିଲେ। ସମ୍ମାନଯୋଗ୍ୟ ଦୂରତ୍ୱ ଓ ବ୍ୟବଧାନ ରହିଲେହିଁ ଶ୍ରଦ୍ଧା ଓ ଆକର୍ଷଣ ଠିକ୍ ଥାଏ। ଝିଅମାନେ ଯାହା-ତାହା ଠାରୁ କୌଣସି ଉପଢୌକନ ନେବା ଉଚିତ ନୁହେଁ। ନେଲେ inclination (ଆନତି) ଆସି ପାରେ। କେହି ଯଦି ଆଗ୍ରହ କରି କିଛି ଦେବାକୁ ଚାହେଁ, ମା-ବାପାର ମାଧ୍ୟମରେ ଦେବା ଭଲ। ତୁମେ ଯଦି ବିବାହ କରି ଥାଅ, ତୁମ ମାଧ୍ୟମରେ ତୁମ ସ୍ତ୍ରୀ ଜିନିଷପତ୍ର ପାଇବା ଅପେକ୍ଷା ତୁମର ମା-ବାପାଙ୍କ ମାଧ୍ୟମରେ ତାର ପ୍ରୟୋଜନୀୟ ଜିନିଷଗୁଡ଼ିକ ପାଇବା ଭଲ। ତୁମେ ଯଦି ତୁମର ମା-ବାବାଙ୍କୁ ଏହି ମର୍ଯ୍ୟାଦାର ଆସନରେ ଅଧିଷ୍ଠିତ ରଖ, ସେଥିରେ ତୁମର ମା-ବାବାଙ୍କୁ ମଧ୍ୟ ସେ ମାନି ଚାଲିବ। ଜାଣିବ, ଶ୍ୱଶୁର-ଶାଶୁହିଁ ସଂସାରର ପ୍ରକୃତ କର୍ତ୍ତା। ହୁଏତ ଆୟ କରୁଛ ତୁମେ। କିନ୍ତୁ କର୍ତ୍ତୃତ୍ୱ ସେମାନଙ୍କ ହାତରେ ଦେଇଛ। ଆଉ, ତାହା ହିଁ ସମୀଚୀନ। ସ୍ତ୍ରୀକୁ ଯଦି ମା-ବାପା ଠାରୁ ବଡ଼ କରି ତୋଳ, ତାର ଖୁସି ପାଇଁ ପାଗଳ ହୁଅ, ତା ହେଲେ ତୁମେ ଗଲ। ଏହି ସ୍ତ୍ରୀ-ହିଁ ହୁଏତ ଦିନେ ତୁମକୁ ନାକର ଜଳରେ, ଚକ୍ଷୁର ଜଳରେ ଚରମ ହଇରାଣ କରିବ, ଯଦି ସେ

ନିତାନ୍ତ ଭଲମଣିଷର ଝିଅ ନ ହୋଇଥାଏ । ତା ବୋଲି ତୁମେ ସ୍ତ୍ରୀକୁ ଭଲପାଇ ଯେ ଗୋଟିଏ-ଅଧେ ଜିନିଷ ଆଣିଦେବ ନାହିଁ, ତା ନୁହେଁ। କିନ୍ତୁ ସେ ଯେପରି ବୁଝେ, ମା-ବାପାହିଁ ତୁମ୍ଭ ପାଖରେ ମୁଖ୍ୟ। ପୁରୁଷର ରହିବ masculine pride (ପୁରୁଷୋଚିତ ଅହଙ୍କାର) ଓ ମାତ୍ରାନୁଯାୟୀ narcissus complex (ଆତ୍ମମୁଗ୍ଧତା) । ସେ କାହିଁକି ସ୍ତ୍ରୀ ଲୋକ ପଛରେ ଦଉଡ଼ିବ ? ସେ କାହିଁକି ଏତେ ହେଙ୍ଗଲା ହେବାକୁ ଯିବ ? ତାର କଣ କୌଣସି ଆତ୍ମମର୍ଯ୍ୟାଦା ନାହିଁ? ଆ.ପ୍ର. ୭/୨୭.୧୨.୧୯୪୫

## ।। ପୁରୁଷ ସବୁ ସମୟରେ ଘରେ ରହିଲେ କଣ ହୁଏ ।।

ସର୍ବଦା ଘରେ ରହିଲେ ପୁରୁଷର expansion (ବିସ୍ତାର) କମି ଯାଏ, ଛୋଟ-ମୋଟ କଥା ନେଇ ଖୁଣ୍ଟ୍-ଖୁଣ୍ଟ୍ କରେ, ବକ୍-ବକ୍ କରେ, ସେଥିରେ ନାରୀମାନେ resistance (ବାଧା) feel (ବୋଧ) କରନ୍ତି । ନାରୀ ପୁରୁଷକୁ ବଡ଼ କରି ଦେଖିବାକୁ ଚାହେଁ। ତାହା ନ ପାଇଲେ ସେମାନଙ୍କର ମନ ଖରାପ ହୋଇ ଯାଏ, ନିଜକୁ ନିଜେ ଛୋଟ ବୋଧ କରେ; ମନେ କରେ, they are being deprived of their expansion (ସେମାନେ ନିଜର ବିସ୍ତାରରୁ ବଞ୍ଚିତ ହେଉଛନ୍ତି), କାରଣ, ଦୁନିଆଟାକୁ ନାରୀମାନେ ପୁରୁଷର ଭିତର ଦେଇ enjoy (ଉପଭୋଗ) କରିବାକୁ ଚାହାନ୍ତି । ତା-ବ୍ୟତୀତ, ଯାହା ପ୍ରତି ଭଲ ପାଇବା ହୁଏ, ତାକୁ ପାଇବାର ଚେଷ୍ଟା ଥାଏ । ତା ନ ରହିଲେ ତାର ମୂଲ୍ୟ ଓ ମର୍ଯ୍ୟାଦା ଉପଲବ୍ଧି କରା ଯାଏ ନାହିଁ। ଭଲପାଇବା ପାଇଁ ନିଜେ ଯଦି cheap (ଶସ୍ତା) ହୋଇ ଯାଏ, ତାକୁ ପାଇବା ପାଇଁ ଯଦି ଚେଷ୍ଟା କରିବାକୁ ନ ହୁଏ, ତେବେ ପାଇବାଟା enjoyable (ଉପଭୋଗ୍ୟ) ହୁଏନା । ଯାହା ଯେତେ କମ୍ ଚେଷ୍ଟାରେ ମିଳେ, ତାହା ସେତେ କମ୍ ଉପଭୋଗ୍ୟ ।

ଆ.ପ୍ର. ୭/୨୮.୧୨.୧୯୪୫

## ।। ସତୀତ୍ୱ ସହଜ ଓ ସ୍ୱତଃ ହେଲେ କଣ ହୁଏ ।।

(ଏପରି ଭାବରେ ଅନେକଙ୍କରହିଁ ସତୀତ୍ୱ ଠିକ୍ ଅଛି ବୋଲି ମନେ ହେଲେ ମଧ୍ୟ) ନିରୀକ୍ଷଣ କରି ଦେଖ, ତା ମଧ୍ୟରେ ଅନେକଙ୍କର chastity (ସତୀତ୍ୱ) ହୁଏତ chidden chastity (ଭର୍ତ୍ସନାଧୁକ୍ଷିତ ସତୀତ୍ୱ) ଅର୍ଥାତ୍, ତାହା ସହଜ ଓ ସ୍ୱତଃ ନୁହେଁ। ଲୋକଭୟରେ ହୁଏତ କାୟିକ ସତୀତ୍ୱ ବଜାୟ ରଖେ କିନ୍ତୁ

କାୟମନୋବାକ୍ୟରେ ସ୍ୱାମୀନିଷ୍ଠ ହୋଇ ଚାଲିବା ଯାହାକୁ କହନ୍ତି ତାହା ନୁହେଁ। ସେହି ନିଷ୍ଠା ରହିଲେ ସ୍ୱାମୀଙ୍କୁ ନିଜର ସତ୍ତା ମନେ କରେ। ନିଜ ସତ୍ତା ଉପରେ ଯେଉଁ ଟାଣ ମଣିଷର ଥାଏ, ତାହାହିଁ ସ୍ୱାମୀ ଉପରକୁ ଯାଇଥାଏ। ସେ ସ୍ୱାମୀଙ୍କୁ ଖୁସି ନ କରି ଛାଡ଼େ ନାହିଁ, ବଡ଼ ନ କରି ଛାଡ଼େ ନାହିଁ। ମଲା ସ୍ୱାମୀର ହାଡ଼ରେ ସେ ପ୍ରାଣ ସଞ୍ଚାର କରି ଛାଡ଼ି ଦିଏ। ଯେପରି ଦେଇଛନ୍ତି ସତୀ ବେହୁଲା। ତେଣୁ, ସତୀତ୍ୱ ଗୋଟିଏ ସାଧନାର ବସ୍ତୁ। ଜନ୍ମଗତ ପ୍ରକୃତି ସାତ୍ତ୍ୱିକ ନ ହେଲେ ଏହିପରି ସତୀ ହୋଇପାରେ ନା। ଏହିପରି ସତୀ ଝିଅର ବାପ-ମା ହେବାକୁ ଗଲେ ମଧ୍ୟ ଅନେକ ପୁଣ୍ୟ ଥିବା ଦରକାର। ସତୀ ଝିଅମାନେ କୁଳ ପବିତ୍ର କରି ତୋଳନ୍ତି। ଯେଉଁଠାକୁ ଯାଆନ୍ତି, ସେହିଠାରେହିଁ ସୁନା ଫଳାନ୍ତି। ଲକ୍ଷ୍ମୀ, ସରସ୍ୱତୀ ଦୁଇ ଜଣହିଁ ସେମାନଙ୍କ ପଛେ-ପଛେ ଘୁରନ୍ତି। ସେମାନଙ୍କ ପେଟର ପୁଅ, ଝିଅ ହୁଅନ୍ତି ଜଣେ ଜଣେ ଦେବତା। ... ସାଧାରଣତଃ, ପିଲାବେଳରୁ ବାପା ଉପରେ ଯେଉଁ ଝିଅମାନଙ୍କର ନିଶା ଥାଏ, ସେମାନଙ୍କୁ ପରେ ଭଲ ହେବାର ଦେଖା ଯାଏ, ସ୍ୱାମୀ -ନିଷ୍ଠ ହେବାର ଦେଖା ଯାଏ। ଆ.ପ୍ର. ୭/୪.୧.୧୯୪୬

## ।। ସତୀତ୍ୱ ସହିତ ଇଷ୍ଟନିଷ୍ଠାର ସମ୍ପର୍କ ଅଛି କି ନାହିଁ।।

ହଁ, ତାହା ଅଛିହିଁ! ସ୍ୱାମୀଙ୍କର ସତ୍ତାସମ୍ବର୍ଦ୍ଧନାର ଖାତିରରେ ସେ ନିଜେ ଇଷ୍ଟମୁଖୀ ହୁଏ ଏବଂ ନିଜର ସେବାଯତ୍ନ ଓ ମଧୁର ବ୍ୟବହାରରେ ସ୍ୱାମୀଙ୍କୁ ମଧ୍ୟ ଇଷ୍ଟଙ୍କଠାରେ ଆପ୍ରାଣ କରି ତୋଳେ। କାରଣ, ସେ ଜାଣେ, ଇଷ୍ଟୀଚଳନର ଭିତରେହିଁ ସ୍ୱାମୀଙ୍କର ମଙ୍ଗଳ ନିହିତ। ସେ ସ୍ୱାମୀଙ୍କୁ ନିଜର ଭୋଗ ସୁଖର ଉପକରଣ କରି ସଙ୍କୀର୍ଣ୍ଣ ଜୀବନରେ ଅଟକାଇ ନ ରଖି ବିସ୍ତାରର ପଥରେ – ବୃଦ୍ଧିର ପଥରେ ଠେଲି ଦିଏ। ପୁଣି ଇଷ୍ଟାୟିତ ଅନୁଚଳନର ଭିତର–ଦେଇ ସ୍ୱାମୀନିଷ୍ଠା ବଢ଼ି ଯାଏ, କାରଣ, ସେଥିରେ ନିଜର ପ୍ରବୃତ୍ତିଗୁଡ଼ିକ ମଧ୍ୟ ଅନେକ ନିୟନ୍ତ୍ରିତ ହୋଇ ଉଠେ। ଆ.ପ୍ର. ୭/୪.୧.୧୯୪୬

## ।। ଶାସ୍ତ୍ରରେ ପ୍ରତିଲୋମଜମାନେ ବାହ୍ୟଜାତି କାହିଁକି ।।

ପ୍ରତିଲୋମ ବିବାହ ହେଲେ ସନ୍ତାନ-ସନ୍ତତିଙ୍କର ଅବସ୍ଥା ମୁରଗୀ ପରି ହୁଏ। ଗୋଟିଏକୁ କାଟିଲେ ଆଉ ଗୋଟିଏ ମନେ କରେ – ତାକୁ କାଟିଲେ ସେଥିରେ ମୋର କଣ ଅଛି ? ଏହିଭାବରେ ଯେ ପ୍ରତ୍ୟେକଟିହିଁ କାଟା ହୁଏ ତାହା ଆଉ ବୁଝେ ନାହିଁ।

ଏତେ ଟିକିଏ ଦୂରଦୃଷ୍ଟି ନଥାଏ। ରହିବ କିପରି? ସ୍ୱାର୍ଥାନ୍ଧ ହେଲେ, ସ୍ୱାର୍ଥର ପୂରଣ ଯେଉଁଥିରେ ହୁଏ, ତାହା ମଧ୍ୟ ଆଉ ମଣିଷ କରିପାରେ ନାହିଁ। ସ୍ୱାର୍ଥାନ୍ଧ ହେବା ମାନେ, ନିଜ ସ୍ୱାର୍ଥ ବିରୁଦ୍ଧରେ ଚାଲିବା। ଏହାକୁ କହନ୍ତି obsession (ଅଭିଭୂତି)। ଏମାନେ କୌଣସି ପ୍ରକାରରେ ସଂହତ ହୋଇ ପାରନ୍ତି ନାହିଁ। ସଂହତ ହେବାକୁ ଗଲେ ଆଦର୍ଶଙ୍କ ପାଖରେ, ନୀତି ପାଖରେ ଯଦି ନତି ନ ଥାଏ, ତା ହେଲେ ତାହା ହେବ କିପରି? ପିତାମାତା ଯେଉଁଠାରେ ଆଦର୍ଶ ଓ ନୀତିର ପ୍ରତି ବିଶ୍ୱାସଘାତକତା କରନ୍ତି, ସନ୍ତାନ ପାଖରୁ ସେଠାରେ ଆଉ କଣ ଆଶା କରି ପାର? ସେମାନଙ୍କର make up (ଗଠନ)-ହିଁ ସତ୍ତାବିରୋଧୀ ରକମର ହୁଏ। ତେଣୁ ଚେଷ୍ଟା କରି ମଧ୍ୟ ସେମାନଙ୍କର ଭଲ କରି ହୁଏ ନାହିଁ। ଭଲ କରିବା ପରି metal (ଧାତୁ) ନ ରହିଲେ ଭଲ କରିବ କାହାକୁ? ସେମାନଙ୍କର ଭଲ ତ କରି ହୁଏ ନାହିଁ, ବରଂ ସେମାନଙ୍କ ସାନ୍ନିଧ୍ୟରେ ସତ୍ ଯେଉଁମାନେ ସେମାନଙ୍କର ମଧ୍ୟ ଅଧୋଗତି ଅନିବାର୍ଯ୍ୟ ହୋଇଉଠେ। ତେଣୁ ଶାସ୍ତ୍ର ଓ ସମାଜ ସେମାନଙ୍କୁ ବାହ୍ୟଜାତି କରି ରଖିଛି। ଏହା ଯେ ଘୃଣା ବା ବିଦ୍ୱେଷ-ପ୍ରସୂତ ତା ନୁହେଁ କିନ୍ତୁ। ଆତ୍ମରକ୍ଷା ପାଇଁହିଁ ଏହି ବିଧାନ। ଏତେ ପରିମାଣରେ କଡ଼ାକଡ଼ି ଯଦି ନ ଥାଆନ୍ତା, ତେବେ ସବୁ ଏକାକାର ହୋଇ ଯାଇଥାନ୍ତା। ସଚ୍ଚା ମାଲ ଗୋଟିଏ ମଧ୍ୟ ଖୋଜି ମିଳନ୍ତା ନାହିଁ। ଆଜିକାଲି ଗୋଁଡ଼ାମିର ବିରୁଦ୍ଧରେ ଜେହାଦ ଆରମ୍ଭ ହୋଇଛି, କିନ୍ତୁ ଆଦର୍ଶନିଷ୍ଠ ଗୋଁଡ଼ାମିର ପ୍ରୟୋଜନ ଯେ କେତେ ମାତ୍ରାରେ ତାହା କହି ଶେଷ କରାଯାଏ ନାହିଁ। ମନୁ କହିଛନ୍ତି, 'ଯତ୍ର ତ୍ୱେ ତେ ପରିଧ୍ୱଂସା ଜାୟନ୍ତେ ବର୍ଣ୍ଣଦୂଷକାଃ, ରାଷ୍ଟ୍ରିକୈଃ ସହ ତଦ୍‌ରାଷ୍ଟ୍ରଂ କ୍ଷିପ୍ରମେବ ବିନଶ୍ୟତି।' ଆମ୍ଭମାନଙ୍କର ସମାଜ ଓ ଶାସ୍ତ୍ର ପ୍ରତିଲୋମକୁ ଯେମିତି ପ୍ରତିରୋଧ କରିଛି, ଅନୁଲୋମକୁ ସେମିତି ଉତ୍ସାହିତ କରିଛି। ଅନୁଲୋମରେ hyena (ଜଙ୍ଗଲୀ ପଶୁ) ଭଳି ହୁଏ - ଗୋଟିଏର ଦେହରେ ହାତ ଦେଲେ ଆଉ ସବୁଗୁଡ଼ିକ ଛୁଟି ଆସେ ତାର ପ୍ରତିବିଧାନ କରିବାକୁ। ଆ.ପ୍ର. ୭/୧୧.୧.୧୯୪୬

## ।। ଉତ୍କୃଷ୍ଟ ଓ ନିକୃଷ୍ଟ ସଂସ୍କାର କିପରି ବୁଝା ଯିବ ।।

ଯେ ଯେତେ fulfilling (ପରିପୂରଣୀ) ସେ ସେତେ superior (ଉନ୍ନତ), Fulfilling (ପରିପୂରଣୀ) ହେଲେ ପୁଣି adjusted (ନିୟନ୍ତ୍ରିତ) ହୁଏ। (କିଏ କେତେ ଉତ୍କୃଷ୍ଟ ବା କିଏ କେତେ ନିକୃଷ୍ଟ ସଂସ୍କାରର ତାହା) ମଣିଷହିଁ decide (ଠିକ୍) କରିବ। ଗବେଷଣା କରି ଦେଖିବା ଦରକାର।

ରଙ୍ଗିଲ ଦୃଷ୍ଟି ନୟକୋ ଯଖନ
ଆଗ୍ରହନତ ମନ,
ଏମନ ମନଇ ଧରତେ ପାରେ
ସଂସ୍କାର କେମନ।

Unbiassed (ପକ୍ଷପାତହୀନ) ଅଥଚ interested (ଅନୁରାଗୀ) ହେବା ଦରକାର। ଜଣେ ପାରଶବ ଯଦି fulfilling (ପରିପୂରଣୀ) ହୁଏ, ତେବେ ତାକୁ ତୁମର ଆମର ସମସ୍ତଙ୍କର ଯାଇ ପ୍ରଣାମ କରିବାକୁ ଇଚ୍ଛା ହେବ।

ଆ.ପ୍ର. ୭/୧୧.୧.୧୯୪୬

## ।। ପୁରୁଷ କେତେବେଳେ ବିବାହର ଅଧିକାରୀ ହୁଏ ।।

ନାରୀ କରେ ବିବାହ ଆଉ ପୁରୁଷ କରେ ଉଦ୍‌ବାହ। ପୁରୁଷ ଇଷ୍ଟଗ୍ରହଣ ନ କରିଲେ ବିବାହର ଅଧିକାରୀ ହୁଏ ନା। କାରଣ, ସେତେବେଳେ ସେ ନିମ୍ନମୁଖୀ ଟାଣରେ ପଡ଼ି ଯାଏ। ସେଥିରେ ତାର ମଧ୍ୟ କ୍ଷତି, ନାରୀର ମଧ୍ୟ କ୍ଷତି।

ଆ.ପ୍ର. ୭/୨୪.୧.୧୯୪୬

## ।। ସଦୃଶ-ଘରର ପୁରୁଷର ମଧ୍ୟ ସବୁ ବିଷୟରେ ଉନ୍ନତ ହେବା ଦରକାର କାହିଁକି ।।

ବିବାହ ସଦୃଶ-ଘରେ ହେବା ଭଲ। ସଦୃଶ-ଘରର ହୋଇ ମଧ୍ୟ ପୁରୁଷ ଯଦି ନାରୀ ଅପେକ୍ଷା ସବୁ ବିଷୟରେ ଉନ୍ନତ ନ ହୁଏ, ସେ ବିବାହରେ ଫଳ ଭଲ ହୁଏ ନାହିଁ। ଏଥିରେ ଦାମ୍ପତ୍ୟ-ଜୀବନ ସାର୍ଥକ ହୁଏ ନାହିଁ। ପୁଣି, ନାରୀ ପୁରୁଷ ନୁହେଁ, ପୁରୁଷ ମଧ୍ୟ ନାରୀ ନୁହେଁ। ଭଗବାନ ପୁରୁଷର ଅଧିକାର ନାରୀକୁ ଦେଇ ନାହାନ୍ତି। ନାରୀର ଅଧିକାର ମଧ୍ୟ ପୁରୁଷକୁ ଦେଇ ନାହାନ୍ତି। ଆ.ପ୍ର. ୭/୨୪.୧.୧୯୪୬

## ।। ଝିଅମାନଙ୍କର ମସ୍ତିଷ୍କ କଣ ପୁରୁଷମାନଙ୍କ ଅପେକ୍ଷା ଦୁର୍ବଳ ।।

ତାହା କାହିଁକି ହେବ ? ଝିଅମାନଙ୍କର ମସ୍ତିଷ୍କ ଝିଅମାନଙ୍କ ପରି, ପୁରୁଷର ମସ୍ତିଷ୍କ ପୁରୁଷ ପରି। ଜଣକର complementary (ଅନୁପୂରକ) ଆଉ-ଜଣେ, ଛୋଟ ବଡ଼ ନୁହେଁ। ଝିଅପିଲା ଯଦି ପୁଅପିଲା ହେବାକୁ ଚାହେଁ ଆଉ ପୁଅପିଲା ଯଦି ଝିଅପିଲା

ହେବାକୁ ଚାହେଁ, ତେବେହିଁ ଗୋଳମାଳ। ପୁରୁଷର ଯେପରି ଅଛି fulfilling capacity (ପରିପୂରଣୀ କ୍ଷମତା), ଝିଅମାନଙ୍କର ସେହିପରି ଅଛି conceiving capacity (ଧାରଣ-କ୍ଷମତା), receiving capacity (ଗ୍ରହଣ-କ୍ଷମତା)।

ଆ.ପ୍ର. ୭/୨୯.୧.୧୯୪୬

## ।। ବର୍ଣ୍ଣାଶ୍ରମ ବିରୁଦ୍ଧରେ କିଛି କହିବ ନାହିଁ କାହିଁକି ।।

ବର୍ଣ୍ଣାଶ୍ରମର against-ରେ (ବିରୁଦ୍ଧରେ) କିଛି କୁହ ନାହିଁ। ବର୍ଣ୍ଣାଶ୍ରମ ଗଲେ everything is gone (ସବୁ ଗଲା)। ବରଂ ଆଭିଜାତ୍ୟର କଥା ଭଲ କରି କୁହ। ନିଜ ଗଳାରେ ଛୁରୀ ଦେଇ ନିଜେ ବଞ୍ଚି ହୁଏ ନାହିଁ। Instinct (ସହଜାତ-ସଂସ୍କାର) ନ ମାନି ଉପାୟ ନାହିଁ। ବଂଶଗୌରବକୁ ଆଶ୍ରୟ କରି instinct (ସହଜାତ-ସଂସ୍କାର)-କୁ excite (ଉଦ୍ଦୀପ୍ତ) କର। ତୁମ ଘରର ଝିଅକୁ ଧୋବା ବା ମେହେନ୍ତର ହାତରେ ଦେଇ କଣ ହରିଜନ ହେବାକୁ ଚାହଁ? ବର୍ଣ୍ଣାଶ୍ରମ ଭାଙ୍ଗିବା ମାନେ ତ ତାହାହିଁ। ବର୍ଣ୍ଣାଶ୍ରମର main factor (ପ୍ରଧାନ ଦିଗ) ହେଲା eugenic relationship (ଯୌନ-ସମ୍ପର୍କ) control (ନିୟନ୍ତ୍ରଣ) କରିବା, ଆଉ ହେଲା division of labour (ଶ୍ରମ-ବିଭାଗ)। ଏହାରି ଉପରେ ଛିଡ଼ା ହୋଇ ମଣିଷର ମୂଳ ଯାହା-କିଛି ଠିକ୍ ଥାଏ। ...ଆମ ସମାଜରେ କୌଣସି କୃତ୍ରିମ ଭାଗ ନ ଥିଲା। ଆମ୍ଭମାନଙ୍କର ଯେଉଁ ଭାଗ ସେ ତ universal (ସାର୍ବଜନୀନ) — ଗୁଣ, କର୍ମ ଓ ଜୈବ-ବିଧାନର ଗଠନର ଉପରେ ଛିଡ଼ା ହୋଇ। ସେଥିରେ ପାରଶବ ତ ବିପ୍ରବର୍ଣ୍ଣର ମଧ୍ୟରେ ପଡ଼େ। Scheduled caste (ତଫଶୀଲ ଜାତି) ନାମ ଦେଇ ଭାଗ ତ କରାହୋଇଛି। ଆ.ପ୍ର. ୭/୩୧.୧.୧୯୪୬

## ।। ଅନୁଲୋମ ସନ୍ତାନମାନଙ୍କର ଚମକ ବଢ଼େ ।।

ହିଟଲର ପ୍ରାୟ ଠିକ୍ କରିଥିଲେ, କିନ୍ତୁ ଅନୁଲୋମ, ପ୍ରତିଲୋମ ଦୁଇଟିକୁ-ହିଁ ବାଦ୍‌ଦେଇ ଖରାପ କରିଛନ୍ତି। ଅନୁଲୋମ ଯେଉଁମାନେ, ସେମାନଙ୍କୁ ସମାଜଭୁକ୍ତ କରି ନେବା ଉଚିତ ଥିଲା। ଶୁଣିଛି ବଡ଼ ବଡ଼ ଇହୁଦୀ ବୈଜ୍ଞାନିକ ଯେଉଁମାନେ ସେମାନେ ଜର୍ମାନ ପିତା ଓ ଇହୁଦୀ ମାତାର ସନ୍ତାନ। ଅନୁଲୋମ ସନ୍ତାନମାନଙ୍କର ଚମକ ବଢ଼େ। ଆଉ ପ୍ରତିଲୋମ ଯେଉଁମାନେ ସେମାନେ ବିଶ୍ୱାସଘାତକ, ଆଉ ସେମାନେ ଅନୁତପ୍ତ ହୋଇ ପାରନ୍ତି ନାହିଁ। ଆ.ପ୍ର. ୭/୩୧.୧.୧୯୪୬

## ।। ସୁପ୍ରଜନନର ଆନ୍ଦୋଳନ ଠିକ୍ ରଖିବାକୁ ହେବ କାହିଁକି ।।

ଯେଉଁ ଆନ୍ଦୋଳନହିଁ କରା ଯାଉ, ତା ସହିତ ସୁପ୍ରଜନନର ଆନ୍ଦୋଳନ ଯଦି ଠିକ୍ ନ ଥାଏ, ତେବେ ସେ-ଆନ୍ଦୋଳନ ଟେକେ ନାହିଁ, ଯାହାହିଁ କରନ୍ତୁ, କରିବ ତ ମଣିଷ। ଯଦି ବିବାହାଦି ଠିକ୍‌ଭାବରେ ନ ହୁଏ — ମଣିଷର ଆମଦାନୀ ଠିକ୍‌ରହେ ନାହିଁ । ଶିବାଜୀ ଅନ୍ୟ ସବୁ ନେଇ ବ୍ୟସ୍ତ ଥିଲେ, କିନ୍ତୁ ଏହି ଦିଗକୁ ନିଜର ଦେଇ ପାରିନାହାନ୍ତି, ମୋର ମନେ ହୁଏ, ଏଇଥିରେହିଁ ଗୋଳମାଳ ହୋଇ ଗଲା।

ଆ.ପ୍ର. ୭/୩୧.୧.୧୯୪୬

## ।। ଗୋତ୍ର ଜଣା ନ ରହିଲେ କଣ ହୁଏ ।।

ଗୋତ୍ର ଜଣା ନ ରହିଲେ ଅନେକ ସଗୋତ୍ର–ବିବାହ ହୋଇଯାଏ। ସବର୍ଣ୍ଣ ସଗୋତ୍ର-ବିବାହ ହେଲେ dwarf (ଖର୍ବାକୃତି) ହୁଏ, mentally, physically deteriorate କରେ (ଶରୀର-ମନର ଦିଗ ଦେଇ ଅପକର୍ଷ ଲାଭ କରେ) - ଏହା ହେଲା scientific fact (ବୈଜ୍ଞାନିକ ତଥ୍ୟ) ଆ.ପ୍ର. ୭/୩.୨.୧୯୪୬

## ।। ପାରଶବମାନେ ସାବଧାନ ହୁଅ ।।

ବର୍ତ୍ତମାନ କିନ୍ତୁ ପାରଶବମାନଙ୍କ ମଧ୍ୟରେ ଅନେକ-କିଛି (ବିକୃତି) ପ୍ରବେଶ କରୁଛି, ସାବଧାନ। ପାରଶବମାନଙ୍କର ଝିଅ କ୍ଷତ୍ରିୟ, ବୈଶ୍ୟ ଘରେ ବିବାହ କରି ପାରିବ ନାହିଁ। ଆ.ପ୍ର. ୭/୩.୨.୧୯୪୬

## ।। ଜନନ-ବିଜ୍ଞାନ ଓ ବର୍ଣ୍ଣଧର୍ମ ମାନିବାକୁ ହୁଏ କାହିଁକି ।।

Eugenic science (ଜନନ-ବିଜ୍ଞାନ) ମାନିବାକୁ ହୁଏ eugenic perfection (ନିଖୁଁତ ଜନନ)-ର ପାଇଁ, ଆଉ, ବର୍ଣ୍ଣଧର୍ମ ମଧ୍ୟ ମାନିବାକୁ ହୁଏ ସହଜାତ-ସଂସ୍କାର ଓ ବୈଶିଷ୍ଟ୍ୟର ଧାରା ଠିକ୍ ରଖିବା ପାଇଁ। ବର୍ଣ୍ଣ ହେଲା grouping of the varieties of similar-instincts (ସମଜାତୀୟ ବିଚିତ୍ର ସହଜାତ-ସଂସ୍କାର-ଅନୁପାତିକ ଶ୍ରେଣୀ-ବିନ୍ୟାସ)। ମଣିଷ ମଧ୍ୟ animal (ଜୀବ), ଘୋଡ଼ା-ଗୋରୁ-କୁକୁର ମଧ୍ୟ animal (ଜୀବ), ଘୋଡ଼ା-ଗୋରୁ-କୁକୁରର ବେଳକୁ କେତେ ସାବଧାନତା

ଅବଲମ୍ବନ କରୁ—ଭଲ ଛୁଆ ପାଇବା ପାଇଁ, ମଣିଷ ବେଳକୁ ତାହା ignore (ଉପେକ୍ଷା) କରିଲେ ଚଳିବ କିପରି ? ଗୋଟିଏ pedigreed dog (ସୁଜାତ କୁକୁର) ଏବଂ ସାଧାରଣ କୁକୁର ମଧ୍ୟରେ କେତେ ତଫାତ୍। ଦାମ୍‌ରେ ମଧ୍ୟ କେତେ ଫରକ୍।

ଆ.ପ୍ର. ୭/୩.୨.୧୯୪୬

## ।। ପ୍ରତିଲୋମରେ ଝୋଙ୍କ କାହାର ଲକ୍ଷଣ ।।

ଏ ଯେ କଣ ହେଲା ! Chastity (ସତୀତ୍ୱ) ବୋଲି କଥା ନାହିଁ। ପ୍ରତିଲୋମ ଉପରେ ଝୋଙ୍କ। ପ୍ରତିଲୋମକୁ ଅନେକେ ଝିଅମାନଙ୍କର generosity (ଉଦାରତା)-ର ଲକ୍ଷଣ କହନ୍ତି, କିନ୍ତୁ ଏହା ଭିତରେ generosity (ଉଦାରତା)-ର ଜ-ମଧ୍ୟ ନାହିଁ। ଅଛି ଜାହାନ୍ନମର ଜୟଗାନ। ଉନ୍ନତି ନ ହୋଇ ଯେଉଁଥିରେ ସମାଜର ସର୍ବନାଶ ହୁଏ, ତାହା କଣ କେତେବେଳେ ମଧ୍ୟ ଭଲ ହୋଇ ପାରେ ? ଉନ୍ନତିର ପଥରେ ନ ଚଳିଲେ ସ୍ଥିତିହିଁ ରହେ ନାହିଁ। ଆ.ପ୍ର. ୭/୧୨.୨.୧୯୪୬

## ।। ଅନୁଲୋମକ୍ରମିକ ବହୁ ବିବାହରେ କଣ ହୁଏ ।।

ଏହା ମୋର ଗୋଁଡ଼ାମି କି ନୁହେଁ କହି ପାରିବି ନାହିଁ। କିନ୍ତୁ ମୋର ମନେ ହୁଏ, ସାରା ଭାରତର ମଙ୍ଗଳ ପାଇଁ ବଙ୍ଗଳାର position (ଅବସ୍ଥା) ଖୁବ୍ strong (ଶକ୍ତିମାନ) କରି ତୋଳିବା ଦରକାର। ...ଯେଉଁଥିରେ ସଂହତି ବଢ଼ିବ, ଶକ୍ତି ବଢ଼ିବ, ସେପରି କୌଣସି ବ୍ୟବସ୍ଥା ନାହିଁ। Scheduled caste (ଅନୁସୂଚୀତ ଜାତି) କହି ପୁଣି ହିନ୍ଦୁ ସମାଜରୁ କେତେଗୁଡ଼ିକୁ କାଟି ଅଲଗା କରି ଦେଇଛନ୍ତି। ଅନୁଲୋମ-ଅସବର୍ଣ୍ଣ ବିବାହର ପ୍ରଚଳନର ଭିତର-ଦେଇ ସମସ୍ତଙ୍କୁ କିନ୍ତୁ ଏକଯୋଟ କରି ତୋଳା ଯାଏ। ଉପଯୁକ୍ତ ସବର୍ଣ୍ଣ ଓ ଅନୁଲୋମ-ଅସବର୍ଣ୍ଣ ବିବାହର ଭିତର-ଦେଇ ଭଲ-ଭଲ ମଣିଷ ମଧ୍ୟ ମଧ୍ୟେଷ୍ଟ ମିଳିପାରେ। କିନ୍ତୁ ଆମ୍ଭମାନଙ୍କର ସେ ଦିଗକୁ ଲକ୍ଷ୍ୟ ନାହିଁ, ବାହା-ସାହା ଯେପରି ଇଚ୍ଛା ସେପରି ହେଉଛି। ଏହା ଦ୍ୱାରା କିନ୍ତୁ ସର୍ବନାଶ ହୋଇ ଯିବ। ପୁଣି, ଆମେ ଏପରି sterile morolist (ବନ୍ଧ୍ୟା ନୀତିବାଦୀ) ଯେ ଉପଯୁକ୍ତ ପୁରୁଷର ବହୁ ବିବାହ support (ସମର୍ଥନ) କରୁ ନାହୁଁ। ବୈଶିଷ୍ଟ୍ୟବାନ୍ ଯେଉଁମାନେ ଅଛନ୍ତି, ସେମାନେ ଯଦି ଅନ୍ତତଃ ବହୁ ବିବାହ କରନ୍ତି, କେତେ ବିଶିଷ୍ଟ ମଣିଷର ଆମଦାନୀ ହୋଇ ପାରନ୍ତା। ଆଉ, ଅନୁଲୋମକ୍ରମିକ ବହୁ ବିବାହରେ ସମାଜର ପରିଧି ମଧ୍ୟ

ବଢ଼ିବାକୁ ଲାଗେ। ଜୀବନୀୟ ଆତ୍ମୀକରଣ କ୍ଷମତା ଯଦି ଜୀବନ୍ତ ରହେ, ତେବେ ଆଜି ଯିଏ ଅନାତ୍ମୀୟ, କାଲି ସେ ଆତ୍ମୀୟ ହୋଇ ଉଠେ।

ଆ.ପ୍ର. ୭/୧୨.୨.୧୯୪୬

## ।। ଅନୁଲୋମ ସନ୍ତାନ ପିତୃବର୍ଣ୍ଣ ପାଏ କାହିଁକି ।।

Zygote form କରେ (ଜୀବନକୋଷ ଗଠିତ ହୁଏ) sperm (ଶୁକ୍ରକୀଟ) ଓ ovum (ଡିମ୍ବକୋଷ) ଦେଇ। ମୋର ମନେ ହୁଏ, blood (ରକ୍ତ) ହେଲା sperm (ଶୁକ୍ରକୀଟ)-ର, ovum (ଡିମ୍ବକୋଷ) ତାହା supply (ସରବରାହ) କରେ ନାହିଁ। ତେଣୁ ସନ୍ତାନ ପିତୃବର୍ଣ୍ଣ ପାଇଥାଏ। ଅବଶ୍ୟ, ତାର ଥାକ (ସ୍ତର) ମାତୃବର୍ଣ୍ଣ-ଅନୁଯାୟୀ ହୋଇ ଥାଏ। ବର୍ଣ୍ଣାଶ୍ରମ ଓ ବିବାହ ଠିକ୍ ରହିଲେ ଆଉ କୌଣସି ଭାବନା ନାହିଁ।

ଆ.ପ୍ର. ୭/୧୨.୨.୧୯୪୬

## ।। ପୁରୁଷ-ନାରୀ କେଉଁ ଦିଗକୁ ଜୋର ଦେବେ ।।

ଯେଉଁ—ଝିଅମାନଙ୍କର ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ସତୀତ୍ୱ ଅକ୍ଷୁର୍ଣ୍ଣ ଥାଏ ଏବଂ ବିବାହ ମଧ୍ୟ ଠିକ୍ ଭାବରେ ହୁଏ, ସେମାନଙ୍କର ଛୁଆପିଲା ବିଶେଷଭାବରେ ଶ୍ରେୟନିଷ୍ଠ ହୁଅନ୍ତି। ବାପାର ମଧ୍ୟ ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ chastness (ପବିତ୍ରତା) ଠିକ୍ ରହିବା ଦରକାର। ଏହି ଦିଗରେ ଜୋର ନ ଦେଇ ଯାହା କରନ୍ତୁ ତାହାର କୌଣସି ସ୍ଥାୟୀ ପ୍ରଭାବ ହେବ ନାହିଁ। ମୂଳ ଜିନିଷ ହେଲା ଚରିତ୍ର।

ଆ.ପ୍ର. ୭/୧୨.୨.୧୯୪୬

## ।। ପ୍ରକୃତ କୌଳିନ୍ୟ ଏକ ବୈଜ୍ଞାନିକ ବ୍ୟାପାର ।।

ପ୍ରକୃତ କୌଳିନ୍ୟ ଯେ ଗୋଟାଏ ବୈଜ୍ଞାନିକ ବ୍ୟାପାର, ଏହି କଥାଟା ଅନେକେ ବୁଝନ୍ତି ନାହିଁ। କୁଳୀନ ସବୁ-ଦେଶରେ ଅଛନ୍ତି। ମୋର ମନେ ହୁଏ, ଆମେରିକାରେ ମଧ୍ୟ ଅନେକ କୁଳୀନ ଅଛନ୍ତି।

ଆ.ପ୍ର. ୭/୨୦.୨.୧୯୪୬

## ।। ନିଖୁଁତ ବିବାହ କାହିଁକି ଦରକାର ।।

ଜାତିର ଉନ୍ନତି କରିବାକୁ ଗଲେ ଏକସମୟରେ ଦୁଇଦିଗକୁ ଲକ୍ଷ୍ୟ ରଖିବା ଦରକାର। ଗୋଟିଏ ଦିଗରେ acquisitional advancement (ଅଧିଗତିର ଦିଗ

ଦେଇ ଅଗ୍ରଗତି ଅର୍ଥାତ୍ ବିଦ୍ୟା ଓ ଗୁଣାର୍ଜନରେ ଉତ୍କର୍ଷ) ଯେପରି ଦରକାର, ଅନ୍ୟଦିଗରେ ସେହିପରି ଦରକାର biological enhancement (ଜୀବବିଜ୍ଞାନଗତ ବୃଦ୍ଧି)। ଏଥିପାଇଁ ଦରକାର correct matching (ନିଖୁଁତ ବିବାହ)। ବିବାହ ଠିକ୍ ରହିଲେ biological basis (ଜୀବବିଜ୍ଞାନଗତ ଭିତ୍ତି) ଠିକ୍ ରହେ। ତାରି ଉପରେ ଛିଡ଼ା ହୋଇହିଁ ବୈଶିଷ୍ଟ୍ୟ-ଅନୁଯାୟୀ ଗୁଣ ଓ ଜ୍ଞାନାର୍ଜନର ପଥ ସୁଗମ ହୁଏ। ଏହିଟିକୁ ଜଖମ କଲେ ଜାତି ଆଉ ଛିଡ଼ାହୋଇ ପାରିବ ନାହିଁ। ଆ.ପ୍ର. ୭/୨୩.୨.୧୯୪୬

## ।। ମଣିଷର ଉନ୍ନତି କେଉଁ ପଥରେ ହୁଏ।।

ମଣିଷର ଉନ୍ନତିର ଦୁଇଟି ପଥ। ଗୋଟିଏ ବୀର୍ଯ୍ୟୋତ୍କର୍ଷ, ଆଉ–ଗୋଟିଏ ତପସ୍ୟା। ଦୁଇଦିଗକୁ ଯଦି ନଜର ନ ରହେ କିଛି ହିଁ ହେବ ନାହିଁ। Higher quality (ଉନ୍ନତତର ଗୁଣ)-ଗୁଡ଼ିକ ଏତେ ପରିମାଣରେ ଆୟତ୍ତ କରିବାକୁ ହେବ ଯେପରି ସେଗୁଡ଼ିକ ସନ୍ତତିଙ୍କ ମଧ୍ୟରେ ସହଜଭାବରେ ପ୍ରବେଶ କରିଯାଏ ଅର୍ଥାତ୍ ସଞ୍ଚାରିତ ହୁଏ। ଉଚ୍ଚସ୍ତରର ଚରିତ୍ର ଓ ଯୋଗ୍ୟତା–ସମ୍ପନ୍ନ ମଣିଷ breed କରିବାର (ଜନ୍ମ ଦେବାର) capacity (ଶକ୍ତି) ଯଦି ସମାଜରେ ନ ବଢ଼େ, ତା ହେଲେ ଅବସ୍ଥାର ପରିବର୍ତ୍ତନ ହେବ ନାହିଁ। ଗୋରୁ-ଘୋଡ଼ା ବେଳକୁ ଆମେ କେତେ କରୁ। ମଣିଷ ବେଳକୁ ଯେ କିଛି କରିବାର ଅଛି, ତାହାତ ଆମ ମୁଣ୍ଡରେ ପଶେ ନାହିଁ। ପଶୁମାନଙ୍କର ପ୍ରଜନନ ବେଳକୁ sire-index (ବଂଶ-ପରିଚୟ) ଦେଖି compatible mating (ସୁସଙ୍ଗତ ମିଳନ) ଘଟାଉ। କିନ୍ତୁ ମଣିଷ ବେଳକୁ ଯାହା ଖୁସି ତାହା କରୁ। ତା ମାନେ ଆମେ ମଣିଷକୁ ଜନ୍ତୁ-ଜାନୁଆରମାନଙ୍କ ଠାରୁ ମଧ୍ୟ କମ୍ ମୂଲ୍ୟବାନ ମନେ କରୁ, ବା ତାକୁ ଜନ୍ତୁ-ଜାନୁଆରମାନଙ୍କ ଠାରୁ ମଧ୍ୟ ଅଧମ କରି ତୋଳିବାକୁ ଅରାଜୀ ନୋହୁଁ। ଆମ୍ଭମାନଙ୍କର ପଶୁ ସୁଲଭ ପ୍ରବୃତ୍ତିର ଚାହିଦା ମେଣ୍ଟିଲେ ହିଁ ହେଲା। ଆଉ କଣ ଦରକାର? ସମାଜ ବଞ୍ଚୁ କିମ୍ବା ମରୁ – ସେଥିରେ ଆମ୍ଭମାନଙ୍କର କଣ ଅଛି? ଆ.ପ୍ର. ୭/୬.୩.୧୯୪୬

## ।। ଦେଶର ଭବିଷ୍ୟତ କିପରି ବୁଝିବ।।

ଜାତିର ଉନ୍ନତି ପାଇଁ ତପସ୍ୟା ଓ ବୀର୍ଯ୍ୟୋତ୍କର୍ଷ ଦୁଇ ପ୍ରକାରର ବ୍ୟବସ୍ଥା କରିବାକୁ ହେବ। ବର୍ଣ୍ଣାଶ୍ରମର ମଧ୍ୟରେ ଏହି ଦୁଇ ପ୍ରକାରର ବିଧାନ ଅଛି। ବର୍ଣ୍ଣାଶ୍ରମୀ ସମାଜ ତେଣୁ ବିଧିମାଫିକ ବିବାହ ଉପରେ ଏତେ ପରିମାଣରେ ଜୋର ଦିଏ। କୌଣସି ଦେଶର

ଭବିଷ୍ୟତ ସମ୍ବନ୍ଧରେ ଯଦି ଆନ୍ଦାଜ କରିବାକୁ ଚାହାନ୍ତି, ତା ହେଲେ ପ୍ରଥମେହିଁ ଦେଖନ୍ତୁ - ସେମାନଙ୍କର ବିବାହ-ବିଧାନ କିପରି। ମଣିଷକୁ ଦୋହାଇ ଦେଇ କହିବେ, ବୁଝାଇ କହିବେ, କଠୋର ଶାସନରେ କହିବେ – ଯେପରି କୌଣସି ପ୍ରକାରରେ ପ୍ରତିଲୋମ ବିବାହ ମଧ୍ୟକୁ ନ ଯାଆନ୍ତି। ଆ.ପ୍ର. ୭/୯.୪.୧୯୪୬

## ।। ବୈଦ୍ୟ ଓ କାୟସ୍ଥର ମଧ୍ୟରେ ବିବାହ ଚଳିବ କି ନାହିଁ।।

ଅନେକ ଜାଗାରେ ଶୁଣେ ବୈଦ୍ୟ-କାୟସ୍ଥର ମଧ୍ୟରେ ବିବାହ ସାଧାରଣତଃ ଚାଲୁଛି। କିନ୍ତୁ ଏମାନଙ୍କ ମଧ୍ୟରେ ବିବାହ ଚଳିବ ନାହିଁ। ବୈଦ୍ୟ ମୂଳତଃ କାୟସ୍ଥ ଠାରୁ ବାପର ଦିଗଦେଇ ବଡ଼ କିନ୍ତୁ ମାର ଦିଗ ଦେଇ ଛୋଟ, କାୟସ୍ଥ ବୈଦ୍ୟ ଠାରୁ ମା ଦିଗଦେଇ ବଡ଼ କିନ୍ତୁ ବାପର ଦିଗ ଦେଇ ଛୋଟ। ତେଣୁ ବୈଦ୍ୟ ଓ କାୟସ୍ଥ ମଧ୍ୟରେ କୌଣସି ସମ୍ପର୍କ କରିବା ମାନେହିଁ କୌଣସି-ନା-କୌଣସି ଭାବରେ ପ୍ରତିଲୋମକୁ ପ୍ରଶ୍ରୟ ଦେବା। ବର୍ଣ୍ଣାଶ୍ରମରେ ଅନୁଲୋମ ବିବାହର କୌଣସି ବାଧା ନାହିଁ। ଅନୁଲୋମରେ inter-interestedness ଓ eugenic uphold (ପାରସ୍ପରିକ ସ୍ୱାର୍ଥ-ସମ୍ବନ୍ଧତା ଓ ସୁପ୍ରଜନନୀ ଧୃତି) enhanced (ବର୍ଦ୍ଧିତ) ହୋଇ ଚାଲେ। Sanctity of marriage (ବିବାହର ପବିତ୍ରତା)-ର ଭିତର-ଦେଇ ଜାତକମାନଙ୍କ ମଧ୍ୟରେ Sanctity of purpose (ଉଦ୍ଦେଶ୍ୟର ପବିତ୍ରତା) ଗଜେଇ ଉଠେ। ଆ.ପ୍ର. ୭/୯.୪.୧୯୪୬

## ।। କାହାର ଝିଅ କାହା ଘରକୁ ଯାଇ ପାରେ।।

ବୈଶ୍ୟର ଝିଅ ବିପ୍ର, କ୍ଷତ୍ରିୟ ସମସ୍ତଙ୍କ ଘରକୁ ଯାଇ ପାରେ। ବୈଶ୍ୟର ଝିଅମାନେ ସୁଗୃହିଣୀ ହୁଅନ୍ତି। ଅଳ୍ପ ଭିତରେ ଗୁଛାଇ ସଂସାର କରି ପାରନ୍ତି। ଏମାନଙ୍କର ହିସାବର କାଇଦା ଅସାଧାରଣ। ଶ୍ରୋତ୍ରିୟର ଝିଅମାନେ କେତେଟା ଏହି ପ୍ରକାରର। ଏମାନେ ମଧ୍ୟ କୁଳୀନ ଓ ବଂଶଜ ସବୁ-ଘରକୁ ଯାଇ ପାରିବେ। ...ଅନେକ ବିପ୍ର- ପରିବାର ମଧ୍ୟରେ ବୈଶ୍ୟ, କ୍ଷତ୍ରିୟ ଇତ୍ୟାଦିର trait (ଗୁଣ) prominent (ପ୍ରଧାନ) ଦେଖା ଯାଏ। ମୋର ମନେ ହୁଏ, ତାର କାରଣ ହେଲା ଏମାନେ ହୁଏତ ପୁରୁଷାନୁ କ୍ରମେ ବ୍ରହ୍ମଜ୍ଞ ହେବା ଫଳରେ ଏହି ସବୁ ବର୍ଣ୍ଣରୁ ବିପ୍ରବର୍ଣ୍ଣକୁ ଉନ୍ନୀତ ହୋଇଛନ୍ତି।

ଆ.ପ୍ର. ୭/୯.୪.୧୯୪୬

## ।। ଝିଅମାନଙ୍କ ବିବାହର ବୟସ କେତେ ହେବା ଭଲ ।।

ଉନ୍ନତ ପ୍ରକୃତିର ପୁଅ ମିଳିଲେ ଗୌରୀଦାନରେ ମଧ୍ୟ ମୋର କୌଣସି ଆ ନାହିଁ। ଏପରିକି ମନେ ହୁଏ ୧୫/୧୬ ବର୍ଷ ମଧ୍ୟରେ ବିବାହ ହେବା ଭଲ।

ଆ.ପ୍ର. ୭/୯.୪.୧୯୪

## ।। ବିବାହ ବ୍ୟାପାରରେ ରାଷ୍ଟ୍ରର କଣ କରିବା ଉଚିତ ।।

ରାଷ୍ଟ୍ରର କାମ ହେଲା ପ୍ରତ୍ୟେକଟି ମଣିଷ ଯେପରି ଯୋଗ୍ୟ ହୋଇ ଉଠେ ସେଥିପାଇଁ ଶିକ୍ଷା ଓ ସୁଯୋଗ-ସୁବିଧା ଦେବା। ଏହି ଶିକ୍ଷା ଓ ସୁଯୋଗ-ସୁବିଧା ଗ୍ରହଣ କରି ଉପଯୁକ୍ତ ହେବା ପରି biological asset (ଜୈବ-ସମ୍ପଦ) ଯଦି ମଣିଷମାନଙ୍କର ନଥାଏ ତେବେ କେବଳ ଏହି ଗୁଡ଼ିକରେହିଁ କାମ ହୁଏ ନାହିଁ। ତେଣୁ ରାଷ୍ଟ୍ରର ଉଚିତ, ବିଧି-ବିଗର୍ହିତ ବିବାହକୁ ନିଷିଦ୍ଧ କରିବା। ବିବାହ ଯେପରି ଯେପରି ଭାବରେ ହେବା ଉଚିତ ତାହା ଯଦି ନ ହୁଏ, ତେବେ ସନ୍ତାନ-ସନ୍ତତିର biological asset (ଜୈବ ସମ୍ପଦ) କ୍ଷୟ ପ୍ରାପ୍ତ ହେବାକୁ ଲାଗେ। ଏହି ଜାଗାରେ ଭୁଲ ରଖି ରାଷ୍ଟ୍ର ଅନ୍ୟ ଯେତେ ପ୍ରକାର ସୁବ୍ୟବସ୍ଥାହିଁ କରୁ ନା କାହିଁକି, ଦେଶକୁ କେତେବେଳେ ମଧ୍ୟ ଦୀର୍ଘଦିନ ପାଇଁ ଉନ୍ନତିମୁଖର ଚଳନରେ ଚାଳିତ କରି ପାରିବ ନାହିଁ। ମୂଳ କାଟି ଅଗରେ ଜଳ ଢାଳିଲେ କଣ ହେବ? ପୃଥିବୀରେ ଯେ କୌଣସି ରାଷ୍ଟ୍ରସମ୍ବନ୍ଧରେହିଁ ଏହି କଥା ପ୍ରଯୁଜ୍ୟ। ବ୍ୟକ୍ତି ସ୍ୱତନ୍ତ୍ର ଦେବାକୁ ଯାଇ ରାଷ୍ଟ୍ର କେତେବେଳେ ମଧ୍ୟ ଜୀବନପରିପନ୍ଥୀ ବିବାହନୀତିକୁ ପ୍ରଶ୍ରୟ ଦେଇ ପାରିବ ନାହିଁ। ତା ଯଦି ଦିଏ, ତେବେ ଆଜିହିଁ ହେଉ ବା କାଲିହିଁ ହେଉ, ସେ-ରାଷ୍ଟ୍ର ଦିନେ ବିପନ୍ନ ହେବାକୁ ବାଧ୍ୟ। ରାଷ୍ଟ୍ରନୀତିବିଦ୍ ଯେଉଁମାନେ, ସେମାନଙ୍କର ଯଦି ପ୍ରଜନନବିଜ୍ଞାନ ସମ୍ବନ୍ଧରେ ଜ୍ଞାନ ନ ଥାଏ, ଏବଂ ଜ୍ଞାନ ନ ଥିବା ଯୋଗୁଁ ସେମାନେ ଯଦି ଏ-ସମ୍ବନ୍ଧରେ ଯାହା ତାହା ହେବାକୁ ଦିଅନ୍ତି ବା କରିବାକୁ ଦିଅନ୍ତି, ତାର ଫଳ ଦିନେ ନା ଦିନେ ଫଳିବହିଁ। ତେଣୁ ମୋର ମନେ ହୁଏ, ଏହି ବିଷୟରେ ଅଜ୍ଞତା ସେମାନଙ୍କର ଅଯୋଗ୍ୟତାରହିଁ ପରିଚୟ ଦିଏ। ରାଷ୍ଟ୍ର ନାୟକମାନଙ୍କର ତେଣୁ ପୂର୍ଣ୍ଣ-ଜ୍ଞାନୀ ଋଷିମାନଙ୍କ ପ୍ରତି allegiance (ଆନୁଗତ୍ୟ) ଓ submission (ନତି) ବଜାଇ ରଖି ଚାଲିବା ଏକାନ୍ତ ପ୍ରୟୋଜନ। ନହେଲେ ପଦେ ପଦେ ଭୁଲ ହୋଇ ପାରେ।

ଆ.ପ୍ର. ୭/୮.୫.୧୯୪୬

## ।। ସମାଜର ତିନୋଟି ପ୍ରଧାନ ବାନ୍ଧଣ କଣ ।।

ଜନ୍ମ, ପରିବେଶ ଓ ଶିକ୍ଷାକୁ ଏପରି ଭାବରେ ସଜାଇ ରଖିବାକୁ ହୁଏ, ଯାହାଦ୍ୱାରା ଶୁଭବୁଦ୍ଧିର ହିଁ ପ୍ରାବଲ୍ୟ ହୁଏ । ପ୍ରଥମେ ଯେଉଁଠାରେ ବାନ୍ଧଣ ଦେବା ଦରକାର, ସେଠାରେ ଯଦି ବାନ୍ଧଣ ଦିଆ ନ ଯାଏ, ତେବେ ସାରା ଦେହରେ ବିଷ ଚରେଇ ଯିବାକୁ ଦେଇ ପରେ ବାନ୍ଧଣ ଦେଲେ କଣ କୌଣସି କାମ ହୁଏ ? ଦୀକ୍ଷା, ଶିକ୍ଷା ଓ ବିବାହ—ସମାଜର ଏହି ପ୍ରଧାନ ତିନୋଟି ବାନ୍ଧଣ ଠିକ୍ ରଖ...ସେତେବେଳେ ଦେଖିବ, ରାଷ୍ଟ୍ର ସୁଖ-ସ୍ୱାସ୍ଥ୍ୟରେ ନାଚୁ-ନାଚୁ ଉଦ୍‌ବର୍ଦ୍ଧନର ଦିଗକୁ ଆଗେଇ ଚାଲୁଛି । ଆମ୍ଭମାନଙ୍କର କଥା ଅର୍ଥାତ୍ ଆର୍ଯ୍ୟ ବେଦ-ବିଜ୍ଞାନର କଥା ବାଦ ଦେଇ ମଣିଷ ଯେଉଁଠାରେ ଯେତେ ନାଚୁ-କୁଦୁ, ମଣିଷର ବଞ୍ଚିବା-ବଢ଼ିବାର ସ୍ୱାର୍ଥ ସେଥିରେ କେତେ ପରିମାଣରେ ଆଗେଇବ, ତାହା ମୁଁ ଠିକ୍ ବୁଝି ପାରୁ ନାହିଁ । ଅନେକ ଠକାଇ, ଅନେକ ଠକି ଶେଷରେ ଏହି ଦ୍ୱାରକୁ ଆସିବାକୁ ପଡ଼ିବ । ଆ.ପ୍ର. ୭/୮.୫.୧୯୪୬

## ।। ମଣିଷ ଭିନ୍ନ ଭିନ୍ନ ପ୍ରକୃତିର ହୁଏ କାହିଁକି ।।

ଜନ୍ମଗତ ମାଲ—ମସଲାର ତଫାତ୍ ଥାଏ । Libido (ସୌରତ-ସମ୍ବେଗ) ଯାହାର ଯେତେ strong (ଜୋରଦାର) being (ସତ୍ତା)-ମଧ୍ୟ ତାର ସେତେ ତେଜୀୟାନ୍, dedicate (ଉତ୍ସର୍ଗ) କରିବାର ଶକ୍ତି ଏବଂ determination (ସଙ୍କଳ୍ପ)-ମଧ୍ୟ ତାର ସେତେ firm (ଦୃଢ଼), brain (ମସ୍ତିଷ୍କ)-ମଧ୍ୟ ତାର ସେତେ active (ସକ୍ରିୟ), scheming (ଉପାୟ-ଉଦ୍ଭାବନ-ପ୍ରବଣ), knowledge (ଜ୍ଞାନ)-ମଧ୍ୟ ତାର ସେତେ flaring (ସମୁଜ୍ଜ୍ୱଳ), inquisitive (ଅନୁସନ୍ଧିତ୍ସୁ) ଏବଂ ardent (ବ୍ୟଗ୍ର)-ମଧ୍ୟ ସେ ସେତେ ପରିମାଣରେ ଏବଂ decision (ସିଦ୍ଧାନ୍ତ)-ମଧ୍ୟ ତାର ସେତେ sharp (କ୍ଷିପ୍ର) । ଏହା ପୁଣି ନିର୍ଭର କରେ ବାପା-ମାର ଉପରେ । ପିତା ମାତାଙ୍କ ମଧ୍ୟରେ ଯେଉଁଠାରେ ଗଭୀର ଅନୁରାଗ ଓ ସଙ୍ଗତି ନାହିଁ, ସେଠାରେ ସନ୍ତାନ ମଧ୍ୟ ଢିଲା, ଅଲଗା ଗୁଚ୍ଛର ହୁଏ । ଆ.ପ୍ର. ୮/୧୧.୫.୧୯୪୬

## ଧର୍ମଦ ସୁବିବାହ, ସୁଜନନ ଓ ସୁଶିକ୍ଷାର ଜାଗରଣ ଦରକାର କାହିଁକି ।।

ଧର୍ମଦ ସୁବିବାହ, ସୁଜନନ ଓ ସୁଶିକ୍ଷାର ଜାଗରଣ ଯଦି ନ ହୁଏ, ତା ହେଲେ ଦେଶରେ ମଣିଷ ପରି ମଣିଷ ହେବେ ନାହିଁ । ଆଉ, ଦେଶରେ ମଣିଷ ଅପେକ୍ଷା ଅମଣିଷର

ସଂଖ୍ୟା ଯଦି ବେଶୀ ହୁଏ, ତେବେ ଯାହା କରା ଯାଉ, କୌଣସି ପ୍ରକାରେ କିଛି ହେବ ନାହିଁ। ଆ.ପ୍ର. ୮/୧୮.୫.୧୯୪୬

## ।। ସୁପ୍ରଜନନ ସମ୍ବନ୍ଧରେ କିପରି ବହି ଦରକାର ।।

ସୁପ୍ରଜନନ ସମ୍ବନ୍ଧରେ ଏପରି ଏକ ତଥ୍ୟ-ମୂଳକ ପବିତ୍ର ବହି ଲେଖିବା ଦରକାର, ଯାହା ବାପ ଝିଅ ପାଖରେ ପଢ଼ି ପାରିବ, ଯେଉଁଥିରେ ପୁରୁଷ ବା ନାରୀର passionate inclination (ପ୍ରବୃତ୍ତିମୁଖୀ ଝୋଙ୍କ) ନ ହୁଏ, ସେମାନଙ୍କର ସହଜରେ fall (ପତନ) ନ ହୁଏ। କୁତ୍ସିତ ଆସକ୍ତି, କଦାଚାର ଓ ବ୍ୟାଭୀଚାର ଠାରୁ ପୁରୁଷ ଓ ନାରୀମାନଙ୍କୁ ବଞ୍ଚାଇବା ମହାଧର୍ମ। ଇଷ୍ଟନିଷ୍ଠାହିଁ ସତ୍-ତ୍ୱ ଓ ସତୀତ୍ୱର ପରମ ଉତ୍ସ। ସତ୍-ତ୍ୱ ଓ ସତୀତ୍ୱ ତିନି ପ୍ରକାରର, — ଆଧ୍ୟାତ୍ମିକ, ମାନସିକ ଓ ଶାରୀରିକ। ଏଗୁଡ଼ିକ co-ordinated (ସାମଞ୍ଜସ୍ୟ-ସମନ୍ୱିତ) ନ ହେଲେ complete effect (ପୁରା ଫଳ) ପାଇ ହୁଏ ନାହିଁ। ଆ.ପ୍ର. ୮/୨୪.୫.୧୯୪୬

## ।। ପ୍ରତିଲୋମର ଝୋଙ୍କ ବଢ଼ି ଯାଉଛି କାହିଁକି ।।

ଦେଖିବାକୁ ହେବ ଭଲର ସମ୍ଭାବନା କେଉଁଥିରେ ବଢ଼େ, ମନ୍ଦର ସମ୍ଭାବନା କେଉଁଥିରେ କମେ। ତାହା ନ କରି ଭଲର ସମ୍ଭାବନାକୁ ପୁରାପୁରି ଖତମ କରିବା କଣ ଭଲ? ଚାରି-ଚକ୍ଷୁର ଦୃଷ୍ଟି ନେଇ ଦେଖିବାକୁ ହେବ, ଯେପରି ଗୋଟିଏ ବିପଦ ଏଡ଼ାଇବାକୁ ଯାଇ ଆମେ ଆଉ–ଗୋଟିଏ ବୃହତ୍ତର ବିପଦର ଭିତରେ ନ ପଡୁ। ଅଦୂରଦର୍ଶିତା ଯୋଗୁଁ ଆମେ ସର୍ବଦା ଏହା କରି ବସୁ। ଆଗରୁ ସମାଜରେ ଅନୁଲୋମ ବିବାହ ପ୍ରଚଳିତ ଥିଲା। ତାହାଦ୍ୱାରା ସମାଜରେ ଗୋଟିଏ upward trend (ଊର୍ଦ୍ଧ୍ୱମୁଖୀ ଗତି) ବଜାଇ ରହୁଥିଲା। ବର୍ତ୍ତମାନ ତାହା ବନ୍ଦ ହେବା ଫଳରେ, ଗତିଟା ଓଲଟା ଦିଗରେ ବାଙ୍କ ନେଇଛି। ପ୍ରତିଲୋମର ଝୋଙ୍କ ବଢ଼ି ଯାଇଛି।

ଆ.ପ୍ର. ୮/୨୯.୫.୧୯୪୬

## ।। ଜାତିର ଭବିଷ୍ୟତ ଭାବି ଆତଙ୍କ ହୁଏ କଣ ପାଇଁ ।।

ତୁମମାନଙ୍କର ଶାସ୍ତ୍ରରେ ନାହିଁ ଯେ, ବ୍ରାହ୍ମଣ ଅନ୍ୟ କାହାରି ଝିଅକୁ ବିବାହ କଲେ ବ୍ରାହ୍ମଣର ଜାତି ପାଏ। ଅବଶ୍ୟ, ପ୍ରଥମେ ସବର୍ଣ୍ଣ ବିବାହ କରି ତା ପରେ

ଅନୁଲୋମ ଅସବର୍ଣ୍ଣ ବିବାହ କରିବାକୁ ହୁଏ। ନହେଲେ କୁଳର ମୂଳଧାରା ଠିକ୍ ରହେ ନାହିଁ। ତେଣୁ, ଅନୁଲୋମ ବିବାହ ଚଳାଇବାକୁ ଗଲେହିଁ ବହୁ ବିବାହ କଥା ଆସି ପଡ଼େ। ବହୁ ବିବାହର କଥା ଶୁଣିଲେ ବର୍ତ୍ତମାନତ ତୁମେମାନେ ନାକ ଟେକ। କିନ୍ତୁ ଅନୁଲୋମ ଓ ବହୁବିବାହ ବନ୍ଦ କରିବାକୁ ଯାଇ ଯେ ପ୍ରତିଲୋମ କବଳରେ ପଡ଼ିଯାଉଛ, ତାହା କଣ ଠିକ୍ ପାଉଛ ? ସମାଜର ଅନେକ ଗଣ୍ୟମାନ୍ୟ ବ୍ୟକ୍ତି ଆଜି ଉଦାରତାର ନାମରେ ପ୍ରତିଲୋମ ସମର୍ଥନ କରୁଛନ୍ତି। କିନ୍ତୁ ବିଧି ଓ ବିଜ୍ଞାନ ଗଣ୍ୟ-ମାନ୍ୟମାନଙ୍କ କଥାରେ ବଦଳି ଯିବ ନାହିଁ। ଗୋଟିଏ ମୀରାଟି ଗାଈ ସହିତ ଏ-ଦେଶର ଷଣ୍ଢ ଦେଇ ଛୁଆ କରି ଦେଖନା, ଫଳଟା କଣ ହେଉଛି ! ମଣିଷ ସମାଜରେ ମଧ୍ୟ ସେହିପରି ପ୍ରତିଲୋମ ଜାତକ ବଢ଼ିବାକୁ ଲାଗିଲେ ଦେଖିବେ ପୁରା ସମାଜ କଣ ହୋଇ ଛିଡ଼ା ହେଉଛି। ତେଣୁ ଶାସ୍ତ୍ରରେ ଅଛି—ଯତ୍ରତ୍ୱେତେ ପରିଧ୍ୱଂସା ଜାୟନ୍ତେ ବର୍ଣ୍ଣ ଦୂଷକାଃ, ରାଷ୍ଟ୍ରିକୈଃ ସହ ତଦ୍ରାଷ୍ଟ୍ରଂ କ୍ଷିପ୍ରମେବ ବିନଶ୍ୟତି। ସବୁଠାରୁ ଦୁଃଖର କଥା ଏହି ଯେ, ପ୍ରଧାନ-ପ୍ରଧାନ ଲୋକମାନେ ଆଜି ଏହାର (ପ୍ରତିଲୋମର) ସମର୍ଥନ କରୁଛନ୍ତି। ଶ୍ରେଷ୍ଠମାନେ ଖରାପ ଦୃଷ୍ଟାନ୍ତ ସ୍ଥାପନ କଲେ ତାହା ଆହୁରି ବେଶୀ କରି ବଢ଼ିଯାଏ। ତେଣୁ ଜାତିର ଭବିଷ୍ୟତ କଥା ଚିନ୍ତା କରି ମୋର ଖୁବ୍ ଆତଙ୍କ ହୁଏ। ଆ.ପ୍ର. ୮/୨୯.୫.୧୯୪୬

## ।। ଅନୁପଯୁକ୍ତମାନେ ବିବାହ କରିବେ କି ନାହିଁ।।

ଅନୁପଯୁକ୍ତ ଯେଉଁମାନେ ସେମାନେ ବିବାହ ନ କରିବାହିଁ ଭଲ। ବିବାହ ହେଲେ ମଧ୍ୟ ସଂକ୍ରମଣଯୋଗ୍ୟ ଚାରିତ୍ରିକ ଓ ମାନସିକ ବ୍ୟାଧିଗ୍ରସ୍ତ ଯେଉଁମାନେ, ସେମାନଙ୍କର ସନ୍ତାନ-ସନ୍ତତି ନ ହେବା ଉଚିତ। କୁଜନନରେ ଦେଶ ଯେତେ ବିଧ୍ୱସ୍ତ ହୁଏ, ଏହିପରି ଆଉ କୌଣସିଥିରେ ହୁଏ ନାହିଁ। ରାଷ୍ଟ୍ର ବା ସମାଜ ଶତ ଚେଷ୍ଟା ସତ୍ତ୍ୱେବି ଦେଶରେ ସେତେବେଳେ ଗୋଟିଏ ସୁସ୍ଥ ଉଦ୍‌ବର୍ଦ୍ଧନୀ ଆବହାଓ୍ୱା ସୃଷ୍ଟି କରି ତୋଳିପାରେ ନାହିଁ।

ଆ.ପ୍ର. ୮/୨.୬.୧୯୪୬

## ।। ପୃଥିବୀରେ ନିକୃଷ୍ଟ ଧରଣର ମଣିଷ ବଢ଼ିବ ନାହିଁ କଣ କଲେ।।

ବିବାହ ଠିକ୍‌ଭାବରେ ହେବା ଦରକାର। ଇଷ୍ଟନିଷ୍ଠ ସତ୍, ସଂଯତ, କୃତୀ ଶ୍ରେଷ୍ଠ ମଣିଷଙ୍କର ବିହିତ ଅନୁଲୋମ ତଥା ବହୁ ବିବାହର ଫଳରେ ଧୀମାନ ଓ ଦକ୍ଷ ଲୋକଙ୍କର ସଂଖ୍ୟା ବଢ଼ି ପାରେ। ଅପଦାର୍ଥ, ଅଯୋଗ୍ୟ, କ୍ଷୀଣମସ୍ତିଷ୍କ, ବାତୁଳ, ଅପରାଧ-ପ୍ରବଣ, ବଂଶପରମ୍ପରାରେ ଦୁଶ୍ଚରିତ୍ର, ପରର ଅନିଷ୍ଟକାରୀ ଓ କୃତଘ୍ନ ଯେଉଁମାନେ ସେମାନଙ୍କର

ବଂଶବୃଦ୍ଧିର ସୁଯୋଗ ନ ରହିବା ଭଲ, ଏହା ସହିତ ଦରକାର common Ideal (ଅଭିନ୍ନ ଆଦର୍ଶ), ସତ୍‌ଦୀକ୍ଷା, ସୁଶିକ୍ଷା ଓ ବର୍ଣ୍ଣାଶ୍ରମ। ମଣିଷମାନଙ୍କୁ interinterested (ପରସ୍ପର ପ୍ରତି ସ୍ୱାର୍ଥନ୍ବିତ) କରି ତୋଳିବା ଦରକାର। ଯେତେ କାମ ହେଉ, prime (ପ୍ରଥମ) କାମ ହେଲା ଯାଜନ, ପ୍ରତ୍ୟେକଙ୍କ ଅନ୍ତରରେ Lord (ପ୍ରଭୁ)-ଙ୍କୁ ଜାଗ୍ରତ କରି ତୋଳିବା। ଚାରିଆଡ଼େ ସେହି କାମ ଚଳାଇବାକୁ ହେବ। ଯାଜନରେ-ଯାଜନରେ ଜଗତର ହାଓ୍ୱାଟା ଘୁରାଇ ଦେବାକୁ ହେବ। ଆ.ପ୍ର. ୮/୨.୬.୧୯୪୬

## ।। ବିବାହ ବ୍ୟାପାରରେ ଜଣେ ମଣିଷର କଣ ଦେଖିବାକୁ ହେବ।।

ବିବାହ ବ୍ୟାପାରରେ କେବଳ ଜଣେ ମଣିଷର ବ୍ୟକ୍ତିଗତ ଗୁଣପନା ଦେଖିଲେ ହେବ ନାହିଁ। ଦେଖିବାକୁ ହେବ ତାର ବଂଶାନୁକ୍ରମିକତାରେ ସୁପ୍ରତିଷ୍ଠିତ ବୀଜଗତ ବୈଶିଷ୍ଟ୍ୟ ଓ ଐଶ୍ୱର୍ଯ୍ୟ କଣ ଓ ତାହା କିପରି। ତେଣୁ, ବଂଶ ଦେଖିବା ଦରକାର, କୁଳ ଦେଖିବା ଦରକାର, କୂଳର ଆଚାର, ଆଚରଣ ଓ ଐତିହ୍ୟ ଦେଖିବା ଦରକାର। ଝିଅ-ପୁଅ ଉଭୟଙ୍କର କୂଳଗତ ଓ ବ୍ୟକ୍ତିଗତ ସାମଞ୍ଜସ୍ୟ ଓ ସଙ୍ଗତି ଦେଖି ବିବାହ ଦେବାକୁ ହୁଏ।

ଆ.ପ୍ର. ୮/୩.୬.୧୯୪୬

## ।। ସ୍ୱାମୀଙ୍କୁ ଭଲ ପାଇବା ଅପେକ୍ଷା ସନ୍ତାନ କାମନା ପ୍ରବଳ ହେଲେ କଣ ହୁଏ।।

ବଧୂ ମାନେ ବହନକାରିଣୀ; ଯିଏ ସ୍ୱାମୀଙ୍କୁ ଯେତେଟା ସହି-ବୋହି ସେବାରେ-ଯତ୍ନରେ ପ୍ରାଣପୁଷ୍ଟ ଓ ପ୍ରେରଣାଦୀପ୍ତ କରି ତୋଳେ, ସେ ବଧୂତ୍ୱରେ ସେତେ ଟିକିଏ। ସେ ଯେତେ ପରିମାଣରେ ଏହିପରି କରିବ, ସେ in spirit (ପ୍ରକୃତ ତାତ୍ପର୍ଯ୍ୟରେ) ସେତେ ପରିମାଣରେ ବଧୂ ହେବ। To bear a child means to bear the husband (ଗର୍ଭରେ ସନ୍ତାନକୁ ଧାରଣ କରିବା ମାନେ ସ୍ୱାମୀଙ୍କୁ ଧାରଣ କରିବା)। ସ୍ୱାମୀଙ୍କ ସହିତ ସର୍ବତୋମୁଖୀ ପରିଚିତି ଓ ସଙ୍ଗତି ଲାଭର ଅପେକ୍ଷା ସନ୍ତାନ କାମନାହିଁ ଯଦି ପ୍ରବଳ ହୁଏ, ତା ହେଲେ ସ୍ତ୍ରୀ ସେଠାରେ mainly (ପ୍ରଧାନତଃ) sexually adhered (ଯୌନ ଆବେଗ ନେଇ ଅନୁରକ୍ତ) ହୁଏ। ଅନ୍ୟ କିଛି ହୁଏ ନାହିଁ। ସେ ସ୍ୱାମୀଙ୍କୁ ସର୍ବତୋଭାବରେ ବହନ କରି ପାରେ ନା, ତେଣୁ ସ୍ୱାମୀଙ୍କର ଅନେକ-କିଛି ଭଲ ଗୁଣ ସନ୍ତାନଠାରେ ମୂର୍ତ୍ତ କରି ତୋଳି ପାରେ ନା।

ଆ.ପ୍ର. ୮/୫.୬.୧୯୪୬

## ।। ସନ୍ତାନ କାହା ପାଖରୁ କଣ ପାଏ ।।

ମୋର ଧାରଣା, ସନ୍ତାନ ବାପ ପାଖରୁ ପାଏ instinct (ସହଜାତ-ସଂସ୍କାର) ଏବଂ ମା ପାଖରୁ ପାଏ temper (ପ୍ରକୃତି)। ମାଲମସଲା ବାପାର, ବିନ୍ୟାସର ମାପଜୋଖ ଓ କାରିକୁରୀ ମାଆର।

ଆ.ପ୍ର. ୮/୫.୬.୧୯୪୬

## ।। ବିବାହ ବ୍ୟାପାରରେ କଡ଼ାକଡ଼ି ରହିବା ଦରକାର କାହିଁକି ।।

ବିବାହାଦି ଖୁବ୍ ହିସାବ କରି ନ କଲେ ଗୋଳମାଳ ପ୍ରବେଶ କରେ। ଆଗରୁ ଏ-ବିଷୟରେ ଖୁବ୍ କଡ଼ାକଡ଼ି ଥିଲା। ବାପାଙ୍କ ପାଖରୁ ଶୁଣିଛି, ସେ କାଳରେ କୌଣସି ବିବାହର ଆଗରୁ ପାତ୍ରପକ୍ଷ ଓ କନ୍ୟାପକ୍ଷର ଘଟକମାନଙ୍କୁ ନେଇ ବିଚାର-ସଭା ହେଉଥିଲା। ଉଭୟ-ପକ୍ଷର କୁଳଶୀଳ ଓ ପାତ୍ରକନ୍ୟାର ପ୍ରକୃତିର ସଙ୍ଗତି ଦେଖି ବିବାହ ଠିକ୍ କରା ହେଉଥିଲା। ପୁଣି ଶୁଣିଛି, ଯେଉଁ-ଘଟକ ବିଚାରରେ ଭୂଲ୍ କରୁଥିଲେ, ଧାନ ଦେଇ ତାର କପାଳ କାଟି ଦିଆ ହେଉଥିଲା। ଆ.ପ୍ର. ୮/୧୩.୬.୧୯୪୬

## ।। ଏ କୁତ୍ସିତ ଜଳତରଙ୍ଗ ଅଟକାଇବ କିଏ ।।

ଶାସ୍ତ୍ର କହେ—ବର୍ଣ୍ଣାଶ୍ରମ ମାନି ଚାଲ, ବିଧିମତ ସବର୍ଣ୍ଣ ଓ ଅନୁଲୋମ ବିବାହ କର, ପ୍ରତିଲୋମ ବାଦ୍ ଦିଅ। ଏହାଦ୍ୱାରା ଭଲ ମଣିଷର ଜନ୍ମ ହେବ, ଜୀବିକାର ବିପର୍ଯ୍ୟୟ ହେବ ନାହିଁ, ବେକାର ସମସ୍ୟା ରହିବ ନାହିଁ, ଅଯଥା ପ୍ରତିଯୋଗିତା ହେବ ନାହିଁ, ଲୋକଙ୍କର ଦକ୍ଷତା ବଢ଼ିବ, ସାମାଜିକ ସହଯୋଗିତା ବୃଦ୍ଧି ପାଇବ। କିନ୍ତୁ ତାହା କଣ ଆମେ ଶୁଣୁଛୁ ? ଆମେ ଓଲଟା ଚାଲୁଛୁ। ପ୍ରତିଲୋମ ଚଳାଉଛୁ। ଶାସ୍ତ୍ରରେ ଅଛି 'ଯତ୍ରତ୍ୱେତେ ପରିଧ୍ୱଂସା ଜାୟନ୍ତେ ବର୍ଣ୍ଣଦୂଷକାଃ, ରାଷ୍ଟ୍ରକୈ ସହ ତଦ୍ରାଷ୍ଟ୍ରଂ କ୍ଷିପ୍ରମେବ ବିନଶ୍ୟତି।' ଗୋଟିଏ କଥା ଶୁଣିଥିଲି, 'ଏ ଯୌବନ ଜଳତରଙ୍ଗ ଅଟକାଇବ କିଏ ?' ମୁଁ କହେ 'ଏ କୁତ୍ସିତ ଜଳତରଙ୍ଗ ଅଟକାଇବ କିଏ ?' ସତୀତ୍ୱର କଥାରେ ଆଜି ଅନେକେ ହସନ୍ତି, ସେମାନେ କହନ୍ତି, ଜୀବନଟା ଉପଭୋଗ ପାଇଁ, ମହୁମାଛି ପରି ଫୁଲରୁ-ଫୁଲରୁ ମଧୁ ଖାଇ ଘୁରି ବୁଲିବ। ଗୋଟିଏ ଜାଗାରେ ନିଜକୁ ଆବଦ୍ଧ କରିବାକୁ ଯିବ କାହିଁକି ? ଏହି ସବୁ କେତେ ମୁଖରୋଚକ କଥା। ସବୁ ଯେପରି ମରଣର ଫାନ୍ଦ।

ଆ.ପ୍ର. ୮/୧୬.୬.୧୯୪୬

## ।। ସନ୍ତାନ ଅଧିକତର ଉନ୍ନତ ହୋଇ ଚାଲେ କେତେବେଳେ ।। ୧୦୦

ପୁରୁଷ ଯଦି ଉନ୍ନତ ଯୋଗ୍ୟତାସମ୍ପନ୍ନ ହୁଏ, ତାର ବିବାହ ଯଦି ବିଧିମାଫିକ ସୁସଙ୍ଗତ ହୁଏ, ସେମାନଙ୍କ ମଧ୍ୟରେ (ସ୍ୱାମୀ-ସ୍ତ୍ରୀ ମଧ୍ୟରେ) ଯଦି ardent love (ଉଦଗ୍ର ଭଲପାଇବା) ଥାଏ ଏବଂ ସେମାନେ ଉଭୟେ ଯଦି ଜଣଙ୍କୁ ଭଲପାଇ ତାଙ୍କୁ fulfil (ପରିପୂରଣ) କରିବାର active urge (ସକ୍ରିୟ ଆକୂତି) ନେଇ ଚାଲନ୍ତି —ଉତ୍କର୍ଷ ଆହରଣ କରି କରି, – ତେବେ ସନ୍ତାନ କେବଳ ବାପରଟା ପାଏ ନା, ଆହୁରି ଉନ୍ନତ ହୁଏ । ଏହିପରି କରି ବଂଶପରମ୍ପରାରେ from higher to higher (ଉଚ୍ଚତର ଠାରୁ ଉଚ୍ଚତରରେ) ଚାଲେ । Science (ବିଜ୍ଞାନ) ଯଦି ଏ-କଥା ଜାଣି ନଥାଏ, ତେବେ ଏହି ପଥରେ ଚାଲିଲେ ଜାଣିବ । ତାର କାରଣ, ଏହା ଗୋଟିଏ Fact (ବାସ୍ତବ ବିଷୟ) । Environment (ପରିବେଶ)-ର impulse (ସାଡ଼ା) ମନ ଉପରେ ପଡ଼ି ତରଙ୍ଗ ତୋଳେ according to our receptive capacity and instinct (ଆମ୍ଭମାନଙ୍କର ଗ୍ରହଣକ୍ଷମତା ଓ ସହଜାତ-ସଂସ୍କାର ଅନୁଯାୟୀ) । ତେଣୁ ଆମ୍ଭମାନଙ୍କ ଅନ୍ତରେ ଯଦି ଏମିତି କୌଣସି ମାଲମସଲା ନ ଥାଏ, ଯାହାଦ୍ୱାରା ତାହା receive (ଗ୍ରହଣ) କରି adjust (ନିୟନ୍ତ୍ରଣ) କରିପାରୁ, ତେବେ କିଛି ହେବ ନାହିଁ । Environment (ପରିବେଶରୁ) ମଣିଷ ତାହାହିଁ receive (ଗ୍ରହଣ) କରେ, ଯାହା ତା ଭିତରେ ଅଛି । ଜଣେ ହୁଏତ ପରିବେଶ ଭିତରୁ ଜଣେ ଗଞ୍ଜୁଡ଼ିକୁ ଖୋଜି ବାହାର କରି ନେଇ ଗଞ୍ଜା ଖାଇବା ଶିଖିବ । ପଚିଶ ଜଣ ମଣିଷକୁ ସମାନ ପରିବେଶରେ ରଖ, ପ୍ରତ୍ୟେକେ ତାରି ପରି ଗ୍ରହଣ କରି ପଚିଶ ପ୍ରକାର ହୋଇ ଛିଡ଼ା ହେବେ ।

ଆ.ପ୍ର. ୮/୧୮.୭.୧୯୪୬

## ।। କେଉଁଥିରେ ସନ୍ତାନ ଭଲ ହେବହିଁ ।।

ସବୁ କିଛିର ହିଁ ବିଧି ଅଛି । ସବୁଠାରୁ ବଡ଼ ଜିନିଷ ହେଲା ସ୍ୱାମୀ-ସ୍ତ୍ରୀ ମଧ୍ୟରେ ସର୍ବାଙ୍ଗୀନ ଓ ଗଭୀର ସଙ୍ଗତି ଓ ସମ୍ପ୍ରୀତି । ମୁଁ ନିଜେ ଦେଖିଛି, ମୁସଲମାନ କୃଷକ, ଲେଖାପଢ଼ା ଜାଣେ ନାହିଁ, ବେଶ୍ ଉନ୍ନତ ଆକୂତିସମ୍ପନ୍ନ ଓ ସତ୍ । ତାର ଏବଂ ତା ସ୍ତ୍ରୀ ମଧ୍ୟରେ ଏପରି ମେଳ ଯେ ସେଠାରେ ବିତୃଷ୍ଣାର କୌଣସି ସ୍ଥାନ ନାହିଁ । ଫାଙ୍କ ପାଇଲେହିଁ ସେ ବୁଲି-ବୁଲି କୋର୍ଟ ଯାଏ, ଚାରିଦିଗ ଦେଖେ-ଶୁଣେ, ଜଜ୍‌ସାହେବଙ୍କୁ ଦେଖି ତାର ଖୁବ୍ ଶ୍ରଦ୍ଧା

ଓ ସମ୍ଭ୍ରମ ହୁଏ, ଘରକୁ ଆସି ସ୍ତ୍ରୀ ପାଖରେ ଜଜ୍‌ସାହେବଙ୍କର ଗଳ୍ପ କରେ। ସ୍ୱାମୀ-ସ୍ତ୍ରୀ ଉଭୟେହିଁ ସେହିପରି ଜଣେ ସୁନାର ଚାନ୍ଦ ସନ୍ତାନର ସ୍ୱପ୍ନ ଦେଖନ୍ତି। ପରେ ସନ୍ତାନ ହେଲା, କି shining (ଦୀପ୍ତିମାନ) ! ଯେପରି ତାଙ୍କର ଚାହିଦାର picture (ଛବି)। ସେହି ପୁତ୍ର ଦେଖୁ-ଦେଖୁ ବଡ଼ ହୋଇ ଉଠିଲା, ଜୀବନରେ ଖୁବ୍ ଉନ୍ନତି କରିଲା। ବଂଶର ମୁଖ, ବାପାମାର ମୁଖ ଉଜ୍ଜ୍ୱଳ କରି ତୋଳିଲା, ସେମାନଙ୍କୁ କେତେ ସୁଖଶାନ୍ତି ଦେଲା ! ପୁଣି ଦେଖିଛି—ସ୍ୱାମୀ ଉତ୍ସାହସମ୍ପନ୍ନ ମଣିଷ। ସ୍ତ୍ରୀ ଖୁବ୍ କଳିହୁଡ଼ି, ସ୍ୱାମୀଙ୍କୁ ଶ୍ରଦ୍ଧା କରେନା, ଭଲ ଆଖିରେ ଦେଖେନା, ଝଗଡ଼ାଝାଟି କରେ, ମନରେ କଷ୍ଟ ଦିଏ, ଟଙ୍କା ପାଇଁ ଚାପ ଦିଏ – ତାର ଗର୍ଭରୁ ପୁତ୍ର ହେଲା ବାପାର ଠିକ୍ ଓଲଟା। ...ନିଜେ ନିଜେ ପରୀକ୍ଷା କରି ଦେଖିଲେ ହୁଏ। ହୁଏତ ଭଗବାନ ବୁଦ୍ଧଦେବଙ୍କର ଥିଏଟରେ ଦେଖିଲ। ଏହି ପବିତ୍ର ଭାବରେ ଦୁଇଜଣ enchanted (ମୁଗ୍ଧ) ହେଲ। ସେହି ଅବସ୍ଥାର ମିଳନରେ ଗୋଟିଏ ପିଲା ଆସିଲା। ତାର ଛୋଟ ବେଳରୁ ସେ ଦେବତାଙ୍କ ପରି ହାତ ନାଡ଼ିବ। Science (ବିଜ୍ଞାନ) ସ୍ୱୀକାର କରୁ ବା ନ କରୁ — ଏହା ଏକ ଅକାଟ୍ୟ ସତ୍ୟ। ଆ.ପ୍ର. ୮/୧୮.୭.୧୯୪୬

## ।। ଉନ୍ନତିର ଜନ୍ମଦାତା କିଏ ।।

ଉନ୍ନତ ଯିଏ ତାଙ୍କ ପ୍ରତି active admiration and interest (ସକ୍ରିୟ ଶ୍ରଦ୍ଧା ଓ ଆଗ୍ରହ)-ହିଁ ଉନ୍ନତିର ଜନ୍ମଦାତା, ତାହା ନିଜ ବେଳକୁ ଯେପରି, ବଂଶାନୁକ୍ରମିକ ଗୁଣ ସଂକ୍ରମଣର ବେଳକୁ ମଧ୍ୟ ସେହିପରି। ଏହି ଯେ ଅଶିକ୍ଷିତ କୃଷକ, ତାର ଯେ ଜଜ୍‌ସାହେବଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ଭ୍ରମ ହେଲା, ନିଶା ହେଲା, ଲାଗି ରହିବାର ଝୋଙ୍କ ହେଲା, ସମସ୍ତଙ୍କର ତ ଏପରି ହୁଏ ନାହିଁ। ତାର ଯେ ଏପରି ହେଲା ତା ମାନେ ତା ଭିତରେ ଏପରି କିଛି ଥିଲା, ଯାହା ଉତ୍କର୍ଷକୁ ହିଁ କାୟମନୋବାକ୍ୟରେ କାମନା କରେ। ତାର ଯଦି ସ୍ତ୍ରୀ ସହିତ ଏତେପରିମାଣରେ ମେଳ ନ ଥାଆନ୍ତା, ସ୍ତ୍ରୀର ତା ପ୍ରତି ଯଦି ମନୋବୃତ୍ତ୍ୟନୁସାରିଣୀ ଝୋଙ୍କ ନ ଥାଆନ୍ତା, ତା ହେଲେ କିନ୍ତୁ ପୁଅ ଏପରି ହୋଇ ଛିଡ଼ା ହୋଇ ନ ଥାଆନ୍ତା। ଆ.ପ୍ର. ୮/୧୮.୭.୧୯୪୬

## ।। ସ୍ତ୍ରୀ ସ୍ୱାମୀଙ୍କ ଅପେକ୍ଷା ଉଚ୍ଚସ୍ତରର ହେଲେ କଣ ହୁଏ ।।

ବୀଜ-ଅନୁପାତିକ ମାଟି ହେଲେ ବୀଜ ଭଲ ଉଦଗତ ହୁଏ। ଯାହା ଉଦଗତ ହୁଏ ତା ବୀଜ-ମାଟି ନୁହେଁ। ମାଟି ଯଦି ବୀଜର ଉପଯୋଗୀ ନ ହୁଏ, ତେବେ

ବୀଜର ସୁସ୍ଥ ଉଦଗମ ହୁଏ ନା। ବୀଜ ତୁଳନାରେ ମାଟି ପୁଣି ଅତିରିକ୍ତ ଭଲ ହେଲେ ବୀଜ ଜଳି ଯାଏ ବା ତାର ଗୁଣ ଅନେକ ପରିମାଣରେ ବରବାଦ ହୋଇଯାଏ।

ଆ.ପ୍ର. ୮/୧୮.୭.୧୯୪୬

## ।। ସ୍ୱାମୀ-ସ୍ତ୍ରୀର ଭିତରେ ପାରସ୍ପରିକ ନିର୍ଭରଶୀଳତା କେତେବେଳେ ହୁଏ ।।

ପାରସ୍ପରିକ ନିର୍ଭରଶୀଳତା ଜିନିଷଟା ହୁଏ ନାହିଁ, ଯଦି ସ୍ୱାମୀ-ସ୍ତ୍ରୀର ପରିପୂରଣୀ ନ ହୁଏ ଏବଂ ସ୍ତ୍ରୀ ସ୍ୱାମୀର ପରିପୋଷଣୀ ନ ହୁଏ। ସ୍ୱାମୀ ଯେତେ superior caliber-ର (ଉନ୍ନତ ଧରଣର) ଓ penetrating (ତୀକ୍ଷ୍ଣବୁଦ୍ଧି) ହୁଏ, ସ୍ତ୍ରୀକୁ ସେତେ ପରିମାଣରେ exalted (ଉନ୍ନତ) ଓ blooming (ସ୍ଫୋଟନଦୀପ୍ତ) କରି ତୋଳି ପାରେ। ସ୍ୱାମୀଙ୍କୁ ଦେଇ ତାର being (ସତ୍ତା) superior fulfilment (ଉନ୍ନତ ପରିପୂରଣ) ପାଏ ବୋଲି admiration (ଶ୍ରଦ୍ଧା)–ମଧ୍ୟ ବଢ଼ିଯାଏ। ସେ ଅନୁରାଗ ଦୀପ୍ତ ସଶ୍ରଦ୍ଧ ଉନ୍ମାଦନା ନେଇ ସେବାରେ–ଯତ୍ନରେ ସ୍ୱାମୀଙ୍କୁ ଆହୁରି ବଡ଼ କରି ତୋଳିବାକୁ ଚାହେଁ। ସ୍ୱାମୀ ମଧ୍ୟ ଏଥିରେ more vigorous (ଆହୁରି ତେଜୋଦୀପ୍ତ) ହୋଇ ଉଠେ। ତାର ବୈଶିଷ୍ଟ୍ୟ ଆହୁରି ସ୍ଫୁରିତ ହୋଇ ଉଠେ। ଜଣେ ସାଧାରଣ mathematician (ଗାଣିତଜ୍ଞ), ବା writer (ଲେଖକ), ବା singer (ଗାୟକ) ବା ଆଉ କିଛି ହୁଏତ କେତେ excel (ଉତ୍କର୍ଷ ଲାଭ) କରି ଯାଏ। Nurture (ପୋଷଣ) ନ ପାଇଲେ ମଣିଷର capacity (କ୍ଷମତା) atrophied (କ୍ଷୟପ୍ରାପ୍ତ) ହୋଇ ଯିବାକୁ ଲାଗେ। ସଂସାରିକ ଜୀବନରେ ସ୍ତ୍ରୀର ଦରଦୀ ଶ୍ରଦ୍ଧା ଓ ଉତ୍ସାହ-ଉଦ୍ଦୀପନା ପୁରୁଷର ଜୀବନ-ସମ୍ବେଗ ଓ କର୍ମଶକ୍ତିକୁ ଅନେକ ପରିମାଣରେ ଜ୍ୱଳନ୍ତ କରି ତୋଳେ। Superior caliber (ଉନ୍ନତ ଧରଣ) ମାନେ superior conception (ଉନ୍ନତ ବୋଧଶକ୍ତି)। ବୋଧର କାର୍ଯ୍ୟକାରୀ ଉନ୍ନତି ହୁଏ ପୁଣି ସକ୍ରିୟ ଶ୍ରେୟନିଷ୍ଠାର ଭିତର–ଦେଇ। ତେଣୁ ପୁରୁଷକୁ ଯଦି fulfilling (ପରିପୂରଣୀ) ହେବାକୁ ହୁଏ, ତା ହେଲେ ଆଚାର୍ଯ୍ୟ ପରାୟଣ ହେବାକୁ ହେବ, ନ ହେଲେ higher tension (ଉନ୍ନତର ପ୍ରତି ଟାଣ) ଓ superior inpulse (ଉନ୍ନତ ପ୍ରେରଣା)-ର ଅଭାବରେ ଅନ୍ତର-ସମ୍ପଦର ପୁଷ୍ଟି ହୁଏ ନାହିଁ।

ଆ.ପ୍ର. ୮/୧୮.୭.୧୯୪୬

## ।। ଉନ୍ନତ ପ୍ରେରଣା ମାନେ କଣ ।। ୧୦୩

ତା ମାନେ, ଯେଉଁ ପ୍ରେରଣା ବା ଉଦ୍ଦୀପନା ମଣିଷର ସତ୍ତାସମ୍ବର୍ଦ୍ଧନାକୁ ଉଚ୍ଛଳତାରେ ପରିପୂରିତ କରି ତୋଳେ। ସତ୍ତାହିଁ ହେଉଛି ପ୍ରକୃତ ବିଚାରକ। ସେହିଁ ଟେର ପାଏ, ସେ ବୃଦ୍ଧିର ପଥରେ ଚାଲୁଛି କି ନାହିଁ। ଶରୀର-ମନ ବିବର୍ଦ୍ଧନର ଦିଗରେ ଚାଲୁଛି କି ନାହିଁ, ସ୍ୱସ୍ତିର ଅଧିକାରୀ ହେଉଛି କି ନାହିଁ। ମଣିଷ fulfilment (ପରିପୂରଣ) ଯଦି ନ ପାଏ, ତେବେ ଭଲପାଇବା ପରିପକ୍ୱ ହୁଏ ନା, tasteless (ବିସ୍ୱାଦ) ହୁଏ। Fulfilment (ପରିପୂରଣର)-ର supreme source (ପରମ ଉତ୍ସ) ହେଉଛନ୍ତି Ideal (ଆଦର୍ଶ)। ତେଣୁ ସେହିମାନଙ୍କର ଦାମ୍ପତ୍ୟ ପ୍ରଣୟ ପରିପକ୍ୱ ହୁଏ ଯେଉଁମାନଙ୍କର ଏହି common third point-ରେ (ଏକହିଁ ତୃତୀୟ ବିନ୍ଦୁରେ) ପ୍ରବୃତ୍ତିଭେଦୀ ଅନୁରାଗ ଥାଏ। ସେତେବେଳେ ଦାମ୍ପତ୍ୟ ପ୍ରେମ ସତ୍ତାପୋଷଣୀ ସମ୍ବେଗ ନେଇ ଚାଲେ, ପ୍ରବୃତ୍ତିର ଖାଲରେ ହାବୁଡୁବୁ ଖାଏ ନାହିଁ। ଆ.ପ୍ର. ୮/୧୮.୭.୧୯୪୬

## ।। ସ୍ୱାମୀ-ସ୍ତ୍ରୀ କିପରି ହେବା ଦରକାର ।।

ସ୍ୱାମୀ-ସ୍ତ୍ରୀ ହେବା ଦରକାର ସମ ଅଥଚ ବିପରୀତ। ସ୍ୱାମୀର ଯେଉଁ ସହଜାତ-ସଂସ୍କାର ଓ ପ୍ରକୃତି ତା ସହିତ ସ୍ତ୍ରୀର ଶ୍ରଦ୍ଧାନନ୍ଦିତ ସଙ୍ଗତି ଓ ମେଳ ରହିବା ଦରକାର। ସେତେବେଳେହିଁ ସ୍ୱାମୀର ପୌରୁଷ ଓ ସ୍ତ୍ରୀର ନାର୍ୟୋତ୍ୱ ସ୍ୱତନ୍ତ୍ରଧର୍ମୀ ହେବା ସତ୍ତ୍ୱେବି ପରସ୍ପର ପରସ୍ପରର ପରିପୂରଣୀ ହୋଇ ଉଠେ। ସ୍ତ୍ରୀ ଯଦି ବୁଦ୍ଧି-ବିବେଚନାରେ ଅନେକ ପରିମାଣରେ କମ୍ ମଧ ହୁଏ, ସେଥିରେ ଅଟକି ଯାଏ ନା, ଯଦି ସ୍ୱାମୀର ପ୍ରତି ପ୍ରଚଣ୍ଡ ଶ୍ରଦ୍ଧାଦୀପ୍ତ ନିଶା ଥାଏ। ଏହାହିଁ ତାର ଭିତରର ମଣିଷକୁ ଟାଣି ଲମ୍ବା କରି ତୋଳେ।

ଆ.ପ୍ର. ୮/୧୮.୭.୧୯୪୬

## ।। ଉପଗତି ସମୟରେ ସ୍ୱାମୀ-ସ୍ତ୍ରୀର କିପରି ଅବସ୍ଥା ରହିବା ଦରକାର ।।

ଉପଗତିର ସମୟରେ ସ୍ୱାମୀ-ସ୍ତ୍ରୀ ଉଭୟଙ୍କର ଚିନ୍ତାଧାରା ଓ ଭାବଭୂମିର ସଙ୍ଗତି ରହିବା ଦରକାର। ଆଉ ଏହି ଚିନ୍ତାଧାରା ଓ ଭାବଭୂମି ଯେତେ ଉନ୍ନତ ଓ ପବିତ୍ର ହୁଏ ସନ୍ତାନ ମଧ ଆସେ ସେତେ ଉଚ୍ଚପ୍ରକୃତିର। ସ୍ୱାମୀ-ସ୍ତ୍ରୀର ଏହି ସମୟର tuned

psychical charge (ମିଳିତ ମାନସିକ ଭାବଭରଣ) ସନ୍ତାନର ପରବର୍ତ୍ତୀ ଜୀବନକୁ ବିଶେଷଭାବରେ ପ୍ରଭାବିତ କରେ। ଏହିଟିରହିଁ vitalised material embodiment (ସଞ୍ଜିବିତ ବାସ୍ତବ ମୂର୍ତ୍ତି) ହେଲା ସନ୍ତାନ। ତାର ଚକ୍ଷୁ, ମୁଖ, ନାକ, କାନ, ଏକ-କଥାରେ ପ୍ରତିଟି ଅଙ୍ଗ-ପ୍ରତ୍ୟଙ୍ଗର ଗଠନ, ଚିନ୍ତା, ଚଳନ, ଝୋଙ୍କ ଇତ୍ୟାଦି ଅନେକ କିଛିହିଁ ତାହାରି ଦ୍ୱାରା moulded (ନିୟନ୍ତ୍ରିତ) ହୁଏ। ତାହା ନେଇ ଜନ୍ମଗ୍ରହଣ କରି ସେ newer achievement (ନବତର-ଅଧିଗମନ)-ର ଦିଗକୁ ଆଗେଇ ଚାଲେ।

ଅନେକ ସମୟରେ ଏପରି ହୁଏ spirit is willing but flesh is weak (ଅନ୍ତର ଆଗ୍ରହଦୀପ୍ତ କିନ୍ତୁ ଶରୀର ଅପଟୁ)। ଏହା ହୁଏ sperm (ଶୁକ୍ରକୀଟ) ଓ ovum (ଡିମ୍ବାଣୁ)-ର charge (ଭାବଭରଣ)-ର incoherence (ଅସଙ୍ଗତି)-ର ଯୋଗୁଁ। Both should be in tune and should be equally charged (ଦୁଇଟିରହିଁ ସମତାଳ-ସମନ୍ୱିତ ଓ ସମଭାବଭରଣଭୃତ ହେବା ଉଚିତ)। Science (ବିଜ୍ଞାନ) କଣ କୁହେ ଜାଣେ ନାହିଁ, ତେବେ ମୋର science (ବିଜ୍ଞାନ) ଏହା।

ଆ.ପ୍ର. ୮/୧୮.୭.୧୯୪୬

## ।। ହିନ୍ଦୁବିବାହ-ବିଧାନ ମାନି ଚାଲିବା ଦରକାର କାହିଁକି ।।

ହିନ୍ଦୁମାନଙ୍କର ଏପରି ବୈଜ୍ଞାନିକ ବ୍ୟବସ୍ଥା, ଯେଉଁଥିରେ ଘରେ-ଘରେ ନାରାୟଣ ଜନ୍ମ ନିଅନ୍ତି, ଜଣେ ମଣିଷ ମଧ୍ୟ inferior (ନିକୃଷ୍ଟ) ହୋଇ ନ ପାରେ। ଯେଉଁମାନେ ଜାତିର ସ୍ଥାୟୀ କଲ୍ୟାଣ ଚାହାଁନ୍ତି, ତାହା ପୃଥିବୀର ଯେ-କୌଣସି ଦେଶ ହେଉନା କାହିଁକି, ସେମାନଙ୍କୁ ଏହି ବିଜ୍ଞାନର ମୂଳସୂତ୍ର ଗୁଡ଼ିକୁ କୌଣସି-ନା-କୌଣସି ଭାବରେ ଗ୍ରହଣ କରିବାକୁ ହେବ। ଆମ୍ଭମାନଙ୍କ ସମାଜରେ ମଧ୍ୟ ଅବାନ୍ତର ଭୂଲ ଯେଉଁଗୁଡ଼ିକ ପ୍ରବେଶ -କରିଛି, ସେଗୁଡ଼ିକୁ ଦୂର କରିବାକୁ ହେବ। ଆ.ପ୍ର. ୮/୧୦.୧୦.୧୯୪୬

## ।। ପୁରୁଷର ଏକାଧିକ ବିବାହ ନିଷିଦ୍ଧ ହେବା ଭଲ କି ନୁହେଁ।।

ପୁରୁଷର ବହୁବିବାହ ଏକେବାରେ ନିଷିଦ୍ଧ କରିଦେବାଟା ହେଲା dangerous (ବିପଜ୍ଜନକ) both for the present and the future (ବର୍ତ୍ତମାନ ଓ ଭବିଷ୍ୟତ ପାଇଁ)। ଅନ୍ୟସବୁ ଦିଗ ବାଦ୍‌ଦେଇ ମଧ୍ୟ ଅନୁଲୋମ ଅସବର୍ଣ୍ଣ ବିବାହ ଯଦି ଚଳାଇ ରଖିବାକୁ ହୁଏ, ତା ହେଲେହିଁ ବହୁ ବିବାହର ପ୍ରଚଳନ ରଖିବା ପ୍ରୟୋଜନ। ପୁରୁଷ

ସବର୍ଣ୍ଣ ବିବାହ ନ କରି ଯଦି ଅନୁଲୋମ ଅସବର୍ଣ୍ଣ ବିବାହ କରେ, ତା ହେଲେ ତାର ବର୍ଣ୍ଣ ଓ ବଂଶୋଚିତ original pure strain (ମୌଳିକ ବିଶୁଦ୍ଧ ପ୍ରବୃତ୍ତି)-ଟା ସନ୍ତତିଧାରାର ମଧ୍ୟରେ maintained (ରକ୍ଷିତ) ହେବ ନାହିଁ। ତାହା ସମାଜର ପକ୍ଷରେ ଗୋଟିଏ loss (କ୍ଷତି) ବିଶେଷ। ସବର୍ଣ୍ଣ ବିବାହର ଭିତର-ଦେଇ ମୂଳଟା ଠିକ୍ ରଖି, ବିଶେଷ କ୍ଷେତ୍ରରେ ଅନୁଲୋମ କ୍ରମରେ ପୁନର୍ବାର ବିବାହ କରିଲେ ଗୋଟିଏ varity (ବୈଚିତ୍ର୍ୟ) ବଢ଼ିବ, କିନ୍ତୁ ବଂଶର ସବର୍ଣ୍ଣ ସନ୍ତାନର ମୂଳ ପ୍ରବୃତ୍ତି (ପ୍ରବଣତା) ନଷ୍ଟ ହେବ ନାହିଁ। ଆଉ, ଜାତିଟିକୁ ଯଦି ଆମେ ଏକଯୋଟ କରି ତୋଳିବାକୁ ଚାହୁଁ, ତାହେଲେ ଅନୁଲୋମ ଅସବର୍ଣ୍ଣ ବିବାହ କିନ୍ତୁ ଅନ୍ୟତମ ଅପରିହାର୍ଯ୍ୟ ପ୍ରୟୋଜନ। ଆମ୍ଭମାନଙ୍କର ଋଷିମାନେ ଯେଉଁ ବ୍ୟବସ୍ଥା କରି ଯାଇଛନ୍ତି, ତାହା କିନ୍ତୁ ବିଜ୍ଞାନକୁ ବାଦ୍ ଦେଇ ନୁହେଁ। ସେମାନେ ଥିଲେ ସର୍ବଦର୍ଶୀ, କୌଣସି ଦିଗହିଁ ସେମାନଙ୍କର ନଜର ଏଡ଼ାଉ ନଥିଲା।

ଆ.ପ୍ର. ୮/୧୧.୧୨.୧୯୪୬

## ।। ନର-ନାରୀର ମିଳନ କେତେବେଳେ ସାର୍ଥକ ହୁଏ ।।

ମଣିଷ ବିବାହ କରୁ, ସଂସାର କରୁ କୌଣସିଟାହିଁ ତାର ଭକ୍ତି ଓ ଜ୍ଞାନର ଅନ୍ତରାୟ ହୁଏ ନା, ଯଦି ସେ ଗୁରୁଗତ ପ୍ରାଣ ହୁଏ, ଗୁରୁଙ୍କ ପାଇଁ ତାର ସଂସାର ହୁଏ। ମୁଁ ବୁଝେ— ନରର ନାରୀ ପ୍ରୟୋଜନ ମୂର୍ତ୍ତି ପାଇବା ପାଇଁ, ନାରୀର ନର ପ୍ରୟୋଜନ ମୂର୍ତ୍ତି ଦେବା ପାଇଁ। ବିହିତ ଦାମ୍ପତ୍ୟ-ଜୀବନଯାପନର ଫଳରେ ପ୍ରତିଟି ଜାତକ ଯଦି ଇଷ୍ଟାନୁଗ ମୂର୍ଚ୍ଛନା ନେଇ ମୂର୍ତ୍ତ ହୋଇ ଉଠେ, ସେହିଠାରେହିଁ ସାର୍ଥକ ହୁଏ ନର-ନାରୀର ମିଳନ। ଏହିପରି କହିଁ ସମାଜ ଚୈତନ୍ୟଦୀପ୍ତ ହୋଇ ସମ୍ବର୍ଦ୍ଧନୀ ଚଳନରେ ଚାଲେ। ଆଧାର ଯଦି ବିଶୁଦ୍ଧ ନ ହୁଏ, ତେବେ ଚେତନ ଚଳନ ପଦେ-ପଦେ ବାଧାଗ୍ରସ୍ତ ହୁଏ, ପ୍ରବୃତ୍ତିର ଜଡ଼ତା ତାକୁ ଘେରି ଧରେ। ଆ.ପ୍ର. ୯/୨୭.୩.୧୯୪୭

## ।।*ସମାଜ ବୃଦ୍ଧିର ଦିଗକୁ ଯାଇପାରେ ନାହିଁ କାହିଁକି ।।

କେଉଁ ଅବସ୍ଥା ମଧ୍ୟରେ ପଡ଼ି ରଘୁନନ୍ଦନ ଅନୁଲୋମ ଅସବର୍ଣ୍ଣ ବିବାହ ନିଷିଦ୍ଧ କରିଥିଲେ, ତାହା ଜାଣେ ନାହିଁ, ତେବେ ହିନ୍ଦୁ ସମାଜର ପକ୍ଷରେ ଏହାର ଫଳ ଯେ ଭଲ ହୋଇଛି, ତାହା ମନେ ହୁଏ ନାହିଁ। ଏହା ଦ୍ୱାରା ସମାଜ ବୃଦ୍ଧିର ଦିଗକୁ ଯାଇ ପାରିନାହିଁ, ବରଂ ଶୀର୍ଣ୍ଣ ହୋଇଛି। ଅନୁଲୋମର ପ୍ରଚଳନ ରହିଲେ ବାହାରର ଅନେକେ

ମଧ୍ୟ ସମାଜର ଅଙ୍ଗୀଭୂତ ହୋଇ ଯାଆନ୍ତେ। ଆଜିପରି ଏପରି ଅବସ୍ଥା ହୋଇ ନଥାନ୍ତା।

ଆ.ପ୍ର. ୯/୧୨.୬.୧୯୪୭

## ।। ବିବାହ ଓ ଜନନ ନେଇ ପିଲାଖେଳ ଖେଳିଲେ କ'ଣ ହେବ ।।

ପ୍ରତିଲୋମ ପ୍ରଚଳନ କରି ମହା ଅନ୍ୟାୟ କରା ହୋଇଛି। ଜନ୍ତୁ-ଜାନୁଆର ବେଳକୁ ଆମେ ପ୍ରତିଲୋମ ପସନ୍ଦ କରୁନା, କାରଣ ଏହାଦ୍ୱାରା ପିତାମାତାର ମୌଳିକ ଗୁଣାବଳୀ ବିରୁଦ୍ଧ ମିଳନ ଯୋଗୁଁ ବିଧ୍ୱସ୍ତ ହେବାରୁ ପିଲା ବିକୃତିପ୍ରାପ୍ତ ହୁଏ। କିନ୍ତୁ ମଣିଷ ବେଳକୁ ଏହି ସତ୍ୟଟାକୁ ଆମେ ସ୍ୱୀକାର କରିବାକୁ ଚାହୁଁ ନା। ମଣିଷର ବଂଶ ଠିକ୍ ରଖିବା ଅପେକ୍ଷା କୁକୁର ବା ଘୋଡ଼ାର ବଂଶର ମାନ ଠିକ୍ ରଖିବା ଉପରେ ଆମେ ଆଜି ବହୁତ ବେଶୀ importance (ଗୁରୁତ୍ୱ) ଦେଉ। ମଣିଷର ବିବାହ ଓ ଜନନ ନେଇ ଯଦି ଏହିପରି ପିଲାଖେଳ ଖେଳା ହୁଏ, ତେବେ ପ୍ରକୃତି ମଧ୍ୟ ମଣିଷକୁ ନେଇ ପିଲାଖେଳ ଖେଳିବ। ମଣିଷ ମଧ୍ୟରେ ଆଉ ମଣିଷ ଖୋଜି ପାଇହେବ ନାହିଁ। ମାନବ ଦାନବରେ ପରିଣତ ହେବ। ପରସ୍ପର ପରସ୍ପରକୁ ବିଭିନ୍ନ ଭାବରେ ନଷ୍ଟ କରିବା ତାଲରେ ରହିବେ। ବର୍ତ୍ତମାନ ଠାରୁ ସାବଧାନ ନ ହେଲେ ଏହି ବିଷ ଜଗତକୁ ଜର୍ଜରିତ କରି ତୋଳିବ। ଆଜି ସତୀତ୍ୱର ମାନ ନୀଚ ହୋଇ ଯାଇଛି। ମା ମାନଙ୍କ ମଧ୍ୟରେ ଭୁଲ ପ୍ରବେଶ କଲେ, ସନ୍ତାନ-ସନ୍ତତିର ବୁଦ୍ଧି-ବିବେଚନା ଓ ଚଳନ-ଚରିତ୍ର କଦର୍ଯ୍ୟ ହେବାକୁ ବାଧ୍ୟ। ଏସବୁ ମୂଳର ଦିଗକୁ ନଜର ନ ଦେଇ ଗଛର ଅଗରେ ଜଳ ଢାଳିଲେ କିଛି ହେବ ନାହିଁ। ଉଦାରତାର ନାମରେ ଉଚ୍ଛୃଙ୍ଖଳତାକୁ ପ୍ରଶ୍ରୟ ଦେଲେ ଫଳ ଯାହା ହେବାର ତାହା ହେବ। ଆ.ପ୍ର. ୯/୨୮.୬.୧୯୪୭

## ।। ମଣିଷର ସହଜାତ-ସଂସ୍କାର କେତେବେଳେ ନଷ୍ଟ ହୋଇଯାଏ ।।

ବିବାହାଦି ଯଦି ଗୋଳମାଳ ନ ହୁଏ, ବଂଶର ଧାରା ଯଦି ଠିକ୍ ଥାଏ, ତେବେ ଗୋଟିଏ ଉନ୍ନତ ବଂଶର ଜଣେ ଲୋକ ଅବସ୍ଥା ବିପର୍ଯ୍ୟୟରେ ବା ଖରାପ ପରିବେଶରେ ପଡ଼ି ଖରାପ ହେଲେ ମଧ୍ୟ ତାର instinct (ସହଜାତ-ସଂସ୍କାର) କିନ୍ତୁ ନଷ୍ଟ ହୋଇ ଯାଏ ନାହିଁ। ତାକୁ ତାଲିମ ଦେଇ ନେଇ ପାରିଲେ ସେ ପୁଣି ନିଜ-ବୈଶିଷ୍ଟ୍ୟରେ ଫୁଟି ଉଠେ। ଯେପରି ହୋଇଥିଲା ରତ୍ନାକର ଦସ୍ୟୁର। ରତ୍ନାକରର ଭିତରେ ଥିଲା ବାଲ୍ମୀକି। ନାରଦଙ୍କ ହାତରେ ପଡ଼ି ରତ୍ନାକରର ଭିତରେ ବାଲ୍ମୀକିର ଆବିର୍ଭାବ ହେଲା। ବଂଶରେ

ପ୍ରତିଲୋମ ପ୍ରବେଶ କଲେ ବା ବିବାହ-ବିଧିର ବ୍ୟତ୍ୟୟ ହେଲେ ବଂଶର ଧାରା ନଷ୍ଟ ହୋଇ ଯାଏ। ଗୋଟିଏ ପ୍ରତିଲୋମଜ କୁକୁର ଦେଖିବାକୁ ଚେହେରାରେ ଖୁବ୍ ଭଲ ହୋଇପାରେ, କିନ୍ତୁ ପ୍ରକୃତରେ ସେ କିଛି ନୁହେଁ। ଲୋଭ ଦେଖାଇଲେ ସହଜରେ ସେ ଆତ୍ମସମର୍ପଣ କରିବ। ଗୋଟିଏ pedigreed dog (ଉତ୍ତମ ବଂଶପରିଚୟ-ସମ୍ପନ୍ନ କୁକୁର) ତାହା କେତେବେଳେ ମଧ୍ୟ କରିବ ନାହିଁ। ଜାତକ-ଜନ୍ମ ନ ମାନି ଉପାୟ ନାହିଁ। ନ୍ୟାଡ଼ା କେତେବେଳେବି ଗୋଲାପଖାସ ହେବ ନାହିଁ, ଗୋଲାପଖାସ କେତେବେଳେବି ନ୍ୟାଡ଼ା ହେବ ନାହିଁ। ଏମାନଙ୍କର ବୀଜ ଅଲଗା, ଚେହେରା ଅଲଗା, ସ୍ୱାଦ ଅଲଗା। ନ୍ୟାଡ଼ା ଖରାପ ହେଲେବି ତା ମଧ୍ୟରେ ନ୍ୟାଡ଼ାର ବୈଶିଷ୍ଟ୍ୟ ରହିବ। ତାକୁ nurture (ପୋଷଣ) ଦେଇ କାଳେ-କାଳେ ଭଲ ନ୍ୟାଡ଼ାରେ ପରିଣତ କରିବା କଠିନ କିଛି ନୁହେଁ। ବର୍ଣ୍ଣ-ବିଧାନ, ବଂଶ-ବିଧାନ ପ୍ରକୃତିର ମଧ୍ୟରେ ସର୍ବତ୍ର ଭରି ରହିଛି।

ଆ.ପ୍ର. ୯/୩୦.୬.୧୯୪୭

## ।। ସମାଜ ଦୁର୍ବଳ ହେବାକୁ ଲାଗିଲା କାହିଁକି ।।

ଅନୁଲୋମ ଅସବର୍ଣ୍ଣ ବିବାହ ଉଠି ଯାଇ ଭଲ ହୋଇ ନାହିଁ। ଶୁଣିଛି ବୃହସ୍ପତି ରଘୁନନ୍ଦନଙ୍କର ଠିକ୍ ପୂର୍ବବର୍ତ୍ତୀ ସ୍ମୃତିକାର। ତାଙ୍କ ମଧ୍ୟରେବି ଅନୁଲୋମର ସମର୍ଥନ ମିଳେ। ମୋର ମନେ ହୁଏ, ରଘୁନନ୍ଦନ ବାହାରର କୌଣସି ଚାପରେ ପଡ଼ି ଅନୁଲୋମ ନିଷିଦ୍ଧ କରିବାକୁ ବାଧ୍ୟ ହୋଇଛନ୍ତି। ଅନୁଲୋମ ସ୍ଥଗିତ ହେଲେ ଯେଉଁମାନଙ୍କର ସ୍ୱାର୍ଥ ସିଦ୍ଧ ହୁଏ, ଏପରି କୌଣସି ପ୍ରବଳ ପକ୍ଷର ଚାପ ବା କୌଶଳ ବା ପ୍ରଲୋଭନ ଏହା ପଛରେ ଥିବା ଅସମ୍ଭବ ନୁହେଁ। ଏହା ପରଠାରୁ ଚକ ଘୁରିଗଲା। ଆମ୍ଭମାନଙ୍କର ଝିଅମାନେ ବାହାରକୁ ଯିବାକୁ ଲାଗିଲେ। କିନ୍ତୁ ବାହାରର ଯେଉଁମାନେ, ସେମାନଙ୍କର ଆମ୍ଭମାନଙ୍କ ସମାଜରେ ସ୍ଥାନ ପାଇବାର ପଥ ରୁଦ୍ଧ ହୋଇ ଗଲା। ଏହିପରି କରି ସମାଜ ଦୁର୍ବଳ ହେବାକୁ ଲାଗିଲା। ରଘୁନନ୍ଦନ ନା କଣ ନାରଦ ପୁରାଣର ଉଦାହରଣ ଦିଅନ୍ତି। କିନ୍ତୁ ଶ୍ରୁତି-ସ୍ମୃତିର ବିରୋଧ ହେଲେ ଶ୍ରୁତି ଯେପରି ଗରୀୟସୀ, ପ୍ରାମାଣ୍ୟ ସ୍ମୃତି ଓ ପୁରାଣ-ଉପପୁରାଣର ବିରୋଧ ହେଲେ ସେହିପରି ପ୍ରାମାଣ୍ୟ ସ୍ମୃତିହିଁ ଅନୁସରଣୀୟ ଏହା ତ ମୁଁ ବୁଝେ। ତେଣୁ ରଘୁନନ୍ଦନଙ୍କର ଦୋହାଇ ଦେଇ ଅନୁଲୋମ ବନ୍ଦ କରି ରଖିବା ସଙ୍ଗତ ନୁହେଁ।

ଆ.ପ୍ର. ୯/୧୩.୭.୧୯୪୭

## ।। ପ୍ରକୃତ କୌଳିନ୍ୟ ଓ ଆଭିଜାତ୍ୟ ଫୁଟାଇ ତୋଳିବା ଭଲ କାହିଁକି ।।

କୌଳିନ୍ୟ ପ୍ରଥାର ବିକୃତି ଯାହା ହୋଇଛି ମୁଁ ତାର ସମର୍ଥନ କରୁ ନାହିଁ। କିନ୍ତୁ ପ୍ରକୃତ କୌଳିନ୍ୟ ଓ ଆଭିଜାତ୍ୟର ମୁଣ୍ଡରେ ଆଘାତ ନ ମାରି, ତାକୁ ଫୁଟାଇ ତୋଳିବାକୁ ଭଲ ବୋଲି ମନେ ହୁଏ। ସଦ୍‌ଗୁଣଗୁଡ଼ିକୁ ଯଦି କୁଳବୈଶିଷ୍ଟ୍ୟର ପର୍ଯ୍ୟାୟକୁ ଉଠାଇ ନ ଆଣା ଯାଏ ତେବେ ପ୍ରତ୍ୟେକ generation-ରେ (ପୁରୁଷରେ) ମୂଳରୁ ଆରମ୍ଭ କରିବାକୁ ହୁଏ। ଆ.ପ୍ର. ୯/୧୩.୭.୧୯୪୭

## ।। ବିବାହ କାହିଁକି ଅତି ଗୁରୁତ୍ୱପୂର୍ଣ୍ଣ ବ୍ୟାପାର ।।

ସନ୍ତାନ gene (ଜିନ)-ର ମାଧ୍ୟମରେ ପିତାମାତା ଉଭୟଙ୍କର traits (ଗୁଣାବଳୀ)-ହିଁ ପାଏ। କିନ୍ତୁ ମାଆର gene (ଜିନ)-ଗୁଡ଼ିକ mainly (ପ୍ରଧାନତଃ) nurturing agent (ପରିପୋଷଣୀ ଉପାଦାନ) ହିସାବରେ କାମ କରେ ବୋଲି ମନେ ହୁଏ। ଉଭୟଙ୍କର gene (ଜିନ) ଯଦି compatible (ସଙ୍ଗତିଶୀଳ) ନ ହୁଏ, ତା ହେଲେ ସନ୍ତାନ କେତେବେଳେ ମଧ୍ୟ ସୁସ୍ଥ ବ୍ୟକ୍ତିତ୍ୱର ଅଧିକାରୀ ହୋଇ ପାରେ ନାହିଁ। ସବର୍ଣ୍ଣ ବିବାହର କ୍ଷେତ୍ରରେ ମଧ୍ୟ ଏହି ବ୍ୟତିକ୍ରମ ହୋଇପାରେ। ତାର ଫଳ କେତେବେଳେ ବି ଭଲ ହୁଏ ନାହିଁ। ତେଣୁ କୁଳ, ଶୀଳ, ପ୍ରକୃତି, ସଂସ୍କାର, ଆଚାର, ପ୍ରଥା ଇତ୍ୟାଦିର ମେଳ କରି ବିବାହ ଦେବାର ରୀତି ଆମ୍ଭମାନଙ୍କ ମଧ୍ୟରେ ଅଛି। ବିବାହ ଯେ କେତେ ବଡ଼ vital (ଗୁରୁତ୍ୱପୂର୍ଣ୍ଣ) ବିଷୟ, ତାହା ଅନେକେ ଖିଆଲ କରନ୍ତି ନାହିଁ। କିନ୍ତୁ ଏହା ଉପରେ ସବୁ କିଛି ଦଣ୍ଡାୟମାନ। କାରଣ ଏହାରି ଉପରେ ଛିଡ଼ା ହୋଇଛି ଜନ୍ମ। ଆଉ, ଜନ୍ମଗତ adjustment (ବିନ୍ୟାସ)-ର ଉପରେ ଛିଡ଼ା ହୋଇଛି ମଣିଷର ଚଳନ, ଚରିତ୍ର, କର୍ମ ଓ ପ୍ରାପ୍ତି। ଟଙ୍କା ଥିଲେ laboratory (ପରୀକ୍ଷାଗାର) କରି ମଣିଷ appoint (ନିଯୋଗ) କରି ମୁଁ ଅନୁଲୋମ ପ୍ରତିଲୋମ ଇତ୍ୟାଦି ସମ୍ବନ୍ଧରେ scientific research (ବୈଜ୍ଞାନିକ ଗବେଷଣା) କରିଥାନ୍ତି। ସେମାନଙ୍କ ଦେଶରେ ମଣିଷର ଜନ୍ମ-ସମ୍ବନ୍ଧରେ ବର୍ତ୍ତମାନ ମଧ୍ୟ ଏହି line-ରେ (ଧାରାରେ) research (ଗବେଷଣା) ହୋଇନାହିଁ। ସେମାନଙ୍କର ଏହି conception (ଧାରଣା) ନାହିଁ।

ଆ.ପ୍ର. ୯/୧୩.୭.୧୯୪୭

## ।। ପ୍ରତିଲୋମେ କୂପୋକାତ, ବିଶ୍ୱାସଘାତକ ବଂଶପାତ – କାହିଁକି ।।

ବଂଶପାତ ମାନେ original pure trait perverted and lost (ମୂଳ ପବିତ୍ର ଗୁଣ ବିକୃତ ଓ ଲୁପ୍ତ) ଆଉ, ଏଥିରେ ଯେଉଁ ପ୍ରକୃତି ହୁଏ, ତା କାରଣରୁ ପରିଣାମରେ ନିପାତ ହୁଏ । ଆ.ପ୍ର. ୯/୧୩.୭.୧୯୪୭

## ।। କେଉଁପ୍ରକାରର ଉପଗତି ବ୍ୟାଭିଚାରରହିଁ ନାମାନ୍ତର ।।୧୦୯

ନିଜର ସ୍ତ୍ରୀର ବେଳରେ ମଧ୍ୟ ସେ ଯଦି solicit (ଆମନ୍ତ୍ରଣ) ନ କରେ ମୁଁ କେତେବେଳେ ମଧ୍ୟ ନିଜ ତରଫରୁ ତା ଠାରେ ଉପଗତ ହେବାକୁ ଯିବି ନାହିଁ । ଏହିପ୍ରକାର ଉପଗତି ବ୍ୟାଭିଚାରରହିଁ ନାମାନ୍ତର । ଏଥିରେ ବଂଶ ଦୁର୍ବଳ ହୁଏ, deteriorate କରେ (ଅଧୋଗାମୀ ହୁଏ) । ଆ.ପ୍ର. ୯/୧୩.୭.୧୯୪୭

## ।। କିପରି ଉଦାରତାର ଠେଲା ସମ୍ଭାଳିବା ମୁସକିଲ ।।

ଉଦାର କଥାର ମାନେ ଆଜି ଓଲଟି ଯାଇଛି । ଯାହାର କୌଣସି ନିଷ୍ଠା ନାହିଁ, ବନ୍ଧନମୁକ୍ତ ଖିଆଲମାଫିକ ଚଳନରେ ଯିଏ ଚାଲେ, ଲୋକେ ଆଜି ତାକୁହିଁ ଉଦାର କହନ୍ତି । କିନ୍ତୁ ମୋର ମନେ ହୁଏ, ଉଦାର ମଧ୍ୟରେ ଉର୍ଦ୍ଧ୍ୱଗମନର ଭାବ ଅଛି । ...ଦିନେ eugenic adjustment (ସୁପ୍ରଜନନର ବିନ୍ୟାସ) ଏପରି ଥିଲା ଯେ ବଙ୍ଗଳାଦେଶରେ କେତେବେଳେ ମଧ୍ୟ super intelligentiaର (ଅତିଉନ୍ନତ ଶିକ୍ଷିତ ଶ୍ରେଣୀର) ଅଭାବ ନ ଥିଲା । କିନ୍ତୁ କହିବାକୁ ଖରାପ ଲାଗେ, ଆଜି ସାରା ଦେଶ ଯେପରି ଗୋଶାଳାରେ ପରିଣତ ହେବାକୁ ଯାଉଛି । ବିବାହାଦି ଯଦି ଯଥେଚ୍ଛ ଭାବରେ ଚାଲେ, ପ୍ରତିଲୋମ ଯଦି ଚାଲୁ ରହେ, ତା ହେଲେ ଦେଶରେ କୌଣସି ପ୍ରକାରେ ମଣିଷ ପରି ମଣିଷ ଖୋଜି ମିଳିବ ନାହିଁ । ସମାଜ କେତେଗୁଡ଼ିଏ ଅପଦାର୍ଥ ଚାହେଁନା, ଚାହେଁ ଭଲ issue (ସନ୍ତାନ) । ତା ମୂଳରେ ଅଛି ବିବାହ । ବର୍ଣ୍ଣ, ବଂଶ, ପ୍ରକୃତି ଇତ୍ୟାଦିର ମେଳ କରି ବିବାହ ଦେବାକୁ ହୁଏ । ଏ-ସବୁ ଆଗରୁ ମାନୁଥିଲେ । କିନ୍ତୁ ଭଲ tradition (ଐତିହ୍ୟ) ଯେଉଁଗୁଡ଼ିକ ଥିଲା ଆମ୍ଭମାନଙ୍କର ଭାଷଣ ଜୋରରେ ସେଗୁଡ଼ିକ ଯିବାକୁ ବସିଛି । ଶ୍ରଦ୍ଧା ଭାଙ୍ଗି ଦେଇଛୁଁ । ସମସ୍ତଙ୍କୁ କ୍ଷିପ୍ତ କରି ତୋଳିଛୁଁ । ଏହି ଉଦାରତାର ଠେଲା ପରେ ସମ୍ଭାଳିବା ମୁସ୍କିଲ ଅଛି । Disintegrationର (ଅସଙ୍ଗତିର) ଚୂଡ଼ାନ୍ତ ହେବ । ଏହି ସ୍ରୋତ ଯଦି ନ ଫେରେ, କେହି କାହାରିକୁ ମାନିବେ ନାହିଁ, କେହି କାହାରି ରହିବେ ନାହିଁ ।

ଆ.ପ୍ର. ୯/୨୩.୭.୧୯୪୭

## ।। ହିନ୍ଦୁମାନଙ୍କ ମଧ୍ୟରେ ସଂହତି ପାଇଁ କଣ କରିବା ଦରକାର ।।

ସଂହତି ପାଇଁ ସବୁଠାରୁ ବେଶୀ ଦରକାର ହେଉଛି ଏକାଦର୍ଶରେ ଦୀକ୍ଷିତ ହେବା। ... ଆଦର୍ଶ ଯେପରି ଦରକାର, ଅନୁଲୋମ ଅସବର୍ଣ୍ଣ ବିବାହ ସେହିପରି ଦରକାର। ଏହାଦ୍ୱାରା ବିଭିନ୍ନ ବର୍ଣ୍ଣର ମଧ୍ୟରେ ଖୁବ୍ ମେଳ ହୁଏ । କେବଳ ତାହା ନୁହେଁ, ଅନୁଲୋମ କ୍ରମରେ ବିବହାଦି ଚାଲୁ ରହିଲେ ସମାଜରେ power of assimilation ମଧ୍ୟ (ଆତ୍ମୀକରଣ କ୍ଷମତା ମଧ୍ୟ) ବଢ଼ି ଯାଏ । ସମାଜ ବିସ୍ତାର ଓ ବ୍ୟାପ୍ତିର ପଥରେ ଚାଲେ।

ଆ.ପ୍ର. ୯/୩.୮.୧୯୪୭

## ।। ସ୍ୱାମୀ-ସ୍ତ୍ରୀର ମଧ୍ୟରେ ପାରସ୍ପାରିକ ସ୍ୱାର୍ଥ କଣ ।।

ସ୍ୱାମୀର ସ୍ୱାର୍ଥ ହେଲା ସ୍ତ୍ରୀର ମଙ୍ଗଳକାମନା କରିବା ଓ ବାସ୍ତବରେ ତାର ମଙ୍ଗଳ କରିବା ଏବଂ ସ୍ତ୍ରୀର ସ୍ୱାର୍ଥ ମଧ୍ୟ ହେଲା ସ୍ୱାମୀର ମଙ୍ଗଳ କାମନା କରିବା ଓ କାର୍ଯ୍ୟତଃ ତା କରିବା। ଏହି ମଙ୍ଗଳ କାମନା କରିବା ଓ ମଙ୍ଗଳ କରିବା ସେତେବେଳେ ହିଁ ସମ୍ଭବ, ଯେତେବେଳେ ଉଭୟେ Supreme Lord-ଙ୍କୁ (ପରମପ୍ରଭୁଙ୍କୁ) satisfy (ସନ୍ତୁଷ୍ଟ) କରିବାକୁ ଚାହାଁନ୍ତି । ନହେଲେ ବିକୃତ ସ୍ୱାର୍ଥପରତା ଠେସି ଧରେ । ପ୍ରିୟସ୍ୱାର୍ଥୀ ଭଲ ପାଇବା ଯେଉଁଠାରେ, ତାହା ସବୁ ସମୟରେ self-contented (ସ୍ୱତଃ-ସନ୍ତୁଷ୍ଟ), ସବୁ ସମୟହିଁ virtuous (ପୂଣ୍ୟ ସନ୍ଦୀପ୍ତ) । ଯିଏ ଭଲପାଏ ସେ ଭାବେ ମୋର ପ୍ରିୟ ଯଦି ଭଲ ରହନ୍ତି ତା ହେଲେ ମୋର ବିଶ୍ୱ ଦୁନିଆ ଭଲ ରହିଲା । ତାର ଭଲ-ରହିବାଟା ପ୍ରିୟଙ୍କୁ ଭଲ ରଖିବା ଉପରେ dependent (ନିର୍ଭରଶୀଳ) । ଆଉ, ଯେଉଁଥିରେ ପ୍ରିୟର ତୋଷଣ, ପୋଷଣ ଓ ସେବାରେ ବ୍ୟାଘାତ ନ ହୁଏ, ସେହି ଆଗ୍ରହରେ ସେ ନିଜକୁ ମଧ୍ୟ ସୁସ୍ଥ, ଦୀପ୍ତ ଓ କର୍ମଠ ରଖେ । ସବୁ କରି ମଧ୍ୟ ସେ ଭାବେ, ମୋର ବୋଧ ହୁଏ କରିବାରେ ତ୍ରୁଟି ରହିଲା, ତାଙ୍କର ବୋଧ ହୁଏ କଷ୍ଟ ହେଲା । ତେଣୁ ସନ୍ତୋଷ ଯେପରି ଥାଏ, ତା ସଙ୍ଗେ-ସଙ୍ଗେ ସନ୍ତ୍ରାସ ମଧ୍ୟ ଥାଏ । ଏହି ଆକୁଳତା ତାକୁ ଦିନକୁ ଦିନ perfection-ର (ପୂର୍ଣ୍ଣତାର) ଦିଗକୁ ନେଇଯାଏ । ତେଣୁ, ପ୍ରକୃତ ଭଲପାଇବା ଯେଉଁଠାରେ, ସେଠାରେ ହୀନ ସ୍ୱାର୍ଥ ପ୍ରତ୍ୟାଶୀ ରହେ ନାହିଁ, ଅନୁଯୋଗ ରହେ ନାହିଁ, ଅଭିଯୋଗ ରହେ ନାହିଁ, ଆତ୍ମପ୍ରଶଂସା ରହେ ନାହିଁ, ବରଂ ଥାଏ ଆତ୍ମ-ସମାଲୋଚନା।

ଆ.ପ୍ର. ୯/୨୩.୮.୧୯୪୭

## ।। ବିବାହର ଉଦ୍ଦେଶ୍ୟ କଣ ? କାମ ପ୍ରବୃତ୍ତିର ଚରିତାର୍ଥତା ନା ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା ।।

ଯେଉଁ ପ୍ରବୃତ୍ତି ବା ପ୍ରୟୋଜନ-ପୂରଣର ପଛରେ ଇଷ୍ଟଙ୍କର ସନ୍ତୋଷ-ବିଧାନର ଲକ୍ଷ୍ୟ ରହେନା, ପରିବେଶର ସହିତ ସଂହତି ରଖି ସଂଶ୍ଳିଷ୍ଟ ପ୍ରତ୍ୟେକର ସତ୍ତାକୁ ପୁଷ୍ଟ କରି ଭବିଷ୍ୟତ କଲ୍ୟାଣକୁ ଆବାହନ କରିବାର ବ୍ୟବସ୍ଥା ରହେନା, ତାହା ସାଧାରଣ ଦୃଷ୍ଟିରେ ଯେତେହିଁ ଭଲ ହେଉ, କିଛି-ନା-କିଛି ଦୋଷଦୃଷ୍ଟି ତାର ମଝାରେ ଲୁଚି କରି ଥାଏ । କିନ୍ତୁ ବିବାହର ମୂଳ ଉଦ୍ଦେଶ୍ୟ ଯେଉଁଠାରେ ଥାଏ ଇଷ୍ଟାନୁଗ ଅନୁଚଳନରେ ନିଜ ନିଜକୁ ସମୃଦ୍ଧ ଓ ସମ୍ବର୍ଦ୍ଧିତ କରି, ସେବାରେ ଓ ସୁପ୍ରଜନନରେ ପରିବାର- ପରିବେଷ୍ଟକୁ ସମୃଦ୍ଧ କରି ତୋଳିବା, ଭଗବାନଙ୍କର ଆଶିର୍ବାଦ ସେଠାରେ ବର୍ଷିତ ହୁଏ, ଏବଂ ସେହିଁ ସେ ଉଭୟଙ୍କୁ ଏକ କରି ଦିଅନ୍ତି । ଆ.ପ୍ର. ୯/୨୩.୮.୧୯୪୭

## ।। ଅନୁଲୋମ ସ୍ତ୍ରୀର ହାତରୁ ଅନ୍ନ ଖାଇବା ଚଳେ କି ନାହିଁ ।।

ଯଦି ଆର୍ଯ୍ୟଦ୍ୱିଜ-ସମାଜଭୁକ୍ତ କନ୍ୟା ହୋଇଥାଏ ଓ ସେ ସଦାଚାରୀ ହୁଏ, ତା ହେଲେ ତା ହାତରୁ ଯାହା ଖାଇବା ଚଳେ ତାହା ଖାଇପାର । ଯେଉଁ–ପରିବାରକୁ ଯିବ, ସେ- ପରିବାରର ଉନ୍ନତ ଆଚାର-ଆଚରଣ ମଧ୍ୟ ତାର ଆୟତ୍ତ କରିବା ଦରକାର । ତେବେ ପିତୃକାର୍ଯ୍ୟରେ, ଦେବକାର୍ଯ୍ୟରେ ତାର ଅଧିକାର ନାହିଁ । ଚାଲିଚଳନ–ସମ୍ବନ୍ଧରେ ଶୈଥିଲ୍ୟର ପ୍ରଶ୍ରୟ ନ ଦେଇ fanatic (ତୀବ୍ରଉତ୍ସାହୀ) ଓ conservative (ରକ୍ଷଣଶୀଳ) ରହିବା ଭଲ । ସଦାଚାରର କଥା ଯେ କହିଲି, ତାହା କିନ୍ତୁ ଛୋଟ କଥା ନୁହେଁ । ତା ଭିତରେ ଅନେକ–କିଛି ପଡ଼େ । ସଦାଚାର ତିନି ପ୍ରକାରର—ଆଧ୍ୟାତ୍ମିକ, ମାନସିକ ଓ ଶାରୀରିକ । ଆ.ପ୍ର. ୯/୧.୯.୧୯୪୭

## ।। ଆଧ୍ୟାତ୍ମିକ ଓ ମାନସିକ ସଦାଚାର କଣ ।।

ଗୀତାରେ ଅଛି, ଏକ ଭକ୍ତିର୍ବିଶିଷ୍ୟତେ । ଏହି ଏକ ଭକ୍ତିପରାୟଣତା ଅର୍ଥାତ୍ ଅକାଟ୍ୟ ଇଷ୍ଟନିଷ୍ଠାହିଁ ଆଧ୍ୟାତ୍ମିକ ସଦାଚାର । ଏହା ଯେପରି କୌଣସି ପ୍ରକାରେ କେତେବେଳେ ମଧ୍ୟ ତୁମକୁ ନ ଛାଡ଼େ । ଏହା ତୁମର ପ୍ରତି ପଦକ୍ଷେପର ଚାଲିବା ସହିତ ଲାଗି ରହିବା ଦରକାର । ଏହିଭାବରେ ଯଦି ତୁମର ସତ୍ତାର ଚଳମାନତାର

ସହିତ ଏହା ଜଡ଼ାଇ ରହିଥାଏ, ତା ହେଲେ ବୁଝା ଯିବ ତୁମେ ଆଧ୍ୟାତ୍ମିକ ସଦାଚାର ଅବଲମ୍ବନ କରି ଚଳୁଛ। ମାନସିକ ସଦାଚାର ହେଲା ମନର କୁଭାବକୁ ignore (ଉପେକ୍ଷା) କରି ବା mould (ନିୟନ୍ତ୍ରଣ) କରି ବଞ୍ଚିବାବଢ଼ିବାର ଦିଗକୁ ଅର୍ଥାତ୍ ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଦିଗରେ ଚାଲିବା। ଆଧ୍ୟାତ୍ମିକ ସଦାଚାରର ଭିତ୍ତିର ଉପରେହିଁ ମାନସିକ ଓ ଶାରୀରିକ ସଦାଚାରର ଭିତ୍ତି ଗଢ଼ି ତୋଳିବାକୁ ହୁଏ। ପୁଣି, ଶାରୀରିକ ସଦାଚାର ନ ରହିଲେ ମାନସିକ ଓ ଆଧ୍ୟାତ୍ମିକ ସଦାଚାର ପକ୍କା ହୁଏ ନାହିଁ। ତେଣୁ ଆଚାର-ନିୟମ, ଖାଇବା-ପିଇବା ଇତ୍ୟାଦି ସମ୍ବନ୍ଧରେ ଖୁବ୍ ସାବଧାନ ରହିବାକୁ ହୁଏ। ଯାହା-ତାହା ଖାଇବା, ଯାହା–ତାହା ହାତରୁ ଖାଇବା—ଏସବୁ ଭଲ ନୁହେଁ। ଏହା ଦ୍ୱାରା ଶରୀର-ମନ ଓହ୍ଲାଇ ଯାଏ। ଏସବୁ ବିଷୟରେ ମନୁଯାୟୀ ଯୁକ୍ତି-ବିଚାର-ସମନ୍ୱିତ ଯିଦ୍‌ଖୋର ମନୋବୃତ୍ତି ଭଲ। ଆ.ପ୍ର. ୯/୧.୯.୧୯୪୭

## ।। ପାତ୍ର-ପାତ୍ରୀର ଗୋତ୍ର ଅଲଗା କିନ୍ତୁ ପଦବୀ ଏକ ହେଲେ ବିବାହ ହୋଇପାରେ କି ନା।।

(ଧର, ଦୁଇଜଣଙ୍କର ପଦବୀ ହୁଏତ ଚକ୍ରବର୍ତ୍ତୀ କିନ୍ତୁ) ଚକ୍ରବର୍ତ୍ତୀ କାହାରି ଆଦିମ ପଦବୀ ନୁହେଁ। ଏ ଗୁଡ଼ିକ ପରେ ପାଇଥିବା ପଦବୀ। ମୂଳ ପଦବୀ ହୁଏତ ଅଲଗା। ଗୋତ୍ର ଯଦି ଅଲଗା ହୁଏ ତା ହେଲେହିଁ ହେଲା। ଅବଶ୍ୟ କେବଳ ଗୋତ୍ର ଦେଖିଲେହିଁ ହେବ ନାହିଁ। ଅନ୍ୟ ଯାହା-ଯାହା ଦେଖିବାର କଥା ତାହା ଦେଖିବାକୁ ହେବ। ଆ.ପ୍ର. ୯/୧.୯.୧୯୪୭

## ।। କୂଳୀନ ମାନେ କଣ।।

କୂଳୀନ ମାନେ—କୂଳ ଯାହାର ଅଛି—ଯାହାର କୂଳରେ ଅପବିତ୍ରତା ପ୍ରବେଶ କରି ନାହିଁ। ଆ.ପ୍ର. ୯/୫.୯.୧୯୪୭

## ।। ବିବାହ ବିଷୟରେ ସାଧନା ଓ ଚରିତ୍ର ସହିତ ଆଉ କଣ ଦରକାର।।

ବିପ୍ର, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ସମସ୍ତଙ୍କର ଲକ୍ଷ୍ୟ ହେଲା ବ୍ରାହ୍ମଣତ୍ୱ ଲାଭ। ଆଉ, ପ୍ରତ୍ୟେକେ ତାହା ଲାଭ କରି ପାରନ୍ତି। ଶୂଦ୍ର ଯଦି ବ୍ରାହ୍ମଣତ୍ୱ ଲାଭ କରେ, ତା ହେଲେ ସେ ବିପ୍ରର ମଧ୍ୟ ଗୁରୁ ହୋଇ ପାରେ, କିନ୍ତୁ ତାର ଝିଅକୁ ବିବାହ କରି ପାରିବ ନାହିଁ।

ବିବାହ ବିଷୟଟା କେବଳ ସାଧନା ଓ ଚରିତ୍ରର ଭିତ୍ତି ଉପରେ ଛିଡ଼ାହୋଇ ହୋଇପାରେନା। ଏହା ପାଇଁ ତା ସହିତ ଦରକାର biological competency (ଜୀବବିଜ୍ଞାନ ସମ୍ମତ ଯୋଗ୍ୟତା)। ଆ.ପ୍ର. ୯/୧୧.୯.୧୯୪୭

## ।। ସମାଜରେ ଝିଅ ବେଶୀ ହେବା କାହାର ଲକ୍ଷଣ ।।

ସମାଜରେ ଝିଅ ବେଶୀ ହେବା ଜାତିର longevity (ଦୀର୍ଘାୟୁ) denote (ଚିହ୍ନିତା ଜ୍ଞାପନ) କରେ। ସମାଜରେ ସର୍ବସ୍ତରରେ ଅନୁଲୋମ ବିବାହର ପ୍ରଚଳନ ହେଲେ automatically (ଆପେ ଆପେ) ସମାଜର ପରିଧି ବଢ଼ିଯାଏ। ତେବେ ସବର୍ଣ୍ଣ (ବିବାହ) ବାଦ୍ ଦେଇ ଅନୁଲୋମ ବିବାହ କରିବା ଠିକ୍ ନୁହେଁ।

ଆ.ପ୍ର. ୯/୧୨.୯.୧୯୪୭

## ।। ଝିଅମାନଙ୍କର ବହୁବିବାହରେ ଦୋଷ କଣ ।।

ଦୋଷ ଅନେକ ପ୍ରକାରର ଅଛି। ତେବେ ସବୁଠାରୁ ବଡ଼ ଦୋଷ ଏହା ଯେ, ଝିଅମାନଙ୍କର ମନରେ ଯଦି ବିଭିନ୍ନ ପୁରୁଷର ଛାପ ଗଭୀର ଭାବରେ ଅଙ୍କିତ ଥାଏ, ତେବେ ଗୋଟିଏ ମାନସିକ ଦ୍ୱନ୍ଦ ସେମାନଙ୍କୁ ପାଇ ବସେ, ମନର ସ୍ଥିରତା ରହେ ନାହିଁ, କେତେବେଳେ ଗୋଟିଏ ଦିଗକୁ ଝୋଙ୍କେ କେତେବେଳେ ଆଉ–ଏକଦିଗକୁ ଝୋଙ୍କେ। ଜଣଙ୍କ ପ୍ରତି ବିଦ୍ୱେଷପରାୟଣ ହୋଇ ତାକୁ ଛାଡ଼ି ହୁଏତ ଆଉ–ଜଣକୁ ଧରେ। ଯାହାକୁ ଧରେ ତା ପାଖରେ କିଛି ଅସୁବିଧା ହେଲେ ତା ପ୍ରତି ରୁଷ୍ଟ ହୋଇ ଅନ୍ୟଜଣଙ୍କ କଥା ଭାବେ। ଏହି ଭାବରେ ସହନ-ବହନ ଓ ଏକନିଷ୍ଠ ଭଲପାଇବାକୁ ହରାଇ ସ୍ୱାର୍ଥପର, ସୁବିଧାବାଦୀ, ପାଗଳପ୍ରାୟ ଓ ଖିଆଲି ହୋଇ ଉଠେ, ଯାହା କିନା ଅସ୍ତିତ୍ୱ ରକ୍ଷାର ପରିପନ୍ଥୀ। ତା ପେଟରୁ ଯଦି କୌଣସି ସନ୍ତାନ ହୁଏ, ସେ ମଧ୍ୟ ଏହି ଧରଣ ପାଏ। ସେମାନେ ଜୀବନସଂଗ୍ରାମରେ ଟେକି ରହିବାର ଶକ୍ତି ହରାଇ ପକାନ୍ତି। କୌଣସି ଚାପ ପଡ଼ିଲେହିଁ ସେଠାରୁ ସେମାନେ ପଳାଇ ଯିବାକୁ ଚାହାନ୍ତି। ସେମାନେ ଆଦୌ ବିଶ୍ୱସ୍ତ ଓ ନିର୍ଭରଯୋଗ୍ୟ ହୁଅନ୍ତି ନାହିଁ। ସେମାନେ କୌଣସି କାର୍ଯ୍ୟରେ ଲାଗି ରହି ପାରନ୍ତି ନାହିଁ। କାଟା-କାଟା ନାନାଗୁଣ ରହିଲେ ମଧ୍ୟ ଏହି ସବୁ ଗୁଣ ସ୍ଥାୟୀ ଭାବରେ କୌଣସି କଲ୍ୟାଣକର କାମରେ ନିୟୋଜିତ କରିବାର କ୍ଷମତା ସେମାନଙ୍କର ରହେ ନାହିଁ। ଏମାନେ ଗୋଟିଏ ମୂହୁର୍ତ୍ତରେ ଏକ ପ୍ରକାର ମଣିଷ ଆଉ-ଏକ ମୂହୁର୍ତ୍ତରେ

ଅନ୍ୟ ଏକ ପ୍ରକାରର ମଣିଷ। ଏମାନଙ୍କୁ ନେଇ ଚାଲିବା କଷ୍ଟକର। ସାଧାରଣତଃ ଏମାନେ ହୁଅନ୍ତି ଇନ୍ଦ୍ରିୟପରାୟଣ କିନ୍ତୁ ଅନୁରାଗହୀନ। ଅନ୍ୟ ପାଇଁ କୌଣସି କଷ୍ଟ ବା ତ୍ୟାଗ ଏମାନେ ସ୍ୱୀକାର କରି ପାରନ୍ତି ନାହିଁ, କୌଣସି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଏମାନେ ନେଇ ପାରନ୍ତି ନାହିଁ। ଏହିପରି ଜାତକର ସଂଖ୍ୟା କୌଣସି ଜାତିର ମଧ୍ୟରେ ଯଦି ବଢ଼େ, ତେବେ ସେ-ଜାତିର ଧ୍ୱଂସ କେହି ଅଟକାଇ ପାରିବ ନାହିଁ। ଶୁଣିଛି, ବହୁପୁରୁଷଗାମିନୀ ବାରବନିତାର ସନ୍ତାନ ହୁଏ ନାହିଁ। ଏହା indicate (ସୂଚିତ) କରୁଛି ଯେ, ପ୍ରକୃତି ଏହା ଚାହେଁ ନାହିଁ। It is against nature (ଏହା ପ୍ରକୃତିର ବିରୁଦ୍ଧରେ)। କହିଲେ ଖରାପ ଲାଗେ, କିନ୍ତୁ ମୋର ମନେ ହୁଏ ଝିଅମାନଙ୍କର ବହୁବିବାହ ଏକ ଧରଣର prostitution (ବେଶ୍ୟାବୃତ୍ତି)। ଆଉ, ଏହା ମଧ୍ୟ ଠିକ୍ ଯେ, ଏକନିଷ୍ଠ ସତୀର ପେଟ ବ୍ୟତୀତ ଏକନିଷ୍ଠ ସତ୍‌ମଣିଷ ଜନ୍ମ ନିଏ ନାହିଁ।

ଆ.ପ୍ର. ୯/୧୨.୯.୧୯୪୭

## ।। ପ୍ରତିଲୋମ ଜାତକମାନେ ବାହ୍ୟଜାତି କାହିଁକି ।।

ଆର୍ଯ୍ୟସମାଜରେ କାହାରିକୁ ବାଦ୍ ଦିଆଯାଇ ନାହିଁ, ହରିଜନ-ଫରିଜନ ବୋଲି କାହାରିକୁ ଅଲଗା କରି ଦିଆଯାଇ ନାହିଁ। ବୈଶିଷ୍ଟ୍ୟ ଓ ସଂସ୍କାର-ଅନୁଯାୟୀ ଯାହାର ଯେଉଁଠି ସ୍ଥାନ, ଯାହାର ଯେଉଁ କାମ, ତାକୁ ସେଠାରେ ଓ ସେଥିରେ ସୁପ୍ରତିଷ୍ଠିତ କରି ପାରସ୍ପରିକ ପ୍ରୀତି ଓ ସହଯୋଗିତା ନେଇ ଆଦର୍ଶାନୁଗ ଚଳନରେ ଉନ୍ନତିର ଅଧିଗମନହିଁ ଆର୍ଯ୍ୟସମାଜର ଲକ୍ଷ୍ୟ। ସମସ୍ତଙ୍କୁ ନେଇ ସମସ୍ତଙ୍କୁ ମିଶେଇ ଏହି ସମାଜ। କାହାରିକୁ ଅବଜ୍ଞା କରିବାର ଅଧିକାର ନାହିଁ। ଶୁଦ୍ରପର୍ଯ୍ୟନ୍ତ ବ୍ରହ୍ମଜ୍ଞ ହେଲେ ବିପ୍ରର ଗୁରୁପଦରେ ଆସୀନ ହୋଇପାରେ। କିନ୍ତୁ ତାହା ବୋଲି ସେ ବିପ୍ରର କନ୍ୟା ବିବାହ କରି ପାରିବ ନାହିଁ। କାରଣ ତାର ବଂଶାନୁକ୍ରମିକ ଜନନକୋଷ ବିପ୍ରକନ୍ୟାର ବଂଶାନୁକ୍ରମିକ ଜନନ-କୋଷ ତୁଳନାରେ less evolved (ସ୍ୱଳ୍ପ-ବିବର୍ତ୍ତିତ) ଆଉ, ଆର୍ଯ୍ୟ ହିନ୍ଦୁସମାଜରେ ଯେଉଁ ଘୃଣାର ଅସ୍ତିତ୍ୱର କଥା କୁହାଯାଏ, ତାହା ଅଛି ପ୍ରତିଲୋମଜ ଜାତକ ବେଳକୁ। ତାହା ରହିବା ବାଞ୍ଛନୀୟ। ତାହା ଯଦି ନ ଥାଆନ୍ତା, ସମାଜରେ ସଭିଏଁ ଯଦି ସମାମର୍ଯ୍ୟାଦାରେ ଅଧିଷ୍ଠିତ ହୁଅନ୍ତେ, ତା ହେଲେ ପ୍ରତିଲୋମ ବିସ୍ତାର କରନ୍ତା ଏବଂ ତାହାଦ୍ୱାରା ସମାଜର ସର୍ବନାଶ ହୋଇ ଯାଆନ୍ତା। ତେଣୁ ପ୍ରତିଲୋମମାନଙ୍କୁ ବାହ୍ୟଜାତି ହିସାବରେ ଗଣ୍ୟ କରା ହୋଇଛି। ସେମାନେ ସମାଜର କେହି ନୁହଁନ୍ତି।

କାରଣ, ସେମାନଙ୍କର ଜୈବୀ-ସଂସ୍ଥିତି ଓ ତତ୍‌ପ୍ରସୂତ ମନୋବୃତ୍ତି ସ୍ୱତଃହିଁ ସମାଜବିରୋଧୀ, କୃଷ୍ଟିବିରୋଧୀ, ସତ୍ତାବିରୋଧୀ। ବିଶ୍ୱାସଘାତକତା ସେମାନଙ୍କର ସହଜାତ ପ୍ରବୃତ୍ତି। ଏହି ପ୍ରକାର ଯେଉଁମାନେ ସେମାନଙ୍କୁ ଘୃଣ୍ୟ ବୋଲି ଚିହ୍ନିତ କରାଯିବ ନାହିଁ କାହିଁକି କୁହ? ସମାଜ-ସଂସ୍ଥିତିର ପାଇଁ ତାହା ଅନିବାର୍ଯ୍ୟ ପ୍ରୟୋଜନ।

ଆ.ପ୍ର. ୯/୬.୧୧.୧୯୪୭

## ।। ଶାସ୍ତ୍ର-ନିହିତ ବିଜ୍ଞାନର ବାଣୀ ସମସ୍ତଙ୍କ ଆଗରେ ତୋଳି ଧରିବ କାହିଁକି ।।

ଆମ୍ଭମାନଙ୍କର ଋଷି-ମହାପୁରୁଷମାନେ କେତେବେଳେ ମଧ୍ୟ ବୈଷମ୍ୟମୂଳକ ଆଚରଣ କରି ନାହାନ୍ତି ଏବଂ ସେ-କଥା ଭାବି ମଧ୍ୟ ନାହାନ୍ତି। ସେମାନେ ଯାହା କରିଛନ୍ତି ତାହା ହେଲା ବୈଶିଷ୍ଟ୍ୟମୂଳକ ଆଚରଣ। ସେହି ବୈଶିଷ୍ଟ୍ୟସଂରକ୍ଷଣୀ ଆଚରଣକୁ ଯଦି ଆମେ ବୈଷମ୍ୟମୂଳକ ଆଚରଣ ବୋଲି ମନେ କରୁ, ସେ ଭୂଲ ଆମ୍ଭମାନଙ୍କର। ଧରନ୍ତୁ, ସାମ୍ୟର ନାମରେ ଆଜି ଯେପରି ପ୍ରତିଲୋମର ଧୂଆଁ ଉଠିଛି। କିନ୍ତୁ ମୁଁ କହେ, — ପ୍ରତିଲୋମ ବିବାହ ଯେ ଦେବେ, ସେଥିରେ original gene (ମୌଳିକ ଜିନ)-ଗୁଡ଼ିକ intact (ପୁରାପୁରି ଅବିକୃତ) ରହିବ ତ? ତା ଯଦି ନ ରହେ, ତା ହେଲେ ଯାହା ତାହା କରିଲେହିଁ ହେଲା? ଆମ୍ଭମାନଙ୍କର ଶାସ୍ତ୍ର ହେଲା ବିଜ୍ଞାନ। ତାହା ମଙ୍ଗଳର ବିଧିକୁ ଉଲ୍ଲଙ୍ଘନ କରିବାକୁ ଉତ୍ସାହ ଦିଏ ନାହିଁ। ସେଥିରେ ଆମେ ଯଦି ଅସନ୍ତୁଷ୍ଟ ହେଉ, ଶାସ୍ତ୍ର ସେଠାରେ ନାଚାର। ଫଳକଥା ଏପରି ଭାବରେ ବିବାହ ହେବା ଭଲ ନୁହେଁ ଯେଉଁଥିରେ ପୂର୍ବତନ ଶତ-ଶତ ପୁରୁଷର ସାଧନାର ସୁଫଳବାହୀ gene (ଜିନ) ବିପର୍ଯ୍ୟସ୍ତ ହୋଇ ପଡ଼େ। ଏହିପରି ଭାବରେ gene (ଜିନ) ନଷ୍ଟ ହେବାକୁ ଦେବା ମହାପାପ। ଖିଆଲର ଖାତିରରେ ନ୍ୟାଡ଼ା ଆମ୍ବର ନ୍ୟାଡ଼ା-ଆମ୍ବତ୍ୱ ଯଦି ନଷ୍ଟ କରୁ, ସେଥିରେ ପରିଣାମରେ ଆମ୍ଭେମାନେ କଣ ବଞ୍ଚିତ ହେବୁ ନାହିଁ? ଆଜି ହୁଏତ ମୋର ନ୍ୟାଡ଼ାପ୍ରତି ଅରୁଚି ଆସୁଛି। ସେହି ଅରୁଚି ଯୋଗୁଁ ଦୁନିଆରୁ ନ୍ୟାଡ଼ାକୁ ଯଦି ନିଶ୍ଚିହ୍ନ କରି ଦେଉ, ଏବଂ ପରେ ଯଦି ଦିନେ ମୋର ବା ଆପଣଙ୍କର ନ୍ୟାଡ଼ା ଆମ୍ବ ଖାଇବାକୁ ଇଚ୍ଛା ହୁଏ କିମ୍ବା ସେଦିନ ଯଦି ମୋର ନ୍ୟାଡ଼ାର କୌଣସି ଅପରିହାର୍ଯ୍ୟ ପ୍ରୟୋଜନ ହୁଏ, ତା ହେଲେ ମୁଣ୍ଡ କୁଡ଼ିଦେଲେବି ତ ସେଦିନ ଆପଣ— ମୁଁ ନ୍ୟାଡ଼ା ଆମ୍ବ ପାଇବୁ ନାହିଁ। ଅବସ୍ଥାଟା କି ଭୟାଭୟ ଭାବି ଦେଖିଛନ୍ତି? ପ୍ରତିଲୋମ

ବିବାହର ପ୍ରଶ୍ରୟ ଦେବା ମାନେ କୌଣସି ଜୈବୀ ଦାନାକୁ, ଜୈବୀ ବୈଶିଷ୍ଟ୍ୟକୁ ସାରା ଜୀବନ ପାଇଁ ବରବାଦ କରି ଦେବା, immortal necklace of germcell (ଜନନ କୋଷର ଅବିନଶ୍ୱର ମାଳା)-କୁ ନଷ୍ଟ କରିଦେବା। ମୁଁ ସାମାନ୍ୟ ମଣିଷ— ଏତେବଡ଼ ସର୍ବନାଶା ସାହସ ମୋର ହୁଏନାହିଁ। ଭଗବାନ ଦୁନିଆରେ equal (ଏକପ୍ରକାର ସମାନ) ନୁହଁନ୍ତି, equitable (ବୈଶିଷ୍ଟ୍ୟ ଅନୁଯାୟୀ ସମାନ)। ବେଲଗଛ, ପେଡ଼ାଗଛ, ମଣିଷ, ଗରୁ ପ୍ରତ୍ୟେକେ ନିଜ ଅନୁଯାୟୀ ପରମପିତାଙ୍କର mercy (ଦୟା) ପାଆନ୍ତି। କେହି ଯଦି ତାର ବୈଶିଷ୍ଟ୍ୟକୁ ଉଲ୍ଲଙ୍ଘନ କରି ଆଉ – କିଛି ହେବାକୁ ଚାହେଁ, ସେଥିରେ ପରମପିତା ଖୁସି ହୁଅନ୍ତି ନାହିଁ। ଯାହାଦେଇ ଯେଉଁ ପ୍ରୟୋଜନ ସେ, ସିଦ୍ଧ କରିବାକୁ ଚାହାଁନ୍ତି ସେହି ପ୍ରୟୋଜନ ସେ ଯଥାଯଥଭାବରେ ସିଦ୍ଧ କରୁ। ସେଥିରେ ସୃଜନ–ସଂସ୍ଥିତି ସୁଶୃଙ୍ଖଳ ରହେ। ଦୁଇଟି ମଣିଷ ଏକ ପ୍ରକାର ନୁହନ୍ତି, ପ୍ରତ୍ୟେକଙ୍କର ଏହି ଅନନ୍ୟତା ଓ ଅତୁଳନୀୟତାହିଁ ଘୋଷଣା କରେ ଯେ, ପରମପିତା ଏକ ଓ ଅଦ୍ୱିତୀୟ। ତେଣୁ କୌଣସି ଶୁଭ ବୈଶିଷ୍ଟ୍ୟକୁ ନଷ୍ଟ କରିବା ଠିକ୍ ନୁହେଁ। ଏଥିପାଇଁ ବର୍ଣ୍ଣ ମାନିବାକୁ ହୁଏ, ବିବାହାଦି, ଆଚାର-ଆଚରଣ, ଶିକ୍ଷା, ପେଶା ଇତ୍ୟାଦି ବୈଶିଷ୍ଟ୍ୟ-ପୋଷଣୀ ପ୍ରବଣତା ସୁବିନାୟିତ କରିବାକୁ ହୁଏ। ଆମ୍ଭମାନଙ୍କର ଶାସ୍ତ୍ର ଏହି ନିଗୂଢ଼ ବିଜ୍ଞାନର ବାଣୀହିଁ ସୂତ୍ର ଆକାରରେ କହିଛି, ତାହା ଆପଣମାନେ ସମସ୍ତଙ୍କ ଆଗରେ ତୋଳି ଧରନ୍ତୁ। ମଣିଷର ବେକୁବୀ ବିଜ୍ଞତା ଘୁଞ୍ଚି ଯାଉ।

ଆ.ପ୍ର. ୧୦/୮.୧୨.୧୯୪୭

## ।। ସଦ୍‌ବଂଶ କହିଲେ କଣ ବୁଝାଏ ।।

ସଦ୍‌ବଂଶ କହିଲେ ମୁଁ ବୁଝେ ସେହି ବଂଶ ଯେଉଁମାନଙ୍କ ପରିବାରରେ ବିବାହାଦି ବ୍ୟାପାରରେ କୌଣସି ଗୋଳମାଳ ପ୍ରବେଶ କରି ନାହିଁ ଏବଂ ଯେଉଁମାନେ ଧର୍ମ, ଇଷ୍ଟ, କୃଷ୍ଟି ଓ ସଦାଚାର ସମ୍ବନ୍ଧରେ ନିଷ୍ଠାବାନ। ସେମାନେ ଦରିଦ୍ର ହୁଅନ୍ତୁ ବା ଲେଖା-ପଢ଼ା ବେଶୀ ନ ଜାଣନ୍ତୁ, ସେଥିରେ କୌଣସି କ୍ଷତି ନାହିଁ। ଏହି-ସବୁ ପରିବାରରେ ଜନ୍ମଗ୍ରହଣ କରିଲେ ଜନ୍ମଗତ ପ୍ରକୃତି ଓ early training (ଶୈଶବ-ଶିକ୍ଷା) ଦୁଇଟିହିଁ ଭଲ ହେବା ସମ୍ଭାବନା ଥାଏ।

ଆ.ପ୍ର. ୧୦/୭.୧.୧୯୪୮

## ।। ଝିଅ ସତ୍‌ସଙ୍ଗୀ, ପୁଅ ସତ୍‌ସଙ୍ଗୀ ନୁହେଁ—ବିବାହ ହେଲେ ଅସୁବିଧା ହୋଇ ପାରେ କି ନା ।।

ନୀତି-ନିୟମ-ଅନୁଯାୟୀ ଯଦି ବିବାହ ହୁଏ ଏବଂ ଝିଅର habits, behaviour (ଅଭ୍ୟାସ, ବ୍ୟବହାର) ଯଦି educated (ଶିକ୍ଷାପ୍ରାପ୍ତ) ହୋଇଥାଏ, ତେବେ ସେହି (ଝିଅ) ସବୁ ଅସୁବିଧା adjust (ନିୟନ୍ତ୍ରଣ) କରି ସ୍ୱାମୀଙ୍କୁ ଆଦର୍ଶଙ୍କ ପ୍ରତି ଆକୃଷ୍ଟ କରି ପାରେ। ଆ.ପ୍ର. ୧୦/୮.୧.୧୯୪୮

## ।। କୌଣସି ଝିଅ ଯଦି ଦୁଇ ଜଣଙ୍କୁ ସ୍ୱାମୀ ହିସାବରେ ଗ୍ରହଣ କରିବାକୁ ଚାହେଁ ।।

ତାହା ଅନୁମୋଦନ କରାଯାଏ ନାହିଁ। ସେଥିରେ ଖରାପ ହୁଏ। Eugenic (ସୁପ୍ରଜନନର) ଦିଗରୁ ଖରାପ ହୁଏ। ଏକ ସମୟରେ ଦୁଇଜଣ ପୁରୁଷଙ୍କୁ ଭଲପାଇଲେ ଝିଅମାନଙ୍କର ମନ bifurcated (ଦ୍ୱିଧା ବିଭକ୍ତ) ହୋଇ ଯାଏ। ମାଆର ମନ ଏହି ରକମ ହେଲେ ସନ୍ତାନ ମଧ୍ୟରେ ବି ତାହା ସଂକ୍ରାମିତ ହୋଇ ଯାଏ।

ଆ.ପ୍ର. ୧୦/୮.୧.୧୯୪୮

## ।। କେଉଁ ଯୁକ୍ତିରେ ଝିଅମାନେ ଏକାଧିକ ବିବାହ କରି ପାରିବେ ନାହିଁ ।।

ଯୁକ୍ତି ନିହିତ ଅଛି ସେମାନଙ୍କର (ଝିଅମାନଙ୍କର) ଜୈବୀ ଗଠନରେ, ସେମାନଙ୍କର ମୂଳ ପ୍ରକୃତିରେ। ...ମୁଁ ଏହା ବୁଝେ—ପୁରୁଷ ପୁରୁଷ, ନାରୀ ନାରୀ। ସେମାନଙ୍କର inner being (ଅନ୍ତର୍ନିହିତ ସତ୍ତା ବା ମୂଳ ପ୍ରକୃତି)-ର ମଧ୍ୟରେହିଁ ବିହିତ ପାର୍ଥକ୍ୟ ଅଛି। ... ମା ପାଖରୁ ଯାହା ପାଉ ବାବା ପାଖରୁ ତାହା ପାଉନା। It appears monstrous to me to think otherwise (ଅନ୍ୟ ରକମ ଭାବିବା ମୋ ପାଖରେ ବିକଟ ମନେ ହୁଏ)। ... ଆଗରୁ ନାରୀର ବହୁ ବିବାହରେ ଦେଖାଯାଇଛି ଫଳ ଭଲ ହୋଇ ନାହିଁ। ଆମ୍ଭମାନଙ୍କର ଶାସ୍ତ୍ରରେ ଏହାର ସମର୍ଥନ ନାହିଁ, ମୁଁ ମଧ୍ୟ ଭାବି ଦେଖିଛି—ନାରୀର ବହୁ ବିବାହ ସଙ୍ଗତ ନୁହେଁ। ଶ୍ରୀକୃଷ୍ଣଙ୍କ ସମୟରେ ଏ-ଜିନିଷ କିଛି-କିଛି ଥିଲା। ତିବ୍ବତ୍‌ରେ ଥିଲା। ଏହାର ଫଳ ଭଲ ହୁଏ ନାହିଁ। ଆ.ପ୍ର. ୧୦/୮.୧.୧୯୪୮

## ।। ଅନେକ ପୁରୁଷହିଁ ଗୋଟିଏ ବିବାହର ମଧ୍ୟ ଯୋଗ୍ୟ ନୁହଁନ୍ତି ।।

ଠିକ୍‌ଭାବରେ ନ ହେଲେ ବହୁବିବାହ କାହିଁକି, ଗୋଟିଏ ବିବାହ ମଧ୍ୟ ଦୋଷର କାରଣ ହୋଇପାରେ । ... ତେବେ ବହୁବିବାହ ହେବାକୁ ଗଲେ ତାହା ବିଧି ଅନୁଯାୟୀ ହେବା ଉଚିତ । ବହୁବିବାହ ତ ଦୂରର କଥା, ଅନେକ ପୁରୁଷ ଅଛନ୍ତି ଯେଉଁମାନେ ଗୋଟିଏ ବିବାହର ମଧ୍ୟ ଯୋଗ୍ୟ ନୁହଁନ୍ତି ।

Female complex (ନାରୀ-ମୁଖୀନତା) ରହିଲେ ପୁରୁଷର ଝିଅମାନଙ୍କ ପଛରେ ଗୋଡ଼ାଇବାର ବୃଦ୍ଧି ହୁଏ । ଏହା normal (ସ୍ୱାଭାବିକ) ନୁହେଁ । ଏହି ରକମଟା ରହିଲେ ପୁରୁଷ ବିବାହ କରିବାର ଉପଯୁକ୍ତତା ଲାଭ କରେ ନାହିଁ । ନାରୀମୁଖୀ ପୁରୁଷକୁ ଝିଅମାନେ କେତେବେଳେବି ଶ୍ରଦ୍ଧାର ଆଖିରେ ଦେଖି ପାରନ୍ତି ନାହିଁ । ସ୍ୱାମୀର ଚରିତ୍ର ଯଦି ଶ୍ରଦ୍ଧା କରିବା ପରି ନ ହୁଏ, ତାହେଲେ ଝିଅମାନେ ସୁଖୀ ହୋଇ ପାରନ୍ତି ନାହିଁ । ଭାବନ୍ତି—ମୁଁ ଜଣେ ହୀନ ପୁରୁଷର ହାତରେ ପଡ଼ିଛି । ଝିଅମାନେ ସ୍ୱାମୀର ଭଲପାଇବା ଚାହାଁନ୍ତି କିନ୍ତୁ ଯେତେବେଳେ ଦେଖନ୍ତି ସ୍ୱାମୀ ବିସ୍ତାରଶୀଳ ଜୀବନରୁ ନିଜକୁ ବଞ୍ଚିତ କରି ସ୍ତ୍ରୀସର୍ବସ୍ୱ ହେବାକୁ ଚାହୁଁଛି, ସେତେବେଳେ ସେମାନେ ବୋଧ କରନ୍ତି ଯେ ସେମାନଙ୍କର ନିଜର ଜୀବନ ମଧ୍ୟ ଯେପରି ଶୀର୍ଣ୍ଣ ଓ ସଂକୁଚିତ ହୋଇ ଯାଉଛି । ଆ.ପ୍ର. ୧୦/୮.୧.୧୯୪୮

## ।। ବିବାହର ନୀତିବିଧି ସମ୍ବନ୍ଧରେ ସଚେତନ କରିବାକୁ କଣ କରିବାକୁ ହେବ ।।

Marriage (ବିବାହ)-ସମ୍ବନ୍ଧରେ ସବୁ point (ବିଷୟ) annote (ବ୍ୟାଖ୍ୟା) କରି pamphlet (ପୁସ୍ତିକା) ଲେଖିବାକୁ ହୁଏ । ଏପରି ଭାବରେ ଲେଖିବାକୁ ହୁଏ ଯେଉଁଥିରେ not a chain will break, nor a link will stir (କୌଣସି ଶୃଙ୍ଖଳହିଁ ଛିନ୍ନ ନ ହୁଏ, ବନ୍ଧନହିଁ ବିଚଳିତ ନ ହୁଏ) । ଅର୍ଥାତ୍, ତା ଭିତର ଦେଇ ବିବାହର ନୀତିବିଧି ସମ୍ବନ୍ଧରେ ପ୍ରତ୍ୟେକେହିଁ ଯେପରି ଏପରି ଭାବରେ ଅବଗତ ହୋଇ ପାରନ୍ତି, ଯାହା ଫଳରେ କୌଣସି ଗୋଟିଏ ବିବାହରେ ଯେପରି କୌଣସି ଗୋଳମାଳ ନ ରହେ ଏବଂ ବିବାହବନ୍ଧନ ଛିନ୍ନ କରିବାର କଥା କୌଣସି ପ୍ରକାରେ ଯେପରି କୌଣସି ସ୍ୱାମୀ-ସ୍ତ୍ରୀର ମନରେ ନ ଜାଗେ । ପ୍ରତ୍ୟେକଟି ବିବାହ ଯଦି rightly adjusted

(ଠିକ୍‌ଭାବରେ ନିୟନ୍ତ୍ରିତ) ହୁଏ, ତାହେଲେ ସମାଜର ଭବିଷ୍ୟତ ଖୁବ୍ ଉଜ୍ଜ୍ୱଳ ହୋଇ ଉଠିବ। ଆ.ପ୍ର. ୧୦/୮.୧.୧୯୪୮

## ।। ସନ୍ତାନ ଶୁଭ ସମ୍ବେଗ ନେଇ ଜନ୍ମ ନିଏ କେତେବେଳେ ।।

ମଣିଷ କେବଳ ଜନ୍ମ ନେଲେହିଁ ହୁଏ ନାହିଁ, ଭଲ ମଣିଷ ଯେପରି ଜନ୍ମ ନିଏ ତାର culture (ଅନୁଶୀଳନ) କରିବା ଦରକାର। ଜମି-ଅନୁଯାୟୀ ଯେପରି ବୀଜ ଦେବାକୁ ହୁଏ, ସେହିପରି ନାରୀ-ପୁରୁଷର ପ୍ରକୃତିର ସାମଞ୍ଜସ୍ୟ ଦେଖି ବିବାହ ଦେବାକୁ ହୁଏ। ପୁରୁଷ-ନାରୀ ସମସ୍ତଙ୍କର ଉତ୍କର୍ଷଲାଭ ଦିଗରେ ଝୋଙ୍କ ଦରକାର, ବିବାହ ଯଦି ସାମଞ୍ଜସ୍ୟ ହୁଏ ଏବଂ ସ୍ୱାମୀ-ସ୍ତ୍ରୀ ଉଭୟଙ୍କରହିଁ ଯଦି ଉତ୍କର୍ଷ-ଅଭିଧାୟନୀ ତପସ୍ୟା ଥାଏ, ତାହେଲେ ସନ୍ତାନ ଶୁଭସମ୍ବେଗ ନେଇ ଜନ୍ମ ନିଏ। ମୋର ମନେ ହୁଏ, environment (ପରିବେଶ)-ଠାରୁ ମଧ୍ୟ ଜନ୍ମର ଜୋର ବେଶୀ। ମଣିଷ environment (ପରିବେଶ)ରୁ pickup (ଗ୍ରହଣ) କରିଲେ ମଧ୍ୟ, instinct (ସହଜାତ ସଂସ୍କାର) ଅନୁଯାୟୀ pickup (ଗ୍ରହଣ) କରେ। ଆ.ପ୍ର. ୧୦/୮.୧.୧୯୪୮

## ।। ଭାରତୀୟ ଓ ଇଉରୋପୀୟମାନଙ୍କ ମଧ୍ୟରେ ବିବାହ କିଭାବରେ ହେବା ଭଲ ।।

ମୋର ମନେ ହୁଏ, ଏମାନଙ୍କ ମଧ୍ୟରେ ଅଧିକାଂଶହିଁ ମୂଳତଃ ଏକହିଁ species (ଜାତି), ତେଣୁ with proper caution and selection (ଉପଯୁକ୍ତ ସାବଧାନତା ଓ ନିର୍ବାଚନ ସହ) ବିବାହ ହେବାରେ ବାଧା ନାହିଁ। ଇଉରୋପୀୟାନ ମାନେ ଭାରତୀୟ ବିଶେଷ କରି ବିପ୍ର, କ୍ଷତ୍ରିୟ, ବୈଶ୍ୟ-କନ୍ୟା ବିବାହ କରିଲେ ସାଧାରଣତଃ issue (ସନ୍ତାନ) ସେତେ ଭଲ ହୁଏ ନାହିଁ। କିନ୍ତୁ ଭାରତୀୟମାନେ ଇଉରୋପୀୟାନ ଝିଅ ବିବାହ କରିଲେ ଫଳ ସେତେ ଖରାପ ହୁଏ ନାହିଁ। ଯେଉଁଠାରେହିଁ ବିବାହ ହେଉ ବିବାହର ମୂଳ ନୀତିଗୁଡ଼ିକ fulfilled (ପରିପୂରିତ) ହେଉଥିବ, ଏହିପରି ଭାବରେ ବିବାହ ହେବା ଦରକାର। ଯେଉଁମାନଙ୍କ ମଧ୍ୟରେ ବର୍ଣ୍ଣାଶ୍ରମ ପ୍ରତିପାଳିତ ହୁଏ, ସେମାନଙ୍କର biological stratum (ଜୀବବିଜ୍ଞାନସମ୍ମତ ସ୍ତର) ଠିକ୍‌ଥାଏ ଓ stable (ସ୍ଥାୟୀ) ହୁଏ। ସେମାନଙ୍କର ଝିଅ ବର୍ଣ୍ଣାଶ୍ରମ-ବହିର୍ଭୂତ ସମାଜରେ ଦେବାକୁ ଗଲେ ପ୍ରତିଲୋମର ଆଶଙ୍କା ଥାଏ। ଆ.ପ୍ର. ୧୦/୮.୧.୧୯୪୮

## ।। ପୁରୁଷ ଓ ନାରୀର ମୌଳିକ ପାର୍ଥକ୍ୟ କଣ ।।

ଝିଅ ମା ହୁଏ, ପୁରୁଷ ବାପା ହୁଏ—ଏହି fundamental difference (ମୌଳିକ ପାର୍ଥକ୍ୟ)। ଆ.ପ୍ର. ୧୦/୮.୧.୧୯୪୮

## ।। ମଣିଷର ରକ୍ତରେ ଗୋଳମାଳ ପ୍ରବେଶ କଲେ କଣ ହୁଏ ।।

ଆମ୍ଭମାନଙ୍କ ପ୍ରଧାନମାନେ ଅନେକେ ଆଜିକାଲି ପ୍ରତିଲୋମ ବିବାହ support (ସମର୍ଥନ) କରୁଛନ୍ତି। ତାହା କଣ ଠିକ୍ ? ଏହାଦ୍ୱାରା କିନ୍ତୁ ଅବଲମ୍ବନ ଧରି ଛିଡ଼ା ହେବାକୁ ଆଉ କିଛି ରହିବ ନାହିଁ। ମଣିଷର ରକ୍ତରେ ଯଦି ଗୋଳମାଳ ପ୍ରବେଶ କରେ, ତେବେ ଏହା ସହିତ ଗୁଣସମ୍ପଦ ମଧ୍ୟ ନଷ୍ଟ ହେବ। ସେ-ଗୁଣ ଫୁଟାଇ ତୋଳିବାର କୌଣସି ପଥ ରହିବ ନାହିଁ। ପ୍ରତିଲୋମ ସଂଶ୍ରବ ପ୍ରକୃତି-ବିରୁଦ୍ଧ। ତେଣୁ ଏଥିରେ ବିପର୍ଯ୍ୟୟୀ ଫଳ ହୁଏ। ଆ.ପ୍ର. ୧୦/୧୦.୧.୧୯୪୮

## ।। ଅନୁଲୋମରେ ଭଲ ବ୍ୟତୀତ ମନ୍ଦ ହୁଏ ନା ।।

ଅନୁଲୋମ ଠିକ୍ ଭାବରେ ହେଲେ ସେଥିରେ କେତେବେଳେ ମଧ୍ୟ ଭଲ ବ୍ୟତୀତ ମନ୍ଦ ହୁଏ ନାହିଁ। ଅନୁଲୋମରେ ବାହାରର ଅନେକ କିଛି ସମାଜଦେହରେ obsorbed ହୋଇ (ମିଶି) ଯାଏ, ବିଷ୍ଣୁଶରୀରରେ ଗୁପ୍ତ ହୋଇଯାଏ। ଏହି process of assimilation (ଆତ୍ମୀକରଣର ପଦ୍ଧତି) ବ୍ୟତୀତ ସମାଜ ବୃଦ୍ଧିର ପଥରେ ଆଗେଇ ପାରେନା। ଆ.ପ୍ର. ୧୦/୧୦.୧.୧୯୪୮

## ।। ସବର୍ଣ୍ଣ ବିବାହରେ ମଧ୍ୟ ସନ୍ତାନ ଭଲ ହୁଏ ନା କାହିଁକି ।।

ଯଦି ବାହା-ସାହା, ଶିକ୍ଷା-ଦୀକ୍ଷା ଓ ଆଚାର-ଆଚରଣରେ ଗୋଳମାଳ ପ୍ରବେଶ ନ କରେ ତାହେଲେ ବଂଶର ଧାରା ସନ୍ତାନ-ସନ୍ତତିର ଭିତରେ ଆତ୍ମପ୍ରକାଶ କରିବହିଁ। ବିବାହ ଖୁବ୍ କଠିନ ବିଷୟ, ସବର୍ଣ୍ଣ ବିବାହ ହେଲେହିଁ ଯେ ସବୁ ସମୟରେ ସନ୍ତାନ ଭଲ ହେବ, ତାର କୌଣସି ମାନେ ନାହିଁ। ସ୍ୱାମୀ-ସ୍ତ୍ରୀର ପ୍ରକୃତି ମଧ୍ୟରେ ସଙ୍ଗତି ରହିବା ଦରକାର। ସ୍ୱାମୀ ହୁଏ ତ ଖୁବ୍ ଭଲ, କିନ୍ତୁ ସ୍ତ୍ରୀ ହୁଏତ ବିରୁଦ୍ଧ ପ୍ରକୃତିର, ସ୍ୱାମୀଙ୍କୁ ଭଲ କରି ଧରି ଉଠି ପାରେନା, ଏ-ସବୁ ସ୍ଥାନରେ ସନ୍ତାନର ପ୍ରକୃତି ଗୋଳମାଳ

ହେବା ସମ୍ଭବ। କେତେଟା ଅବ୍ୟବସ୍ଥ ଧରଣର ହୁଏ। କେତେବେଳେ ବା ଭଲ, କେତେବେଳେ ବା ଖରାପ। ଗୋଟିଏ ସାମ୍ୟସଙ୍ଗତ ପ୍ରକୃତି ଏକପ୍ରକାରଭାବ ନେଇ ଚାଲେ ନାହିଁ। ଆ.ପ୍ର. ୧୦/୧୨.୧.୧୯୪୮

## ।। ସୁପ୍ରଜନନ ବ୍ୟବସ୍ଥା ଠିକ୍‌ଭାବରେ ରକ୍ଷିତ ନ ହେଲେ କଣ ହୁଏ ।।

ମଣିଷ ଯେତେହିଁ ଉନ୍ନତିଲାଭ କରୁ eugenic adjustment (ସୁପ୍ରଜନନର ବ୍ୟବସ୍ଥା) ଯଦି correctly maintained (ଠିକ୍‌ଭାବରେ ରକ୍ଷିତ) ନ ହୁଏ, ତେବେ ଉନ୍ନତିକୁ ଧରି ରଖି ହୁଏ ନା। ବୌଦ୍ଧଯୁଗରେ (ଭାରତରେ) ଏହି ଦିଗଟା ignored (ଉପେକ୍ଷିତ) ହୋଇଥିଲା ବୋଲି ମନେ ହୁଏ। ଆ.ପ୍ର. ୧୦/୧୭.୧.୧୯୪୮

## ।। ସ୍ତ୍ରୀକୁ ଜାୟା କାହିଁକି କହନ୍ତି ।।

ପ୍ରସବ କରେ ସ୍ତ୍ରୀ। ସ୍ୱାମୀହିଁ ପ୍ରସୂତ ହୁଅନ୍ତି ସ୍ତ୍ରୀ ଠାରେ, ସ୍ତ୍ରୀର ଭାବଅନୁସାରେ, ତେଣୁ ସ୍ତ୍ରୀକୁ କହନ୍ତି ଜାୟା, ସ୍ୱାମୀହିଁ ଯେପରି ସ୍ତ୍ରୀ ଠାରେ ଜନ୍ମଗ୍ରହଣ କରେ। ଏକ ସ୍ୱାମୀ-ସ୍ତ୍ରୀର ବିଭିନ୍ନ ସନ୍ତାନ ମଧ୍ୟରେ ଯେ ପାର୍ଥକ୍ୟ ହୁଏ, ତାହା ସଂଘଟିତ ହୁଏ ସୃଜନ ମୂହୂର୍ତ୍ତରେ ନାରୀର ମନୋଭାବର ପାର୍ଥକ୍ୟ କାରଣରୁ। ଆ.ପ୍ର. ୧୦/୧୮.୧.୧୯୪୮

## ।। ସ୍ତ୍ରୀଠାରେ କେତେବେଳେ ଉପଗତ ହେବା ଉଚିତ ।।

ରତିକାଳରେ ମାର ଭାବଭୂମି, ଚିନ୍ତା ଓ ଚେତନା ଯେପରି ଥାଏ ସେହିପରି ବିଶିଷ୍ଟତାସମ୍ପନ୍ନ ସନ୍ତାନ ଆବିର୍ଭୂତ ହୁଏ। ତେଣୁ ନିୟମ ଅଛି, ଯେତେବେଳେ-ସେତେବେଳେ ଯେ-ସେ ଭାବରେ ସ୍ୱାମୀ ସ୍ତ୍ରୀର ମିଳିତ ହେବା ଠିକ୍ ନୁହେଁ। ସେଥିରେ ସନ୍ତାନ ଭଲ ହୁଏ ନାହିଁ। ସ୍ତ୍ରୀ ଯେତେବେଳେ ସଦ୍‌ଭାବରେ ଭାବିତ ଥାଏ, ତାର ଶରୀର-ମନ ଯେତେବେଳେ ସୁସ୍ଥ ଓ ଦୀପ୍ତ ଥାଏ ଓ ସେ ଯେତେବେଳେ ଆଗ୍ରହର ସହିତ ସ୍ୱାମୀକୁ କାମନା କରେ, ସେତେବେଳେହିଁ ଉପଗତ ହେବା ଉଚିତ। ଅନ୍ୟଥା ନୁହେଁ। ସ୍ୱଭାବତଃ ସ୍ୱାମୀର ମନ ଇଷ୍ଟମୁଖୀ ଉଦ୍ଦାମତା ନେଇ ବିଭୋର ରହିବ। ସ୍ତ୍ରୀ ଯେତେବେଳେ ପବିତ୍ର ଶ୍ରଦ୍ଧା ଓ ପ୍ରୀତି ନେଇ ତାକୁ ଚାହିଁବ, ସେତେବେଳେ ଯଦି ଶୁଭ ସମ୍ବେଗର ଉଚ୍ଛ୍ୱାଳତାର ଭିତର-ଦେଇ ମିଳନ ହୁଏ, ସେତେବେଳେ ଉନ୍ନତ ବୈଶିଷ୍ଟ୍ୟସମ୍ପନ୍ନ ସନ୍ତାନର ଆଗମନହିଁ ଆଶା କରାଯାଏ। ଆ.ପ୍ର. ୧୦/୧୮.୧.୧୯୪୮

## ॥ ସୁସନ୍ତାନ ପାଇଁ ସ୍ୱାମୀ-ସ୍ତ୍ରୀ କିପରି ହେବା ଦରକାର ॥

ସନ୍ତାନର ଜନ୍ମଦାନ ଗୋଟିଏ ପରମ ପବିତ୍ର କାର୍ଯ୍ୟ। ଏଥି ପାଇଁ ସ୍ୱାମୀ-ସ୍ତ୍ରୀ ଉଭୟଙ୍କର ସାଧନା ଓ ସଂଯମ ଦରକାର। ନ ହେଲେ ପଶୁ ମନୋବୃତ୍ତିସମ୍ପନ୍ନ ସନ୍ତାନ ଜନ୍ମନେବ। ସୁପ୍ରଜନନ ହେବାକୁ ଗଲେ ପୁଣି ଦରକାର ସୁବିବାହ। ସଙ୍ଗତିଶୀଳ ସମୀଚୀନ ବିବାହ ନ ହେଲେ ସୁସନ୍ତାନର ଜନ୍ମ ସୁଦୂରପରାହତ। ଆମ୍ଭମାନଙ୍କ ଦେଶରେ ଏହି fundamental (ମୌଳିକ) ଦିଗଟିର ଉପରେ ଋଷିମାନେ ଖୁବ୍ ନଜର ଦେଉଥିଲେ। ତେଣୁ ଆମ୍ଭମାନଙ୍କ ଦେଶରେ ସାଧାରଣତଃ ବିଭିନ୍ନ କ୍ଷେତ୍ରରେ ଉପଯୁକ୍ତ ମଣିଷର ଅଭାବ ହେଉ ନ ଥିଲା। ଆଜି ମଣିଷ ଖୋଜି ମିଳୁ ନାହିଁ। ତାର କାରଣ ବିବାହରେ ଗଣ୍ଡଗୋଳ। ପୁଣି, ବିବାହ ଠିକ୍‌ଭାବରେ ହେଲେ ମଧ୍ୟ ସ୍ୱାମୀ-ସ୍ତ୍ରୀର ତପସ୍ୟା ପରାୟଣତା ଓ ବିହିତ ଚଳନର ଅଭାବରୁ ପ୍ରବୃତ୍ତିପରାୟଣ, ଶ୍ରଦ୍ଧାହୀନ, ରୁଗ୍‌ଣ, ଦୁର୍ବଳ, ସ୍ୱାର୍ଥପର, ସଂକୀର୍ଣ୍ଣମନା, କ୍ଷୀଣମସ୍ତିଷ୍କ, ପ୍ରତିଭାହୀନ ମଣିଷର ଆମଦାନୀ ବେଶୀ କରି ହେଉଛି। ଏହା ଭିତରେ କେତେବେଳେ କେମିତି କିଛି-କିଛି ଭଲ ଲୋକ ଜନ୍ମ ନେଉଛନ୍ତି, ତେଣୁ ସେମାନଙ୍କ ଦୌଲତରେ ସମାଜ ଟେକି ଅଛି। ନହେଲେ ଆଉ ବଞ୍ଚିବାର ବାଟ ନ ଥିଲା।     ଆ.ପ୍ର. ୧୦/୧୮.୧.୧୯୪୮

## ॥ ବାପା, ମା କୁହାଯାଏ କାହିଁକି ॥

ବାପା କହନ୍ତି, ତା ମାନେ ଯିଏ ବପନ କରିଛନ୍ତି। ତୁମର ବାପା କିଏ? ତା ମାନେ ତୁମେ ଯେ ଉତ୍ପନ୍ନ ହୋଇଛ, ଏହି ଉତ୍ପାଦନର ବୀଜ ବପନ-କର୍ତ୍ତା କିଏ? ମା ମାନେ ପରିମାପିତ କରି ଦିଅନ୍ତି ଯିଏ। ସ୍ୱାମୀଙ୍କ ପ୍ରତି ସ୍ତ୍ରୀର ଟାଣ ଓ ଗୁଣଗ୍ରହଣମୁଖରତାର ତାନ ଯେତେବେଳେ ଯେପରି ଭାବରେ ଥାଏ, ସେତେବେଳେ ସେ ସେହିପରି ସେତେ ଟିକକହିଁ ସ୍ୱାମୀଙ୍କୁ ତାର ସନ୍ତତିଙ୍କଠାରେ ମୂର୍ତ୍ତ କରି ତୋଳି ପାରେ। ଏହି ଟାଣ ଓ ଗୁଣଗ୍ରହଣ ମୁଖରତାର ଉନ୍ମୁଖତାହିଁ ହେଲା measuring agents (ପରିମାପନୀ ଶକ୍ତି)।

ଆ.ପ୍ର. ୧୦/୧୮.୧.୧୯୪୮

## ॥ ପୁରୁଷର ଭାଗ୍ୟରେ ଯେତେବେଳେ ଲକ୍ଷ୍ମୀ ସ୍ତ୍ରୀ ନ ମିଳେ ॥

ଝିଅମାନେ ଯଦି ବୁଦ୍ଧିମତୀ ଓ ଶୁଭଦାୟିନୀ ହୁଅନ୍ତି, ତାହେଲେ ଅତି ଭଲ, ଆଉ ବିପରୀତ ହେଲେ ବିପଦଜନକ। ପୁରୁଷ ତାକୁ avoid (ପରିହାର) କରି ନ

ଚାଲିବାକୁ ଚାହେଁ, ପାଖକୁ ଆସିଲେ ବୋଧ କରେ ଯେପରି ଗୋଟାଏ ଭାଲୁ ଆସୁଛି। ପୁରୁଷ ବାହାର ଜଗତରେ ଅନେକ କିଛି ବୁଝିପାରେ, କିନ୍ତୁ ଘରେ ଆସି ସେ ମମତାର ଆଶ୍ରୟ ଚାହେଁ। ସେଠାରେ ଯଦି ସେ କ୍ରମାଗତ ଆଘାତ ପାଏ ତାହେଲେ ତାର ଅନ୍ତରାତ୍ମା ଶୁଖି ଯାଏ। ଉତ୍ସାହ-ଉଦ୍ଦୀପନା ଲିଭିଯାଏ। ଭଲଭାବରେ କାମ-ଦାମ କରି ପାରେ ନା। ସ୍ୱାସ୍ଥ୍ୟ ଓ ଆୟୁରେ ଭଟ୍ଟା ପଡ଼େ। ଯିଏ ବିବାହ କରେ ଅଥଚ ଭାଗ୍ୟରେ ଲକ୍ଷ୍ମୀ ସ୍ତ୍ରୀ ଜୋଟେ ନାହିଁ, ଅଲକ୍ଷ୍ମୀ ତାକୁ ଚାରିଦିଗରୁ ଘେରି ଧରିବାକୁ ଚାହେଁ। କିନ୍ତୁ ଅଟୁଟ ଇଷ୍ଟନିଷ୍ଠ ଯିଏ, ପରିସ୍ଥିତିର ପ୍ରତିକୂଳତା ତାକୁ କାବୁ କମ୍‌ହିଁ କରି ପାରେ।

ଆ.ପ୍ର. ୧୦/୧୮.୧.୧୯୪୮

## ।। ସ୍ୱାମୀ ହୃଦୟହୀନ, ପ୍ରୀତିହୀନ, ବଦ୍‌ମେଜାଜୀ ହେଲେ କଣ କରିବାକୁ ହେବ ।।

ସ୍ୱାମୀ ଯଦି ଏହିଭଳି ହୋଇଥାଏ, ଆଉ ସ୍ତ୍ରୀ ଯଦି ଟିକିଏ ସହ୍ୟ, ଧୈର୍ଯ୍ୟ, ଅଧ୍ୟବସାୟ ଓ ବୁଦ୍ଧିମତ୍ତା ନେଇ ତାଙ୍କୁ କିଛି ଦିନ ସେବା ଦେଇ ଚାଲେ, ଦେଖାଯାଏ ସ୍ୱାମୀ ଅନ୍ୟମାନଙ୍କ ସହିତ ଯେଭଳି ବ୍ୟବହାରହିଁ କରୁ ନା କାହିଁକି, ଆସ୍ତେ-ଆସ୍ତେ ସ୍ତ୍ରୀ ପ୍ରତି ଅତ୍ୟନ୍ତ ସଦୟ ହୋଇ ଉଠେ। ପୁରୁଷର ମୁହଁରେ ସର୍ବଦା ସ୍ତ୍ରୀର ପ୍ରଶଂସା ଶୁଣା ଯାଏ। ସେମାନେ ଅନେକ ଅଳ୍ପରେହିଁ ଖୁସି ହୋଇଯାଆନ୍ତି। କିନ୍ତୁ ଝିଅମାନେ ଯଦି ନିଜ ତରଫରୁ ସ୍ୱାମୀକୁ ଭଲ ନ ପାଆନ୍ତି ଏବଂ ଏହି ଭଲପାଇବା ଓ ଆତ୍ମତ୍ୟାଗର ମଧ୍ୟରେ ଯେଉଁ ସୁଖ, ତାହା ଯଦି ଉପଲବ୍ଧି କରି ନ ପାରନ୍ତି, ତାହେଲେ ପୁରୁଷର ଲକ୍ଷେ କରିବା, ଲକ୍ଷେ ଭଲ ବ୍ୟବହାର ମଧ୍ୟ ସେମାନଙ୍କୁ ଖୁସି କରାଇ ପାରିବ ନାହିଁ। ଯେତେବେଳେ ସେମାନଙ୍କର ବିଶେଷ କୌଣସି ଚାହିଦାର ପୂରଣ ନ ହୁଏ, ସେତେବେଳେ ଅନୁଯୋଗ, ଅଭିଯୋଗ, ବିଳାପ ଆରମ୍ଭ କରି ଦିଅନ୍ତି। ତା ବୋଲି ମୁଁ ଏକଥା କହୁନାହିଁ ଯେ ଦାମ୍ପତ୍ୟ ଜୀବନର ବ୍ୟର୍ଥତାର କ୍ଷେତ୍ରରେ ପୁରୁଷର କୌଣସି ଦୋଷ ନାହିଁ ଏବଂ ପୁରୁଷର ଦୋଷ ରହିଲେ ତାହା ସମର୍ଥନୀୟ। ଆ.ପ୍ର. ୧୦/୧୮.୧.୧୯୪୮

## ।। ସ୍ୱାମୀ-ସ୍ତ୍ରୀର ସମ୍ପର୍କ କେତେବେଳେ ସହଜ ଓ ପ୍ରାଣଦ ହୋଇଉଠେ ।।

ସ୍ୱାମୀ ଛୁଟିବ ତାର ଆଦର୍ଶ ପଛରେ—ସ୍ତ୍ରୀ-ପୁତ୍ର-ପରିବାର ଓ ବୃହତ୍ତର ପରିବେଶକୁ ସାଙ୍ଗରେ ନେଇ, ଯେଉଁଠି ଯାହା କରଣୀୟ ତା ଉପେକ୍ଷା ନ କରି, ଏବଂ

ସ୍ତ୍ରୀ ଛୁଟିବ ସ୍ୱାମୀର ପଛରେ ତାକୁ ତୋଷଣ-ପୋଷଣ ଯୋଗାଇ। ଏହିପରି ଯଦି ଚଳେ, ତେବେ ସ୍ୱାମୀ-ସ୍ତ୍ରୀର ସମ୍ପର୍କ ସହଜ ଓ ପ୍ରାଣଦ ହୋଇ ଉଠେ। କିନ୍ତୁ ସ୍ତ୍ରୀ ଯଦି ଚାହେଁ ଯେ ସ୍ୱାମୀ ତାକୁ ଖୋସାମଦ କରି ଚାଲୁ, ତାର ଖିଆଲ-ଖୁସି ତାମିଲ କରିବାରେ ତାର ସର୍ବଶକ୍ତି ନିୟୋଗ କରୁ, ସେ ଅବସ୍ଥାରେ ସ୍ୱାମୀ-ସ୍ତ୍ରୀ କେହିବି ସୁଖୀ ହୋଇ ପାରନ୍ତି ନାହିଁ। ଆ.ପ୍ର. ୧୦/୧୮.୧.୧୯୪୮

## ।। ଏକ ଭୟାବହ ଦାମ୍ପତ୍ୟ ଚିତ୍ର ।।

ଅନେକ ସଂସାରରେ ଦେଖାଯାଏ ସ୍ୱାମୀ ଯେପରି କେବଳ ଯୋଗାଣଦାର, ସ୍ତ୍ରୀ ଛୁଆପିଲାସହ ନିଜ-ନିଜର ଖିଆଲରେ ଚଳେ, ମା ନିଜେ ମଧ୍ୟ ଖିଆଲି ଏବଂ ପୁଅଝିଅଙ୍କୁ ମଧ୍ୟ ଖିଆଲର ପ୍ରଶ୍ରୟ ଦେଇ ଚାଲେ। ଆଉ, ପ୍ରତ୍ୟେକଙ୍କର ଖିଆଲର ଖୋରାକ-ପୋଷାକ ଯୋଗାଇବାର ଦାୟିତ୍ୱ ହେଲା ପୁରୁଷ ଲୋକଟିର। ଯେଉଁଠାରେ ସେ ଅପାରଗ, ସେଠାରେ ତାର ଲାଞ୍ଛନା-ଗଞ୍ଜଣାର ଅନ୍ତ ରହେ ନାହିଁ। ଏହି ଭାବରେ ଚାଲି ସ୍ତ୍ରୀ ଛଳେ-ବଳେ-କୌଶଳରେ ସ୍ୱାମୀଙ୍କୁ ଜବଦ୍ କରିବାକୁ ଚାହେଁ। ଭାବେ, ତା ଦଳରେ ତା ହାତରେ ତ ତାର ପୁଅ ଝିଅ ଅଛନ୍ତି, ତାର ଭାବନା କଣ? କିନ୍ତୁ ପରେ ସେ ଦେଖିବାକୁ ପାଏ, ଯେଉଁ ସନ୍ତାନ-ସନ୍ତତିମାନଙ୍କୁ ସେ ଏପରି ଭାବରେ ପ୍ରବୃତ୍ତିର ପଥରେ ପରିଚାଳିତ କରିଛି, ସେମାନେ ବଡ଼ ହୋଇ ପ୍ରଥମେ ମାଙ୍କୁ ଅବଜ୍ଞା କରିବାକୁ ଆରମ୍ଭ କରିଛନ୍ତି। ବାପା ତ ଆଗରୁ ବାତିଲ ହୋଇଛି। ବର୍ତ୍ତମାନ ସେମାନେ ବେପାରୁଆ। ସେତେବେଳେ ସ୍ତ୍ରୀ ଦେଖିବାକୁ ପାଏ ସ୍ୱାମୀ ବ୍ୟତୀତ ତାର ଆଶ୍ରୟ କେଉଁଠାରେ ନାହିଁ। ଏତେ ସବୁ କାଣ୍ଡ ପରେ ବି ସ୍ତ୍ରୀ ସ୍ୱାମୀଙ୍କ ଆଡ଼କୁ ଝୁଙ୍କି ପଡ଼ିଲେ, ପ୍ରାୟ ହିଁ ଦେଖାଯାଏ, ସ୍ୱାମୀ କିନ୍ତୁ ତାକୁ ଅନାଦର କରେ ନାହିଁ। ଅନେକଙ୍କୁ ଦେଖିଛି, ଜୀବଦ୍ଦଶାରେ ସ୍ୱାମୀକୁ ଯନ୍ତ୍ରଣା ଦିଅନ୍ତି। ସ୍ୱାମୀ ମରିଗଲେ ସ୍ୱାମୀର ଫଟୋ ପୂଜା କରନ୍ତି। ଏହା ମଧ୍ୟରେ ଭକ୍ତି କେତେ ପରିମାଣରେ ଅଛି, ତାହା ମୁଁ ବୁଝିପାରେ ନାହିଁ। ଭକ୍ତି-ଭଲପାଇବା ରହିଲେ ସେଠାରେ ବାସ୍ତବ ସହନ, ବହନ, ସେବା, ଆତ୍ମତ୍ୟାଗ ଓ ଆତ୍ମନିୟନ୍ତ୍ରଣ ରହିବହିଁ। ଆ.ପ୍ର. ୧୦/୧୮.୧.୧୯୪୮

## ।। ଦାମ୍ପତ୍ୟ-ଜୀବନରେ କଣ ଏକାନ୍ତ ପ୍ରୟୋଜନ ।।

ସ୍ୱାମୀ-ସ୍ତ୍ରୀର ପରସ୍ପରର ସମ୍ପର୍କ ଓ ବ୍ୟବହାର ଯଦି ପ୍ରୀତିପଦ ଓ ଆନନ୍ଦଦାୟକ ନ ହୁଏ, ସେମାନଙ୍କ ମଧ୍ୟରେ ଅଚ୍ଛେଦ୍ୟ ଅନୁରାଗ ଯଦି ନଥାଏ, ତେବେ ବିଷୟବିତ୍ତ,

ଭୋଗର ଉପକରଣ, ନାମ-କାମ ଯେତେହିଁ ଥାଉନା କାହିଁକି, ସେମାନଙ୍କ ଜୀବନ କେତେବେଳେ ବି ସୁଖର ହୁଏ ନାହିଁ। ଦାମ୍ପତ୍ୟ-ଜୀବନରେ toleration (ସହନଶୀଳତା) ଓ sympathy (ସହାନୁଭୂତି) ଏକାନ୍ତ ପ୍ରୟୋଜନ। ସାଧାରଣ ମଣିଷର ମନ-ମେଜାଜ ସବୁ ସମୟରେ ଠିକ୍ ରହେ ନାହିଁ। ସେଥିପାଇଁ ପରସ୍ପର-ପରସ୍ପରର ମେଜାଜ ଟିକିଏ ଧୈର୍ଯ୍ୟ ଓ ସ୍ଥୈର୍ଯ୍ୟ ସହକାରେ ବୁଝି ଚଳିଲେ ଅନେକ ଝିଞ୍ଜଟ ତୁଟି ଯାଏ। ଝିଅମାନଙ୍କ ମୁଣ୍ଡରେ ଏହିଟା ଭଲ ଭାବରେ ପ୍ରବେଶ କରାଇ ଦେବାକୁ ହୁଏ ଯେ, ତାର ସୁଖ ନିର୍ଭର କରେ ସ୍ୱାମୀଙ୍କୁ ଖୁସି କରାଇବାର ଉପରେ। ଝିଅମାନେ ଶ୍ରଦ୍ଧା, ସ୍ତୁତି, ନତି, ଆଦର, ସୋହାଗ, ସେବା, ସହ୍ୟ-ଧୈର୍ଯ୍ୟ, ଅଧ୍ୟବସାୟ ଇତ୍ୟାଦିର ଧାର ନ ଧରି ଅନୁଯୋଗ-ଅଭିଯୋଗ, ମାନ-ଅଭିମାନ, ଦାବି-ଦାଓ୍ୱା, ତର୍କ-ବିତର୍କ, ଝଗଡ଼ା-ବିବାଦ ଇତ୍ୟାଦିର ଭିତର-ଦେଇ ଯଦି ସ୍ୱାମୀଙ୍କୁ ଆୟତ୍ତକୁ ଆଣିବାକୁ ଚାହାଁନ୍ତି ତାହେଲେ ସେମାନେ ଠକିବେ। ଏହି ମାର ପେଟରୁ ଯେଉଁ ପିଲା ହୁଏ, ସେ ମଧ୍ୟ ଅବାଧ୍ୟ ହୁଏ। Noble family-ର (ମହତ ପରିବାରର) male and female-ର (ପୁରୁଷ ଓ ନାରୀର) ଲକ୍ଷଣ ହେଲା ଅପରକୁ ତାର due (ନ୍ୟାଯ୍ୟ ପ୍ରାପ୍ୟ) ଦେଇ ଚାଲିବା। ଏହାଦ୍ୱାରା ସାମଞ୍ଜସ୍ୟ ବଜାୟ ରହେ। ଆ.ପ୍ର. ୧୦/୨୨.୧.୧୯୪୮

## ।। ସଙ୍ଗତିଶୀଳ ବିବାହ ପ୍ରୟୋଜନ କାହିଁକି ।।

ମୋର ଧାରଣା (ବଂଶାନୁକ୍ରମିକ) ମୂଳ-ଧାରାର ପରିବର୍ତ୍ତନ ହୁଏ ନା, ତେବେ ତାର ଉନ୍ନତି ବା ଅବନତି ହୋଇ ପାରେ। ଗୋଟିଏ କଖାରୁ ମଞ୍ଜି ଏକ ଜମିରେ ପୋତିଲେ ଦଶ-କେଜିର କଖାରୁ ହୋଇପାରେ, ପୁଣି ଉପଯୁକ୍ତ ଜମିରେ ନ ପୋତିଲେ ସେଠାକାର କଖାରୁ କୁଙ୍କୁଡ଼ିବି ଯାଇ ପାରେ। ତେଣୁ compatible marriage (ସଙ୍ଗତିଶୀଳ ବିବାହ) ଏକାନ୍ତ ପ୍ରୟୋଜନ। Proper bio-eagered soil-ରେ (ଉପଯୁକ୍ତ ଜୀବନ୍ତ ଆଗ୍ରହଦୀପ୍ତ ମାଟିରେ) Bio-vigoured seed (ଜୀବନ ଦୀପ୍ତ) ମଞ୍ଜି ପଡ଼ିବା ଦରକାର। ପୁରୁଷର ଯଦି ଶ୍ରେୟପୂରଣୀ ନିଶା ଥାଏ, ତାହେଲେ ତାର ଅନ୍ତର୍ନିହିତ ବୀଜସତ୍ତା ଗୋଟିଏ ଜୀବନ୍ତ ଆଗ୍ରହରେ ଉଦ୍ଭାସିତ ହୋଇ ଉଠେ, ପୁଣି ନାରୀର ମଧ୍ୟ ପୂରଣପ୍ରବଣ ସମବିପରୀତ-ଭାରୂପ ସ୍ୱାମୀଙ୍କ ପ୍ରତି ଯଦି ଆଗ୍ରହ-ମଦିର ଟାଣ ଥାଏ, ତା ହେଲେ ତାର ଶରୀର, ମନ ଓ ଡିମ୍ବକୋଷରେ ମଧ୍ୟ ଗୋଟିଏ ଆମନ୍ତ୍ରଣୀ ଗ୍ରହଣୋନ୍ମୁଖ ଆକୁଳତା ଜାଗି ଉଠେ। ଏହି ଅବସ୍ଥାରେ ସେ ସ୍ୱାମୀର ବୀଜସତ୍ତାକୁ ସାଦରେ ଧାରଣ କରି ପୂର୍ଣ୍ଣଭାବରେ ପୋଷଣ

ଦେଇ ପାରେ। ପିତାର ବୀଜସତ୍ତାରେ ଯେଉଁ ସମ୍ଭାବନା ଲୁଚି ରହିଥାଏ ତାହା ଅନେକପରିମାଣରେ ସନ୍ତାନର ମଧ୍ୟରେ ସଂକ୍ରାମିତ ହୋଇ ପାରେ। ଜନ୍ମ ପରେ ତାକୁ ଯଦି ସବୁ ଦିଗରୁ ଠିକ୍‌ଭାବରେ nurture ଓ education (ପୋଷଣ ଓ ଶିକ୍ଷା) ଦିଆ ନ ଯାଏ, ତାହେଲେ କିନ୍ତୁ ହୁଏ ନା। ସନ୍ତାନ ହେଲା ପିତାର ବୀଜସତ୍ତାର ଦେହାୟିତ ରୂପ। ମା ହେଲା ଏହି ବୀଜସତ୍ତାର ଆଶ୍ରୟଦାତ୍ରୀ ଓ ପୋଷଣଦାତ୍ରୀ। ବିବାହ ଯଦି ଠିକ୍‌ଭାବରେ ନ ହୁଏ ଏବଂ ସ୍ତ୍ରୀ ଯଦି ସ୍ୱାମୀର ମନୋବୃତ୍ତ୍ୟନୁସାରିଣୀ ନ ହୁଏ ତାହେଲେ ସେ ସ୍ୱାମୀଙ୍କର finer traits (ସୂକ୍ଷ୍ମତର ଗୁଣ)-ଗୁଡ଼ିକର carrier (ବାହକ)-ସ୍ୱରୂପ gene (ଜିନ୍)-ଗୁଡ଼ିକୁ ଭଲ ଭାବରେ nurture (ପୋଷଣ) ଦେଇ ପାରେ ନା।

ଆ.ପ୍ର. ୧୦/୨୨.୧.୧୯୪୮

## ।। ଗର୍ଭସ୍ଥ ସନ୍ତାନ-ଚର୍ଯ୍ୟାରେ କଣ କରିବ ।।

ପିତା ତ ବୀଜ ବପନ କରି ଖଲାସ। କିନ୍ତୁ ମାକୁ ଦୀର୍ଘଦିନ ସନ୍ତାନକୁ ଗର୍ଭରେ ଧାରଣ କରିବାକୁ ହୁଏ। ସନ୍ତାନ ଗର୍ଭରେ ଥିବା ସମୟରେ ମା କୁ ଅତ୍ୟନ୍ତ ସାବଧାନରେ ରହିବାକୁ ହୁଏ। ତାର ଏହି ସମୟର ଶରୀର-ମନର ଅବସ୍ଥା ଓ ଚିନ୍ତାଧାରା ସନ୍ତାନ ଉପରେ ବିଶେଷ ପ୍ରଭାବ ବିସ୍ତାର କରେ। ତେଣୁ ତାର ସୁସ୍ଥତା, ସନ୍ତୋଷ, ପ୍ରସନ୍ନତା, ପବିତ୍ରତା, ମାନସିକ ଶାନ୍ତି ଓ ସାମଞ୍ଜସ୍ୟ ଇତ୍ୟାଦି ପ୍ରତି ପରିବାରର ସମସ୍ତଙ୍କର ସମବେତଭାବରେ ନଜର ରଖିବା ଉଚିତ। ଏହି ସମୟରେ ତା ମନରେ ଘୃଣା, ବିରକ୍ତି, କ୍ରୋଧ, ଦ୍ୱେଷ ଇତ୍ୟାଦି ଯେତେ କମ୍ ଉଦ୍ରେକ ହୁଏ ସେତେହିଁ ଭଲ। ଭଲ ବସ୍ତ୍ର, ଭୂଷଣ, ରୁଚିକର ଖାଦ୍ୟ ପ୍ରଭୃତି ଦେବାକୁ ହୁଏ, ଯେଉଁଥିରେ ସ୍ୱାଭାବିକ ଇଚ୍ଛାର ଅବଦମନ ନ ହୁଏ। ହୃଦ୍ୟ-ବ୍ୟବହାର କରିବାକୁ ହୁଏ। କୂଳାଚାର ଓ କୂଳସଂସ୍କୃତି ଅନୁଯାୟୀ ଅନୁଷ୍ଠାନାଦି କରିବାକୁ ହୁଏ। ବଂଶର ଗୌରବ ଗାଥା ତା ଆଗରେ ତୋଳି ଧରିବାକୁ ହୁଏ। ଭଲ-ଭଲ ବହି ପଢ଼ିବା ପାଇଁ ଦେବାକୁ ହୁଏ। ମହତ ଭାବର ଉଦ୍ଦୀପନା ହୁଏ ଏପରି କାହାଣୀ ଶୁଣାଇବାକୁ ହୁଏ, ଅଭିନୟ ଦେଖାଇବାକୁ ହୁଏ। ପ୍ରାକୃତିକ ସୌନ୍ଦର୍ଯ୍ୟ ପ୍ରତି ତାର ଦୃଷ୍ଟି ଆକର୍ଷଣ କରାଇବାକୁ ହୁଏ। ଜୀବନଟା ଯେପରି ସେତେବେଳେ ତା ପାଖରେ ଲୋଭନୀୟ ଓ ଉପଭୋଗ୍ୟ ମନେ ହୁଏ। ଏହା ଦ୍ୱାରା ସନ୍ତାନର will to live (ବଞ୍ଚିବାର ଇଚ୍ଛା) vigorous (ପ୍ରବଳ) ହୋଇ ଉଠେ ଏବଂ resistance power (ପ୍ରତିରୋଧ କ୍ଷମତା) ବଢ଼ି ଯାଏ। ଆ.ପ୍ର. ୧୦/୨୨.୧.୧୯୪୮

## ।। ପ୍ରଜନନ-ନୀତିର ଦିଗ-ଦେଇ ଦୈତ୍ୟ-କୂଳରେ ପ୍ରହ୍ଲାଦ କିପରି ହେଲେ ।।

ତାହା ଅନେକ ପ୍ରକାର ହୋଇପାରେ, ଆଗ୍ରହ ଓ ଚେଷ୍ଟାର ଭିତର-ଦେଇ ହରିଣ ଯେପରି ଜିରାଫରେ ପରିଣତ ହୋଇଛି। ଦୈତ୍ୟର ଭିତରେ ଯେ ଦେବଭାବ ଆଦୌ ନ ଥାଏ, ତାହା କିନ୍ତୁ ନୁହେଁ। ହୁଏତ ତାହା ନିସ୍ତେଜ ଥାଏ। କିନ୍ତୁ ତାହା ଜାଗ୍ରତ କରାଯାଏ ଉପଯୁକ୍ତ impulse (ପ୍ରେରଣା) ଦେଇ। ପ୍ରହ୍ଲାଦର ମା ହୁଏତ ଶ୍ରଦ୍ଧା ଓ ଭଲପାଇବା ଭିତର-ଦେଇ ହିରଣ୍ୟକଶିପୁର ସୁପ୍ତ ଦେବଭାବକୁ ଉଦ୍ଦୀପ୍ତ କରି ଦେଇ ପାରିଥିଲେ, ଆଉ ତାହା ଫଳରେ ତା ପେଟରୁ ପ୍ରହ୍ଲାଦର ଜନ୍ମ ସମ୍ଭବ ହୋଇଥିଲା। ମୁଁ ତେଣୁ କହେ — ମଣିଷ ଭିତରେ ଖରାପ ଯେ-ସବୁ ରକମ ଅଛି, ତାହା ନେଇ ଘାଣ୍ଟାଘାଣ୍ଟି, ଖୁଞ୍ଚାଖୁଞ୍ଚି ନ କରି ତାର ଭଲଦିଗଟାକୁହିଁ ବଡ଼ କରି ଦେଖି ତାହାକୁ ବଢ଼ାଇ ତୋଳିବାର ଚେଷ୍ଟା କରିବାହିଁ ଭଲ। ସେଥିରେ ସମସ୍ତଙ୍କର ଲାଭ। ବିଶେଷତଃ, କୌଣସି ସ୍ତ୍ରୀ ଯଦି ଭଲ ସନ୍ତାନର ମାଆ ହେବାକୁ ଚାହେଁ, ଦୋଷ ଦର୍ଶନ ତ୍ୟାଗ କରି ତାକୁ ସ୍ୱାମୀଙ୍କ ପ୍ରତି ସଶ୍ରଦ୍ଧ ହେବାକୁ ହିଁ ହେବ। ଆ.ପ୍ର. ୧୦/୨୨.୧.୧୯୪୮

## ।। ସ୍ୱାମୀ-ସ୍ତ୍ରୀର ଭଲପାଇବା କେତେବେଳେ ଆହୁରି ଗଭୀର ହୁଏ ।।

ଉଭୟେ ଯଦି ଏକହିଁ ଇଷ୍ଟଙ୍କୁ ଭଲପାଆନ୍ତି, ତେବେ ଏହି ଇଷ୍ଟପ୍ରୀତିହିଁ ସେମାନଙ୍କର ପାରସ୍ପରିକ ଭଲ ପାଇବାକୁ ଆହୁରି ଗଭୀର ଓ ଦୃଢ଼ସମ୍ବନ୍ଧ କରି ତୋଳେ। ମଝିରେ ଇଷ୍ଟ ନ ରହିଲେ ଗୋଟିଏ gap (ଫାଙ୍କ) ଥାଏ, କାରଣ mutual becomingର (ପାରସ୍ପରିକ ବିବର୍ଦ୍ଧନର) ପଥରେ କୌଣସି inspiring agent (ପ୍ରେରଣାସନ୍ଦିପୀ ଶକ୍ତି) ରହେ ନାହିଁ। ଆଉ ଯେଉଁ—ଭଲପାଇବା ମଣିଷର becoming (ବିବର୍ଦ୍ଧନ)-କୁ କ୍ରମାଗତ accelerate (ତ୍ୱରାନ୍ୱିତ/ବର୍ଦ୍ଧିତ) କରେ ନା, ତାହା ଦିନକୁ ଦିନ stale (ବାସୀ/ଗତାନୁଗତିକ) ହୋଇ ପଡ଼େ। ଆ.ପ୍ର. ୧୦/୨୬.୧.୧୯୪୮

## ।। ଅନୁଲୋମ ବିବାହ ହିନ୍ଦୁମାନଙ୍କର ହଜମର ନାଡ଼ି ।।

ଅନୁଲୋମ ବିବାହ ହେଲା ସେହି ସନାତନ mechanism (ମରକୋଚ), ଯାହାର ଭିତର-ଦେଇ ଯାହା-କିଛି ସମାଜଦେହରେ assimilate (ଆତ୍ମୀକୃତ) କରି ନିଆଯାଏ, ସବୁହିଁ ଯେପରି ବିଷ୍ଣୁଶରୀରରେ ଗୁପ୍ତ ହେବା ପରି ହୁଏ। ଏହାହିଁ ଥିଲା

ହିନ୍ଦୁମାନଙ୍କର ହଜମର ନାଡ଼ୀ। ଅନୁଲୋମ ଅସବର୍ଣ୍ଣ ବିବାହ ଉଠାଇ ଦେଇ ସେହି ନାଡ଼ିଟିକୁ ଆମେ କାଟି ପକେଇଛୁ। ତେଣୁ ଆଜି ଆମେ ବିସ୍ତାରର ପଥରେ ଚାଲି ପାରୁ ନା, ପରକୁ ନିଜର କରି ପାରୁନା।

ଆ.ପ୍ର. ୧୧/୨୬.୨.୧୯୪୮

## ॥ ସର୍ବ ପ୍ରଥମେ କାହାର ସୁଷ୍ଠୁ ବ୍ୟବସ୍ଥା ଦରକାର ॥

ଏହିପରି ଦୁଃସମୟ ଆଉ ଦେଖା ଯାଏନା। ...ଆଜି ବଙ୍ଗଳାରେ poverty of man (ମଣିଷର ଅଭାବ) ଖୁବ୍ ବେଶୀ ଦେଖା ଦେଇଛି। ତାହାହିଁ ସବୁଠାରୁ ବଡ଼ ଭାବନାର କଥା। ଆଗରୁ ସବୁ ସମୟରେ ପ୍ରତ୍ୟେକ field-ରେ (କ୍ଷେତ୍ରରେ) ଗୋଟିଏ-ଦଳ ପରେ ଆଉ ଗୋଟିଏ ଦଳ ଉପଯୁକ୍ତ ମଣିଷ ready (ପ୍ରସ୍ତୁତ) ହୋଇ ରହୁଥିଲେ। କିନ୍ତୁ ଆଜି ଉପଯୁକ୍ତ ଜଣେ ଚାଲିଗଲା ପରେ ତାର ଅଭାବ ପୂରଣ ପାଇଁ ଆଉଜଣଙ୍କୁ ଖୋଜି ମିଳୁ ନାହିଁ। ...ତେଣୁ ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା, କୃଷି ଇତ୍ୟାଦି ଶିଖାଇବାର ବ୍ୟବସ୍ଥା କରିବା କାର୍ଯ୍ୟରେ ଆହୁରି ପରେ ହାତ ଦେବାକୁ ହେବ। ପ୍ରଥମେ ମଣିଷ ଚାଷର ଗୋଟିଏ ସୁଷ୍ଠୁ ବ୍ୟବସ୍ଥା କରକାର। ବିବାହ-ବିଧାନ ଯଦି ଠିକ୍ ନ କରା ଯାଏ, ଭଲ ମଣିଷର ଜନ୍ମ ଯଦି ନ ହୁଏ, ତାହେଲେ ଶୁଧୁ ଶିକ୍ଷା ଦେଇ ବିଶେଷ କିଛି କରାଯାଇ ପାରିବ ନାହିଁ। ସୁଜନନର ପଦ୍ଧତି ଆମେ ହରାଇ ଦେଇଛୁ। ଆମ୍ଭମାନଙ୍କର ମୁଣ୍ଡ ଆଜି ଠିକ୍ ନାହିଁ, ତେଣୁ ଆବୋଲ-ତାବୋଲ ଭାବଧାରା ଆମଦେଶରେ ଖୁବ୍ ଭଲ ଗଜେଇ ଉଠିଛି। ସତୀତ୍ୱର ନାମ ଶୁଣିଲେ ଆଜିକାଲି ଅନେକ ଝିଅହିଁ ହସନ୍ତି। ଅନେକେହିଁ ଯେପରି ଧର୍ମ ଓ କୃଷ୍ଟିକୁ ବିଦାୟ ଦେବା ପାଇଁ ଆଗଭର ହୋଇ ଛିଡ଼ା ହୋଇଛନ୍ତି।

ଆ.ପ୍ର. ୧୧/୨୬.୨.୧୯୪୮

## ॥ ଏକାନ୍ତ ପ୍ରୟୋଜନ ଯେଉଁଗୁଡ଼ିକ ॥

ବିବାହରେ ଯେପରି ଗୋଳମାଳ ନ ହୁଏ ସେଦିଗକୁ ବିଶେଷ ନଜର ଦେବା ଦରକାର। ସବର୍ଣ୍ଣ ବିବାହ କେଉଁ ପ୍ରକାରରେ ନିୟନ୍ତ୍ରିତ କରିବାକୁ ହେବ ତାହା ଭଲ କରି explain (ବ୍ୟାଖ୍ୟା) କରିବା ଦରକାର, ଅନୁଲୋମ ଖୁବ୍ ଚଳେଇବା ଦରକାର, ପ୍ରତିଲୋମ stop (ବନ୍ଦ) କରିବା ଦରକାର। ଏଗୁଡ଼ିକ ଏକାନ୍ତ ପ୍ରୟୋଜନ। ବିବାହରେ ଗୋଳମାଳ ପ୍ରବେଶ କଲେ ପରେ ଶତ ଚେଷ୍ଟାରେବି ଜାତିର ମଙ୍ଗଳ କରାଯାଇ ପାରିବ ନାହିଁ।

ଆ.ପ୍ର. ୧୧/୨୬.୨.୧୯୪୮

## ।। ପ୍ରଜନନ-ପରିଶୁଦ୍ଧି ପ୍ରୟୋଜନ କାହିଁକି ।।

ମଣିଷର ଯଦି ଭଲବି କରିବାକୁ ଯାଅନ୍ତି ଏବଂ ସେହି ଚେଷ୍ଟା ଯଦି well manipulated (ସୁକୌଶଳରେ ବିନ୍ୟସ୍ତ) ନ ହୁଏ ସେଥିରେ ମଧ୍ୟ ଖରାପ ହୋଇ ପାରେ। ମଣିଷର ବୁଦ୍ଧିର ଅତ୍ୟନ୍ତ ଅଭାବ। ପ୍ରଜନନ–ପରିଶୁଦ୍ଧି ନ ହେଲେ କୌଣସି ଭଲ କାମ କରାଯାଇ ପାରିବ ନାହିଁ। ମନୁସଂହିତାରେ ଅଛି –

'ଯତ୍ରତ୍ୱେତେ ପରିଧ୍ୱଂସୋ ଜାୟନ୍ତେ ବର୍ଣ୍ଣଦୂଷକାଃ।
ରାଷ୍ଟ୍ରିକୈଃ ସହ ତଦ୍ରାଷ୍ଟ୍ରଂ କ୍ଷିପ୍ରମେବ ବିନଶ୍ୟତି ।।

ଦେଶରେ ପ୍ରତିଲୋମ ବିବାହ ଯଦି ପ୍ରଶ୍ରୟ ଦିଆଯାଏ ତାହେଲେ ଜନଗଣ ସହ ରାଷ୍ଟ୍ରର ଏହି ବିପର୍ଯ୍ୟୟ ଅବଶ୍ୟମ୍ଭାବୀ ହୋଇ ଉଠେ। ତେଣୁ ପ୍ରତିଲୋମ ବନ୍ଦ କରିବା ଦରକାର। ଆଉ, ସବର୍ଣ୍ଣ ଓ ଅନୁଲୋମ ଅସବର୍ଣ୍ଣ ବିବାହ ଯେପରି ବିହିତ ଭାବରେ ହୁଏ ସେ ଦିଗକୁ ଲକ୍ଷ୍ୟ ରଖିବା ଦରକାର। ଆଜିକାଲି ଭଲ ମଣିଷର ଆମଦାନୀ କମ୍‌ହିଁ ହେଉଛି। ଆପଣ ଜଣେ ବଡ଼ ମଣିଷ, ଏହାହିଁ ବର୍ତ୍ତମାନ environment (ପରିବେଶ)-ର ମଧ୍ୟରେ ପଡ଼ି ଦୋଷର ବିଷୟ ହୋଇ ପାରେ। ଶ୍ରେଷ୍ଠଙ୍କ ପ୍ରତି ଗୋଟିଏ aversion (ବିତୃଷ୍ଣା) ଜନ୍ମାଇ ଦିଆ ହୋଇଛି। ସେମାନଙ୍କୁ ଛୋଟ କରି ଦେଖାଇବା ହେଉଛି। ଫଳରେ ସେମାନେ ignored (ଅବହେଳିତ) ହେଉଛନ୍ତି। ତେଣୁ ପ୍ରକୃତ ବଡ଼ ହେବାର ଆଗ୍ରହ ଆଜିକାଲି ଲୋକଙ୍କର କମି ଯାଉଛି। କାରଣ, ବଡ଼ ହେବାଟା ଯଦି ମଣିଷର ଅଶ୍ରଦ୍ଧା ଓ ଇର୍ଷା ହେବାର କାରଣ ହୁଏ, ତାହା ମଣିଷକୁ ଭଲ ଲାଗେ ନାହିଁ। ଆଗରୁ ଶିକ୍ଷକତା କରିବାରେ ପଇସା ନଥିଲେ ମଧ୍ୟ ସମ୍ମାନ ଥିଲା। ତେଣୁ ଦରିଦ୍ରତାକୁ ବରଣ କରି ମଧ୍ୟ ଅନେକେ ଶିକ୍ଷକତାର କାର୍ଯ୍ୟରେ ଯୋଗ ଦେଉଥିଲେ। କିନ୍ତୁ ବର୍ତ୍ତମାନ ଅବସ୍ଥା ଏପରି ହୋଇଛି ଯେ ପିଲାମାନଙ୍କୁ କପି କରିବାକୁ ବାଧା ଦେଲେ ଶିକ୍ଷକମାନଙ୍କୁ ଲାଞ୍ଛିତ ହେବାକୁ ହେଉଛି। ଏ ଅବସ୍ଥାରେ ସେମାନେ ଛାତ୍ରମାନଙ୍କର ଭଲ କରିବେ କିପରି। ଆଜି effciency (ଦକ୍ଷତା) ଅର୍ଜନ କରିବା ପାଇଁ ସାଧନା କମି ଯାଇଛି। ଅସତ୍ ଉପାୟରେ ବଡ଼ ହେବାର ବୁଦ୍ଧି ପ୍ରବଳ ହୋଇଛି। ଏ-ସବୁ ଶୁଭ ଲକ୍ଷଣ ନୁହେଁ। ଏ-ସବୁର ପ୍ରତିକାର କରିବାକୁ ଗଲେ ଶୁଭ ସଂସ୍କାରସମ୍ପନ୍ନ ମଣିଷ ଯେପରି ବେଶୀ ସଂଖ୍ୟାରେ ଜନ୍ମ ନିଅନ୍ତି ତାର ବ୍ୟବସ୍ଥା କରିବାକୁ ହେବ।

ଆ.ପ୍ର. ୧୧/୩.୩.୧୯୪୮

## ।। କୌଣସି ଚେଷ୍ଟା ସାର୍ଥକ ହୋଇ ଉଠୁ ନାହିଁ କାହିଁକି ।।

(ମନୋବିଜ୍ଞାନୀମାନେ କହିଛନ୍ତି – ପ୍ରଥମେ ଶିଶୁମାନଙ୍କୁ ଜନ୍ମ ଦେବାକୁ ପଡ଼ିବ ତା ପରେ ଶିକ୍ଷିତ କରିବାକୁ ହେବ। ତୂଳାରୁ ତୁମେମାନେ ରେଶମ ପାଇ ପାରିବ ନାହିଁ।) ସେଥିପାଇଁ ବିବାହ ଉପରେ ଏତେ ଜୋର। ବିବାହ ଠିକ୍‌ଭାବରେ ନ ହେଲେ ଭଲ ସନ୍ତାନ ଜନ୍ମନେଇ ପାରିବ ନାହିଁ। ସଂହିତାର ବିଧାନ, ବାତ୍ସାୟନଙ୍କର କାମସୂତ୍ର ଇତ୍ୟାଦି ସୁପ୍ରଜନନ ବିଜ୍ଞାନର ଉପରେହିଁ ପ୍ରତିଷ୍ଠିତ। ଆମେ ଭଲ ଭାବରେ ଲକ୍ଷ୍ୟ କରି ଦେଖୁନା ତେଣୁ ମୂଳ କାଟି ଅଗରେ ଜଳ ଢାଳିବାର ଚେଷ୍ଟା କରୁ। ଫଳରେ କୌଣସି ଚେଷ୍ଟାହିଁ ସାର୍ଥକ ହୋଇ ଉଠେ ନାହିଁ। ...ଦୈନ୍ୟ ଯେ ଆଜି କେତେ ବେଶୀ ତା ଭାବିପାରି ହୁଏ ନା। ବାହାରର ଦୈନ୍ୟ ଅପେକ୍ଷା ଭିତରର ଦୈନ୍ୟ ଆହୁରି ଭୟାବହ। ଏହା ଦୂର କରିବାକୁ ଗଲେ ପରିଶ୍ରମର ଅନ୍ତ ନାହିଁ।

ଆ.ପ୍ର. ୧୧/୧୦.୩.୧୯୪୮

## ।। ବଡ଼ ହେବାର ପଥ କେତେବେଳେ ପୁରାପୁରି ଖୋଲା ।।

ଆମ୍ଭମାନଙ୍କ ମଧ୍ୟରେ ନୀଚକୁ ଉଚ୍ଚ କରିବାର ପନ୍ଥା ଥିଲା କିନ୍ତୁ ଉଚ୍ଚକୁ ଏମାନେ ନୀଚ କରି ନ ଥିଲେ। ତେଣୁ ଅନୁଲୋମର ପ୍ରଚଳନ ଥିଲା କିନ୍ତୁ ପ୍ରତିଲୋମର ପ୍ରଶ୍ରୟ ଦିଆ ହେଉ ନଥିଲା। ପୁରୁଷର ବହୁବିବାହ ମଧ୍ୟ ଚାଲୁ ଥିଲା। ମୋର ମନେ ହୁଏ ବିହାରର ଭୁଁଇହାର ବ୍ରାହ୍ମଣମାନଙ୍କର ମା ଥିଲେ କ୍ଷତ୍ରିୟ। ରାଜପୁତମାନଙ୍କ ମଧ୍ୟରେ, ମରାଠାମାନଙ୍କ ମଧ୍ୟରେ ଅନୁଲୋମ ଅସବର୍ଣ୍ଣ ବିବାହ ଖୁବ୍ ଚାଲୁଥିଲା। ଅନୁଲୋମ କ୍ରମରେ ବାହାର ସମାଜରୁ ଝିଅ ଘରକୁ ଆଣିଲେ ମଧ୍ୟ ଭଲ ଛଡ଼ା ମନ୍ଦ ହୁଏ ନାହିଁ। ଏହାଦ୍ୱାରା ସମାଜ ବୃଦ୍ଧିର ଦିଗରେ ଚାଲେ। Ideal (ଆଦର୍ଶ) ଓ eugenics (ସୁପ୍ରଜନନ) ଏହି ଦୁଇଟି ଦିଗ ଠିକ୍ ରଖି ଚାଲି ପାରିଲେ ବଡ଼ ହେବାର ପଥ ପୁରାପୁରି ଖୋଲା।

ଆ.ପ୍ର. ୧୧/୧୦.୩.୧୯୪୮

## ।। ପ୍ରତିଲୋମ-ବିରୋଧୀ ଚିନ୍ତାଧାରା କେତେ ପରିମାଣରେ ସତ୍ତାଗତ ଥିଲା ।।

କାଳିଦାସଙ୍କର ଶକୁନ୍ତଳା ନାଟକର କଥା ଆପଣମାନଙ୍କ ପାଖରୁ ଯାହା ଶୁଣେ ତା ଭିତରେ ମଣିଷର ସ୍ୱାଭାବିକ ଦୋଷ, ଦୁର୍ବଳତା ଓ ପ୍ରବୃତ୍ତିର ଦିଗଟା ଅନୁଦ୍‌ଘାଟିତ

ରହିନାହିଁ, କିନ୍ତୁ ଭାବି ଦେଖନ୍ତୁ ତ ସବୁ ଗୁଡ଼ିକର ମଙ୍ଗଳମଧୁର ପରିଶୁଦ୍ଧି ଓ ପରିଣୟନ କିପରି ଦେଖାଇ ଦିଆ ଯାଇଛି। ଶକୁନ୍ତଳାକୁ ଦେଖି ଦୁଷ୍ମନ୍ତର ମନରେ ଯେତେବେଳେ ଚାଞ୍ଚଲ୍ୟ ଜାଗିଛି, ସେତେବେଳେ ଥରେ ତାର ମନକୁ ଆସିଛି ହୁଏତ ଶକୁନ୍ତଳା ବ୍ରାହ୍ମଣ କନ୍ୟା, ତେଣୁ ତା ସମ୍ବନ୍ଧରେ କୌଣସି କାମନାର ଭାବ ମନରେ ଜାଗିବା ଠିକ୍ ନୁହେଁ। କିନ୍ତୁ ମନର ଚାଞ୍ଚଲ୍ୟ ନ କମିବା ଦେଖି, ସେ ସିଦ୍ଧାନ୍ତ କରି ନେଇଥିଲେ ଯେ, ଶକୁନ୍ତଳା ନିଶ୍ଚୟ ହିଁ କ୍ଷତ୍ରିୟକନ୍ୟା। କାରଣ, ତାର ଦୃଢ଼-ବିଶ୍ୱାସ ଏହା ଯେ, ତାର ସୁଶାସିତ ମନ କୌଣସି ବ୍ରାହ୍ମଣକନ୍ୟା ପ୍ରତି ଧାବିତ ହୋଇ ପାରେନା। ଏହି ଛୋଟ ବିଷୟ ଭିତର-ଦେଇ ଧରା ପଡ଼େ ସେତେବେଳର culture (କୃଷ୍ଟି) ଓ character-ର (ଚରିତ୍ରର) tone (ସ୍ୱର) କି ଧରଣର ଥିଲା। ପ୍ରତିଲୋମ–ବିରୋଧୀ ଚିନ୍ତାଧାରା ଯେ ମଣିଷ ଭିତରେ କେତେ ପରିମାଣରେ ସତ୍ତାଗତ ଥିଲା, ତାହା ଏଥିରୁ ବୁଝାଯାଏ।

ଆ.ପ୍ର. ୧୧/୧୦.୪.୧୯୪୮

## ।। ନୀତିଜ୍ଞାନହୀନ ନେତାମାନଙ୍କର ଅସୀମ ଆଗ୍ରହ କେଉଁଥିରେ ।।

ଆଜି ଆମ ଦେଶରେ ଏପରି ବହୁ ବଡ଼-ବଡ଼ ନେତା ଅଛନ୍ତି, ଯେଉଁମାନେ ବର୍ଣ୍ଣ ଭାଙ୍ଗି ଦେବାରେ ପକ୍ଷପାତୀ, ପ୍ରତିଲୋମ ବିବାହ ପ୍ରଚଳନ କରିବା ବ୍ୟାପାରରେ ଯେଉଁମାନଙ୍କର ଅସୀମ ଆଗ୍ରହ। କିନ୍ତୁ ସେମାନେ ଏହି ଟିକକ ବୁଝନ୍ତି ନାହିଁ ଯେ ଏହା ଫଳରେ ଭବିଷ୍ୟତ ଜାତକମାନଙ୍କର ସେହି ସବୁ gene (ଜିନ)-ହିଁ ନଷ୍ଟ ହୋଇଯିବ, ଯେଉଁଗୁଡ଼ିକ ରହିବା ଫଳରେ ମଣିଷ ପ୍ରକୃତ ମଣିଷ ହୋଇ ଉଠି ପାରେ ଏବଂ ନିଜର ଓ ପରିବେଶର କଲ୍ୟାଣ କରି ପାରେ। ଏହା ଯେ କେତେବଡ଼ କ୍ଷତି, ତା ଭାବି କୂଳକିନାରା ପାଇହୁଏ ନାହିଁ। ଆ.ପ୍ର. ୧୧/୧୦.୪.୧୯୪୮

## ।। ପ୍ରତିଲୋମ ସନ୍ତାନ କେହି ବଡ଼ ହୋଇଛି କି ନାହିଁ।।

ଶ୍ରୀଶ୍ରୀଠାକୁର ଶରତ୍-ଦାଙ୍କ ଆଡ଼କୁ ଚାହିଁ ହସ-ହସ ମୁହଁରେ କହିଲେ — ମୁଁ ସୁଶୀଲଦା, କେଷ୍ଟଦାଙ୍କୁ କହିଛି, ଆପଣଙ୍କୁ ମଧ୍ୟ କହୁଛି ଏପରି ଏକ ପ୍ରତିଲୋମ ସନ୍ତାନ ବାହାର କରନ୍ତୁ ଯିଏ ପ୍ରକୃତରେ ବଡ଼ ହୋଇଛି। ସେମାନେ ତ ପାଇ ନାହାଁନ୍ତି, ଆପଣ ଖୋଜି ଦେଖି ପାରନ୍ତି।

ଶରତ୍-ଦା — ଆଖିରେ ତ ପଡ଼େ ନାହିଁ।

ଟିକିଏ ପରେ ଶରତ୍-ଦା ପୁଣି କହିଲେ — ମୋର ମନେ ହୁଏ natureର (ପ୍ରକୃତିର) ମଧ୍ୟରେ normally (ସ୍ୱାଭାବିକ ଭାବେ) ଅନୁଲୋମ trend (ଧାରା) ଦେଖାଯାଏ ।

ଶ୍ରୀଶ୍ରୀଠାକୁର — ମୋର ମଧ୍ୟ ତାହାହିଁ ମନେ ହୁଏ । ପ୍ରକୃତି ଚାହେଁ ଆମ୍ଭମାନଙ୍କର ବଞ୍ଚିବା ବଢ଼ିବାର urge (ଆକୂତି)-କୁ fulfil (ପୂରଣ) କରିବାକୁ । ପ୍ରତିଲୋମ ତାର ପରିପନ୍ଥୀ । ଆ.ପ୍ର. ୧୧/୧୦.୪.୧୯୪୮

## ।। ଋଷିମାନଙ୍କ ଦେଇଥିବା ବିଧାନ ସମ୍ବନ୍ଧରେ କଣ କରିବାକୁ ହେବ ।।

ଖବର କାଗଜରେ ହିନ୍ଦୁ କୋର୍ଡ଼ ବିଲ ସମ୍ପର୍କିତ କଥା ବାହାରିଛି । ସେହି ପ୍ରସଙ୍ଗରେ ପ୍ରଫୁଲ୍ଲ କହିଲେ — ପ୍ରତିଲୋମ ବିବାହ ଓ ବିବାହ-ବିଚ୍ଛେଦ ଯଦି ଅବାଧରେ ପ୍ରଚଳନ ରହେ, ତାହେଲେ କାଳ-କାଳରେ ଦେଶରେ pure bushes of blood (ଅବିମିଶ୍ର ପବିତ୍ର ରକ୍ତଧାରା–ସମନ୍ୱିତ ବଂଶଗୁଡ଼ିକ) ବୋଲି ଆଉ କିଛି ଖୋଜି ପାଇହେବ ନାହିଁ।

ଶ୍ରୀଶ୍ରୀଠାକୁର ଆକ୍ଷେପର ସ୍ୱରରେ କହିଲେ – ତାହା ଯଦି ତୁମେ ନ ଚାହଁ ତାହେଲେ ରହିବ ନାହିଁ। ... ଏ କ୍ଷେତ୍ରରେ ଭାବି ଦେଖିବାକୁ ହେବ ଆମର କରଣୀୟ କଣ । ଅଧିକାଂଶ ସାଧାରଣ ଲୋକ ଅଜ୍ଞ । କେଉଁ କର୍ମର ଫଳ କଣ ସେମାନେ ଜାଣନ୍ତି ନାହିଁ। ଆମର ଋଷିମାନେ ଯେଉଁ-ସବୁ ବିଧାନ ଦେଇ ଯାଇଛନ୍ତି ସେଗୁଡ଼ିକ କିନ୍ତୁ ଗଭୀର ବୈଜ୍ଞାନିକ ସତ୍ୟ ଉପରେ ପ୍ରତିଷ୍ଠିତ । ସେହି ଜିନିଷଗୁଡ଼ିକୁ ଲୋକଙ୍କ ଆଗରେ ବାରମ୍ବାର convincingly, rationally ଏବଂ tactfully (ପ୍ରତ୍ୟୟ-ପ୍ରଦୀପୀ ରକମରେ, ଯୁକ୍ତିଯୁକ୍ତ-ଭାବରେ ଏବଂ ସୁକୌଶଳରେ) ତୋଳି ଧରିବା ଦରକାର ।

ଆ.ପ୍ର. ୧୧/୧୩.୪.୧୯୪୮

## ।। ଋଷି-ଆନୁଗତ୍ୟ ଓ ବର୍ଣ୍ଣବିଧାନ ଠିକ୍ ରଖିବାକୁ ହୁଏ କାହିଁକି ।।

ଋଷି-ଆନୁଗତ୍ୟ ଓ ବର୍ଣ୍ଣବିଧାନ ଠିକ୍ ରହିଲେ ସମାଜରେ integration (ସଂହତି) ଅବ୍ୟାହତ ରହେ, material & spiritual development-ର (ବୈଷୟିକ ଓ ଆଧ୍ୟାତ୍ମିକ ଉନ୍ନତିର) balance (ସମତା) ବଜାୟ ରହେ, ଏବଂ ତାହା stable (ସ୍ଥାୟୀ) ହୁଏ, ପୁଣି eugenic life (ପ୍ରଜନନଗତ ଜୀବନ) undisturbed

(ବିଘ୍ନଶୂନ୍ୟ) ରହେ। ଏହି କେତେଟା ଜିନିଷର କିନ୍ତୁ ଏକାନ୍ତ ପ୍ରୟୋଜନ। ... Eugenic dislocation (ପ୍ରଜନନଗତ ବିଶୃଙ୍ଖଳା) ହେଲେ ତ ଉନ୍ନତିର ମୂଳ କାଟି ହୋଇଯାଏ। ଏହାହିଁ ଅପରିହାର୍ଯ୍ୟ ଯେ ଋଷି-ଆନୁଗତ୍ୟ ଓ ବର୍ଣ୍ଣାଶ୍ରମ ତାହା ଆଜି ଆମେ ଭାଙ୍ଗିବାକୁ ବସିଛୁ। ଆଜି ଉଚ୍ଚକୁ ନୀଚ କରିବାକୁ ଚେଷ୍ଟା କରୁଛୁ। ପ୍ରତିଲୋମର ପ୍ରଶ୍ରୟ ଦେଉଛୁ, profitable gene (ଲାଭଜନକ ଜିନ)-ଗୁଡ଼ିକୁ ଚିରଦିନ ପାଇଁ ନଷ୍ଟ କରି ପକାଉଛୁ। ତେଣୁ ଦେଶରେ ଆଜି ଗୋଟିଏ ମଣିଷ ଖୋଜି ମିଳୁନାହିଁ, ଏହି ଦୁର୍ଦ୍ଦିନରେ ସବୁଦିଗ ସମ୍ଭାଳି ଦେଇ ପାରିବ, ଏପରି ଜଣେ leader (ନେତା) ଆଜି ନାହିଁ। ବୁଦ୍ଧି-ଭେଦ ଘଟାଇ ମଣିଷମାନଙ୍କୁ ବ୍ୟାହତ କରାଯାଉଛି। କୌଣସି ମଣିଷହିଁ ଉପକୃତ ହୋଇପାରୁ ନାହାନ୍ତି, ସମାଜ ମଧ୍ୟ ଧ୍ୱଂସ ପଥରେ ଚାଲିଛି। କଣ ଯେ କରିଲୁ। ଆଜି ଭଲ କୁକୁର, ଗୋରୁ, ଘୋଡ଼ା କରିବା ପାଇଁ ଆମ୍ଭମାନଙ୍କ ଭିତରେ ଯେତେ ଟିକିଏ ଦରଦ, ଭଲ ମଣିଷ ସୃଷ୍ଟି କରିବା ପାଇଁ ସେତେ ଟିକିଏ ଚିନ୍ତା ନାହିଁ।

ଆ.ପ୍ର. ୧୧/୪.୫.୧୯୪୮

## ।। ବିଦେଶରେ ଝିଅମାନଙ୍କର ବିବାହ ନୀଚ ଘରେ ହେଲେ କଣ କହନ୍ତି ।।

ଜଣେ ଦାଦା କହିଲେ – ହାଉଜାରମ୍ୟାନଦାର ମାଙ୍କ ପାଖରୁ ଶୁଣିଛି, ଝିଅମାନଙ୍କର ବିବାହ ନୀଚ ଘରେ ହେବାଟା ସେମାନଙ୍କ ଦେଶରେ (ଆମେରିକାରେ) ମଧ୍ୟ ପସନ୍ଦ କରନ୍ତି ନାହିଁ।

ହାଉଜାରମ୍ୟାନଦା – ଆମ ଦେଶରେ a woman marrying beneath her (ନାରୀର ନୀଚ ଘରେ ବିବାହ)କୁ କହନ୍ତି slur (କଳଙ୍କ) ଅଛି, କିନ୍ତୁ a man marrying beneath him (ପୁରୁଷର ନୀଚ ଘରେ ବିବାହ) କହିଲେ କୌଣସି censure (ନିନ୍ଦା) ନାହିଁ।

ଶ୍ରୀଶ୍ରୀଠାକୁର ଏହି କଥା ଶୁଣି ପ୍ରସନ୍ନମନରେ ଟିକିଏ ହସିଦେଲେ।

ଆ.ପ୍ର. ୧୧/୪.୫.୧୯୪୮

## ।। ସ୍ତ୍ରୀର ସ୍ୱାମୀଙ୍କ ପାଇଁ କରିବା ନ ରହିଲେ କଣ ହୁଏ ।।

ସ୍ତ୍ରୀର ଯଦି ସ୍ୱାମୀଙ୍କ ପାଇଁ କରିବା ନ ରହେ, ଏକତରଫା ବହୁତ ପାଏ, ଅଥଚ ସ୍ୱାମୀଙ୍କୁ ଟିକିଏ ଲଟା ଶାଗ ମଧ୍ୟ ରାନ୍ଧି ଦେବାରେ ଆବେଗ ନ ଥାଏ, ସେ

ସ୍ୱାମୀଙ୍କୁ feel (ବୋଧ) କରି ପାରେନା, ଆଉ, ଯେ ସ୍ୱାମୀଙ୍କୁ feel (କରି ପାରେନା, ସେ ଛୁଆପିଲାଙ୍କୁ ମଧ feel (ବୋଧ) କରି ପାରେନା । ତାର ଦୃଷ୍ଟି blurred (ଅସ୍ପଷ୍ଟ) ହୋଇ ଯାଏ । ଆ.ପ୍ର. ୧୧/୮.୫.୧୯୪୮

## ।। କେତେବେଳେ ଝିଅମାନଙ୍କର କିଛି ରହେ ନାହିଁ ।।

ପ୍ରତିଲୋମ ବିବାହଟା ଖୁବ୍ ସର୍ବନାଶା ଜିନିଷ । ଝିଅମାନେ ଯଦି ସତୀତ୍ୱ ହରାନ୍ତି, ଚରିତ୍ର ହରାନ୍ତି, ତାହେଲେ ସେମାନଙ୍କର କିଛି ରହେ ନାହିଁ । କିନ୍ତୁ ଏହି ଅବସ୍ଥାରେ ମଧ ଯଦି ସେମାନେ ହୀନ-ସଂସ୍ପର୍ଶ ଏଡ଼ାଇ ଚଳିପାରନ୍ତି, ତାହେଲେ ମଧ ମନ୍ଦରେ ଭଲ । ଝିଅମାନଙ୍କର ହୀନ-ସଂସ୍ପର୍ଶ ମାରାତ୍ମକ ବିଷୟ । 'ନୀଚ ସହ ଯାହାରଗତି, ନିଚ ସେ ଦୁର୍ମତି ।' ଆ.ପ୍ର. ୧୨/୨୫.୫.୧୯୪୮

## ।। ବିବାହର ପ୍ରଥମ ଓ ପ୍ରଧାନ ଉଦ୍ଦେଶ୍ୟ କଣ ।।

ବିବାହର ପ୍ରଥମ ଉଦ୍ଦେଶ୍ୟ ହେଲା — genetic enrichment (ଜନନଗତ ସମୃଦ୍ଧି) । ଏହାହିଁ ହେଲା first and foremost (ପ୍ରଥମ ଓ ପ୍ରଧାନ) । ତାପରର ଜିନିଷ ହେଲା cultural enrichment (କୃଷ୍ଟିଗତ ସମୃଦ୍ଧି) । ତେଣୁ ବର-କନ୍ୟାର ବଂଶଗତ ଓ ବ୍ୟକ୍ତିଗତ ଆଚାର, ବ୍ୟବହାର ଓ କର୍ମର ସଙ୍ଗତି ଅଛି କି ନାହିଁ ତାହା ଦେଖିବା ଦରକାର । ପୁଣି ଦରକାର physical enrichment (ଶରୀରଗତ ସମୃଦ୍ଧି) ।

ପୁରୁଷ-ନାରୀର genetic compatibility (ଜନନଗତ ସଙ୍ଗତି) ଯଦି ଥାଏ ଏବଂ psychical ଓ physical compatibility (ମାନସିକ ଓ ଶାରୀରିକ ସଙ୍ଗତି) ଯଦି କିଛି କମ୍‌ବି ହୁଏ, ସେଠାରେ ବରଂ ବିବାହ ଚଳିବ, ଅବଶ୍ୟ ପ୍ରଶସ୍ତ ନୁହେଁ । କିନ୍ତୁ psychical ଓ physical compatibility (ମାନସିକ ଓ ଶାରୀରିକ ସଙ୍ଗତି) ଅଛି, ଅଥଚ genetic compatibility (ଜନନଗତ ସଙ୍ଗତି) ନାହିଁ ସେଠାରେ ବିବାହ ଚଳିବ ନାହିଁ । Genetic asset (ଜନନ ସମ୍ପଦ) କାହାର କିପରି ତାହା ନ ବୁଝି ବିବାହାଦିର ସମ୍ବନ୍ଧ କରିବା ଭଲ ନୁହେଁ । ଯେଉଁଠାରେ ବର୍ଣ୍ଣବିଧାନ, ବିବାହ ବିଧି ଓ ସଭାପୋଷଣୀ ଆଚାର-ନିୟମ ସୁଷ୍ଠୁଭାବରେ ପରିପାଳିତ ହୁଏ ସେଠାରେ ଏହା determine (ନିର୍ଣ୍ଣୟ) କରିବା ଅନେକପରିମାଣରେ ସହଜ ହୁଏ । କିନ୍ତୁ ଯେଉଁଠାରେ ଏସବୁ ନାହିଁ, ସେଠାରେ ବ୍ୟାପାରଟା ଶକ୍ତ ଅଟେ । ତେଣୁ ମୋର ମନେ

ହୁଏ—ଯଦି ଏପରି କୌଣସି ଯନ୍ତ୍ର ଆବିଷ୍କାର କରାହୁଏ, ଯାହା ସାହାଯ୍ୟରେ ଏହା ନିର୍ଦ୍ଧାରଣ କରା ଯାଏ, ତାହେଲେ ଖୁବ୍ ଭଲ ହୁଏ । Genetics (ଜନନତତ୍ତ୍ୱ) ସମ୍ବନ୍ଧରେ ବାସ୍ତବ-ଜ୍ଞାନ ଓ ତାର ପ୍ରଚାର ଓ ପ୍ରୟୋଗ ଯେତେ ବଢ଼ିବ ସେତେହିଁ ଜଗତର ମଙ୍ଗଳ । ମୋର ମନେ ହୁଏ ଆମ୍ଭମାନଙ୍କର ବାପା, ବଡ଼-ବାପା ଏ ବିଷୟରେ ଯାହା କହି ଯାଇଛନ୍ତି, ଘୁରି-ଫେରି ବିଜ୍ଞାନକୁ ଦିନେ ସେହି ସିଦ୍ଧାନ୍ତରେ ପହଞ୍ଚିବାକୁ ହେବ ।

ଆ.ପ୍ର. ୧୨/୨୫.୫.୧୯୪୮

## ।। ଅନୁଲୋମ ଅସବର୍ଣ୍ଣ ବିବାହ ବ୍ୟାପାରଟା କଣ ।।

ସବର୍ଣ୍ଣ ବିବାହ ଯେପରି ଠିକ୍‌ଭାବରେ ଦେବାକୁ ହୁଏ, ଅନୁଲୋମ ଅସବର୍ଣ୍ଣ ବିବାହ ମଧ୍ୟ ସେହିପରି judiciously ଓ correctly (ବୁଦ୍ଧିମତ୍ତାର ସହିତ ଓ ଯଥାଯଥ ଭାବରେ) adjust (ନିୟନ୍ତ୍ରଣ) କରିବାକୁ ହୁଏ । ଅନୁଲୋମ ବିବାହ ବ୍ୟାପାରଟା କଲମି କରିବା ଭଳି କଥା । ଭଲ ଆମ୍ବ ସହିତ ଜଙ୍ଗଲି ଆମ୍ବର କଲମି ନା କଣ ଖୁବ୍-ଭଲ ହୁଏ । ଖୁବ୍ vigour (ତେଜ) ହୁଏ । ବିଧିମତରେ ହେଲେ ଅନୁଲୋମ ସନ୍ତାନ ଖୁବ ତୁଖୋଡ଼ ହୁଏ । ତେବେ ସବର୍ଣ୍ଣ ବିବାହ ନ କରି ଅନୁଲୋମ କରିବା ଉଚିତ ନୁହେଁ । ତାହା କଲେ ବଂଶର original (ମୂଳ) ଧାରାର ବୈଶିଷ୍ଟ୍ୟ ଅନେକ ପରିମାଣରେ ଭାଙ୍ଗି ପଡ଼େ । ତେଣୁ ସବର୍ଣ୍ଣରେ ସମାନ ଘରେ ବିବାହ ଉପରେ ଏତେ ପରିମାଣରେ ଜୋର ଦିଆଯାଏ ।

ଆ.ପ୍ର. ୧୨/୨୫.୫.୧୯୪୮

## ।। ବ୍ୟଭିଚାର କରିଲେ କଣ ହୁଏ ।।

ପୁରୁଷ ନାରୀ କାହାରି ପକ୍ଷରେ ବ୍ୟାଭିଚାର ଭଲ ନୁହେଁ । ଏହାଦ୍ୱାରା ମସ୍ତିଷ୍କ ବିଭ୍ରାନ୍ତ ହୋଇଯାଏ । ଆଦର୍ଶପ୍ରାଣ ଉପଯୁକ୍ତ ପୁରୁଷର ବିହିତ ବହୁବିବାହ ଭଲ । ତାଦ୍ୱାରା ଜାତି ମଧ୍ୟରେ ଯୋଗ୍ୟ ଲୋକ ବଢ଼ନ୍ତି । କିନ୍ତୁ ଝିଅମାନଙ୍କର ଯଦି chastity (ସତୀତ୍ୱ) ନ ରହେ ତେବେ ସେମାନେ କେତେବେଳେ ବି ସୁସନ୍ତାନର ଜନନୀ ହୋଇପାରନ୍ତି ନାହିଁ । ସେମାନଙ୍କ ପେଟର ଛୁଆ-ପିଲା concentric (ସୁକେନ୍ଦ୍ରିକ) ଖୁବ୍ କମ୍ ହୋଇ ପାରନ୍ତି । ଏପରି ଏକ climate (ଆବାହାଓ୍ୱା) ସୃଷ୍ଟି କରିବା ଦରକାର ଯେପରି ଜୀବନ ଗଲେ ମଧ୍ୟ ଝିଅମାନେ ବ୍ୟଭିଚାରର ପଥରେ ପାଦ ନ ବଢ଼ାନ୍ତି । ସେତେବେଳେ ପୁରୁଷମାନେ ମଧ୍ୟ ସେମାନଙ୍କୁ entice (ପ୍ରଲୁବ୍ଧ) କରିବାକୁ ସାହସ ପାଇବେ ନାହିଁ ।

ଯେଉଁ ସବୁ ପୁରୁଷ ବଦ୍‌ମାସି କରିବାକୁ ଚାହାଁନ୍ତି ଅଥଚ ବିବାହର ଦାୟିତ୍ୱ ନେବାକୁ ନାରାଜ, ସେମାନଙ୍କର sex-life (ଯୌନଜୀବନ) କୌଣସି ଦିନ adjusted (ନିୟନ୍ତ୍ରିତ) ହୁଏ ନାହିଁ ଏବଂ ସେମାନଙ୍କ ଦ୍ୱାରା ସମାଜ contaminated (କଳୁଷିତ) ହୁଏ। ଆ.ପ୍ର. ୧୨/୨୬.୫.୧୯୪୮

## ॥ ଝିଅମାନଙ୍କ ଭିତରେ କିଭଳି ଭାବ ଉଦ୍ରେକ କରିବାକୁ ହେବ॥

ମଣିଷର ନମ୍ନମୁଖୀ ଗତି ସ୍ୱାଭାବିକ, କିନ୍ତୁ ସମାଜର ଫର୍ମା ଭିତରେ ଏପରି କେତେଗୁଡ଼ିଏ ବ୍ୟବସ୍ଥା କରିବା ଦରକାର ଯାହାଦ୍ୱାରା ମଣିଷର ଦୃଷ୍ଟି ଊର୍ଦ୍ଧ୍ୱମୁଖୀ ହେବହିଁ ହେବ। ଅନୁଲୋମ ଅସବର୍ଣ୍ଣ ବିବାହ ଏ ବ୍ୟାପାରରେ ସାହାଯ୍ୟ କରିପାରେ, ଆଉ, ସବର୍ଣ୍ଣ ବିବାହ ବ୍ୟାପାରରେ ମଧ୍ୟ ଝିଅମାନଙ୍କ ମଧ୍ୟରେ ଏପରି ଗୋଟିଏ sentiment (ଭାବ) ଉଦ୍ରେକ କରିବା ଦରକାର ଯାହାଦ୍ୱାରା ସେମାନେ ଉନ୍ନତ କୁଳଶୀଳ ଓ ଚରିତ୍ରସମ୍ପନ୍ନ ପିତୃମାତୃଭକ୍ତ ଶ୍ରେୟନିଷ୍ଠ ପୁରୁଷ ବ୍ୟତୀତ ଯାହାକୁ-ତାହାକୁ ବିବାହ କରିବାକୁ ରାଜି ନ ହୁଅନ୍ତି।

ଆ.ପ୍ର. ୧୨/୨୬.୫.୧୯୪୮

## ॥ ଭ୍ରଷ୍ଟା ଝିଅମାନଙ୍କୁ କଣ କରିବ॥

ଯେ-କୌଣସି କାରଣରୁ ହେଉ ଝିଅମାନେ ଯେପରି ସମାଜର ବାହାରକୁ ଚାଲି ନ ଯାଆନ୍ତି, ସେ ଦିଗକୁ ବିଶେଷ ଲକ୍ଷ୍ୟ ରଖିବାକୁ ହୁଏ। ପରିସ୍ଥିତିର ଚାପରେ ବା ନିଜର ଭୁଲରୁ ଯଦି କୌଣସି ଝିଅ ଭ୍ରଷ୍ଟା ହୁଏ ତାହେଲେ ସମାଜପତିମାନଙ୍କର ଉଚିତ ତାହାହିଁ କରିବା, ଯାହାଦ୍ୱାରା ସେମାନେ ପରିଶୁଦ୍ଧ ହୋଇ ସମାଜକୁ ଫେରି ଆସି ପାରନ୍ତି। କୌଣସି ଝିଅ ଯଦି ଦୁର୍ବୃତ୍ତମାନଙ୍କ ଦ୍ୱାରା ବଳପୂର୍ବକ ଧର୍ଷିତା ହୁଏ ଏବଂ ସେ ଯଦି ସମାଜକୁ ଫେରି ଆସିବାକୁ ସୁଯୋଗ ନ ପାଏ, ତାହେଲେ ତାହା ସମାଜ ପକ୍ଷରେ ନୃଶଂସତା। ଦୁର୍ବୃତ୍ତମାନଙ୍କ ହାତରୁ ଝିଅମାନଙ୍କୁ ରକ୍ଷା କରିବା ସମାଜରହିଁ ଦାୟିତ୍ୱ। ସେ-ଦାୟିତ୍ୱ ପାଳନ କରି ନ ପାରିବା ସମାଜ ପକ୍ଷରେ ପ୍ରାୟଶ୍ଚିତ-ଯୋଗ୍ୟ ଅପରାଧ। ସେହି ପ୍ରାୟଶ୍ଚିତ୍ତ ନ କରି ଓଲଟା ଯଦି ସମାଜ ଏହି ଝିଅମାନଙ୍କୁ ଘରକୁ ଫେରି ଆସିବାର ପଥ ରୁଦ୍ଧ କରି ଦିଅନ୍ତି, ତାହେଲେ ଏହି ଝିଅମାନେ ଏହା ଫଳରେ ଦିନେ ସମାଜର ferocious enemy (ହିଂସ୍ର ଶତ୍ରୁ) ହୋଇ ଛିଡ଼ା ହେବେ। ତାହାଦ୍ୱାରା ଦୁଷ୍ଟମାନଙ୍କ ଦଳହିଁ ପୁଷ୍ଟ ହେବ। ମୋର ମନେ ହୁଏ ଏପରି-କି distorted (ବିକୃତ) ଝିଅ

ଯେଉଁମାନେ, ସେମାନଙ୍କୁ ମଧ୍ୟ ଏପରି psychologically (ମନୋବିଜ୍ଞାନ ସମ୍ମତ-ଭାବରେ) tackle (ପରିଚାଳନା) କରିବା ଦରକାର, ଯାହାଦ୍ୱାରା ସେମାନେ ଆହୁରି ଦୂଷିତ ହୋଇ ସମାଜର ଦଶଜଣଙ୍କର ଆହୁରି କ୍ଷତିର କାରଣ ହୋଇ ନ ପାରନ୍ତି। ଏ କାମ କରିବାକୁ ଗଲେ ନିଜେ ଆଦର୍ଶରେ ଅଚ୍ୟୁତ ରହି ବିଭିନ୍ନ ପ୍ରକାର ରଙ୍ଗ ଢଙ୍ଗ କରିବା ଦରକାର। ଯାହା-ତାହା ପକ୍ଷରେ ଏ କାମ ସମ୍ଭବ ନୁହେଁ।

ଆ.ପ୍ର. ୧୨/୨୬.୫.୧୯୪୮

## ।। ସର୍ବନାଶା ଆଡ଼କାଠି କଣ ।।

ବିବାହ-ବିଚ୍ଛେଦ ସମ୍ବନ୍ଧରେ କଥା ଉଠିଲାରୁ ଶ୍ରୀଶ୍ରୀଠାକୁର ଗଭୀର ଉଦ୍‌ବେଗର ସହିତ କହିଲେ — ଏହା ଆଉ ଏକ ସର୍ବନାଶା ଆଡ଼କାଠିର ଆମଦାନୀ ଦେଶରେ ହେବାକୁ ଯାଉଛି। ଯୀଶୁଖ୍ରୀଷ୍ଟ ସ୍ୱାର୍ଥହୀନ ଭାଷାରେ ଏହା ବିରୁଦ୍ଧରେ କହି ଯାଇଛନ୍ତି। କଣ ଅଛି ସେ କଥାଟା ?

... ପଢ଼େଇ ଶୁଣା ଗଲା – But I tell you, anyone who divorces his wife for any reason except unchastity makes her an adultress, and whoever marries a divorced woman commits adultery (କିନ୍ତୁ ମୁଁ ତୁମ୍ଭମାନଙ୍କୁ କହୁଛି, ଯିଏ ତାର ସ୍ତ୍ରୀକୁ ଅସତୀତ୍ୱ ଛଡ଼ା ଅନ୍ୟ କୌଣସି କାରଣରୁ ଚିରଦିନ ବର୍ଜନ କରେ ସେ ତାକୁ ବ୍ୟଭିଚାରିଣୀ କରି ତୋଳେ ଏବଂ ଯିଏ ସ୍ୱାମୀ କର୍ତ୍ତୃକ ପରିତ୍ୟକ୍ତା ନାରୀକୁ ବିବାହ କରେ ସେ ମଧ୍ୟ ବ୍ୟାଭିଚାର କରେ)। (ପବିତ୍ର ବାଇବେଲ, ମ୍ୟାଥ୍ୟୁ, ପଞ୍ଚମ ଅଧ୍ୟାୟ, ୩୨ତମ ଉକ୍ତି)। ...ତାହେଲେହିଁ ବୁଝି ଦେଖ। ଆ.ପ୍ର. ୧୨/୨୬.୫.୧୯୪୮

## ।। ଅନୁଲୋମ ଅସବର୍ଣ୍ଣ ବିବାହରେ କଣ ହୁଏ ।।

ଅନୁଲୋମରେ ବିଭିନ୍ନ ବର୍ଣ୍ଣଗୁଡ଼ିକ ମଧ୍ୟରେ ଯେ କେବଳ ସୁସମ୍ବନ୍ଧ ହୁଏ, ତା ନୁହେଁ, ଦେଶ ମଧ୍ୟରେ ଗୋଟିଏ cultural upliftment (କୃଷ୍ଟିଗତ ଉନ୍ନୟନ)– ମଧ୍ୟ ହୁଏ। ଉଚ୍ଚବର୍ଣ୍ଣରେ ଝିଅର ବିବାହ ହେଲେ ସେହି ଝିଅ ଯେପରି ସ୍ୱାମୀର ଘରର ଉନ୍ନତ ଚାଲି-ଚଳନ ଓ ଆଚାର-ଆଚରଣରେ ଅଭ୍ୟସ୍ତ ହୁଏ, ସେହିପରି ଝିଅର ବାପା-ମା ମଧ୍ୟ ଝିଅ–ଜୋଇଁ ଓ ନାତି-ନାତୁଣୀର ଖାତିରରେ ଉନ୍ନତ ଚାଲିଚଳନ ଓ ଆଚାର-

ଆଚରଣରେ ଅଭ୍ୟସ୍ତ ହେବାକୁ ଚେଷ୍ଟା କରନ୍ତି। ବଡ଼ ପ୍ରତି ଶ୍ରଦ୍ଧା ମଣିଷକୁ ବଡ଼ କରି ତୋଳେ। ଏହି ଭାବରେ ଅନୁଲୋମରେ ସମସ୍ତ ଜାତିର ମଧ୍ୟରେ ଗୋଟିଏ ଊର୍ଦ୍ଧ୍ୱମୁଖୀ ମନୋଭାବ ସୃଷ୍ଟି କରେ। ଅନୁଲୋମଜ ସନ୍ତାନମାନେ ପିତୃବର୍ଣ୍ଣର ବିଶେଷ-ବିଶେଷ ବର୍ଗରେ ସ୍ଥାନଲାଭ କରନ୍ତି। ଏହାଦ୍ୱାରା original paternal instinct (ପିତୃପୁରୁଷର ମୌଳିକ ସହଜାତ-ସଂସ୍କାର)-ଗୁଡ଼ିକର ନାନାରକମର rich ଓ fine variety (ସମୃଦ୍ଧ ଓ ସୂକ୍ଷ୍ମ ଧରଣ)-ର ସୃଷ୍ଟି ହୁଏ। ସେମାନଙ୍କର ବ୍ୟକ୍ତିତ୍ୱ ଓ କର୍ମଦକ୍ଷତା ମଧ୍ୟ ତଦନୁଗ ବୈଶିଷ୍ଟ୍ୟସମ୍ପନ୍ନ ହୁଏ, ଯେଉଁଟାକି ଜାତିର ଉନ୍ନତିର ପକ୍ଷରେ ବିଶେଷ ସହାୟକ ହୋଇ ଉଠେ। ଆ.ପ୍ର. ୧୨/୨୭.୫.୧୯୪୮

## ।। ଅନୁଲୋମ ଅସବର୍ଣ୍ଣ ବିବାହ କେତେବେଳେ କରା ଯାଏ ।।

ଆମ୍ଭମାନଙ୍କ ଶାସ୍ତ୍ରର ବିଧାନ ହେଉଛି ଉପଯୁକ୍ତ ଯେଉଁମାନେ ସେମାନେ ପ୍ରଥମେ ସବର୍ଣ୍ଣ ବିବାହ କରି ତାପରେ ଅନୁଲୋମ ଅସବର୍ଣ୍ଣ ବିବାହ କରି ପାରିବେ। ସବର୍ଣ୍ଣ ବିବାହ ନ କରି କିନ୍ତୁ ପ୍ରଥମେ ଅନୁଲୋମ ବିବାହ କରିବା ଚଳିବ ନାହିଁ। ତାହା ଅଶାସ୍ତ୍ରୀୟ ବିଷୟ। ଏହାର ଉଦ୍ଦେଶ୍ୟ ହେଉଛି—ସମାନପ୍ରକୃତିବିଶିଷ୍ଟ ବଂଶଗତ ମୂଳଧାରା ଅକ୍ଷୁର୍ଣ୍ଣ ରଖିବା। ତେଣୁ ସବର୍ଣ୍ଣରେ ସଦୃଶ ଘରେ ବିବାହର ଏତେ ପ୍ରଶଂସା ଓ ପ୍ରଚଳନ। ଏହା ଅବ୍ୟାହତ ରଖି ତାପରେ ଉପଯୁକ୍ତତା ବୁଝି କ୍ଷେତ୍ରବିଶେଷରେ ଅନୁଲୋମର ବ୍ୟବସ୍ଥା କରିବାକୁ ହେବ। ଅନୁଲୋମର କଥା ଯେତେବେଳେ ମୁଁ କହେ ସେତେବେଳେ ମୁଁ ଏହା ଧରି ନିଏ ଯେ ତା ପୂର୍ବରୁ ବିହିତ ସବର୍ଣ୍ଣ ବିବାହ ହେବାହିଁ ଦରକାର। ତେଣୁ ଅନୁଲୋମ ବିବାହ-ସମ୍ବନ୍ଧରେ ମୋର ପ୍ରଶଂସା ଶୁଣି କେହି ଯଦି ଏ-କଥା ମନେ କରେ ଯେ ମୁଁ ସବର୍ଣ୍ଣ ବିବାହକୁ ଛୋଟ କରୁଛି ତାହେଲେ ସେ କିନ୍ତୁ ବଡ଼ ଭୁଲ କରିବ। ତେବେ ମୁଁ ଯାହା କହିଥିଲି ତା ମଧ୍ୟ ଠିକ୍‌ଭାବରେ ବୁଝିବାକୁ ହେବ। ଧରାଯାଉ, ଜଣେ ବିପ୍ର, ପ୍ରଥମେ ସବର୍ଣ୍ଣ ବିବାହ କଲା, ତାର ସବର୍ଣ୍ଣ ସନ୍ତାନ ରହିଲା। ତଦୁପରି ଯଦି ତାର ଗୋଟିଏ କ୍ଷତ୍ରିୟା ସ୍ତ୍ରୀ ଥାଏ ଏବଂ ତାର ଗର୍ଭରୁ ସନ୍ତାନ ହୁଏ, ତେବେ ଏହି ସନ୍ତାନ ମଧ୍ୟରେ ବିପ୍ର instinct (ସହଜାତ ସଂସ୍କାର) ଓ କ୍ଷତ୍ରିୟ temperament (ମେଜାଜ)-ର ଗୋଟିଏ happy blending (ସୁଖକର ସଂମିଶ୍ରଣ) ଦେଖା ଦେବହିଁ ଦେବ। ଏହି ଧରଣର ବିଭିନ୍ନ ରକମ combination (ସଂଯୋଗ)-ର ଭିତର-ଦେଇ ବିଭିନ୍ନ ପ୍ରକାର new specific variety (ନୂତନ ବିଶେଷ ଶ୍ରେଣୀ) evolve

ଭିବ (ବବିର୍ତ୍ତିତ ହେବ) ଯେଉଁମାନଙ୍କର ସାମର୍ଥ୍ୟ ଓ ଉପଯୋଗିତା ନୂତନତର ରକମର ହେବ, ଯାହାକି ଜାତୀୟ ଜୀବନକୁ richer ଓ more varied (ସମୃଦ୍ଧତର ଓ ବିଚିତ୍ରତର) କରି ତୋଳିବ। ଏହିଟି କଣ କମ୍ ସୁବିଧାର କଥା ? ଅନୁଲୋମର ଆହୁରି ଅନେକ ସୁଫଳ ଅଛି। ମୁଁ ଗୋଟିଏ ଦିଗର କଥାହିଁ ଏଠାରେ କହିଲି।

ଆ.ପ୍ର. ୧୨/୨୭.୫.୧୯୪୮

## ।। ଅନୁଲୋମ–ଜାତ ସନ୍ତାନମାନେ କିପରି ତାଙ୍କର ପଦବୀ ଲେଖିବେ ।।

ଅନୁଲୋମଜ ସନ୍ତାନମାନଙ୍କର ଉପାଧି (ପଦବୀ) ଲେଖିବା ସମୟରେ ପିତାର ଉପାଧି (ପଦବୀ) ସହିତ ସେମାନଙ୍କର ସ୍ୱ-ସ୍ୱ ବର୍ଣ୍ଣପରିଚୟ ବନ୍ଧନୀରେ ଲେଖିବାର ଅଭ୍ୟାସ କରିବା ଭଲ। ଧରାଯାଉ, ବାପା ବିପ୍ର ଚଟ୍ଟୋପାଧ୍ୟାୟ, ମା ବୈଶ୍ୟା, ସେମାନଙ୍କର ସନ୍ତାନ ପଦବୀ ଲେଖିବେ ଚଟ୍ଟୋପାଧ୍ୟାୟ (ଅମ୍ବଷ୍ଠ)। ଏହି ପ୍ରଥା ପ୍ରଚଳନ ନ ହେଲେ ପରେ ବିବାହବେଳରେ ଗୋଳମାଳ ହୋଇ ଯାଇ ପାରେ। ଏହା କରିବାହିଁ ଦରକାର।

ଆ.ପ୍ର. ୧୨/୨୭.୫.୧୯୪୮

## ।। ଅନୁଲୋମର ତେଜ କିପରି ସନ୍ତାନଠାରେ ସଂକ୍ରାମିତ କରା ଯାଏ ।।

ଅନୁଲୋମ ଅସବର୍ଣ୍ଣ ବିବାହ–ସମ୍ବନ୍ଧରେ ଗୋଟିଏ ଛଡ଼ା (ବାଣୀ) ପଢ଼ିବା ସମୟରେ ଶ୍ରୀଶ୍ରୀଠାକୁର କହିଲେ–ଏଥିରେ ଛୁଆପିଲାମାନଙ୍କର ଖୁବ୍ vigour (ତେଜ) ହୁଏ।

କେଷ୍ଟଦା – Science of heredity (ବଂଶଗତ–ବିଜ୍ଞାନ) କହେ ଯେ hybrid vigour (ସଂମିଶ୍ରଣୋଦ୍ଭୂତ ଜାତକର ତେଜ) inherited (ତାର ସନ୍ତାନର ଧାରେ ସଂକ୍ରମିତ) ହୁଏ ନା।

ଶ୍ରୀଶ୍ରୀଠାକୁର – ତାର ପୁଣି କାଇଦା ଅଛି। ଏହିସବୁ ପିଲାମାନଙ୍କର ଏହି ଧରଣର ହି ଥାକର ଉପଯୁକ୍ତ ଝିଅ ବିବାହ କରିବା ଦରକାର। ବଂଶ ପରମ୍ପରା କ୍ରମେ କେତେ ପୁରୁଷ ଧରି ଏହି ପ୍ରକାର କରିଲେ ଏହି ବଂଶଧାରା ଗୋଟିଏ stable basisରେ (ଅଟଳ ଭିତ୍ତିରେ) ସିଛିଡ଼ା ହୁଏ। ଏହି ସ୍ତରରେ ଉପନୀତ ନ ହେବା ପର୍ଯ୍ୟନ୍ତ ଏହି ଧାରାର ପୁରୁଷ- ସନ୍ତାନମାନଙ୍କର ବାହା-ସାହା ଏହି ଭାବରେ ଚାଲିବା ଭଲ। ଏହା ମୋର ମତ। ଆଉ ଝିଅମାନଙ୍କୁ ଉଚ୍ଚ ଘରେ

ଦେବାରେତ କୌଣସି ଅସୁବିଧା ନାହିଁ। ମୋଟ କଥା ପ୍ରତିଲୋମ ବିବାହ ଅସିଦ୍ଧ। ବିହିତ ସବର୍ଣ୍ଣ ଓ ଅନୁଲୋମ ବିବାହହିଁ ବିବାହ। ଆ.ପ୍ର. ୧୨/୨୮.୫.୧୯୪୮

## ।। ଭଲ ସନ୍ତତି ଆସିବାର ପଥ କିପରି ସୃଷ୍ଟି ହୁଏ।।

ଆମ୍ଭମାନଙ୍କର ଅସ୍ତିତ୍ୱ–ପୋଷଣୀ ଚିନ୍ତା, ବାକ୍ୟ ଓ କର୍ମଗୁଡ଼ିକ ଆମ୍ଭମାନଙ୍କ biological base (ଜୈବୀ ଭିତ୍ତି)-ଟାକୁ transform (ପରିବର୍ତ୍ତନ) କରି better progeny (ଆହୁରି ଭଲ ସନ୍ତତି) ଆସିବାର ପଥ ସୃଷ୍ଟି କରେ। ବିଜ୍ଞାନ ଯଦି ବି କହେ ଯେ acquired qualities (ଅର୍ଜିତ ଗୁଣଗୁଡ଼ିକ) transmitted (ସନ୍ତାନ ମଧ୍ୟରେ ସଂକ୍ରମିତ) ହୁଏ ନା କିନ୍ତୁ... ମୁଁ କହେ ତପସ୍ୟାରେ ମଣିଷ transmissible qualities (ସଂକ୍ରମଣ ଯୋଗ୍ୟ ଗୁଣାବଳୀ) acquire (ଅର୍ଜନ) କରି ପାରେ। ପୁରୁଷର ଯଦି ଇଷ୍ଟଙ୍କ ପ୍ରତି ଅନୁରତି ଓ ଅନୁଗତି ଥାଏ, ତାର ବିବାହ ଯଦି ଠିକ ଭାବରେ ହୁଏ ଏବଂ ସ୍ତ୍ରୀର ଯଦି ସ୍ୱାମୀଙ୍କ ପ୍ରତି ନିଶା, ଅନୁରତି ଓ ଅନୁଗତି ଥାଏ, ତେବେ ସେଠାରେ ସନ୍ତାନର (ଜନ୍ମଗତ) ସମ୍ପଦ ଖୁବ୍ ବଢ଼ି ଯାଏ। ମନେ ରଖିବାକୁ ହେବ – ଅନୁରତି ଓ ଅନୁଗତିର ମଧ୍ୟରେ ଅଚ୍ଛେଦ୍ୟ ସମ୍ପର୍କ ବିଦ୍ୟମାନ। ଅନୁରତିଟା ଅନୁଗତିକୁ ବଢ଼ାଇ ତୋଳେ, ପୁଣି ଅନୁଗତିଟା ଅନୁରତିକୁ ବଢ଼ାଏ। ଅନୁଗତିଟା ହେଲା ଅନୁରତିର ସକ୍ରିୟ ଅଭିବ୍ୟକ୍ତି। ପିତାମାତା ଉଭୟଙ୍କର ଅନୁରତିର ଓ ଅନୁଗତିର intensity ଓ continuity (ତୀବ୍ରତା ଓ କ୍ରମାଗତି)-ର ଉପରେ ପୁଣି ସନ୍ତାନର longevity (ଆୟୁ) ନିର୍ଭର କରେ।

ଯେଉଁ ସବୁ ପୁରୁଷର ଊର୍ଦ୍ଧ୍ୱମୁଖୀ ଟାଣ ନାହିଁ, ବିସ୍ତାରମୁଖୀ ଚଳନ ନାହିଁ, ଏକ କଥାରେ ପ୍ରକୃତ ବ୍ରହ୍ମଚର୍ଯ୍ୟର ଭିତ୍ତି ନାହିଁ, sexual leaning ଓ obsession (ଯୌନ ଆନତି ଓ ଅଭିଭୂତି) ଯେଉଁମାନଙ୍କୁ ଆଚ୍ଛନ୍ନ କରି ରଖେ, ଅଳ୍ପରେହିଁ ଯେଉଁମାନେ ଆତ୍ମହରା ହୋଇପଡ଼ନ୍ତି, ମୋର ମନେ ହୁଏ ସେମାନଙ୍କର ପୁଅଝିଅଙ୍କର ଦୀର୍ଘାୟୁ ହେବାର ସମ୍ଭାବନା କମ୍ ଥାଏ। ସେମାନେ week (ଦୁର୍ବଳ) ହୁଅନ୍ତି, susceptibility to disease and depravity (ରୋଗ ଏବଂ ଦୁର୍ନୀତିର ପ୍ରତି ପ୍ରବଣତା) ସେମାନଙ୍କୁ କମ୍ ରିହାତି ଦେଇଥାଏ।

କିନ୍ତୁ ଯେଉଁ ପୁରୁଷ ସକ୍ରିୟ ଭାବରେ ଆଦର୍ଶନିଷ୍ଠ, ଶ୍ରେୟଶ୍ରଦ୍ଧାପରାୟଣ, ଉଚ୍ଚଚିନ୍ତା ଓ ମହତ କର୍ମରେ ସ୍ୱଭାବତଃ ହିଁ ବ୍ୟାପୃତ ରହେ, sex-urgeର (ଯୌନ-ଆକୂତିର) ଉପରେ ଯାହାର କିଛିଟା control (ଆଧିପତ୍ୟ) ଅଛି, ସେ ଯଦି ସ୍ତ୍ରୀ ଦ୍ୱାରା properly

solicited (ଯଥାଯଥଭାବରେ ପ୍ରାର୍ଥିତ/ଅନୁରୁଦ୍ଧ) ହୋଇ intense healthy effulgence of emotion and affection (ଗଭୀର ଆବେଗ ଓ ସ୍ନେହର ଜୀବନୀୟ ପ୍ରଦୀପ୍ତି) ନେଇ ସ୍ତ୍ରୀଠାରେ ଉପଗତ ହୁଏ ଏବଂ ଏହାରି ଭିତର ଦେଇ ଯଦି କୌଣସି ସନ୍ତାନ ଆସେ, ତାର ସ୍ୱାସ୍ଥ୍ୟ, ଆୟୁ, ମେଧା, ବୁଦ୍ଧି, ବଳ ଉତ୍କର୍ଷ ଲାଭ କରେ ବୋଲି ମୁଁ ବିଶ୍ୱାସ କରେ। ଅବଶ୍ୟ ବିବାହ ଠିକ୍‌ଭାବରେ ହେବା ଦରକାର ଏବଂ ସ୍ୱାମୀ ପ୍ରତି ସ୍ତ୍ରୀର ଗଭୀର ଶ୍ରଦ୍ଧା, ଭଲପାଇବା ରହିବା ଦରକାର। କେବଳ ମୌଖିକ ଭଲପାଇବା ରହିଲେ ହେବ ନାହିଁ। ଭଲପାଇବାଟା କେତେ ପରିମାଣରେ active ଓ unrepelling (ସକ୍ରିୟ ଓ ଅଚ୍ୟୁତ) ତାହାରି ଉପରେହିଁ ସେମାନଙ୍କର ଉଦ୍‌ବର୍ଦ୍ଧନ ଓ ସୁସନ୍ତାନର ପ୍ରଜନନ ନିର୍ଭର କରେ। ସେହିପରି ଭଲପାଇବା ରହିଲେ ସ୍ତ୍ରୀ ସ୍ୱାମୀର ସୁଖ-ସୁବିଧା ପାଇଁ ବ୍ୟତିବ୍ୟସ୍ତ ନ ହୋଇ ରହିପାରେ ନା, ମୁଣ୍ଡ ଖଟାଇ–ଖଟାଇ ବିଭିନ୍ନ service (ସେବା) ନିଜ ତରଫରୁ ଦେଇଥାଏ। ଆଉ, ଏଥି ପାଇଁ ଯେତେ କଷ୍ଟହିଁ ହେଉ ନା କାହିଁକି, ସେଥିରେ କାତର ହୁଏ ନା। ଆ.ପ୍ର. ୧୨/୩.୬.୧୯୪୮

## ।। ବିବାହ କ୍ଷେତ୍ରରେ ବିଧି ଓ ବିଜ୍ଞାନର ବିରୁଦ୍ଧରେ ଗଲେ କଣ ହେବ ।।

(ଆର୍ଯ୍ୟ ଭାରତୀୟ ସମାଜରେ) ବର୍ଣ୍ଣାଶ୍ରମର ବିରୋଧୀ ଚଳନରେ କେହି ଚାଲିଲେ ସମାଜ ତାକୁ ଛାଡୁ ନଥିଲା। ଖିଆଲ-ଖୁସି ଅନୁସାରେ ବାହା-ସାହା ହେବାର ଜୋ ନ ଥିଲା। ଆଜି ଆମେ ରୋହିଣୀ ଚୌଧୁରୀର ଝିଅକୁ ମେହେନ୍ତର ହାତରେ ଦେବାକୁ କୁଣ୍ଠିତ ନୋହୁଁ। ତାର ଫଳଟା କଣ ହୁଏ, ତାହା କଣ ଆମେ ଭାବି ଦେଖିଛୁ ? ଏହାଦ୍ୱାରା ଆପଣଙ୍କ ଝିଅ ତ ତଳକୁ ଓହ୍ଲାଇ ଯାଏ,ଏପରିକି ଆପଣ ପର୍ଯ୍ୟନ୍ତ ନିଜର ଜ୍ୱାଇଁର ସନ୍ତୋଷ ପାଇଁ ତାର culture-ର (କୃଷ୍ଟିର) ଦିଗକୁ ଓହ୍ଲାଇବେ। ଏହାର ଭିତର-ଦେଇ ଯେଉଁ ପ୍ରତିଲୋମ ସନ୍ତାନର ଜନ୍ମ ହୁଏ, ସେ ନା ପାଇବ ବାପର ଭଲଟା ନା ପାଇବ ମାଆର ଭଲଟା। ଶ୍ରଦ୍ଧାହୀନତା, ବିଶ୍ୱାସଘାତକତା ଓ ପରିଧ୍ୱଂସ-ପ୍ରବଣତାହିଁ ତାର ନିୟାମକ–ପ୍ରବୃତ୍ତି ହୁଏ। ଦେଶର ମଣିଷ ଯଦି ଏହି ପ୍ରକାରର ହୁଅନ୍ତି, ତେବେ ତାର ଭାବିଷ୍ୟତ କଣ ହୋଇପାରେ ଭାବିଲେ ଶରୀରର ଲୋମ ଟାଙ୍କୁରି ଉଠେ (କଥା କହିବା ସହିତ ଦେଖାଗଲା ଶ୍ରୀଶ୍ରୀଠାକୁରଙ୍କର ଆଖିମୁହଁରେ ଭୀତି-ବିହ୍ୱଳତା ଏବଂ ଦେହରେ ରୋମାଞ୍ଚର ଲକ୍ଷଣ ପରିସ୍ଫୁଟ ହୋଇ ଉଠିଛି)। କିନ୍ତୁ ନୀଚ ଘରର ଝିଅ ଯଦି ଆପଣଙ୍କ ଘରକୁ ଆସେ, ତେବେ ସେ ମଧ୍ୟ ଉନ୍ନତ ହୁଏ

ତାର ପେଟରେ ସନ୍ତାନ ମଧ୍ୟ ଭଲ ହୁଏ। ତାର ପିତୃବଂଶ ପର୍ଯ୍ୟନ୍ତ ଠେଲି ଉଠନ୍ତି। ଆଉ, ପ୍ରାୟଶଃ ଅନୁଲୋମ ସନ୍ତାନଗୁଡ଼ିକ superior-bio-education (ଉନ୍ନତ ଜୈବ ଓ ଶିକ୍ଷାଗତ ପ୍ରେରଣା) ପାଇ ଖୁବ୍ energetic (ଉଦ୍ୟମୀ) ହୋଇ ଉଠନ୍ତି। ବିଷ୍ଠା ଭିତରେ ବୁଟର ମଞ୍ଜି ପୋତିଲେ ବୁଟ ଗଛହିଁ ହେବ। ତେନ୍ତୁଳି ମଞ୍ଜିରୁ ତେନ୍ତୁଳିହିଁ ହୁଏ, ଅବଶ୍ୟ soil, climate ଓ nurture (ମାଟି, ଜଳବାୟୁ ଓ ପୋଷଣ)-ର ଦିଗକୁ ମଧ୍ୟ ଲକ୍ଷ୍ୟ ରଖିବା ଦରକାର।

(ନିମ୍ନ ବର୍ଣ୍ଣର) ଯିଏ ଯେତେ ବଡ଼ ଗଣ୍ୟ-ମାନ୍ୟହିଁ ହେଉ ନା କାହିଁକି, superior-heredity (ଉଚ୍ଚତମ ବଂଶାନୁକ୍ରମିକତା)-ସମ୍ପନ୍ନ ଝିଅ ବିବାହ କରିବାଟା ଅର୍ଥାତ୍ ପ୍ରତିଲୋମ ବିବାହ ସର୍ବୋପରି ନିଷିଦ୍ଧ। ଏହା ଆର୍ଯ୍ୟ-ବିଗର୍ହିତ। ଏହି ଜିନିଷଟା ଯେପରି ପ୍ରଶ୍ରୟ ନ ପାଏ, ସମସ୍ତ ସମାଜର ସେ ଦିଗକୁ ଲକ୍ଷ୍ୟ ରଖିବା ଦରକାର। ଏହାଦ୍ୱାରା କେତେବେଳେ ଭଲ ହୁଏ ନାହିଁ। ବିଧି ଓ ବିଜ୍ଞାନର ବିରୁଦ୍ଧରେ ଯିଏ ଯାହା କରୁ, ତାକୁ ହିଁ ତାର ଫଳ ପାଇବାକୁ ହେବ। ଯାହା ସହିତ ଅପଜନନ ଜଡ଼ିତ, ତାର ଫଳାଫଳ କେବଳ ଗୋଟିଏ ପରିବାର ମଧ୍ୟରେ ସୀମିତ ରହେ ନାହିଁ। କାଳେ-କାଳେ ପୁରା ସମାଜରେ ତାର ବିଷମୟ ଫଳ ଚରେଇ ଯାଏ। କାହାରି biological make-up-ର (ଜୈବୀ ସଂସ୍ଥିତିର) ଭିତରେ serious anomaly (ଗରୁତର ବିଶୃଙ୍ଖଳା) ପ୍ରବେଶ କଲେ ତାର ପ୍ରତିକାର ଦୁରୂହ ହୋଇ ଉଠେ। ତେଣୁ, ଏହା ବିରୁଦ୍ଧରେ ପ୍ରବଳ ଜନମତ ଗଢ଼ି ତୋଳିବା ଦରକାର।

ଆ.ପ୍ର. ୧୨/୫.୬.୧୯୪୮

## ॥ ଆନ୍ତଃ-ପ୍ରାଦେଶିକ ବିବାହ ହୋଇ ପାରେ କିନା ॥

ବିହାରୀ କାୟସ୍ଥ, ବଙ୍ଗାଳୀ କାୟସ୍ଥ, ଅସମୀୟା କାୟସ୍ଥ ଇତ୍ୟାଦିଙ୍କ ମଧ୍ୟରେ ବିଶେଷ କୌଣସି ପାର୍ଥକ୍ୟ ଅଛି ବୋଲି ମନେ ହୁଏ ନା। ସେମାନଙ୍କ ମଧ୍ୟରେ ଏକହିଁ ଗୋତ୍ର ମିଳେ। ଆର୍ଯ୍ୟବିଧି-ଅନୁଯାୟୀ ବିଭିନ୍ନ ପ୍ରଦେଶରେ ଏମାନଙ୍କ ମଧ୍ୟରେ ବିବାହ ହୋଇପାରେ...। ଅନ୍ୟାନ୍ୟ ବର୍ଣ୍ଣ ସମ୍ବନ୍ଧରେ ମଧ୍ୟ ଏକଥା ଚଳେ। ତେବେ ବିବାହ ବିଷୟରେ ଯେଉଁ-ଯେଉଁ ନୀତି-ନିୟମ ମାନି ଚାଲିବାର କଥା, ସବୁ କ୍ଷେତ୍ରରେ ସେଦିଗକୁ ତୀକ୍ଷ୍ଣ ନଜର ରଖିବା ଦରକାର। ବିହିତ ଭାବରେ inter-provincial marriage (ଆନ୍ତଃ-ପ୍ରାଦେଶିକ ବିବାହ) ଯଦି ଚଳେ, ତାହା national integration (ଜାତୀୟ ସଂହତି)-କୁ help (ସାହାଯ୍ୟ) କରେ। ଏହା ଯଦି ନ କରୁ ତେବେ becoming (ବିବର୍ଦ୍ଧନ)-କୁହିଁ sacrifice (ତ୍ୟାଗ) କରା ହେବ। ଆ.ପ୍ର. ୧୨/୫.୬.୧୯୪୮

## ।। ଏକ ଗୋତ୍ର ମାନେ କଣ ।।

ସେଠାରେ ମଧ୍ୟ (ବିହାରରେ, ଆସାମରେ) ଗୋତ୍ର ଅଛି, ଏଠାରେ ମଧ୍ୟ (ବଙ୍ଗଳାରେ) ଗୋତ୍ର ଅଛି। ଏକ ଗୋତ୍ର ମାନେ same class (ଏକ ବଂଶ), same blood (ଏକ ରକ୍ତ)। ଏକ ଗୋତ୍ରହିଁ ତ ବିଭିନ୍ନ province-ରେ (ପ୍ରଦେଶରେ) ମିଳେ। ତା ମାନେ ଏକ ବଂଶ ବିଭିନ୍ନ ସ୍ଥାନରେ ଅଛନ୍ତି।

ଆ.ପ୍ର. ୧୨/୫.୬.୧୯୪୮

## ।। ସହଜାତ-ସଂସ୍କାର କିପରି ଭାବରେ ହୁଏ ।।

Instinct (ସହଜାତ ସଂସ୍କାର)-ର expression (ପ୍ରକାଶ) ହୁଏ habit ଓ behaviour-ରେ (ଅଭ୍ୟାସ ଓ ବ୍ୟବହାରରେ)। ତପସ୍ୟା ଓ ବାରମ୍ବାର (ପୁନଃ-ପୁନଃ) ଚେଷ୍ଟାର ଫଳରେ acquired habits (ଅର୍ଜିତ ଗୁଣଗୁଡ଼ିକ) ପୁଣି କ୍ରମେ instinct (ସହଜାତ ସଂସ୍କାର)-ରେ ପର୍ଯ୍ୟବସିତ ହୁଏ। Acquired habits (ଅର୍ଜିତ ଅଭ୍ୟାସଗୁଡ଼ିକ) instinct-ରେ (ସହଜାତ ସଂସ୍କାରରେ) ପରିଣତ ହେବାର ପଥରେ ଯେତେବେଳେ ଚାଲେ, ସେତେବେତେ କେତୋଟି generation (ପୁରୁଷ) ଏପରି-ଭାବରେ nurture (ପୋଷଣ) ଦେବା ଓ ଲକ୍ଷ୍ୟ ରଖିବା ଦରକାର ଯେପରି re-version (ପୂର୍ବାନୁବୃତ୍ତି) ନ ହୁଏ। ସେତେବେଳେ ଠିକ୍-ଠିକ୍ instinct (ସହଜାତ ସଂସ୍କାର) ହୁଏ। ତପସ୍ୟା ଓ ଜନନ ଏହି ଦୁଇଟିକୁ ଠିକ୍ ରଖିବା ଦରକାର।

ଆ.ପ୍ର. ୧୨/୧୭.୬.୧୯୪୮

## ।। ପୁଅର-ସ୍ତ୍ରୀ କଣ ଦେଖି ଠିକ୍ କରିବ ।।

ଝିଅ (ପୁଅର-ସ୍ତ୍ରୀ) ଆଣିବାକୁ ଗଲେ ବଂଶ ଓ ପ୍ରକୃତିର ସଙ୍ଗତି ଦେଖିବା ଦରକାର, ବୟସ ଓ ସ୍ୱାସ୍ଥ୍ୟ ଦେଖିବା ଦରକାର, ଚାଲିଚଳନ, ଅଭ୍ୟାସ-ବ୍ୟବହାର ଓ କର୍ମକୁଶଳତା ଦେଖିବା ଦରକାର, ମା କିପରି ଦେଖିବା ଦରକାର, ପାରିପାର୍ଶ୍ୱିକ କିପରି ଦେଖିବା ଦରକାର। ଏହି ସବୁ ନୀତିବିଧି-ଅନୁଯାୟୀ କାମ କରିଲେ ଅନେକ ବିବାହ ଠିକ୍ ହୁଏ।

ଆ.ପ୍ର. ୧୨/୧୮.୬.୧୯୪୮

## ।। ସ୍ତ୍ରୀ ମନୋବୃତ୍ତ୍ୟନୁସାରିଣୀ ହୋଇ ଉଠେ କିପରି ।। ୧୪୪

(ଝିଅ) ସ୍ତ୍ରୀ ଯଦି ସ୍ୱାମୀକୁ ବିହିତଭାବରେ ବରଣ କରେ, ତାହେଲେ ତାର ଧନ୍ଦା ରହେ କେଉଁଥିରେ କିପରିଭାବରେ ସେ ତାକୁ ଖୁସି କରିବ, ଏହି ଭାବରେ ସ୍ୱତଃହିଁ ସେ ମନୋବୃତ୍ତ୍ୟନୁସାରିଣୀ ହୋଇ ଉଠେ। ରୂପ ମୋହରେ ଆକୃଷ୍ଟ ହୋଇ ବିବାହ କରିଲେ, ଅଳ୍ପଦିନରେ ଭାବ ନଷ୍ଟ ହୋଇ ଯାଏ।

ଆ.ପ୍ର. ୧୨/୧୮.୬.୧୯୪୮

## ।। ପୁଅଝିଅର ବିବାହ ଠିକ୍ ଭାବରେ ହୁଏ ନା କେତେବେଳେ ।।

ଠିକ୍‌ଭାବରେ କରିଲେ ତ ଭଲ ! ଅନେକ ସ୍ଥାନରେ ବାପାକୁ ପ୍ରାଧାନ୍ୟ ଦେଉନା। ଅନେକ ବାପା ପୁଣି ଠିକ୍‌ଭାବରେ ଦେଖନ୍ତି ନାହିଁ। ମଞ୍ଜି ନ ଦେଖି ମାଂସ ଦେଖନ୍ତି। ଭାବନ୍ତି ଦୁଇଟା ଖାଇବାକୁ ପାଇବ। ଏହି ଭାବରେ ହୁଏତ ନିମ୍ନବର୍ଣ୍ଣର ଘରେହିଁ ଝିଅ ଦେଲେ। ରୋଜଗାର ଦେଖନ୍ତି, କାର୍ତ୍ତିକ ପରି ଚେହେରା ଦେଖି ଭୂଲି ଯାଆନ୍ତି। ଲୋଭ ବଶତଃ ଝିଅ ଦେଲ, ଫଳରେ ଝିଅ ପେଟରୁ ଚଣ୍ଡାଳ ଜନ୍ମ ନେଲା। ବାହା-ସାହା ବ୍ୟାପାରରେ ବିଶେଷ ଭାବରେ ଲକ୍ଷ୍ୟ ରଖିବା ଦରକାର ଯେପରି କୌଣସିଭାବରେ ପ୍ରତିଲୋମ-ସଂଶ୍ରବ ନ ହୁଏ। ଆ.ପ୍ର. ୧୨/୧୮.୬.୧୯୪୮

## ।। କୁଳୀନ ଘରର ଝିଅ ନୀଚ ଘରେ ବାହା ହେଲେ ଖରାପ ହୁଏ କିନା ।।

ଖରାପ ହେବ ନାହିଁ ? ଏଇଥିରେତ ପୁରାପୁରି ବରବାଦ୍ ହୋଇ ଯାଇଛି। ବିବାହାଦି ଠିକ୍‌ଭାବରେ ନ ହେବାରୁ ବହୁଦିନ ଧରି ଦେଶରେ ଭଲ ମଣିଷ କମ୍ ଜନ୍ମ ନେଉଛନ୍ତି। ଜଣେ ପୁରୁଷ ଯେତେ ହିଁ ଉନ୍ନତ ହେଉ ତାର ଯଦି ପ୍ରତିଲୋମ ବିବାହ ହୁଏ, ସନ୍ତାନମାନେ କିନ୍ତୁ ଭଲ ହୋଇ ପାରନ୍ତି ନାହିଁ। ପୁଣି ସବର୍ଣ୍ଣ ଓ ଅନୁଲୋମ କ୍ଷେତ୍ରରେ ମଧ୍ଯ ବିବାହର ନୀତି-ନିୟମଗୁଡ଼ିକ ଠିକ୍‌ଭାବରେ ପାଳନ କରିବା ଦରକାର। ଏଥିରେ ବ୍ୟତ୍ୟୟ ହେଲେ ଖରାପ ହୁଏ। ଆ.ପ୍ର. ୧୨/୧୮.୬.୧୯୪୮

## ।। ପ୍ରତିଲୋମ ସନ୍ତାନର କଣ କଣ ଦୋଷ ରହିବହିଁ।। ୧୪୫

ପ୍ରତିଲୋମ ସନ୍ତାନର ଅଳ୍ପ ବହୁତ brain-ର (ମସ୍ତିଷ୍କର) defect (ଦୋଷ), nerve-ର (ସ୍ନାୟୁର) defect (ଦୋଷ) ଓ physical defect (ଶାରୀରିକ ଦୋଷ) ରହିବହିଁ। ସେମାନେ concentric (ସୁକେନ୍ଦ୍ରିକ) ଓ grateful (କୃତଜ୍ଞ) କମ୍ ହୋଇ ପାରନ୍ତି। ଆ.ପ୍ର. ୧୨/୧୮.୬.୧୯୪୮

## ।। ସନ୍ତାନ-ସନ୍ତତିର ଆୟୁ କେଉଁଥିରେ ବଢ଼େ।।

ପୁରୁଷ ନାରୀ ଯେତେ ସକ୍ରିୟ ଭାବରେ ଶ୍ରେୟନିଷ୍ଠ ହେବେ, ବିବାହ ଯେତେ ଠିକ୍‌ଭାବରେ ହେବ, ନାରୀର ସ୍ୱାମୀ ଭକ୍ତି ଯେତେ ଅଟୁଟ ହେବ, ବଂଶପରମ୍ପରାରେ ସନ୍ତାନସନ୍ତତିର ଆୟୁ ସେତେ ବୃଦ୍ଧିର ଦିଗକୁ ଯିବ। ଆ.ପ୍ର. ୧୨/୨୩.୬.୧୯୪୮

## ।। ଗର୍ଭାଧାନ ସଂସ୍କାର ଆଜି ମଧ୍ୟ ଚାହୁଁ କିନା।।

ସଂସ୍କାର ଚାହୁଁ ଅର୍ଥାତ୍ ସାରାଜୀବନ ସଂସ୍କୃତିମାଫିକ ଚାଲିବା ଚାହୁଁ। କେବଳ ଅନୁଷ୍ଠାନ ଟିକକରେ ହେବ ନାହିଁ। ଗର୍ଭାଧାନ କରିବାକୁ ଗଲେ ତା ପୂର୍ବରୁ ଆଚାର, ନିୟମ, ବ୍ରହ୍ମଚର୍ଯ୍ୟ ପାଳନ କରିବା ଦରକାର। ପରେ ମଧ୍ୟ ଠିକ୍‌ଭାବରେ ଚାଲିବା ଦରକାର। କେବଳ ବାହ୍ୟିକ ଆଚାରହିଁ ଯଥେଷ୍ଟ ନୁହେଁ। ଶାରୀରିକ, ମାନସିକ, ଆଧ୍ୟାତ୍ମିକ — ସବୁ ରକମର ଆଚାର-ନିୟମ ଠିକ୍ ରଖିବା ଦରକାର। ଆଧ୍ୟାତ୍ମିକ ଆଚାର-ନିୟମ ମାନେ tenacious adherence to Ideal & culture (ଇଷ୍ଟ ଓ କୃଷ୍ଟିର ପ୍ରତି ଲାଗି ରହିବା/ସୁତୀବ୍ର ନିଷ୍ଠା)। ଏକଭକ୍ତିର୍ବିଶିଷ୍ୟତେ।

ଆ.ପ୍ର. ୧୨/୨୩.୬.୧୯୪୮

## ।। ସହବାସ ସମୟର ତାତ୍ପର୍ଯ୍ୟ କଣ।।

କେଷ୍ଟଦା – ପଞ୍ଜିକାରେ ହୁଏତ ଅଛି ରାତ୍ରି ୩ଟା ପରେ ସହବାସର ସମୟ।

ଶ୍ରୀଶ୍ରୀଠାକୁର – ଶୋଇବା ପରେ ମସ୍ତିଷ୍କରେ ଚାଞ୍ଚଲ୍ୟ ନ ଥାଏ, ତେଣୁ ତାହା ହୁଏତ ଉପଯୁକ୍ତ ସମୟ। ଅବଶ୍ୟ ପ୍ରତ୍ୟେକଟି ଜିନିଷର ବିଭିନ୍ନ ଦିଗ ଅଛି। ତେଣୁ ଯେତେବେଳେ ଯାହା ସମୀଚୀନ ଓ ଶୁଭ ସେତେବେଳେ ତାହା କରଣୀୟ, ଅବଶ୍ୟ ଯଦି ପ୍ରୟୋଜନ ହୁଏ। ତେଣୁ ବିଭିନ୍ନ ସମାବେଶ-ଅନୁଯାୟୀ ବିଭିନ୍ନ ସମୟର ଉଲ୍ଲେଖ ଥାଏ।

କେଷ୍ଟଦା – ଏହି ଜିନିଷଟି କଣ ଏକ ସମୟରେ ବାସ୍ତବରେ ଥିଲା ? ଯୌନଜୀବନ ସଂଯତ ବା ଯାନ୍ତ୍ରିକ ନ ହେଲେ ତ ଏହା ହୁଏ ନା !

ଶ୍ରୀଶ୍ରୀଠାକୁର – ଥିଲା। ସବୁହିଁ ଅଭ୍ୟାସର ଫଳ। ଆମ ଦେଶରେ କେତେ ରକମର ଅନୁଶୀଳନ ହୋଇ ଯାଇଛି। ନିଷ୍ଠା ରହିଲେ, ଆଚାର-ଆଚରଣ ରହିଲେ, ଲୋକଶିକ୍ଷ ରହିଲେ, ଯାଜନ ରହିଲେ, ପରିବେଶ ଓ ଜନମତ ଠିକ୍‌ଭାବରେ ଗଢ଼ି ତୋଳି ପାରିଲେ ଅନେକ କଠିନ ଜିନିଷ ସହଜ ହୋଇ ଆସେ।

ଆ.ପ୍ର. ୧୨/୨୩.୬.୧୯୪୮

## ।। ପୋଷ୍ୟପୁତ୍ର କିପରି ନେବା ଉଚିତ ।।

ପୋଷ୍ୟପୁତ୍ର ନେବାକୁ ଗଲେ ସଗୋତ୍ରରେ ନେବା ଉଚିତ। ନଚେତ ପରେ ବିବାହାଦିରେ ଗୋଳମାଳ ହୋଇ ପାରେ। ଆ.ପ୍ର. ୧୨/୨୮.୬.୧୯୪୮

## ।। ସ୍ତ୍ରୀ ସ୍ୱାମୀକୁ କିପରି ଦେଖିବାକୁ ଚାହେଁ ।।

ଅନେକ ଜାଗାରେ ଦେଖାଯାଏ ସ୍ତ୍ରୀ ପ୍ରତି (ସ୍ୱାମୀର) ଭାବ ନାହିଁ – ଅଛି କାମ। ଘରକୁ ଆସି ବସିଛି, ଛୁକ-ଛୁକ କରି ସ୍ତ୍ରୀ ପାଖରେ ଘୁରୁଛି, ସ୍ତ୍ରୀ ପାଇଁ ପରିବା କାଟି ଦେଉଛି, ଚୂଲି ଲଗାଇ ଦେଉଛି, ପିଲାର ଝାଡ଼ା ସଫା କରୁଛି, କୁକୁରଟାକୁ ଗାଧୋଇ ଦେଉଛି। ଏହା ଭିତରେ ନା ଅଛି ପୌରୁଷ, ନା ଅଛି ପ୍ରେମ। ଏହା ଦ୍ୱାରା ସେ ମଧ୍ୟ ସୁଖ ପାଏ ନା, ସ୍ତ୍ରୀ ମଧ୍ୟ ସୁଖ ପାଏ ନା। ସ୍ତ୍ରୀ ସ୍ୱାମୀକୁ କୃତୀ ପୁରୁଷ ହିସାବରେ ଦେଖିବାକୁ ଚାହେଁ। ତେଣୁ ସ୍ତ୍ରୀ ଉପରେ ପ୍ରକୃତ ଭାବ, ଭଲପାଇବା ଗଜାଇଲେ ପୁରୁଷ ଭିତରେ ଗୋଟିଏ ଚମକ ଫୁଟି ଉଠେ। ଆ.ପ୍ର. ୧୨/୭.୭.୧୯୪୮

## ।। ବର୍ଣ୍ଣାଶ୍ରମିକ ସମାଜ କିପରି ଥିଲା ।।

ଆଜିକାଲିକାର କମ୍ୟୁନିଷ୍ଟମାନେ ଯେ କଣ କହନ୍ତି ତାହା ମୁଁ ବୁଝି ପାରେ ନାହିଁ। ଆମ୍ଭମାନଙ୍କର କମ୍ୟୁନିଜିମ୍ ଏପରି ନ ଥିଲା। ବର୍ଣ୍ଣାଶ୍ରମ ଓ joint family system (ଯୌଥ ପରିବାର ପ୍ରଥା) ହେଲା Indian (ଭାରତୀୟ) କମ୍ୟୁନିଜମ୍। ବର୍ଣ୍ଣାଶ୍ରମରେ ବୃତ୍ତି ଭାଗ କରା ଥିଲା। ପ୍ରତ୍ୟେକ ବର୍ଣ୍ଣ ତାର ବର୍ଣ୍ଣୋଚିତ କାମ କରି ଜୀବିକା ଅର୍ଜନ କରୁଥିଲେ। ଏହିଭାବରେ ପ୍ରତ୍ୟେକ ବର୍ଣ୍ଣ ପ୍ରତ୍ୟେକ ବର୍ଣ୍ଣର serve (ସେବା) କରୁଥିଲେ। ଏହି ବର୍ଣ୍ଣଗୁଡ଼ିକ

ନେଇ ସମାଜ ଗଠିତ ହେଉଥିଲା। କେହି କାହାର ବୃତ୍ତି ହରଣ କରି ପାରୁ ନଥିଲେ। Undue competition (ଅସମୀଚୀନ ପ୍ରତିଯୋଗିତା) ନ ଥିଲା, unemployment (ବେକାରତ୍ୱ) ନ ଥିଲା। ସହଜାତ-ସଂସ୍କାର ଅନୁଯାୟୀ ନିଜର ସ୍ୱାତନ୍ତ୍ର୍ୟ ଓ ଅଧିକାର ଅନୁଯାୟୀ ସମାଜର ସେବା କରି capitalist (ଧୀନକ) ହୋଇ ଉଠିବାରେ କାହାର ବାଧା ନ ଥିଲା। ସେଥିରେ ଶୋଷଣ ନ ଥିଲା, ଥିଲା ସେବା, ଥିଲା ବୈଶିଷ୍ଟ୍ୟାନୁଗ ଚଳନ, ଥିଲା ସପାରିପାର୍ଶ୍ୱିକ ଉଚ୍ଛଳ ହୋଇ ଭଗବାନଙ୍କଠାରେ ସାର୍ଥକ ହେବାର ସୁବର୍ଣ୍ଣ ସୁଯୋଗ। ଆଉ, joint familyରେ (ଯୌଥ ପରିବାରରେ) ସମସ୍ତଙ୍କର ସମାନ ଅଧିକାର ଥିଲା। ବୃଦ୍ଧ, ରୋଗୀ ବା ଅକ୍ଷମ ଯେଉଁମାନେ ସେମାନଙ୍କର କିଛି ଦୁର୍ଭାବନା ନଥିଲା। ଗୋଟିଏ ମମତାର ଆବେଷ୍ଟନୀରେ ସେମାନେ ସମସ୍ତଙ୍କ ଆୟର ସମଭାଗୀ ହୋଇ ନିଶ୍ଚିନ୍ତ ମନରେ ଆନନ୍ଦରେ ସମୟ କାଟୁଥିଲେ ଏବଂ ସେମାନଙ୍କ ପକ୍ଷରେ ଯାହା କରିବା ସମ୍ଭବ ତାହା କରୁଥିଲେ। ଆଉ, ସମାଜର ଲକ୍ଷ୍ୟ ଥିଲା ପ୍ରତ୍ୟେକେ ଯେପରି ଉନ୍ନତିମୁଖର ହୋଇ ଚାଲନ୍ତି। ବିବାହାଦିର ନୀତି-ନିୟମ ଏପରି ଥିଲା ଯେପରି ସମାଜରେ inferior (ନିକୃଷ୍ଟ) ଜନ୍ମ ନେଇ ନ ପାରେ। ତେଣୁ, ପ୍ରତିଲୋମ ସମ୍ପୂର୍ଣ୍ଣ ନିଷିଦ୍ଧ ଥିଲା। ପ୍ରତିଲୋମରେ ଝିଅ ମଧ୍ଯ (ଅର୍ଥାତ୍ ସନ୍ତାନର ମା ମଧ୍ଯ) ନୀଚ ହୁଏ, ସନ୍ତାନ ମଧ୍ଯ ଆହୁରି ନୀଚ ହୁଏ। କେବଳ ନୀଚ କହିଲେ ସବୁ ହେଲା ନାହିଁ, ଏହି ସନ୍ତାନ ସମାଜର ଶତ୍ରୁ ହୋଇ ଉଠେ। ଫଳ କଥା, ବିବାହ ଏପରି କରି ଦେବାକୁ ହୁଏ, ଯେପରି ଘରେ-ଘରେ ନାରାୟଣଙ୍କର ଆବିର୍ଭାବ ହୁଏ। ତାହା ଦ୍ୱାରା ସମାଜ ଦେବସମାଜରେ ପରିଣତ ହୁଏ। ଆ.ପ୍ର. ୧୨/୮.୭.୧୯୪୮

## ।। ଆଜିକାଲିକାର ସମାଜ-ଚିତ୍ର କିପରି ।।

(ଆଜିକାଲିକାର) ଝିଅମାନେ ମଧ୍ଯ ସେମିତି ହେଙ୍ଗଳା ହୋଇଛନ୍ତି। ଜଣେ ପୁରୁଷ ଟିକିଏ ବଙ୍କା କରି ସିଗାରେଟ ଧରି ପାରିଲେ ତାକୁ ଦେଖି ଏକାଥରକେ ପାଗଳ ହୋଇ ଯାଏ। ଗୋଟିଏ ପିଲା ଟିକିଏ ଲେଖା ପଢ଼ା ଶିଖିଲେ, ଚାକିରୀ-ବାକିରୀ କରିଲେ କିମ୍ବା ସାଇନ୍ସ-ଟାଇନ୍ସର ଗଳ୍ପ କଲେ ବା ଟିକିଏ କାଇଦା କରି ଚାଲିଲେ, ସେଠାରେ କି ଆଉ ଅନ୍ୟ କୌଣସି ବିଚାର ଅଛି ? ହେଉ ନା ସେ ନିମ୍ନବର୍ଣ୍ଣଜାତ, ଅନେକ ଝିଅ ତା ପଛେ-ପଛେ ଛୁଟିବେ। ଏତେ ଫେସନ କିନ୍ତୁ ପ୍ରକୃତରେ ହୁଏତ ସତ୍ ଓ ସ୍ୱାଧୀନଭାବରେ ମାସକୁ ୨୫ ଟଙ୍କା ଉପାର୍ଜନର ମୁରାଦ ନାହିଁ, ତା ମାନେ real warth (ପ୍ରକୃତ ଯୋଗ୍ୟତା) ନାହିଁ। ପୁଣି, ଏହି ପ୍ରତିଲୋମ ବିବାହ ଯେଉଁଠାରେ ଘଟିବ, ସେଠାରେ ମସ୍ତ ବଡ଼-ବଡ଼

ନେତାମାନେ ଯାଇ ହୁଏତ ଆଶିର୍ବାଦ କରି ଆସନ୍ତି, ଜୟନିନାଦ କରି କାଗଜରେ ତାର ସ୍ତୁତି (ପ୍ରଶଂସା) ବାହାର କରନ୍ତି। ଆ.ପ୍ର. ୧୨/୮.୭.୧୯୪୮

## ।। ଏହି ଦୂରବସ୍ଥା କାହିଁକି ।।

ଦୂରବସ୍ଥା ଏପରି ଯେ ବଙ୍ଗଳାରେ ଯେପରି ରବୀନ୍ଦ୍ରନାଥଙ୍କ ସଙ୍ଗେ-ସଙ୍ଗେ ଯବନିକା-ପାତ ହୋଇଗଲା। ବଙ୍ଗଳାର top-ରେ (ଶୀର୍ଷରେ) world renowned (ବିଶ୍ୱବିଖ୍ୟାତ) ଗୋଟିଏ group (ଦଳ) ରହୁଥିଲେ। ଇଂରେଜମାନଙ୍କର ତରଫରୁ କମ୍ ଚାପ ନ ଥିଲା, ସେ ଅବସ୍ଥାରେ ମଧ୍ୟ ସେମାନଙ୍କର ଔଜଲ୍ୟ ମଳିନ ପଡ଼ିନାହିଁ, ଏତେ ପରିମାଣରେ ସେମାନଙ୍କର ସମ୍ପଦ। ଗୋଟିଏ group (ଗୁଚ୍ଛ)-ର ପରେ ଆଉ ଗୋଟିଏ group (ଗୁଚ୍ଛ) leader (ନେତା) ବଙ୍ଗଳାରେ ready (ପ୍ରସ୍ତୁତ) ହୋଇ ଉଠୁଥିଲେ। ଆଜି ଦେଖ ସେଠାରେ ଲୋକ ନାହିଁ ଅଥଚ ଭାରତର ସ୍ୱାଧୀନତା ଯଦି ଆସିଥାଏ ମୋର ମନେ ହୁଏ ତାର prime factor (ପ୍ରଧାନ ପ୍ରତିଭୂ)-ହିଁ ବଙ୍ଗଳା। ଅବଶ୍ୟ ମୁଁ ଜାଣେ ଏହା ପଛରେ ସବୁ ପ୍ରଦେଶରହିଁ ବିଶିଷ୍ଟ ଅବଦାନ ଅଛି।

ପ୍ରଫୁଲ୍ଲ – ହଠାତ୍ ଲୋକର ଅଭାବ ହେଲା କାହିଁକି ?

ଶ୍ରୀଶ୍ରୀଠାକୁର – ସେହି element (ଉପାଦାନ)-ହିଁ ନଷ୍ଟ କରି ଦେଇଛନ୍ତି।

ପ୍ରଫୁଲ୍ଲ – କିପରି ?

ଶ୍ରୀଶ୍ରୀଠାକୁର – Ism (ବାଦ)-ର ପ୍ରଭାବରେ। ଇତି ମଧ୍ୟରେ ବହୁତ ପ୍ରତିଲୋମ ହୋଇଯାଇଛି, ବୈଶିଷ୍ଟ୍ୟଟା ଭାଙ୍ଗିଯାଇଛି, ବିଭିନ୍ନ ଦିଗରୁ ତେଣୁ ବଞ୍ଚିତ ହେଉଛୁ। ଶୁଣିଛି ଘୋଡ଼ା breed (ଜନ୍ମଦାନ) କରିବା ସମୟରେ ଗୋଟିଏ ଭଲ ଘୋଡ଼ାର ଛୁଆ ସାମନାରେ ରଖି ଦିଏ। ଘୁଡ଼ୀ ତାହାକୁ ବାରମ୍ବାର ଦେଖିବାକୁ ଲାଗେ ଏବଂ ଏହା ଫଳରେ ତାର ପେଟର ପିଲା କିଛିଟା ନା କଣ ସେହି ରକମର ହୁଏ। ଆଦତ କଥା mental factor (ମାନସିକ ଦିଗ) ଗୋଟିଏ ମସ୍ତ ଜିନିଷ, ତାର nurture (ପୋଷଣ) ଆଜି କେଉଁଠି ? ସ୍ତ୍ରୀ, ପୁରୁଷ ସମସ୍ତଙ୍କର ମନ ଯେପରି ଊର୍ଦ୍ଧ୍ୱ ମୁଖୀ ହୋଇ ଉଠେ ତାର ବ୍ୟବସ୍ଥା ଦରକାର, ଆଜି ସେ–ବ୍ୟବସ୍ଥା କେଉଁଠି ? ଚାରିଆଡ଼େ ଆଜି ଓଲଟା କଥା, ଓଲଟା ଧରଣ। ତେଣୁ, ମନର ପ୍ରସାରଣ, ମନର ଉନ୍ନୟନ ଆଜି କମହିଁ ହେଉଛି। ଗୋଟିଏ ଜାତିର mental factor (ମାନସିକଦିଗ) degenerate (ଅଧୋଗତିଲାଭ) କରିଲେ ମହା ଭବନାର କଥା। ଗୋରୁ ଜନ୍ମାଇବା ବେଳକୁ ଲିନ୍‌ଲିଥଗୋ bull (ଷଣ୍ଢ)

ଖୋଜ, ଆଉ ମଣିଷ ଜନ୍ମିବାର ସମୟରେ ଖୋଜ ଅପମାନବକୁ, ଅପଜାତକୁ — ଏହି କାଇଦା ବୋଧହୁଏ ତୁମର ମନ୍ଦ ନୁହେଁ! ଆ.ପ୍ର. ୧୨/୮.୭.୧୯୪୮

## ।। ହରିଜନମାନେ ପରିଷ୍କାର-ପରିଚ୍ଛନ୍ନ ଓ ଶିକ୍ଷିତ ହେଲେ ଉଚ୍ଚବର୍ଣ୍ଣର ଝିଅକୁ ବିବାହ କରି ପାରିବେ କିନା ।।

ପରିଷ୍କାର ଓ ଶିକ୍ଷିତ ହେଲେ ମଧ୍ୟ biologically (ଜୈବସୂତ୍ରେ) ସେମାନେ ହରିଜନହିଁ। ବୀଜ ଅନୁପାତରେ ଗଛ ହୁଏ। ଆମ୍ବ ମଞ୍ଜିରୁ ପଣସ ଗଛ ଜନ୍ମେ ନାହିଁ, ପଣସ ମଞ୍ଜିରୁ ଆମ୍ବ ହୁଏ ନାହିଁ। ଗୋରୁ ବେଳକୁ ଲିନ୍‌ଲିଥଗୋ ଷଣ୍ଢ ଖୋଜା ପଡ଼େ, ଝିଅ ବେଳକୁ ତାକୁ ଦେବ ଯାହାକୁ ତାହାକୁ, ପୁଅର biological enrichment (ଜୈବ ସମୃଦ୍ଧତା) ଦେଖିବ ନାହିଁ – ଏହା ଏକ ବିଜ୍ଞାନବିରୋଧୀ ବ୍ୟାପାର। Biological compatibility (ଜୈବ ସଙ୍ଗତି) ଦେଖି ବିବାହ ଦେବା eugenics (ସୁପ୍ରଜନନ)-ର ଗୋଟିଏ ମୂଳ factor (ଦିଗ)। ତେଣୁ ଆଗରୁ ଆମଦେଶରେ ବିବାହ ଦେବାକୁ ଗଲେ ପୁଅଝିଅର ଚଉଦ ପୁରୁଷର ଖବର ନେଉଥିଲେ।

ଆ.ପ୍ର. ୧୨/୮.୭.୧୯୪୮

## ।। ସ୍ୱାମୀର ଅତ୍ୟାଚାରର ସମାଧାନ ବିବାହବିଚ୍ଛେଦ କି ନୁହେଁ ।।

ସ୍ତ୍ରୀ ମଧ୍ୟ କଣ ଅତ୍ୟାଚାର କରେ ନାହିଁ? ସ୍ତ୍ରୀ ଯେପରି ସ୍ୱାମୀର ଅତ୍ୟାଚାର ସହେ, ଅନେକ ସ୍ୱାମୀକୁ ମଧ୍ୟ ସେହିପରି ସ୍ତ୍ରୀର ଅତ୍ୟାଚାର ସହିବାକୁ ହୁଏ। ସହି-ବୋହି ଚାଲିବା ପାଇଁ ତ ବିବାହ। ଆ.ପ୍ର. ୧୨/୮.୭.୧୯୪୮

## ।। ବିପର୍ଯ୍ୟୟୀ ଜନନ ଫଳରେ କଣ ହୁଏ ।।

ଆମ୍ଭମାନଙ୍କର କେତେ ଝିଅ ଆଜି ପ୍ରତିଲୋମ ବିବାହର ଚକ୍ରରେ ପଡ଼ି ଯାଉଛନ୍ତି, ଆମ୍ଭେମାନେ ଯେପରି ଇଷ୍ଟ, କୃଷ୍ଟି ଓ ଧର୍ମ ବିସର୍ଜନ ଦେବା ପାଇଁ ପାଦ ବଢ଼ାଇହିଁ ରଖିଛୁ। ହିନ୍ଦୁର ସନ୍ତାନ ଜାଣେ ନାହିଁ ତାର ବୈଶିଷ୍ଟ୍ୟ କଣ, ତାର କରଣୀୟ କଣ। ହୀନମନ୍ୟତା–ପରାମୃଷ୍ଟ କେତେ-କେତେ ମହାଜନ ଅଛନ୍ତି ଯେଉଁମାନେ ଆଜି ମନୁସଂହିତା ପୋଡ଼ିଦେଉଛନ୍ତି। ଛୋଟ ମୁହଁରେ ବଡ଼ କଥା ହୋଇଯାଏ — ମୋର ମନେ ହୁଏ ସେମାନେ ଯେତେହିଁ ବିଦ୍ୟା ଦିଗ୍‌ଗଜ ପଣ୍ଡିତ ହୁଅନ୍ତୁ ନା କାହିଁକି ମନୁଙ୍କୁ ଧରିବା ପରି

ମୁଣ୍ଡ ସେମାନଙ୍କର ନାହିଁ। ପ୍ରତିଲୋମ ବିବାହ ଆଜି ଦେଦାର (ଜୋରସୋର) ଚଳାଉଛନ୍ତି, କିନ୍ତୁ ପ୍ରତିଲୋମର ସନ୍ତାନ ଖରାପ ହେବହିଁ। ଏହା ହେଲା ବିଧି, ଏହା ହେଲା ବିଜ୍ଞାନ। ବିଧି ଓ ବିଜ୍ଞାନକୁ ଅବହେଳା କରିଲେ ତାହା କାହାକୁ ରିହାଇ (ଛାଡ଼ିବ) ଦେବ ନାହିଁ। ନିଆଁରେ ହାତ ଦେଲେ ହାତ ପୋଡ଼ିବହିଁ ତାହା ମଣିଷ ଜାଣତରେ କରୁ ବା ଅଜାଣତାବଶତଃ କରୁ। ମଣିଷର ଜଗତରେ ସବୁଠାରୁ ମୂଲ୍ୟବାନ ଜିନିଷ ହେଲା ମଣିଷ, ଆଉ ମଣିଷର ଆଦିମ ମୂଳଧନ ହେଲା ତାର ଜନ୍ମଗତ ପ୍ରକୃତି। ଅନେକାଂଶରେ ତାହା-ହିଁ ମଣିଷର ବର୍ତ୍ତମାନ ଜୀବନର କୃତି ବା କର୍ମଧାରା ନିୟନ୍ତ୍ରିତ କରେ। ଆଉ, ତାହାରି ଉପରେ ନିର୍ଭର କରେ ତାର ଦୀକ୍ଷା, ଶିକ୍ଷା, ସାଧନା ଓ ପ୍ରଜନନର ସାର୍ଥକତା। ବିପର୍ଯ୍ୟୟୀ ଜନନର ଫଳରେ ଯେଉଁଠାରେ ଏହି ଜନ୍ମଗତ ପ୍ରକୃତି ବିଧ୍ୱସ୍ତ ହୋଇଯାଏ, ସେଠାରେ ତାର ପ୍ରତିକାର ବିଧାତାଙ୍କର ମଧ୍ୟ ଦୁଃସାଧ୍ୟ ହୋଇଉଠେ। କଥାରେ କହନ୍ତି – ମୁଣ୍ଡରେ ସର୍ପାଘାତ ହେଲେ ଦଉଡ଼ି ବାନ୍ଧିବ କେଉଁଠି ? ସେତେବେଳେ କୌଣସି ଗୁଣିଆ ଆଉ କୂଳ ପାଏ ନାହିଁ। ପ୍ରତିଲୋମ ମଧ୍ୟ ଜାତୀୟ ଜୀବନରେ ତଜ୍ଜାତୀୟ ଅଶନି-ସମ୍ପାତ ବିଶେଷ।...

ଆଗରୁ ଛୋଟ ଘରର ଝିଅକୁ ବଡ଼ ଘରେ ଦେବାର ଯେପରି ଝୋଙ୍କ ଥିଲା, ବର୍ତ୍ତମାନ ତାର ଓଲଟା ଝୋଙ୍କ ପାଇ ବସିଛି। ପ୍ରତିଲୋମରେ କେତେବେଳେବି କଣ ଭଲ ହୋଇଛି ? କୁକୁର ବେଳକୁ ଦେଖ ନାହିଁ। ଗୋଟିଏ ପ୍ରତିଲୋମ କୁକୁର treacherous (ବିଶ୍ୱାସଘାତକ) ହେବହିଁ, ସେ ଯେତେହିଁ ଦର୍ଶନଧାରୀ ହେଉନା କାହିଁକି ତାକୁ ପଚାରେ କିଏ ? କିନ୍ତୁ ଗୋଟିଏ pedigreed dog (ସଦ୍‌ବଂଶଜାତ କୁକୁର)-ର କେତେ ଆଦର। ସେ ଦେଖିବାକୁ ହୁଏତ କିଛି ନୁହେଁ ତଥାପି ତାର ଦାମ ହୁଏତ ପାଞ୍ଚଶହ ଟଙ୍କା। ସେ କୌଣସି ପ୍ରକାରେ betray (ବିଶ୍ୱାସଘାତକତା) କରିବ ନାହିଁ – ଶତ ପ୍ରଲୋଭନରେ ମଧ୍ୟ ନୁହେଁ, ଏହା-ହିଁ ତାର ବୈଶିଷ୍ଟ୍ୟ। ମଣିଷ ମଧ୍ୟ animal (ଜୀବ), କୁକୁର ମଧ୍ୟ animal (ଜୀବ), କୁକୁରର ବେଳକୁ ଯାହା ବୁଝୁ ମଣିଷ ବେଳକୁ ତାହା ବୁଝିବାକୁ ଚାହୁଁନା କାହିଁକି ? ଆ.ପ୍ର. ୧୨/୯.୭.୧୯୪୮

॥ ମଣିଷ ପରି ମଣିଷର ଅଭାବ ପୃଥିବୀରେ ଦେଖା ଦେଉଛି କାହିଁକି ॥

ଆମ୍ଭମାନଙ୍କର culture (କୃଷ୍ଟି) ଆମେ ବୁଝିବାକୁ ଚାହୁଁନା କିନ୍ତୁ ପୃଥିବୀର ଚିନ୍ତାଶୀଳ ଲୋକମାନେ ତାର ତାତ୍ପର୍ଯ୍ୟ ବୁଝିବାକୁ ଚେଷ୍ଟା କରିଛନ୍ତି। ସେମାନେ ବିବାହ-

ବିଚ୍ଛେଦର ବିଷମୟ ଫଳ ବୁଝିପାରି ତା ହାତରୁ ରିହାଇ (ବଞ୍ଚିବାର) ପାଇବାର ପଥ ଖୋଜୁଛନ୍ତି, ଆଉ ଆମେ ତାହା introduce (ପ୍ରବର୍ତ୍ତନ) କରିବା ପାଇଁ ଉଠି-ପଡ଼ି ଲାଗିଛୁଁ। ଏକ ମାଆର ପେଟରୁ ପାଞ୍ଚ ବାପର ଯଦି ସନ୍ତାନ ହୁଏ, ଝିଅମାନଙ୍କର ବହୁବିବାହ ଯଦି ହୁଏ, ତେବେ ସନ୍ତାନଗୁଡ଼ିକ ନା ପାଆନ୍ତି ମା, ନା ପାଆନ୍ତି ବାପା, କି ଅସହାୟ ଅବସ୍ଥା ସେମାନଙ୍କର। ଆଜି ପାଶ୍ଚାତ୍ୟ ଦେଶରେ ବିବାହ-ବିଚ୍ଛେଦ ଫଳରେ କି କଠିନ ଅବସ୍ଥା ଦେଖା ନ ଦେଇଛି। ତାଙ୍କ ଦେଶରେ ସେମାନେ ମଧ୍ୟ କହନ୍ତି ପାଶ୍ଚାତ୍ୟରେ ଆଜି first rate (ପ୍ରଥମ ଶ୍ରେଣୀର) ମଣିଷର ଅଭାବ ଦେଖା ଦେଉଛି। ଅନେକେ କହୁଛନ୍ତି ଏହା ମୂଳରେ ଅଛି ବିବାହ ବ୍ୟାପାରରେ maladjustment (ଅସାମଞ୍ଜସ୍ୟ)। ସେମାନେ ଯାହା ଧରି ପାରୁଛନ୍ତି ଆମେ ତାହା ଧରି ପାରୁ ନାହୁଁ। ତେଣୁ ସର୍ବନାଶ ଦିଗରେ ସର୍ବନାଶା ଆଗ୍ରହରେ ରୁଦ୍ଧଶ୍ୱାସରେ ଛୁଟି ଚାଲିଛୁ। ଆମ୍ଭମାନଙ୍କୁ ଅଟକାଇବାକୁ, ଧରିବାକୁ, ଦେଖିବାକୁ ଆଜି କେହି ନାହିଁ। ଆ.ପ୍ର. ୧୨/୯.୭.୧୯୪୮

## ।। ଆଗକାଳର କିଛି ସାମାଜିକ ପ୍ରଥାର ତାତ୍ପର୍ଯ୍ୟ କଣ ।।

ଆଗରୁ ନିୟମ ଥିଲା ବିଧବା ଭାଇବୋହୂକୁ ବିବାହ କରା ଯାଉଥିଲା, ତେଣୁ କହନ୍ତି ଦେବର, ମାନେ ଦ୍ୱିତୀୟ ବର – ସେ ନିୟମ ଅବଶ୍ୟ ଉଠିଯାଇଛି – ଏ ନିୟମ ଥିଲା ଯାହାଦ୍ୱାରା ଝିଅମାନେ ନ ବାହାରନ୍ତି — କୂଳରେ ରହନ୍ତି — କୁଳଘାତିନୀ ହେବା ମହାପାପ, କୁଳପାଳିନୀ ହୋଇ କୁଳର ନିଷ୍ଠା, ଗୌରବ develop (ବୃଦ୍ଧି) କରିବା ଥିଲା ସେମାନଙ୍କର ବଡ଼ କାମ। ଆଗରୁ ସମାଜ–ବିଧାନ ଏପରି ଥିଲା ଯେ, ବାରବନିତା କମ୍ ଥିଲା। ସେମାନେ ହିସାବ କରି ଲୋକ ନେଉଥିଲେ – ବିଶେଷତଃ ବର୍ଣ୍ଣର ହିସାବ। ବର୍ତ୍ତମାନ ପରି ଯାହାକୁ ପାଇଲେ ତାକୁ ନେଇ ଡିଗି-ତବଲା ବଜାଇବାକୁ ଆରମ୍ଭ କରି ଦେବା – ତାହା ସେମାନଙ୍କର ନ ଥିଲା। ପୂର୍ବର ବିଧାନ ଫଳରେ ବାରବନିତା ହେବାର ପ୍ରୟୋଜନହିଁ ନଥିଲା। ଆ.ପ୍ର. ୧୨/୯.୭.୧୯୪୮

## ।। ବହୁବିବାହ କିପରି ଭାବରେ ହେଉଥିଲା ।।

(ବହୁବିବାହ ଉଠି ଯାଉଛି), ସର୍ବନାଶ ହୋଇ ଯାଉଛି। କେତେଗୁଡ଼ିଏ ଝିଅ ଦୁଃସ୍ଥ ହୋଇ ରହିବେ, ଯେଉଁମାନେ ସମସ୍ତଙ୍କର ଖୋରାକ ହେବେ। ମୁସଲମାନ ମାନେ କିନ୍ତୁ ରସୁଲଙ୍କର କଥା ମାନି ଆଜି ମଧ୍ୟ ବହୁବିବାହ ଚଳାଇ ରଖିଛନ୍ତି – ଆମ୍ଭମାନଙ୍କର

ରସୁଲ – ଆମ୍ଭମାନଙ୍କର ଋଷି ମହାପୁରୁଷମାନଙ୍କ କଥା କେହି ଶୁଣେ ନାହିଁ। ବହୁବିବାହରେ ସ୍ୱାମୀର ପ୍ରଥମା ସ୍ତ୍ରୀ ଓ ସ୍ୱାମୀ ଏହି ଦୁଇଜଣ ଯେପରି ନାରୀର (ଅର୍ଥାତ୍ ଦ୍ୱିତୀୟ ସ୍ତ୍ରୀର) ସ୍ୱାମୀ। ସ୍ୱାମୀ ମାନେ ସତ୍ତା – life (ଜୀବନ), ଇଂରେଜମାନଙ୍କର husband ନୁହେଁ, husbandମାନେ ଗୃହର କର୍ତ୍ତା। ସତ୍ତତୁଣୀ ମାନେ ମଧ୍ୟ ସତ୍ତା। ପୁଣି ଥିଲା ପ୍ରଥମା ସ୍ତ୍ରୀର consent (ସମ୍ମତି) ବ୍ୟତୀତ ସ୍ୱାମୀର ପୁନରାୟ ବିବାହ ହୋଇ ପାରିବ ନାହିଁ – ସୀତା ବିବାହ କରାଇଲେ ରାମଚନ୍ଦ୍ର ବିବାହ କରି ପାରିବେ। ଆଗରୁ ଉଚ୍ଚ ବର୍ଣ୍ଣର ଝିଅର ଯେତେବେଳେ ବିବାହ ହେଉଥିଲା ତା ସହିତ ଜଣେ – ଦୁଇଜଣ ନୀଚ ଘରର ଝିଅକୁ ଯୌତୁକ ଦିଆ ହେଉଥିଲା – ସେମାନେ ହେଉଥିଲେ ଦାସୀପତ୍ନୀ, କିନ୍ତୁ ସେମାନଙ୍କର ସନ୍ତାନ କେତେ ଉଚ୍ଚ ହେଉଥିଲେ। ଯେନତେନ ପ୍ରକାରେଣ ଉଚ୍ଚସଂଶ୍ରବ ଉଚ୍ଚଗତି ବଢ଼ାଇ ଦେବାହିଁ ଲକ୍ଷ୍ୟ ଥିଲା। ଆ.ପ୍ର. ୧୨/୯.୭.୧୯୪୮

## ।। ଭାବି ଦେଖ ବିବାହ-ବିଚ୍ଛେଦ ଭଲ କି ନୁହେଁ।।

ଆଗରୁ ବେଶୀ ଭାଗ ଝିଅ ଥିଲେ ସ୍ୱାମୀ-ପୋଷାକ — ବର୍ତ୍ତମାନ ବେଶୀ ଭାଗ ହେଉଛନ୍ତି ଶୋଷକ — ଦୋହକ। ଚୁଷି-ଚୁଷି ଫାଙ୍କା କରି ଛାଡ଼ି ଦିଅନ୍ତି – ସେତେବେଳେ divorce-ଟା (ବିବାହ-ବିଚ୍ଛେଦଟା) ହେଲେହିଁ ହୁଏ। ...Divorce (ବିବାହ-ବିଚ୍ଛେଦ) କରିଲେ ତୁମ ପେଟରୁ ତୁମର ତିନି ସ୍ୱାମୀର ହୁଏତ ଦୁଇ ଦୁଇଟି କରି ଛ'ଟି ସନ୍ତାନ ହେଲା — ସେମାନେ କେହି ବାବା ପାଇଲେ ନାହିଁ – ତୁମ୍ଭମାନଙ୍କର ଯେପରି ମାତୃତ୍ୱ — ସେମାନଙ୍କର ମା ମଧ୍ୟ ରହିଲା ନାହିଁ — କୁକୁର ଛୁଆ ପରି ସେମାନଙ୍କ ଅବସ୍ଥା। ଆମେ ଯଦି ଜନ୍ମଠାରୁ ନିଜକୁ ଦେଖୁ ଗୋଟିଏ କୁକୁର ଛୁଆ ଠାରୁ ଆମର ଅବସ୍ଥା ଆଦୌ ଉନ୍ନତ ନୁହେଁ, ନାହିଁ ସ୍ନେହ, ନାହିଁ ମମତା, ନାହିଁ ଦରଦ, ନାହିଁ ଆଶ୍ରୟ, ଲାଠି-ପହଁରା ଖାଇ ବୁଲୁଛୁ – ସେତେବେଳେ କିପରି ଲାଗନ୍ତା ? Divorce-ର (ବିବାହ-ବିଚ୍ଛେଦର) ଫଳରେ ସନ୍ତାନର sentimental asset ଓ spirit-ଟାହିଁ spurn କରା ହୁଏ (ଭାବସମ୍ପଦ ଓ ଆତ୍ମିକ ଶକ୍ତିକୁ ହିଁ ଉପହାସ କରାହୁଏ)। ତାକୁ ହୁଏତ orphanage-ରେ (ଅନାଥ-ଆଶ୍ରମରେ) ସ୍ଥାନ ଗ୍ରହଣ କରିବାକୁ ହୁଏ। ଛୁଆ ପିଲାକୁ ଗୋଇଁଠା ମାରି ଆଉ ଏକ ପୁରୁଷ ସହିତ ମା ଚାଲିଲା — ଛୁଆଙ୍କ ପ୍ରତି ମମତା ନାହିଁ, ନାହିଁ ବୁକୁଭରା ପ୍ରାଣଭରା ଟାଣ — ସେପରି ମାଆର ପିଲା ହେବା ଯେ ଜୀବନରେ କେତେ ପରିମାଣରେ ବଞ୍ଚିତ ହେବା ତାହା କଣ କଳ୍ପନା କରିପାର ?

ନିଜ ଉପରେ ପକାଇ ଭାବି ଦେଖିଛ ? କି ଅପରାଧ କରିଛନ୍ତି ତୁମର ଏହି ସନ୍ତାନମାନେ — ଶିଶୁମାନେ, ସେମାନଙ୍କୁ ତ ତୁମେହିଁ ଆଣିଛ, ତୁମେହିଁ ପେଟରେ ଧରିଛ, ସେମାନଙ୍କର କେହି ନାହିଁ, ଦୁନିଆର ଯେଉଁ ଦିଗକୁ ସେମାନେ ଚାହିଁବେ, ସେହି ଦିଗହିଁ ଶୂନ୍ୟ, ମହାଶୂନ୍ୟ — ହାହାକାର ଭରା ଜୀବନ ସେମାନଙ୍କର — ଏହିପରି ମହାପାପର ଫଳରେ ଭଗବାନଙ୍କର ମହାଅଭିସମ୍ପାତ କଣ ତୁମକୁ ଛାଡ଼ି ଦେବ ? ତେଣୁ ଭାବି ଦେଖ, ଏମିତି divorce (ବିବାହ ବିଚ୍ଛେଦ) କଣ ଭଲ ?

ଆ.ପ୍ର. ୧୨/୯.୭.୧୯୪୮

## ।। ପ୍ରତିଲୋମ ଉପଗତିସମୟରେ ନାରୀର ମାନସିକ ଅବସ୍ଥା କିପରି ହୁଏ ।।

ମୋ ପାଖରେ ପୁରୁଷ ମଧ୍ୟ ଖୋଲି କହନ୍ତି, ଅନେକ ଝିଅ ମଧ୍ୟ ସେମାନଙ୍କର ଜୀବନର କାହାଣୀ କହନ୍ତି । କେତେଜଣ ଝିଅଙ୍କ ପାଖରୁ ଶୁଣିଛି — ହୁଏତ ନୀଚ ପୁରୁଷର ସହିତ ଭାବ ହୋଇଛି । ପୁରୁଷ ଖୁବ୍ ଆଦର-ଯତ୍ନ କରେ — କିନ୍ତୁ ଉପଗତିର ସମୟରେ ହଠାତ୍ ସେହି ଝିଅ ପୁରୁଷଟାକୁ ଗୋଇଁଠା ମାରେ — ତାର ପ୍ରାଣ ଭିତରେ ସେତେବେଳେ ହାହାକାର କରି ଉଠେ — ଆର୍ତ୍ତସ୍ୱରରେ ତାର ଅନ୍ତରାତ୍ମା କାନ୍ଦି ଉଠେ - ସମୁଦ୍ର ମଧ୍ୟରେ ଜାହାଜ ବୁଡ଼ିବା ସମୟରେ ଜାହାଜରେ ଥିବା ମଣିଷ ଗୁଡ଼ିକର ଯେଉଁ ଅବସ୍ଥା ହୁଏ, ସେହି ଅବସ୍ଥା ହିଁ ହୁଏ । ଏହି ଭାବରେ ଚାଲୁ ଚାଲୁ ଛ ମାସ ଖଣ୍ଡେ ପରେ ନା କଣ sentiment (ମନୋଭାବ)-ଟା blunt (ନିସ୍ତେଜ) ହୋଇଉଠେ — ସେତେବେଳେ ଆଉ ଏତେ କଷ୍ଟ ହୁଏ ନାହିଁ । ତଥାପି କଷ୍ଟର ଭାବ ରହି ଯାଏ, ପୁରୁଷଟା ଏତେ ଆଦର-ସୋହାଗ କରେ ତଥାପି କାହିଁକି ଏପରି ହୁଏ ? ତା ମାନେ ତାର ପୂର୍ବପୁରୁଷ ମାନେ ଏକସଙ୍ଗରେ ଚିତ୍କାର କରି ଉଠନ୍ତି — ସମସ୍ତେ ଯେପରି କହି ଉଠନ୍ତି 'ବଞ୍ଚାଅ, ବଞ୍ଚାଅ । ଆମ୍ଭମାନଙ୍କର ସର୍ବନାଶ କର ନାହିଁ ।' ତୁମେ ଆସିଛ ତୁମ ବାବାଙ୍କ ଠାରୁ, ତୁମର ବାବା ଆସିଛନ୍ତି ତାଙ୍କ ବାବାଙ୍କ ଠାରୁ — ଏହି ଭାବରେ ପାରମ୍ପର୍ଯ୍ୟାନୁଯାୟୀ ତୁମେ ହେଲ ତୁମର ସମସ୍ତ ପୂର୍ବ ପୁରୁଷଙ୍କର result (ପରିଣତି) । ତେଣୁ ନୀଚ ପାଖକୁ ଗଲେହିଁ ଝିଅର ପ୍ରାଣ ଆଁକୁ-ପାଁକୁ କରିଥାଏ, ଛାତି ଧଡ଼ପଡ଼ କରୁଥାଏ, ଶାନ୍ତି ନାହିଁ, ସାନ୍ତ୍ୱନା ନାହିଁ – ତଥାପି ହୁଏତ ଅନ୍ୟ ଲୋଭ ଏଡ଼ାଇ ପାରେ ନାହିଁ — କିମ୍ବା ଉପାୟ ନଥାଏ, ତେଣୁ ପଡ଼ି ରହି ଥାଏ ।

ମହାନ୍ ପୂଜନୀୟଙ୍କର ପାଖରେ ପଡ଼ିଲେ ଝିଅମାନଙ୍କର କିନ୍ତୁ କେତେବେଳେ ଏପରି ହୁଏନା — ଯଦି କିନା ସ୍ୱାମୀ ସତ୍ତାପୂରଣୀ ହୁଏ। ଅନ୍ୟ ଯେତେବି ଅସୁବିଧା ଥାଉ — ସେତେବେଳେ ସେ କେତେ ସୁଖୀ — କାମ ଦାମ କରୁଛି, ଗଳ୍ପ କରୁଛି, ବୁଲିବାକୁ ଯାଉଛି, ଟିକିଏ–ଅଧେ ବାବୁଗିରି ମଧ୍ୟ କରୁଛି, ହାତରେ ଯେପରି ଯକ୍ଷ ପାଇଛି। ଏହି ତଫାତ୍ ହୁଏ କାହିଁକି ? ସ୍ୱାମୀର ଢଳାଢଳି ନାହିଁ, ହୁଏତବି କଠୋର — ତଥାପି ପ୍ରାଣ ଥଣ୍ଡା — ପୁରୁଷ ହୁଏତ ତାର ପରିବା କାଟେନା, ଛୁଆକୁ ଧରେନା, ବରଂ ଚାପ ଦିଏ, ଖଟିବାକୁ ହୁଏ, କେତେ ଦୌଡ଼ିବାକୁ ହୁଏ — ତଥାପି ବୁକୁଭରା। କେତେ ସମୟ ଶାଶୁ-ନଣନ୍ଦର କେତେ ଗଞ୍ଜଣା ସହିବାକୁ ହୁଏ। ଶତ ଅତ୍ୟାଚାରରେ ମଧ୍ୟ ସେ ଖୁସି — କାରଣ ତାର inner being (ଅନ୍ତର୍ନିହିତସତ୍ତା) ଓ ପୂର୍ବ-ପୁରୁଷ ତୃପ୍ତ। ମନରେ କୌଣସି ସମୟରେ କିଛି ବିରକ୍ତିର ଭାବ ଆସିଲେ ମଧ୍ୟ ସ୍ୱାମୀର ମୁହଁକୁ ଚାହିଁ ସବୁ ସହ୍ୟ କରେ — କାହିଁକି ସେ ଟାଣେ, କାହିଁକି ସେ ସହେ ? କାରଣ, ସ୍ୱାମୀଙ୍କୁ ନେଇ ତାର ମନ ତୃପ୍ତ। ତେଣୁ ତାର ଶାଶୁ ନିଷ୍ଠୁରା ହେଲେ ମଧ୍ୟ ତାଙ୍କୁ ଏଡ଼ାଇ ପାରେ ନାହିଁ। ସ୍ୱାମୀଙ୍କୁ ଖୁସି କରାଇବା ପାଇଁ ତାଙ୍କୁ ସହି-ବୋହି, ମାନି-ପାତି ଚଳେ।

ପୁଷମା – ଯଦି କ୍ରମାଗତ ନିଷ୍ଠୁର ହୁଏ ତେବେ ଦିନେ ନା ଦିନେ ଏଡ଼ାଇବା

ଶ୍ରୀଶ୍ରୀଠାକୁର – କିନ୍ତୁ deny (ଅସ୍ୱୀକାର) କରିବ ନାହିଁ – ସ୍ୱାମୀର ମା ବୋଲି।

ପୁଷମା – ଶାଶୁ ଭଲ ହେବା ଉଚିତ।

ଶ୍ରୀଶ୍ରୀଠାକୁର – ଖରାପଟା ଧରିନ୍ହିଁ କହୁଛି, ସ୍ୱାମୀ ଯଦି ସବୁ ଦିଗରୁ ଶ୍ରେଷ୍ଠ (ଉଚ୍ଚ) ହୁଏ ସେତେବେଳେ ତାଙ୍କୁ ବହନ କରିବାର ଆକୂତିରୁ ମନ୍ଦ ଶାଶୁଙ୍କୁ ମଧ୍ୟ ନେଇ ହସହସ ମୁହଁରେ ଅନେକ ପରିମାଣରେ ମାନି-ପାତି ଚାଲେ, କିନ୍ତୁ ସ୍ୱାମୀ ଯଦି ନୀଚ ଘରର ହୁଏ ସେଠାରେ ସ୍ୱାମୀ ଓ ଶାଶୁର ଶତ ଆଦରରେ ମଧ୍ୟ ପ୍ରାଣ ଭରେ ନାହିଁ। ଆ.ପ୍ର. ୧୨/୯.୭.୧୯୪୮

## ।। ପ୍ରତିଲୋମ ଏବଂ ଅନୁଲୋମ ସନ୍ତାନ କିପରି ଚରିତ୍ରର ହୁଅନ୍ତି।

ପ୍ରତିଲୋମ ବୈବାହିକ ସୂତ୍ରରେ ମିଳନର ଫଳ କେତେବେଳେ ଫଳ ଭଲ ହୁଏ ପ୍ରତିଲୋମ ବିବାହର product (ସନ୍ତାନ) ହୁଏ ଆଉରଙ୍ଗଜେବ ପରି। ସେମାନେ

ମେଳ ଭାଙ୍ଗିବାକୁ ଜାଣନ୍ତି, ମେଳ କରି ପାରନ୍ତି ନାହିଁ। ପ୍ରତିଲୋମଜ ସନ୍ତାନ treacherous (ବିଶ୍ୱାସଘାତକ) ହେବ ହିଁ — Ideal ଓ culture (ଇଷ୍ଟ ଓ କୃଷ୍ଟି)-ର ପରିପନ୍ଥୀ ନ ହୋଇ ସେମନେ ରହିପାରନ୍ତି ନାହିଁ। ସେମାନେ ଯାହାଦ୍ୱାରା ପୁଷ୍ଟହେବେ, ତାହାର ସର୍ବନାଶ ବେଶୀ କରି କରନ୍ତି।

ଅନୁଲୋମରେ ସନ୍ତାନ ହୁଏ ଝାଁଜି ଓ ତୀକ୍ଷ୍ଣ। ବ୍ୟାସ ଅନୁଲୋମ, ବିଦୁର ଅନୁଲୋମ। ଏମାନଙ୍କର ରକମଟାହିଁ ଅଲଗା, ଶ୍ରେୟଙ୍କ ପ୍ରତି ଶ୍ରଦ୍ଧା ଏମାନଙ୍କର ସ୍ୱଭାବଗତ। ଇଷ୍ଟ ଓ କୃଷ୍ଟିର ଉପରେ କୌଣସି ଅପଘାତ ଆସିଲେ, ଏମାନେ ସର୍ବଶକ୍ତି ନେଇ ଦୃଢ଼ ଭାବରେ ଛିଡ଼ା ହୁଅନ୍ତି। ଭଲ-ଭଲ ପାରଶବମାନଙ୍କ ମଧ୍ୟରେ ମୁଁ ଏହା ଖୁବ୍ ଦେଖିଛି। ମାହିଷ୍ୟମାନେ ଅନୁଲୋମଜ ସନ୍ତାନ। ଏମାନେ ମଧ୍ୟ ଖୁବ ତୁଖୋଡ଼ ଓ ବିଶ୍ୱସ୍ତ। ଶୁଣିଛି ମୋହନଲାଲ ଥିଲେ ମାହିଷ୍ୟ-ସନ୍ତାନ। କେତେଲୋକ ସିରାଜଉଦ୍ଦୌଲାଙ୍କ ସହିତ ବିଶ୍ୱାସଘାତକତା କରିଛନ୍ତି। ସମ୍ପଦରେ-ବିପଦରେ କୌଣସି ଅବସ୍ଥାରେ ସେ କିନ୍ତୁ ତାଙ୍କୁ ଛାଡ଼ି ନାହାନ୍ତି। ଆଜୀବନ ଛାୟା ପରି ଅନୁସରଣ କରିଛନ୍ତି।

ଆ.ପ୍ର. ୧୨/୯.୭.୧୯୪୮

## ।। ସନ୍ତାନର ଜନ୍ମ ସୁସ୍ଥ ହୁଏ ନା କେତେବେଳେ ।।

ସ୍ତ୍ରୀର ଚରିତ୍ରରେ ଯଦି ସ୍ୱାମୀ ଓ ସ୍ୱାମୀକୁଳର ପରିରକ୍ଷଣୀ ପରିପୋଷଣ ନ ଥାଏ, ତାହେଲେ (ସନ୍ତାନର) ଜନ୍ମ ସୁସ୍ଥ ହୁଏ ନା। ଧାତୁଟାହିଁ nurtured (ପରିପୁଷ୍ଟ) ହୁଏ ନାହିଁ। କାରଣ, ସ୍ତ୍ରୀର ଧାତୁ ବା ଡିମ୍ବକୋଷର ଧରଣ, ଯାହା ବୀଜକୁ ଧାରଣ କରେ, ତାହା ବାସ୍ତବ କୃଷ୍ଟିର ଭିତର-ଦେଇ ପ୍ରୟୋଜନ ଅନୁପାତିକ ବିକାଶ ଲାଭ କରେ ନାହିଁ। ସ୍ତ୍ରୀର ସତତ ଅନୁଧ୍ୟାନ ରହିବା ଦରକାର କେଉଁଥିରେ ସ୍ୱାମୀ ଓ ତାର ବଂଶର ସଭିଏଁ ସୁଖରେ ରହିବେ, ସୁସ୍ଥ ରହିବେ, ଆନନ୍ଦରେ ରହିବେ। କଷ୍ଟର ଦାଗ ମଧ୍ୟ ତାଙ୍କ ଦେହରେ ଲାଗିବ ନାହିଁ। ସେହି ବ୍ୟସ୍ତତା ଯଦି ଥାଏ ଏବଂ ମୁଣ୍ଡରେ ଯେପରି—ଯେପରି ବୁଦ୍ଧି ଆସେ, ସେହିପରି—ସେହିପରି ଯଦି କରେ ତାହେଲେ ସେହି କର୍ଷଣ ଓ ସାଧନାର ଭିତର—ଦେଇ ସେ କ୍ରମାଗତ ଉତ୍କର୍ଷ ଲାଭ କରେ। ଏହି ଉତ୍କୃଷ୍ଟତାହିଁ ତାର ଗର୍ଭର ସନ୍ତାନକୁ ଉପଯୁକ୍ତ ପୋଷଣ ଯୋଗାଇବାରେ ସାହାଯ୍ୟ କରେ। ତୁମର ସ୍ତ୍ରୀ ଯଦି ତୁମ ମୁହଁର ଚେହେରା ଦେଖି ଧରି ନ ପାରେ ଯେ ତୁମ ପାଇଁ ତାର କେତେବେଳେ କଣ କରଣୀୟ, ତାହେଲେ ବୁଝିବାକୁ ହେବ ଯେ ସେ ବାସ୍ତବ ଶିକ୍ଷା ଓ କୃଷ୍ଟି ଲାଭ କରି ନାହିଁ। ଏହି ଦିଗ ଦେଇ

ତୁମର ସ୍ତ୍ରୀ ଯେତେ ପରିମାଣରେ uncultured (ଅପକୃଷ୍ଟ)ଥାଏ, ତୁମର ବୀଜକୁ ଓ ବୀଜସୃଷ୍ଟ ସନ୍ତାନକୁ ସେ ସେତେ କମ୍ nurture (ପୋଷଣ) ଦେଇପାରେ। ତେଣୁ, ସେହିପରି ବଂଶର ଝିଅ ବିବାହ କରିବା ଉଚିତ ଯାହାର temperamental hankering (ପ୍ରକୃତି ଗତ ଚାହିଦା) ପୁରୁଷର ଓ ପୁରୁଷର ବଂଶ ପ୍ରତି ଥାଏ।

ଆ.ପ୍ର. ୧୨/୧୦.୭.୧୯୪୮

## ।। ଉଚ୍ଚ–ବଂଶ, ନିମ୍ନ–ବଂଶର ମାନଦଣ୍ଡ କଣ ।।

ନଗେନଦା କଥା–ପ୍ରସଙ୍ଗରେ ଜିଜ୍ଞାସା କଲେ — ଉଚ୍ଚ-ବଂଶ, ନିମ୍ନ-ବଂଶ ଧରିବ ତ ଅଭ୍ୟାସ-ବ୍ୟବହାର ଦେଖି, କିନ୍ତୁ ଅନେକ ସମୟରେ ତ ଦେଖିବାକୁ ପାଉ ଉଚ୍ଚ-ବଂଶର ପୁଅର ଅଭ୍ୟାସ-ବ୍ୟବହାର ଖରାପ, ନିମ୍ନ-ବଂଶର ପୁଅର ଅଭ୍ୟାସ-ବ୍ୟବହାର ଭଲ। ଏହି ଉଚ୍ଚ-ନୀଚର ମାନଦଣ୍ଡ କଣ ?

ଶ୍ରୀଶ୍ରୀଠାକୁର – Biological stracture (ଜୈବ-ସଂସ୍ଥିତି) ଯାହାର ଯେତେ fine (ସୂକ୍ଷ୍ମ), ଯିଏ ଯେତେ fine (ସୂକ୍ଷ୍ମ) ଜିନିଷ ଧରି ପାରେ, ଯିଏ ଯେତେ fine (ସୂକ୍ଷ୍ମ) ଗୁଣ ରକ୍ତମାଂସରେ ଅର୍ଥାତ୍ ଚରିତ୍ରରେ ଫୁଟାଇ ତୋଳି ପାରେ, ଯିଏ ଯେତେ ବେଶୀ ଲୋକଙ୍କୁ ଯେତେ finely (ସୂକ୍ଷ୍ମଭାବରେ) fulfil (ପରିପୂରଣ) କରି ପାରେ, ସେ ସେତେ ଉଚ୍ଚ। ଯିଏ ଯେତେ ନୀଚ, ସେ ସେତେ gross (ସ୍ଥୁଳ)। ଗୋଟିଏ ଜିନିଷକୁ ବାହାରୁ ବଢ଼ାଇ ତୋଳିବା ଖୁବ୍ ସହଜ। କିନ୍ତୁ ଭିତରେ ସେହିପରି ଗୁଣଗତ ପରିବର୍ତ୍ତନ ଆଣିବା ସେତେ ସହଜ ନୁହେଁ। ଯେପରି ମନେ କର ଗୋଟିଏ ଲିଚୁକୁ ବଡ଼ କରି ଗୋଟିଏ ତରଭୁଜ ପରି କରି ତୋଳିପାର। କିନ୍ତୁ ତାହା ବୋଲି ସେହିଟା ତରଭୁଜ ହେଲା ନାହିଁ। ସେଥିରେ ତରଭୂଜତ୍ୱ ସମାବିଷ୍ଟ ହେଲା ନାହିଁ। ବୀଜର gene (ଅର୍ଥାତ୍ ଜିନ୍ ପରିବର୍ତ୍ତନ ବ୍ୟତୀତ ତାହା ସମ୍ଭବ ନୁହେଁ। ଧରାଯାଉ ନ୍ୟାଂଡ଼ା ଆମ୍ବ, ତାର ଭଲ, ଖରାପ ଅଛି। ନ୍ୟାଂଡ଼ା ଜାତିର ଗୋଟିଏ ଆମ୍ବ ମନେ କର ଖୁବ୍ ଖରାପହିଁ ହେଲା। କିନ୍ତୁ ନ୍ୟାଂଡ଼ାର ବୈଶିଷ୍ଟ୍ୟ ସେଥିରେ କିଛି-ନା-କିଛି ପାଇବ। ତାକୁ nurture (ପୋଷଣ) ଦେଇ ତୁମେ ଭଲ ନ୍ୟାଂଡ଼ାରେ ପରିଣତ କରି ପାରିବ, ସେପାଇଁ ବେଶୀଦିନ ଲାଗିବ ନାହିଁ। କିନ୍ତୁ ଗୋଟିଏ ଭଲ ଫଜଲି ଆମ୍ବକୁ ତୁମେ ନ୍ୟାଂଡ଼ାରେ ପରିଣତ କରି ପାରିବ ନାହିଁ। କରିଲେ ଯେପରି ଭାବରେ କରା ଯାଏ ସେହି ରକମରେ କରାଯିବ। ସେତେବେଳେ ଆଉ ଫଜଲିର ସତ୍ତା ସେଥିରେ ରହିବ ନାହିଁ। ବିଶେଷ process

(ପ୍ରକ୍ରିୟା)-ର ଭିତର – ଦେଇ generation after generation (ବଂଶ ପରମ୍ପରରେ) ଚେଷ୍ଟାର ଫଳରେ ଗୋଟିଏ ଜିନିଷର species (ଜାତି) change (ପରିବର୍ତ୍ତନ) କରା ଯାଇ ପାରେ। କିନ୍ତୁ original (ମୂଳ) spices (ଜାତି ବା ଧରଣ)-ଟା ସେତେବେଳେ ଆଉ ରହେ ନାହିଁ। ଗୋଟିଏ ଉଚ୍ଚ-ବଂଶୀୟ ପୁଅର ବଂଶରେ ଯଦି ପ୍ରତିଲୋମ interpolation (ସଂମିଶ୍ରଣ) ହୋଇ ନଥାଏ, ତାକୁ ପୋଷଣ ଦେଇ full-fledged (ପରିପୂର୍ଣ୍ଣ) ଉଚ୍ଚ ବଂଶର ରୂପ ତା ଭିତରେ ଫୁଟାଇ ତୋଳି ହେବ। ବର୍ତ୍ତମାନ ପରି ତାର achievement (ବିକାଶ) କମ୍ ହୋଇ ପାରେ, କିନ୍ତୁ ତାର ସାମ୍ଭାବ୍ୟତା ବହୁତ ବେଶୀ। ନୀଚ-ବଂଶର ପୁଅ, ସେ ଯେତେ ହିଁ ଭଲ ହେଉ, ତାର achievement (ବିକାଶ) ଯେତେ ପରିମାଣରେ ହେଉ, ଉଚ୍ଚ-ବଂଶର ତୁଳନାରେ ତାର ବୀଜଗତ ବିକାଶ ଓ ସମ୍ଭାବ୍ୟତା କିନ୍ତୁ ବହୁତ କମ୍। ଗୋଟିଏ ଜଙ୍ଗଲି ଆମ୍ବ ଯଦି ମିଠା ହୁଏ, ସେ କିନ୍ତୁ ଜଙ୍ଗଲି ଆମ୍ବହିଁ। ଖାଇବାକୁ ମିଠା, ଆଦର କରି ଖାଇବ ମଧ୍ୟ। ତେବେ ଗୋଟିଏ କୁତ୍ସିତ ନ୍ୟାଂଡ଼ା ଆଉ ଗୋଟିଏ ଭଲ ଜଙ୍ଗଲି ଆମ୍ବର ମଧ୍ୟରେ ଭଲ ଜଙ୍ଗଲି ଆମ୍ବଟା ଆଜି ହୁଏତ ବ୍ୟବହାରରେ ଭଲ, କିନ୍ତୁ ତାର ବିକାଶର ସମ୍ଭାବ୍ୟତା କୁତ୍ସିତ ନ୍ୟାଂଡ଼ା ପରି ନୁହେଁ।

ନଗେନଦା – ନୀଚକୁ ଭଲ ଦେଖିଲେ ତାକୁ କଣ ଉଚ୍ଚ କହିବୁ ନାହିଁ?

ଶ୍ରୀଶ୍ରୀଠାକୁର – କହିଛନ୍ତି ତ। ରୁହିଦାସ ଚମାର। ତାକୁ କଣ ଆପଣମାନେ କମ୍ ସମ୍ମାନ ଦେଇଛନ୍ତି? ତାର ଗୁଣକୁହିଁ ପୂଜା କରିଛନ୍ତି। ତେବେ ତପସ୍ୟାର୍ଜିତ ଗୁଣ ଆଉ ବୀଜଗତ ଗୁଣ –– ଏ ଦୁଇର ବ୍ୟବହାରରେ ତଫାତ୍ ଅଛି। ପ୍ରଥମଟା ଦେଇ ସବୁ କାମ ଚଳେ – କିନ୍ତୁ ତାକୁ ଦେଇ ତଜ୍ଜାତୀୟ ବୀଜଗତ ଗୁଣ-ସମନ୍ୱିତ ସନ୍ତାନର ପ୍ରଜନନ ହୁଏ ନା। ତେଣୁ ଶୁଦ୍ରକୁ ଗୁରୁ କରି ପାରନ୍ତି, କିନ୍ତୁ ତାକୁ ଝିଅ ଦେଇ ପାରିବେ ନାହିଁ। ପାରିବେ ବଂଶ-ପରମ୍ପରା କ୍ରମେ ବ୍ରାହ୍ମଣତ୍ୱ ଲାଭ କରିବା ଫଳରେ ତାର ଭବିଷ୍ୟତ ବଂଶଧର ଯେତେବେଳେ ବିପ୍ରବର୍ଣ୍ଣ ପ୍ରାପ୍ତ ହେବ, ଯେଉଁଠାରେ ତାର ଗୁଣ ବୀଜଗତ ହେବ, ଯେଉଁଠାରେ ତା ଠାରୁ reversion (ପୂର୍ବାନୁବୃତି) ହେବ ନାହିଁ।

ନଗେନଦା – ଉଚ୍ଚ-ନୀଚର ନିର୍ଦ୍ଧାରଣ କଣ ଦେଇ ହେବ? ଆମ୍ଭମାନଙ୍କ ମଧ୍ୟରେ ନ ହେଲେ କୌଳିନ୍ୟ ପ୍ରଥା ଅଛି। ସବୁ ଶ୍ରେଣୀ ମଧ୍ୟରେ ତ ତାହା ଆଉ ନାହିଁ। ଏକ ବର୍ଣ୍ଣର ଦୁଇଟି ବଂଶର ମଧ୍ୟରେ ଉଚ୍ଚ-ନୀଚ କିପରି ଧରାଯିବ?

ଶ୍ରୀଶ୍ରୀଠାକୁର – ଯିଏ ଯେତେ fulfilling (ପରିପୂରଣୀ) ତାକୁ ସେତେ superior (ଉନ୍ନତ) କହୁଁ। ଆ.ପ୍ର. ୧୨/୧୦.୭.୧୯୪୮

## ।। କୁଲୀନ ହେଲେହିଁ ତାର ବିକାଶ ଉଚ୍ଚମାନଙ୍କ ପରି ହୁଏ କି ନାହିଁ।।

କୁଲୀନ ମାନେ ଯେଉଁମାନଙ୍କର କୁଳରେ ଖାଦ ପ୍ରବେଶ କରିନି – ଅବିମିଶ୍ର କୁଳସମ୍ଭୂତ। ସେମାନଙ୍କ ମଧ୍ୟରେ ଜୈବିକ ଓ eugenic (ପ୍ରଜନନଗତ) ଦୋଷ ନାହିଁ। କୁଲୀନ ହେଲେହିଁ ଯେ ତାର ବିକାଶ ଉଚ୍ଚମାନଙ୍କ ପରି ହେବ, ତାର କୌଣସି ମାନେ ନାହିଁ। ତେବେ ତାର biological possibility (ଜୈବ-ସମ୍ଭାବ୍ୟତା) ବେଶୀ। ଠିକଭାବରେ nurture (ପୋଷଣ) ଦେଇ ପାରିଲେ ତାର ଉନ୍ନତି କରିବାର ସମ୍ଭାବନା ବେଶୀ।

ଆ.ପ୍ର. ୧୨/୧୦.୭.୧୯୪୮

## ।। କୁଲୀନ ଝିଅର ମୌଳିକ ଘରେ ବିବାହ ହେବା ଭଲ କି ନାହିଁ।।

ଏତେଦିନ ପର୍ଯ୍ୟନ୍ତ ମୁଁ ଭାବୁଥିଲି କୁଲୀନ, ମୌଳିକ ତୁଲ୍ୟ ଘର। କିନ୍ତୁ ବାସ୍ତବରେ ଦେଖିଛି କୁଲୀନର ଝିଅ ମୌଳିକର ଘରେ ପଡ଼ିଲେ ଫଳ ଭଲ ହୁଏ ନାହିଁ।

ନଗେନଦା – ଚିରଦିନ ତ ହୋଇ ଆସୁଛି।

ଶ୍ରୀଶ୍ରୀଠାକୁର – Doomed (ବିଧ୍ୱସ୍ତ)– ମଧ୍ୟ ହେଉଛନ୍ତି ଚିରଦିନ। କାୟସ୍ଥ ପରି କାୟସ୍ଥ କଣ ଆଉ ଅଛି ? ତାହେଲେ କଣ ଆଜି ଦେଶର ଏହି ଅବସ୍ଥା ହୁଅନ୍ତା ?

ଆ.ପ୍ର. ୧୨/୧୦.୭.୧୯୪୮

## ।। ବୈଶିଷ୍ଟ୍ୟକୁ କିପରି ଅକ୍ଷୁର୍ଣ୍ଣ ରଖାଯାଏ ।।

ସମାଜରେ ମଣିଷର ବୈଶିଷ୍ଟ୍ୟକୁ ଅକ୍ଷୁର୍ଣ୍ଣ ରଖିବାକୁ ଗଲେ ବିବାହାଦି ଠିକ୍‌ଭାବରେ ଦେବାକୁ ହୁଏ। ବିଧିମାଫିକ ସବର୍ଣ୍ଣ ଓ ଅନୁଲୋମ ବିବାହରେ ବୈଶିଷ୍ଟ୍ୟ ପୁଷ୍ଟ ବ୍ୟତୀତ ନଷ୍ଟ ହୁଏ ନାହିଁ। କିନ୍ତୁ ପ୍ରତିଲୋମରେ ସବୁ-କିଛିହିଁ ନଷ୍ଟ ହୋଇ ଯାଏ।

ଆ.ପ୍ର. ୧୩/୧୮.୭.୧୯୪୮

## ।। ମଣିଷର ଯୌନମିଳନ କିପରି ଭାବରେ ଘଟାଇବାକୁ ହୁଏ।।

ମଣିଷର ଯୌନ ମିଳନ ଘଟାଇବାକୁ ଗଲେ ଏପରି ଭାବରେ ତା ନିୟନ୍ତ୍ରିତ କରିବାକୁ ହୁଏ, ଯେଉଁଥିରେ କିନା ସୁସନ୍ତାନ ବ୍ୟତୀତ କୁସନ୍ତାନ ନ ହୋଇ ପାରେ। ଏହି ବିବାହ ଗୋଟିଏ ବଡ଼ ଜିନିଷ। ଏହା ମଧ୍ୟରେ ଗୋଳମାଳ ପ୍ରବେଶ କଲେ ସବୁ ଓଲଟ-ପାଲଟ ହୋଇଯାଏ।

ଆ.ପ୍ର. ୧୩/୧୮.୭.୧୯୪୮

## ।। କୌଳିନତ୍ୱର ଲକ୍ଷଣ କଣ ।।

ଉତ୍କୃଷ୍ଟଙ୍କ ପ୍ରତି ଶ୍ରଦ୍ଧାହିଁ ଉତ୍କୃଷ୍ଟ ହେବାର ପନ୍ଥା। ଏହାଦ୍ୱାରା ଚଳନର ରକମହିଁ ଉତ୍କର୍ଷାଭିମୁଖୀ ହୋଇ ଉଠେ। ଏହା-ହିଁ ଭଲ ହେବାର ପଥ। ଏହି ଶ୍ରଦ୍ଧା ନ ରହିବାଟା ଅସ୍ୱାଭାବିକ। ତା ମାନେ ଭଲ ହେବାର ଇଚ୍ଛା ଦୁର୍ବଳ। କୌଳିନତ୍ୱର ଲକ୍ଷଣ ହେଲା — ଆଚାର, ବିନୟ, ବିଦ୍ୟା, ପ୍ରତିଷ୍ଠା, ତୀର୍ଥଦର୍ଶନ, ବୃତ୍ତି, ଦାନ, ତପ। ସେଇଥିପାଇଁ ଆମ ଦେଶରେ ଦେବତା ଓ ବ୍ରାହ୍ମଣଙ୍କୁ ଭକ୍ତି ଜିନିଷଟାକୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆ ହୋଇଛି, ଏହିଟା ହେଲା ଗୋଟିଏ culture-ର (କୃଷ୍ଟିର) ଲକ୍ଷଣ।

ଆ.ପ୍ର. ୧୩/୧୮.୭.୧୯୪୮

## ।। ନାରୀର ସତୀତ୍ୱ କାହିଁକି ଦରକାର ।।

ନାରୀର ସତୀତ୍ୱ ଏକାନ୍ତ ପ୍ରୟୋଜନ। Female (ନାରୀ)-ର husband (ସ୍ୱାମୀ)-ର ପ୍ରତି concentric attachment-ରେ (ସୁକେନ୍ଦ୍ରିକ ଅନୁରାଗରେ) ତାର psychophysical being ଓ ovum (ଶରୀର-ମାନସ ସତ୍ତା ଓ ଡିମ୍ବକୋଷ) ଏପରି receptive ଓ adjusted (ଗ୍ରହଣମୁଖର ଓ ନିୟନ୍ତ୍ରିତ) ହୋଇଥାଏ ଯେ husband (ସ୍ୱାମୀ)-ର sperm with its varied chromosomes fully receive (ରକମାରି କ୍ରୋମଜମ୍ ସହ ଶୁକ୍ରକୀଟ ପୁରାପୁରି ଗ୍ରହଣ) କରି sprout (ଗଜେଇ) ତୋଳିପାରେ। ଆ.ପ୍ର. ୧୩/୧୯.୭.୧୯୪୮

## ।। ନାଥ ସମ୍ପ୍ରଦାୟରେ ସବୁ ନାଥ ଏକପ୍ରକାର ନୁହଁନ୍ତି ।।

ଗୋରକ୍ଷନାଥଙ୍କୁ ନାଥ ସମ୍ପ୍ରଦାୟର ପ୍ରତିଷ୍ଠାତା ବୋଲି କୁହା ଯାଏ। ନାଥ ସମ୍ପ୍ରଦାୟ ମଧ୍ୟରେ ଦେଖିବେ — କେତେ ବର୍ଣ୍ଣ ଅଛନ୍ତି। ସବୁ ନାଥ ଏକପ୍ରକାର ନୁହଁନ୍ତି।

ଆ.ପ୍ର. ୧୩/୨୧.୭.୧୯୪୮

## ।। ଝିଅ ଅଣାଯାଏ କେଉଁଠାରୁ ।।

ଅନୁଲୋମ-କ୍ରମେ ବିହିତଭାବରେ ବାହାରର ଅହିନ୍ଦୁ ସମାଜରୁ ମଧ୍ୟ ଝିଅ ଅଣାଯାଏ। କିନ୍ତୁ ଝିଅ ଯେଉଁଠି ସେଇଠି ଦେବା ଚଳିବ ନାହିଁ।

ଆ.ପ୍ର. ୧୩/୨୧.୭.୧୯୪୮

## ।। ପ୍ରତିଲୋମ ଜାତକମାନଙ୍କର କିପରି ସଂଶୋଧନ ହୋଇ ପାରେ।।

ତପସ୍ୟା ଓ ବିଜୋତ୍କର୍ଷରେ ମଣିଷର ପାତିତ୍ୱର ନିରସନ ହୋଇପାରେ। ଏପରିକି ମୋର ମନେ ହୁଏ, ପ୍ରତିଲୋମ ଜାତକମାନଙ୍କ ପର୍ଯ୍ୟନ୍ତ ଧୀରେ-ଧୀରେ ତପସ୍ୟା ଓ ବୀଜୋତ୍କର୍ଷର ଭିତର-ଦେଇ କିଛି-କିଛି ସଂଶୋଧନ ହୋଇ ପାରେ। (ପ୍ରତିଲୋମଜ) ଝିଅମାନଙ୍କର ବିବାହ ଯଦି ଉଚ୍ଚବଂଶରେ ହୁଏ ଏବଂ ସ୍ୱାମୀ ଉପରେ ଟାଣ ଯଦି ଥାଏ ତାହେଲେ ଅନେକ କାମ ହୁଏ। କିନ୍ତୁ ପ୍ରତିଲୋମ ପୁରୁଷ-ଜାତକମାନଙ୍କର ପରିବର୍ତ୍ତନ ପାଇଁ ଦରକାର ନିଜର କଠୋର ତପସ୍ୟା। ଅପକୃଷ୍ଟା ଜଣେ ସ୍ତ୍ରୀ, ସେ ଯଦି ଉତ୍କୃଷ୍ଟକୁ ଭଜନା କରେ, ଦେଖା ଯିବ ତାର ରୂପ ବଦଳି ଯାଇଛି। ସେ ଆଉ କୁତ୍ସିତକୁ ବରଦାସ୍ତ କରେ ନାହିଁ। ଏକାଥରକେ ନିଆଁ ହୋଇ ଯାଏ।

ଆଉ ଗୋଟିଏ ଧରନ୍ତୁ – ଯେଉଁଗୋରୁ ଦୁଧ କମ୍ ଦିଏ ଭଲ ଦୁଧିଆଳି ଗୋରୁର ଛୁଆ ଦେଇ ତାର ଗର୍ଭାଧାନ କଲେ ତାର ଦୁଧର ପରିମାଣ ବଢ଼ି ଯାଏ। ଏହା ଆମ୍ଭମାନଙ୍କର ଦେଖାଅଛି। ଏହି ଯେ ଦୁଧର ପରିମାଣ ବଢ଼ିଲା, ତାର କାରଣ ଏହି ଯେ ବୀଜ ପଡ଼ିଲା, ତାକୁ ପୋଷଣ ଦେବାକୁ ଯାଇ ତାର ସମଗ୍ର ଦେହବିଧାନରେ ଏତେ ପରିମାଣରେ ପରିବର୍ତ୍ତନ ଆସିଲା। ଏତେପରିମାଣରେ ବୈଧାନିକ ପରିବର୍ତ୍ତନ ଯଦି ନ ହୁଏ, ତେବେ ଦୁଧ ବଢ଼ିଲା କିପରି ?

ପୁଣି ଧରନ୍ତୁ, ଜଣେ ବ୍ରାହ୍ମଣ ସହିତ ଜଣେ ବୈଶ୍ୟା ନାରୀର ଯୌନମିଳନ ହେଲା। ସେଠାରେ କିନ୍ତୁ ତାର ପେଟର ସନ୍ତାନକୁ nurture (ପୋଷଣ) ଦେବାକୁ ଯାଇ ତାର ଦେହ ବିଧାନରେ ପରିବର୍ତ୍ତନ ଆସିବ। ଏହି-ବୀଜ ହିଁ ଯେପରି ତାକୁ ଟାଣି ଲମ୍ବା କରି ଦେବ। ଆ.ପ୍ର. ୧୩/୨୧.୭.୧୯୪୮

## ।। ବିବାହ କିନ୍ତୁ ଫାଜଲାମି ନୁହେଁ।।

ଶୁଣିଛି ଆମେରିକାରେ ନିକୃଷ୍ଟ ଜାତୀୟ ଷଣ୍ଢ ଦେଇ ଉତ୍କୃଷ୍ଟ ଶ୍ରେଣୀର ଗାଈର ଗର୍ଭାଧାନ ଆଇନତଃ ଦଣ୍ଡନୀୟ। ତେଣୁ କୁହେ, ବିବାହ କିନ୍ତୁ ଫାଜଲାମି ନୁହେଁ। ଏହା ଉପରେ ନିର୍ଭର କରେ ନିଜର ଜୀବନ, ପାରିପାର୍ଶ୍ୱିକର ଜୀବନ, ସନ୍ତାନର ଜୀବନ। ହଠାତ୍ କରି ଯେଉଁଠାରେ-ସେଠାରେ ବିବାହ କରିଲୁ ଆଉ କହିଲୁ — ଭଲପାଇବା ଅବାଧ। ସେଥିରେ ହେବ ନାହିଁ, ବିଧି ସେଥିରେ ଛାଡ଼ିବ ନାହିଁ।

ଆ.ପ୍ର. ୧୩/୨୧.୭.୧୯୪୮

## ।। ଯେଉଁମାନେ ଆପକୃଷ୍ଟତାର ପଥରେ ଚାଲୁଛନ୍ତି ସେମାନଙ୍କୁ ଜୈବଗତଭାବରେ ଉନ୍ନତ କରାଯିବ କିପରି ।।

ସବର୍ଣ୍ଣ ଓ ଅନୁଲୋମ ଅସବର୍ଣ୍ଣ ବିବାହ ଠିକ୍‌ଭାବରେ adjust (ନିୟନ୍ତ୍ରଣ) କରିବାକୁ ହୁଏ। ପୁରୁଷ ଯେପରି କେତେବେଳେ ମଧ୍ୟ ଝିଅ ତୁଳନାରେ ନୀଚ ଘରର ନ ହୁଏ। ବିବାହ ସମ୍ବନ୍ଧରେ ମୋର ଯାହା-ଯାହା କୁହା ଅଛି, ତାର ସବୁ ଦିଗକୁ ଲକ୍ଷ୍ୟ ରଖି ଚାଲିବାକୁ ହୁଏ। ସର୍ବସାଧାରଣଙ୍କ ମଧ୍ୟରେ ଚିନ୍ତାଧାରାଗୁଡ଼ିକୁ ଭଲ ଭାବରେ ସଞ୍ଚାର କରିବା ଦରକାର।

ଜାତିକୁ ଶକ୍ତିମାନ, ସଂହତ, ଐକ୍ୟବଦ୍ଧ ଓ ଉନ୍ନତ କରିବା ପାଇଁ ଯେଉଁସବୁ କଥା କହିଛି ତା ସହିତ ବିବାହର ଦିଗକୁ ନଜର ଦେବାକୁ ହେବ। ଯାଜନ, ଦୀକ୍ଷା, ସେବା, ସଂଗଠନ, ସଦାଚାର, ବର୍ଣ୍ଣାଶ୍ରମ, ଶିକ୍ଷା, ସାଧନା, କୌଣସି ଦିଗରୁ ଯେପରି ତ୍ରୁଟି ନ ରହେ। ଆଉ ଆମ୍ଭମାନଙ୍କ ଦେଶରେ ବିବାହ ଜିନିଷଟା ଏପରି ଏକ ଛୋଟ ଗଣ୍ଡୀ ମଧ୍ୟକୁ ଆସି ଯାଇଛି ଯେ ତାଜା ନୂତନ ରକ୍ତର ସଂମିଶ୍ରଣ କମ୍ ହେଉଛି। ଆଜି ବଙ୍ଗାଳି ବ୍ରାହ୍ମଣ, ଯଦିଓ ସେ କନୌଜୀ ବ୍ରାହ୍ମଣରହିଁ ବଂଶ, ତଥାପି ତା ସହିତ କନୌଜୀ ବ୍ରାହ୍ମଣର ବିବାହ ହେଉ ନାହିଁ। ବିହାରୀ ବ୍ରାହ୍ମଣ ସହିତ ମଧ୍ୟ ତାର କୌଣସି ବୈବାହିକ ସମ୍ପର୍କ ନାହିଁ। Society (ସମାଜ)-ଟା expanded (ବିସ୍ତୃତ) ହେଲେ, newer higher blood (ନୂତନ ଉନ୍ନତ ରକ୍ତ) ପାଇଥାନ୍ତୁ, ସେଥିରେ ଜାତିର ଉନ୍ନତି ଓ ସଂହତିର ପକ୍ଷେ ସୁବିଧା ହୁଅନ୍ତା। ...(ବିହିତ ଆନ୍ତଃ-ପ୍ରାଦେଶିକ ବିବାହ ହେଲେ) ସେଥିରେ ଅନେକ improve (ଉନ୍ନତି) କରିବେ ଯଦି clan (ବଂଶ)-ଗୁଡ଼ିକ ଠିକ୍‌ଭାବରେ ଦେଖି-ଶୁଣି କରା ଯାଏ। ଆ.ପ୍ର. ୧୩/୨୧.୭.୧୯୪୮

## ।। ଝିଅମାନଙ୍କ ଉପରେ ପୁରୁଷମାନଙ୍କର ଝୋଙ୍କ ହେବାଟା ବ୍ୟାଧି କିନା ।।

ପ୍ରତ୍ୟେକ ସତ୍ତାର ମଧ୍ୟରେ ଅଛି self-preservation (ଆତ୍ମ-ସଂରକ୍ଷଣ), self-protection (ଆତ୍ମ-ପାଳନ), self-procreation (ଆତ୍ମ-ବିସ୍ତାର)-ର tendency (ପ୍ରବଣତା)। ଏହିଗୁଡ଼ିକର conflict (ଦ୍ୱନ୍ଦ/ସଂଘାତ)-ର ଭିତର ଦେଇ ଆସିଲା କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ—ଏହାହିଁ ଷଡ଼ରିପୁ।

ଦେହରେ ମଶା ବସିଲା, ପଟ୍‌କିନା ହାତଟା ସେଠାରେ ଯାଇ ପଡ଼ିଲା। ଏହା ହୁଏ self-protection (ଆତ୍ମ-ପାଳନ)-ର ବୁଦ୍ଧିରୁ। କ୍ଷୁଧା ଲାଗିଛି, ଖାଉଛି – ଏହା ହେଲା self-preservation (ଆତ୍ମ-ସଂରକ୍ଷଣ)। ଆଉ self-pro-creation (ଆତ୍ମବିସ୍ତାର)-ରୁ ସ୍ତ୍ରୀ ଲୋକ ପ୍ରତି ଟାଣ ହୁଏ। ବହୁ ହେବାକୁ ଚାହେଁ, ତେଣୁ ସ୍ତ୍ରୀ ଲୋକ ଉପରେ ଝୋଙ୍କ ହୁଏ। ସ୍ତ୍ରୀଲୋକର ପୁଣି ପୁରୁଷ ଉପରେ ଝୋଙ୍କ ହୁଏ। ପରସ୍ପର ପରସ୍ପରର ପ୍ରତି ଆକର୍ଷଣ ବୋଧ କରେ।

ଜୀବନଧାରଣର ପାଇଁ ଖାଇବାଟା ଯଦି disease (ବ୍ୟାଧି) ନ ହୁଏ, ତେବେ ଏହା disease (ବ୍ୟାଧି) ହେବ କାହିଁକି ? ସତ୍ତାଲୋପି ଝୋଙ୍କ ଯଦି ନ ହୁଏ, ସ୍ୱାଭାବିକ ସୁସ୍ଥ ରକମ ଯଦି ହୁଏ, ତେବେ ତାକୁ disease (ବ୍ୟାଧି) କହିବ କାହିଁକି ? ନିଶାଟା କଣ ? ସେମାନଙ୍କ ଦେହରେ କଣ ଏପରି କୌଣସି ଗନ୍ଧ ଅଛି, ନା ସେମାନଙ୍କର ସୁନାର ଦେହ ଯେ ଦେହ ସହିତ ଦେହ ଘଷିଲେ ତୁମ ଶରୀର ସୁନା ହୋଇ ଯିବ ? ଅସଲ କଥା, ତା ମଧ୍ୟରେ ଏପରି mechanism (ମରକୋଚ) ଅଛି ଯାହାଦ୍ୱାରା being (ସତ୍ତା) ବହୁ ହେବାର ସୁଯୋଗ ପାଏ। Enjoyment (ଉପଭୋଗ) ଜିନିଷଟା ଗୋଟିଏ ଅବସ୍ଥାର ମଧ୍ୟ-ଦେଇ ଆଉ ଏକ ଅବସ୍ଥାକୁ ଯିବାର ଯେଉଁ ବୋଧ ତାହା-ହିଁ। ଅବଶ୍ୟ ଏହି ଅବସ୍ଥାନ୍ତରଟା ସତ୍ତାର ଯେତେ ପୋଷଣବର୍ଦ୍ଧନୀ ହୁଏ ଏବଂ ବିରୂପ ପ୍ରତିକ୍ରିୟାର ଯେତେ ସୃଷ୍ଟି ନ କରେ, ସେତେହିଁ ତାହା ପ୍ରକୃତ ଉପଭୋଗ ହୁଏ।

(ଯେପରି ଧର) କ୍ଷୁଧା ଲାଗିଛି, ଖାଇବାର ଡାକ ଭିତରେ ଟେର ପାଉଛ। ସେତେବେଳେ ଭାତ ପାଇଲ, ଭାତ ଖାଉଛ, ଭାତ ମୁହଁରେ ଦେଉଛ ଆଉ କେତେ ମଧୁର ! କ୍ଷୁଧାର ଅବସ୍ଥାଟାର ପରିବର୍ତ୍ତନ ହେଉଛି, ତେଣୁ ତ ଆରାମ। ପେଟ ଭରି ଗଲେ ସେତେବେଳେ ଆଉ ମଧୁର ଲାଗେ ନାହିଁ। କାରଣ, ସେତେବେଳେ ଆଉ ଅବସ୍ଥାର ପରିବର୍ତ୍ତନର ଦରକାର ନାହିଁ। ତେଣୁ କହେ Hunger is the best sauce (କ୍ଷୁଧାହିଁ ସର୍ବୋତ୍ତମ ସ୍ୱାଦ-ବର୍ଦ୍ଧକ)।

ଆ.ପ୍ର. ୧୩/୨୩.୭.୧୯୪୮

## ।। ପୁଅ-ଝିଅର ବିବାହ କିପରି ଘରେ ଦେବା ଉଚିତ ।।

ଝିଅର ବିବାହ ଦେବାକୁ ହେଲେ ଆମର ବରଣୀୟ ଘରେ ଦେବା ଉଚିତ। ଆଉ ପୁଅର ବିବାହ ଦେବାକୁ ଗଲେ ଦେବା ଉଚିତ ସଦୃଶ ସଦ୍‌ବଂଶରେ ଅଥଚ ଟିକିଏ ନୀଚ ହେଲେ କ୍ଷତି ନାହିଁ। ଆ.ପ୍ର. ୧୩/୨୯.୭.୧୯୪୮

## ।। ଅନୁଲୋମ ଅସବର୍ଣ୍ଣ ବିବାହରେ ବର୍ଣ୍ଣର ପାର୍ଥକ୍ୟ ବେଶୀ ରହିବା ଭଲ ନୁହେଁ ।।

ଅନୁଲୋମ ବିବାହରେ ସ୍ୱାମୀର ଘରେ ଯେଉଁ custom (ପ୍ରଥା) ଏବଂ ଝିଅର ବାପ ଘରେ ଯେଉଁ custom (ପ୍ରଥା), ସେଥିରେ difference (ପାର୍ଥକ୍ୟ) ଥିବା ଯୋଗୁଁ ଝିଅ ମନରେ ଏହା ନେଇ ଗୋଟିଏ conflict (ଦ୍ୱନ୍ଦ) ହୁଏ, କିନ୍ତୁ ତାର ଯଦି ସ୍ୱାମୀ ପ୍ରତି ଏତେ ପରିମାଣରେ adoration (ପୂଜାପ୍ରବଣଭାବ) ଥାଏ, ଯେଉଁଥିରେ conflict (ଦ୍ୱନ୍ଦ) ରହିଲେ ମଧ୍ୟ ନିଜେ suffer କରି ନିଜକୁ adjust (ନିୟନ୍ତ୍ରଣ) କରି ତାହାକୁ imbibe (ଆତ୍ମସ୍ଥ) କରିବା ପାଇଁ determined (ସଂକଳ୍ପବଦ୍ଧ) ହୁଏ ଏବଂ imbibe (ଆତ୍ମସ୍ଥ) କରେ, ତେବେ ସନ୍ତାନ ବ୍ୟାସଦେବଙ୍କ ପରି ହୁଏ । ମା ଯେତେ ପରିମାଣରେ imbibe (ଆତ୍ମସ୍ଥ) କରି ନ ପାରେ ସନ୍ତାନ ସେତେ ପରିମାଣରେ deprived (ବଞ୍ଚିତ) ହୁଏ । Husband-ର (ସ୍ୱାମୀର) sperm cell (ଶୁକ୍ରକୋଷ) ସ୍ତ୍ରୀର ଡିମ୍ବକୋଷକୁ ଯାଇ pauper (ଦୈନ୍ୟଗ୍ରସ୍ତ) ହୋଇ ପଡ଼େ, କାରଣ, ପୁରା adoration ଓ assimilation (ଭକ୍ତି ଓ ଆତ୍ମୀକରଣ) ନ ରହିଲେ ଶୁକ୍ରକୋଷକୁ ଅନେକ ପରିମାଣରେ reject (ପ୍ରତ୍ୟାଖ୍ୟାନ) କରେ, ପୁରାପୁରି receive (ଗ୍ରହଣ) କରି ପାରେ ନାହିଁ । ସେଥିପାଇଁ ଅନୁଲୋମର ବେଳକୁ ବେଶୀ ପାର୍ଥକ୍ୟ ରହିବା କିଛିଟା ଖରାପ, ଯେପରି ଦ୍ୱାନ୍ତର ବର୍ଣ୍ଣ ।

ଶରତଦା – ସୁପ୍ରଜନନ-ବିଜ୍ଞାନ ଆଜି ଆମ ଦେଶରେ ଅନେକ ପରିମାଣରେ ଲୁପ୍ତ, ଆପଣଙ୍କ ଦୟାରୁ ତାହାର ପୁନରୁଦ୍ଧାର ହେଉଛି ।

ଶ୍ରୀଶ୍ରୀଠାକୁର—ଆପଣମାନେ ଆହୁରି fine (ସୂକ୍ଷ୍ମ)–ଭାବରେ ସଜେଇ ଗୁଛେଇ pointedly (ସୁନିର୍ଦ୍ଦିଷ୍ଟଭାବରେ) ଦେବେ । ମୁଁ ଖଣିର ଜିନିଷ ବାଛି ଦେଇଯାଉଛି, ଆପଣମାନଙ୍କୁ ମାଜିଘଷି ଦେବାକୁ ହେବ । ଆ.ପ୍ର. ୧୩/୩୧.୭.୧୯୪୮

## ।। ଭଲ ମଣିଷର ଅଭାବ ଯିବ କିପରି ।।

ସେଥିପାଇଁ ଅନେକ କିଛି ଦରକାର । ପୁରୁଷକୁ ସୁନିଷ୍ଠ ଓ ସୁନିୟନ୍ତ୍ରିତ ହେବାକୁ ହେବ । ମୁଁ ନାରୀର ନୀତି ଓ ଛଡ଼ା ମଧ୍ୟରେ ଯେପରି-ଯେପରି କହିଛି ଝିଅମାନଙ୍କୁ ବିବାହ ଆଗରୁ ବାପ ଘରେ ଛୋଟବେଳରୁ ସେହି ଭାବରେ ଚାଲିବାକୁ ଅଭ୍ୟସ୍ତ କରି

ତୋଳିବାକୁ ହେବ । ବିବାହ ଖୁବ୍ ହିସାବ କରି ଦେବାକୁ ହେବ । ସ୍ୱାମୀ-ସ୍ତ୍ରୀ ଓ ପରିବାରର ଅନ୍ୟ ସମସ୍ତଙ୍କର ଚାଲି-ଚଳନ ଏପରି ହେବା ଉଚିତ ଯାହାଦ୍ୱାରା ଗଭୀର ଭଲପାଇବା, ମିଳାମିଶା, ଶାନ୍ତି, ଉନ୍ନତି ଓ ଆନନ୍ଦର ଆବହାଓ୍ୱା ସଂସାରରେ ସ୍ୱତଃ ହୋଇଉଠେ । ତା ବ୍ୟତୀତ ଦାମ୍ପତ୍ୟଜୀବନରେ sexual union (ଯୌନ ମିଳନ) ଏପରି ଭାବରେ ହେବା ଉଚିତ ଯେଉଁଥିରେ superior soul-ର (ଉନ୍ନତ ଆତ୍ମାର) ଆଗମନ ସମ୍ଭବ ହୋଇ ପାରେ । ଭକ୍ତିପ୍ରସୂତ ସହଜ ସଂଯମ ଓ ଇଷ୍ଟମୁଖୀ ଚଳନ ବ୍ୟତୀତ କାଇଦା-କସରତ କରି ଏହା ହୁଏ ନାହିଁ । ଯାହାହେଉ ଜନ୍ମ ପରେ ପୁଣି ପୁଅଝିଅଙ୍କର ଆଚାର-ବ୍ୟବହାର, ଶିକ୍ଷା-ଦୀକ୍ଷା, ସଙ୍ଗ, ଶରୀର-ମନର ପୋଷଣ, ସଦଭ୍ୟାସ ଗଠନ ଇତ୍ୟାଦିର ଦିଗକୁ ନଜର ଦେବାକୁ ହେବ । ଆର୍ଯ୍ୟକୃଷ୍ଟିର ଭିତ୍ତିଟାହିଁ ଏପରି ଯେଉଁଥିରେ ବ୍ୟକ୍ତି ଓ ସମାଜ ଦେବତ୍ୱଦୀପୀ ଦକ୍ଷତା ଓ ଉତ୍କର୍ଷରେ ଅଭିଦୀପ୍ତ ହୋଇ ଚାଲେ ।

ଆ.ପ୍ର. ୧୩/୯.୮.୧୯୪୮

## ।। ଝିଅମାନଙ୍କୁ କିପରି ଶିକ୍ଷା ଦେବାକୁ ହୁଏ ।।

ଝିଅମାନଙ୍କୁ ଏପରି ଶିକ୍ଷା ଦେବାକୁ ହୁଏ ଯାହାଦ୍ୱାରା ସେମାନେ ଆଦର୍ଶ ସ୍ତ୍ରୀ ଓ ମା ହୋଇ ପାରନ୍ତି । ପ୍ରଧାନ ଜିନିଷ ଏକନିଷ୍ଠ ଟାଣ । ବିବାହ ଆଗରୁ ଅନ୍ୟପୁରୁଷର ସଂଶ୍ରବରେ ସେମାନଙ୍କର ଟାଣ ଯେପରି ଖଣ୍ଡିତ ନ ହୁଏ । ବର-ମନୋନୟନରେ ବିଚାର୍ଯ୍ୟ କଣ-କଣ, ତାହା ମଧ୍ୟ ସେମାନଙ୍କ ମୁଣ୍ଡରେ ଗୁନ୍ଥି ଦେବାକୁ ହୁଏ, ଯେପରି ସେମାନେ ଯାହାକୁ-ତାହାକୁ ମନ ଦେଇ ନ ଦିଅନ୍ତି । ଆ.ପ୍ର. ୧୩/୯.୮.୧୯୪୮

## ।। ପାରଶବମାନଙ୍କର ଅଭାବ କିପରି ଦୂର ହେବ ।।

ସୁରେନଦା କହିଲେ – ପାରଶବମାନେ ତ ଦ୍ୱନ୍ଦ୍ୱର ବର୍ଣ୍ଣ । ପିତା ଏବଂ ମାତା ମଧ୍ୟରେ ବ୍ୟବଧାନ ଅନେକ । ଏ-କ୍ଷେତ୍ରରେ ସେମାନଙ୍କ ମଧ୍ୟରେ ଯେଉଁ ଅଭାବ ଥାଏ, ତାର ପରିପୂରଣ କିପରି ହୋଇ ପାରିବ ?

ଶ୍ରୀଶ୍ରୀଠାକୁର – ପାରଶବମାନେ ବିପ୍ରବର୍ଣ୍ଣର ଗୋଟିଏ ବର୍ଗ । କିନ୍ତୁ ସେ ଯାହା ହେଉ ସେମାନେ ଯଦି ସେମାନଙ୍କର ବୈଶିଷ୍ଟ୍ୟ ଅନୁଯାୟୀ ପିତୃକୃଷ୍ଟିର ପଥରେ ଚାଲନ୍ତି ତେବେ ତାଙ୍କର ଅନ୍ତର୍ନିହିତ ବିପ୍ରତ୍ୱ ଯେଉଁଭାବରେ ଉଦ୍ଭାସିତ ହେବାର ତାହା ହେବହିଁ । ବୀଜର ଶକ୍ତି କେତେବେଳେବି ନଷ୍ଟ ହୁଏ ନା, ଯଦିଓ ତାହା ମାଆର ପୋଷଣ ଅନୁଯାୟୀ

ରଞ୍ଜିତ ହୁଏ । ତୁମେମାନେ (ପାରଶବମାନେ) ଯଦି ବିହିତ ଆଚାର-ପରାୟଣ ହୁଅ, ତାହେଲେ ତୁମର ଚିନ୍ତାର କୌଣସି କାରଣ ନାହିଁ। ହୀନମନ୍ୟତାବଶତଃ ଅନ୍ୟ କେହି ଯଦି ତୁମ୍ଭମାନଙ୍କୁ ଛୋଟ କରିବାକୁ ଚାହେଁ, ତାହା ମଧ୍ୟ ସେମାନଙ୍କ ପାଇଁ ଯେପରି ଅନ୍ୟାୟ, ସେହିପରି ତୁମେମାନେ ମଧ୍ୟ ଯଦି ହୀନମନ୍ୟତାବଶତଃ ଶ୍ରେୟଙ୍କୁ ଶ୍ରଦ୍ଧା କରି ନପାର ତାହାହେଲେ ସେହିଟାମଧ୍ୟ ତୁମ୍ଭମାନଙ୍କ ପକ୍ଷରେ କ୍ଷତିକର। ପ୍ରକୃତ ପାରଶବମାନଙ୍କ ମଧ୍ୟରେ ଦେବଦ୍ୱିଜଙ୍କ ପ୍ରତି ଯେଉଁ ଉର୍ଜ୍ଜୀ ଶ୍ରଦ୍ଧା-ଭକ୍ତି ଦେଖା ଯାଏ ସେଥିରୁ ମନେ ହୁଏ ଏହି ରକମଟା ଚାଲୁ ରହିଲେ ତୁମ୍ଭମାନଙ୍କର କଲ୍ୟାଣ ଅବଧାରିତ। ବିଶେଷ କରି ଲକ୍ଷ୍ୟ ରଖ ଯେପରି ତୁମ୍ଭମାନଙ୍କ ସମାଜରେ ପ୍ରତିଲୋମ ବିବାହ କୌଣସି ପ୍ରକାରେ ପ୍ରବେଶ ନ କରେ। ଆ.ପ୍ର. ୧୪/୧୭.୮.୧୯୪୮

## ।। ସେପରି କ୍ଷମତାପୂର୍ଣ୍ଣ ମଣିଷ ଜନ୍ମୁ ନାହିଁ କାହିଁକି ।।

(ଉନବିଂଶ ଶତାବ୍ଦୀର ଅନେକ ବିଶିଷ୍ଟ ବଙ୍ଗାଳୀ ଓ ଭାରତୀୟଙ୍କ ପରି) କ୍ଷମତାପୂର୍ଣ୍ଣ ମଣିଷ କିନ୍ତୁ ଆଜିକାଲି କମ୍ ଜନ୍ମହେଉଛନ୍ତି। ତା ମାନେ marriage ଓ eugenics (ବିବାହ ଓ ସୁପ୍ରଜନନ) neglected (ଉପେକ୍ଷିତ) ହେଉଛି। ଏହି ମୂଳର ଦିଗକୁ ସବୁଠାରୁ ବେଶୀ ନଜର ଦେବା ପ୍ରୟୋଜନ। ମୂଳ କାଟି ଅଗରେ ଜଳ ଢାଳିଲେ କିଛି ହେବ ନାହିଁ। ଆ.ପ୍ର. ୧୪/୧୮.୮.୧୯୪୮

## ।। ଭଲ ସନ୍ତାନ ହେବାର ସମ୍ଭାବନା କେଉଁଠି ବେଶୀ ।।

ବିବାହ ବ୍ୟାପାରରେ ପୁରୁଷ-ନାରୀର ମଧ୍ୟରେ ଯେଉଁଠାରେ biological, social, psychological, temperamental, physio-chemical (ଜୀବବିଦ୍ୟାଗତ, ସାମାଜିକ, ମନସ୍ତାତ୍ତ୍ୱିକ, ପ୍ରକୃତିଗତ, ଶରୀର-ରସାୟନିକ) ଇତ୍ୟାଦି ବିଭିନ୍ନ ପ୍ରକାରର compatibility (ସାମଞ୍ଜସ୍ୟ) ଯେତେ ବେଶୀ ଥାଏ, ସନ୍ତାନର ମଧ୍ୟ ସେଠାରେ ସେତେ ଭଲ ହେବାର ସମ୍ଭାବନା ଥାଏ।

ଆ.ପ୍ର. ୧୪/୧୯.୮.୧୯୪୮

## ।। ବିବାହରେ ପାତ୍ର-ପାତ୍ରୀର ମଧ୍ୟରେ କିପରି ମେଳ ରହିବା ଦରକାର ।।

ପ୍ରକୃତିଗତ ମେଳ ଦରକାର। ତାହା ସବର୍ଣ୍ଣ, ଅନୁଲୋମ ଅସବର୍ଣ୍ଣ ଦୁଇ ବେଳରେହିଁ। ଆ.ପ୍ର. ୧୪/୨୧.୮.୧୯୪୮

## ।। ସ୍ୱାମୀ-ସ୍ତ୍ରୀର ଯୌନ ମିଳନ କେତେବେଳେ ହେବା ବାଞ୍ଛନୀୟ ।।

ଉଭୟଙ୍କର ଶାରୀରିକ ଓ ମାନସିକ ପ୍ରସ୍ତୁତି ନ ଘଟିଲେ ସେତେବେଳେ ମିଳନ ନ ହେବାହିଁ ବାଞ୍ଛନୀୟ । ବିବାହ ଓ ଯୌନ ମିଳନ ଯେପରି ହେବା ଉଚିତ ସେହିପରି ହେଲେ ରଜୋ-ବୀଜର ସୁଷ୍ଠୁ ସମନ୍ୱୟରେ ସନ୍ତାନ ଭଲ ହୁଏ । ଭଲ ଚାଷ-ଆବାଦ ପାଇଁ ମାଟି, ଜଳ, ସାର, ବୀଜ, ଆବହାଓ୍ୱା, ଯତ୍ନ ଇତ୍ୟାଦିର ସାମଞ୍ଜସ୍ୟ ଦରକାର ହୁଏ । ସବୁକିଛିର ଗୋଟିଏ ସୂକ୍ଷ୍ମ ଦିଗ ଅଛି । ଆ.ପ୍ର. ୧୪/୨୧.୮.୧୯୪୮

## ।। ବଂଶପରମ୍ପରା ଧରି ସାଧନା ଓ ସୁବିବାହର ଏତେ ଗୁରୁତ୍ୱ କାହିଁକି ।।

ଏହି ଭାବରେ ସାଧନା ଓ ବିବାହ ଯଦି ଇଷ୍ଟାନୁପୂରଣୀ ହୋଇ ଚାଲେ ତେବେ କାଳେ-କାଳେ ଦୈବୀ ଜୈବୀ-ସଂସ୍ଥିତି ଓ ସଂସ୍କାରସମ୍ପନ୍ନ ଜାତକର ଜନ୍ମ ହେବାର ଆଶା ଥାଏ । ଆ.ପ୍ର. ୧୪/୨୧.୮.୧୯୪୮

## ।। ଆମେରିକା-ଇଉରୋପରେ ବିପଦ କେଉଁଠି ।।

ଆମେରିକା ଓ ଇଉରୋପରେ ଯେତେଦିନ ସୁପ୍ରଜନନର ନୀତିବିଧି ଠିକ୍‌ଭାବରେ ପ୍ରତିପାଳିତ ହେଉଥିଲା, ସେତେଦିନ ସେଠାରେ ଅନେକ ଉଚ୍ଚସ୍ତରର ମଣିଷ ଜନ୍ମ ନେଉଥିଲେ, ବର୍ତ୍ତମାନ ତାହା କ୍ରମେ କ୍ରମେ ଲୋପ ପାଇ ଯାଉଛି, ବିଶେଷ-ମଣିଷର ଅଭ୍ୟୁତ୍ଥାନ ଆଜିକାଲି କମ୍‌ହିଁ ହେଉଛି । ବିଶେଷ ଧରଣର ମଣିଷ ଯଦି ଜନ୍ମ ନ ନିଅନ୍ତି, ତାହେଲେ ବାହାରର କୌଣସି ଉନ୍ନତିରେ କିନ୍ତୁ ସବୁଦିଗର ସୁରାହା ହେବ ନାହିଁ । ଯଦି ମଣିଷ ପ୍ରକୃତ ମଣିଷ ନ ହୁଏ ସମ୍ପଦ ମଧ୍ୟ ବିପଦର କାରଣ ହୋଇ ଉଠିବ ।
ଆ.ପ୍ର. ୧୪/୨୩.୮.୧୯୪୮

## ।। ଯାହା କରଣୀୟ ତାହା ଜୋର ଦେଇ ନ କରିଲେ କଣ ହେବ ।।

ଆଗରୁ ଆମ୍ଭମାନଙ୍କ ମଧ୍ୟରେ ଅନୁଲୋମ ଅସବର୍ଣ୍ଣ ବିବାହର ପ୍ରଚଳନ ଥିଲା । ତାହାଦ୍ୱାରା ସମାଜରେ ସଂହତି ଓ ସମ୍ପ୍ରସାରଣ ବୃଦ୍ଧି ପାଉଥାଏ । ପ୍ରତିଲୋମରେ କିନ୍ତୁ ସମାଜ ଧ୍ୱଂସର ଦିଗରେ ଯାଏ । ଆଜିକାଲି ସେହି ଦିଗରେହିଁ ଆମ୍ଭମାନଙ୍କର ଝୋଙ୍କ । ଆମ୍ଭେମାନେ ଜାଣି ନାହୁଁ ଯେ ଆମ୍ଭମାନଙ୍କ ଶାସ୍ତ୍ର କେତେ ବିଜ୍ଞାନସମ୍ମତ ଏବଂ ଶାସ୍ତ୍ରୀୟ ବିଧାନଗୁଡ଼ିକର ତାତ୍ପର୍ଯ୍ୟ କେତେ ଗଭୀର । ଖ୍ୟାତିସମ୍ପନ୍ନ ନେତାମାନେ ମଧ୍ୟ ଜାଣନ୍ତି

ନାହିଁ। ଅନ୍ୟମାନେ ତ ପରର କଥା ? ମୁଁ କହେ, ଯାହା କରଣୀୟ ତାହା ଜୋର ଦେଇ କର, ନ କରି ତ ଯାଇଛ, ନ କରି ରହିବାଟା ରହିବ ନାହିଁ।

ଆ.ପ୍ର. ୧୪/୨୩.୮.୧୯୪୮

## ।। ବିବାହ କିପରି ବଂଶରେ କରିବାକୁ ହୁଏ ବା ଦେବାକୁ ହୁଏ ।।

ନିଜ ଠାରୁ ଉଚ୍ଚ ବଂଶର ଝିଅ ବିବାହ କରିବା ଭଲ ନୁହେଁ, ଆଉ ନୀଚ ବଂଶରେ ନିଜର ଝିଅକୁ ବିବାହ ଦେବା ଭଲ ନୁହେଁ। ଏଥିରେ କ୍ଷତି ହୁଏ।

ଆ.ପ୍ର. ୧୪/୨୬.୮.୧୯୪୮

## ।। ଦୂରଦର୍ଶୀ ଦୃଷ୍ଟି ନ ରହିଲେ କଣ ହୁଏ ।।

ଆମ୍ଭମାନଙ୍କର ଅନୁଲୋମ ଅସବର୍ଣ୍ଣ ବିବାହ ଥିଲା। ରଘୁନନ୍ଦନ ଥମାଇ ଦେଲେ। କିନ୍ତୁ ଆମ୍ଭମାନଙ୍କର ଝିଅମାନେ ଆଜି ପ୍ରତିଲୋମକ୍ରମେ ବାହାରର ସମାଜକୁ ଚାଲି ଯାଉଛନ୍ତି, ଅନୁଲୋମକ୍ରମେ ଆମମାନଙ୍କ ସମାଜର ପରିଧି ବଢୁ ନାହିଁ। ଅନୁଲୋମ କ୍ରମେ ବାହାର ସମ୍ପ୍ରଦାୟର କୌଣସି ଝିଅ ଆମ ଘରକୁ ଆସିଲେବି ସେମାନଙ୍କୁ ମର୍ଯ୍ୟାଦା ଦେଉ ନା। ଆମେ ପୁଣି କହୁ, ବହୁବିବାହ ବନ୍ଦ କର। କିନ୍ତୁ ଯେଉଁ ସମାଜ ନିଷ୍ଠାବାନ୍, ସେମାନେ କିନ୍ତୁ ତାଙ୍କ ଶାସ୍ତ୍ରର ଉପରେ ହସ୍ତକ୍ଷେପ କରିବାକୁ ପସନ୍ଦ କରନ୍ତି ନାହିଁ। ଦୂରଦର୍ଶୀ ଦୃଷ୍ଟି ନ ରହିଲେ ମୁସ୍‌କିଲ। କେତେ ପ୍ରକାର ଆଇନ ହେଉଛି କିନ୍ତୁ ପଣପ୍ରଥା ନେଇ କୌଣସି ଆଇନ ହେଉ ନାହିଁ।

ଆ.ପ୍ର. ୧୪/୯.୯.୧୯୪୮

## ।। ସନ୍ତାନ ଅପେକ୍ଷା ସ୍ୱାମୀଙ୍କ ପ୍ରତି ବେଶୀ ଟାଣ କାହାର ଲକ୍ଷଣ ।।

ମହାଭାରତର ସମାଜରେ ଅଛି – ସତୀତ୍ୱର ଗୋଟିଏ ପ୍ରଧାନ ଲକ୍ଷଣ ହେଲା ସନ୍ତାନ ଅପେକ୍ଷା ସ୍ୱାମୀଙ୍କ ପ୍ରତି ବେଶୀ ଟାଣ ରହିବା। ସେଥିରେ ସନ୍ତାନକୁ intensely ଓ keenly (ଗଭୀର ଓ ତୀବ୍ର ଭାବରେ) enjoy (ଉପଭୋଗ) କରାମଧ୍ୟ ହୁଏ, ଅଥଚ decentric (ବିକେନ୍ଦ୍ରିକ) ହୁଏ ନା, ଉସ୍‌ହରା ହୁଏ ନା। ସନ୍ତାନଠାରୁ କୌଣସି shock (ଆଘାତ) ପାଇଲେ ପ୍ରାଣହରା ଭଳି ଅବସ୍ଥା ହୁଏ ନାହିଁ। ସେଥିରେ ସ୍ୱାମୀ, ସଂସାର, ସନ୍ତାନ, ନିଜେ ସମସ୍ତେହିଁ ଲାଭବାନ ହୁଅନ୍ତି, ସମସ୍ତଙ୍କୁହିଁ କେନ୍ଦ୍ରାୟିତ ସାର୍ଥକତାରେ ଗୁନ୍ଥି ତୋଳା ଯାଏ।

ଆ.ପ୍ର. ୧୪/୧୬.୯.୧୯୪୮

## ।। ବର୍ଣ୍ଣାଶ୍ରମ ଉଠେଇ ଦେବାକୁ ଚାହାଁନ୍ତି କାହିଁକି ।।

ବର୍ଣ୍ଣଭେଦ ଯେ ଉଠାଇ ଦେବାକୁ ଚାହାଁନ୍ତି, କୌଣସି-କୌଣସି ସମୟରେ ତା ମୂଳରେ କଣ ଥାଏ ଜାଣନ୍ତି ? ମଣିଷ ପିଲାବେଳ ରୁ ଘୂରେ ଫେରେ, ଅନେକ ଉଚ୍ଚ ବର୍ଣ୍ଣର ଝିଅ ସହିତ ଅନ୍ତରଙ୍ଗ ପରିଚୟ ହୁଏ। ବୈଶ୍ୟ ହୁଏତ ଭାବେ ସେ କାହିଁକି କାୟସ୍ଥର ଝିଅକୁ ବିବାହ କରିପାରିବନି। କାୟସ୍ଥ ହୁଏତ ଭାବେ ସେ କାହିଁକି ବ୍ରାହ୍ମଣର ଝିଅକୁ ବିବାହ କରିପାରିବନି। ସେତେବେଳେ ବର୍ଣ୍ଣାଶ୍ରମ ଉଠାଇ ଦେବାର philosophy (ଦର୍ଶନ) କହେ। କିନ୍ତୁ ଏହାର ବୈଜ୍ଞାନିକ ଭିତ୍ତି ଯେ କଣ ତା ଭାବି ଦେଖେ ନାହିଁ। ଆଉ ସଙ୍ଗେ ସଙ୍ଗେ ଆରମ୍ଭ କରେ ହାପୁସ୍-ହାପୁସ୍ କରି ଯେଉଁଠି ସେଇଠି ଯାହା ତାହା ଖାଇବା। ତେଣୁ ବର୍ଣ୍ଣାଶ୍ରମ-ବିରୋଧୀ ଅଭିଯାନର ମୂଳରେ କାମନତି ମଧ୍ୟ ଥାଏ। ଅବଶ୍ୟ ବର୍ଣ୍ଣାଶ୍ରମର ବିକୃତି, ଅଜ୍ଞତା ଓ ଅନ୍ୟାନ୍ୟ କାରଣ ମଧ୍ୟ ଅଛି। ...ଆଉ ବିପର୍ଯ୍ୟୟ ହୋଇଛି (ଯୌନ-ସମ୍ବେଗର) outlet (ବହିର୍ଗମନର ପଥ) ନ ଥିବାରୁ। ଋଷିମାନେ ଏହି outlet (ବହିର୍ଗମନର ପଥ) କରିଦେଇଥିଲେ ଅନୁଲୋମରେ, ଯାହା ଫଳରେ ଯୌନସମ୍ବେଗର ସୁନିୟନ୍ତ୍ରିତ ବ୍ୟବହାରର ଭିତର-ଦେଇ efficiency (ଦକ୍ଷତା) ଉଦ୍ଦାମ ହୋଇ ରହେ।

ଆମେ ବର୍ଣ୍ଣାଶ୍ରମର ତାତ୍ପର୍ଯ୍ୟ ଜାଣୁନା, ବୁଝୁନା। ଜାଣିବାଟା adored (ପୂଜିତ) ହେବ, ନା, ନ-ଜାଣିବାଟା ? ଭଲଟାହିଁ adored (ପୂଜିତ) ହେବ, ନା ଓଲଟାଟା ? ଅଜଣା ଅବସ୍ଥାରେ ଐତିହ୍ୟ ଅକ୍ଷତ ରଖିବାହିଁ ଭଲ। ତା ଉପରେ ହସ୍ତକ୍ଷେପ କରିବା ଠିକ୍ ନୁହେଁ। ବର୍ଣ୍ଣ ଅର୍ଥାତ୍ ସହଜାତ ସଂସ୍କାର-ଅନୁଯାୟୀ ବୃତ୍ତି ନିର୍ବାଚନ ଓ ଶ୍ରେଣୀ ବିଭାଗ ଏବଂ ବିହିତ ବିବାହ କିଛିଟା ବଜାଇ ରଖିହିଁ ଅସ୍ତିତ୍ୱ ବଜାଇ ଅଛି, ଯଦିଓ ଶୀର୍ଣ୍ଣ। ବର୍ଣ୍ଣାଶ୍ରମ ଠିକ୍ଭାବରେ ନ ପାଳିବାରୁ ଶୀର୍ଣ୍ଣ। କିଛିଟା ଧରି ରଖିବାରୁ ଶୀର୍ଣ୍ଣ ହୋଇ ମଧ୍ୟ ବଞ୍ଚି ଅଛୁ। ଆ.ପ୍ର. ୧୪/୧୯.୯.୧୯୪୮

## ।। ଲକ୍ଷ୍ୟ କରି ଦେଖ ଋଷିମାନେ କଣ ପାଇଁ କଣ କରିଛନ୍ତି ।।

ହିନ୍ଦୁ କୋଡବିଲ ସମ୍ପର୍କରେ ଆଲୋଚନା-ପ୍ରସଙ୍ଗରେ କେଷ୍ଟଦା କହିଲେ—ଆମ ନେତାମାନେ ମନେ କରନ୍ତି ଆମ୍ଭମାନଙ୍କର କେତେଗୁଡ଼ିଏ କୁସଂସ୍କାର ଅଛି ଯାହା ଠାରୁ ଅନ୍ୟ ଦେଶ ମୁକ୍ତ, ସୁତରାଂ ସେମାନଙ୍କ ସହିତ ସମପର୍ଯ୍ୟାୟରେ ଛିଡ଼ା ହେବାକୁ ଗଲେ ଆମର ଏଗୁଡ଼ିକୁ ଉଠେଇ ଦେବା ଦରକାର।

ଶ୍ରୀଶ୍ରୀଠାକୁର – ତା ମାନେ ଆମ୍ଭମାନଙ୍କର ଏପରି କିସ୍ମତ ବା ବୋଧ ନାହିଁ, ଯାହାଦ୍ୱାରା ଆମ୍ଭମାନଙ୍କର ବୈଶିଷ୍ଟ୍ୟଟା ସେମାନଙ୍କୁ ବୁଝାଇ ପାରିବୁ। ସେମାନେ ଯଦି ନ ବୁଝନ୍ତି, ସେଥିପାଇଁ ଆମ୍ଭମାନଙ୍କର ଋଷି-ମହାପୁରୁଷମାନଙ୍କ ଅମୂଲ୍ୟ ରତ୍ନ ବିସର୍ଜନ ଦେବୁ? ଏତେ ଭାଙ୍ଗି ମଧ୍ୟ ବର୍ତ୍ତମାନ ଯାହା ଅଛି, ତାର ତୁଳନା ନାହିଁ। ଯେ ନିଜେ ରହି ପାରେନା, ସେ ପରକୁ ରଖିବ କିପରି? ଆମ୍ଭମାନଙ୍କର ସେ urge (ଆକୂତି) ନାହିଁ, ଯାହାଦ୍ୱାରା ଆମେ ବୁଝାଇପାରିବୁ ଦେବଜାତି ହିସାବରେ ଆମ୍ଭମାନଙ୍କର କଣ ଥିଲା। ଆଗରୁ ଯଦି ଗୋଟିଏ ପ୍ରତିଲୋମ ବିବାହ ହେଉଥିଲା, ସାମାଜିକ ଶାସନ ଥିଲା, ସବୁ ବର୍ଣ୍ଣହିଁ ମିଶି ସ୍ୱର ଉତ୍ତୋଳନ କରୁଥିଲେ। ମୁସଲମାନମାନଙ୍କର କୌଣସି ବ୍ୟାପାରରେ ହାତ ଦଅନ୍ତୁ ତ! ସେମାନଙ୍କର ବହୁବିବାହ କିନ୍ତୁ ଅବ୍ୟାହତ ରହି ଯାଇଛି। ବୈଶିଷ୍ଟ୍ୟବାନ ପୁରୁଷ ସେହି ବୈଶିଷ୍ଟ୍ୟକୁ breed କରି (ଜନ୍ମ ଦେଇ) ପାରେ ତାହା କଣ ଆମେ ବୁଝିବୁ? ଆମ୍ଭମାନେ ଜିନିଷଟା ବୁଝିନାହୁଁ, ପରିବେଷଣ କରିବାର କ୍ଷମତା ନାହିଁ, ତେଣୁ ଉଠେଇ ଦେଇ ନିଷ୍କୃତି ପାଇବାକୁ ଚାହୁଁ।

ପ୍ରତିଲୋମରେ ବିଶ୍ୱାସଘାତକ ହୁଏହିଁ। ଏହା ପ୍ରାଣୀ ଜଗତ ବିଶେଷଭାବରେ ମାନେ। ମଣିଷ ତ ପ୍ରାଣୀରହିଁ କ୍ରମୋନ୍ନତି। ଋଷିମାନେ କଣ ପାଇଁ କଣ କରିଛନ୍ତି, କେହି ଆମେ ଲକ୍ଷ୍ୟ କରି ନାହୁଁ। ତାହାଯେ କେତେ ପରିମାଣରେ scientific (ବୈଜ୍ଞାନିକ) ଓ ସୁଦୂରଦୃଷ୍ଟି-ପ୍ରସୂତ ତା ମଧ୍ୟ ବୁଝିଲୁ ନାହିଁ। ତାହା ଶ୍ରଦ୍ଧାର ସହିତ ମୁଣ୍ଡରେ ନେଇ କାର୍ଯ୍ୟକ୍ଷେତ୍ରରେ ପ୍ରୟୋଗ କରିଲୁ ନାହିଁ। ନିଜର ସବୁ ଯଦି ହରାଇଦେଉ, ଆମ୍ଭମାନଙ୍କର ଅସ୍ତିତ୍ୱର ସାର୍ଥକତା କେଉଁଠି। ଆ.ପ୍ର. ୧୪/୧.୧୦.୧୯୪୮

## ।। ବିବାହାଦି କିପରି ଭାବରେ ହେବା ଦରକାର ।।

ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟ ନେଇ ଜଗତ। ବିବାହ ଏପରି ଭାବରେ ହେବା ଦରକାର ଯେପରି ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟ ବଜାଇ ରହେ ଓ ଉତ୍କର୍ଷଲାଭ କରେ। ବିବାହ ବେଳରେ ବର୍ଣ୍ଣାଶ୍ରମର ବିଧି ମାନି ଚଳିବା ଏକାନ୍ତ ଦରକାର। ବିହିତ ସବର୍ଣ୍ଣ ଓ ଅନୁଲୋମ ଭଲ, କିନ୍ତୁ ପ୍ରତିଲୋମ ବର୍ଜନୀୟ। ବର୍ତ୍ତମାନର ଆଇନ ଯାହା କହୁ, ପରମପିତା ଓ ପ୍ରକୃତିର ବିଧି ବୋଲି ଯାହା ଜାଣେ, ତାହାହିଁ ମୁଁ କହୁଛି।

ଆ.ପ୍ର. ୧୪/୧୪.୧୦.୧୯୪୮

## ।। ବିବାହ ଖୁବ୍ ଦେଖିଶୁଣି ଦେବ କାହିଁକି ।।

ଜଣେ ମା ତାଙ୍କ ପୁଅର ବିବାହ ହେବା କଥା କହିଲେ।

ଶ୍ରୀଶ୍ରୀଠାକୁର – ହଁ! ବିବାହ ଖୁବ୍ ଦେଖିଶୁଣି ଦେବୁ। ବିବାହ ଯେଉଁଠି–ସେଇଠି ହେଲେ ହେବ ନାହିଁ। ଏହା ଉପରେ ସଂସାରର ସୁଖଶାନ୍ତି, ଭବିଷ୍ୟତ ବଂଶ ନିର୍ଭର କରେ।

ଆ.ପ୍ର. ୧୪/୧୪.୧୦.୧୯୪୮

## ।। କୁଳୀନ କିଏ କିପରି ବୁଝିବ ।।

ଇଷ୍ଟକୃଷ୍ଟି ଧରିବା ବା ନ-ଧରିବାରୁ ବୁଝାଯାଏ କୁଳୀନ କିଏ। ମୋଟାମୋଟି ଏହି ଲାଇନ ଧରି ଠିକ୍ କରା ଯାଏ। ଆ.ପ୍ର. ୧୪/୧୫.୧୦.୧୯୪୮

## ।। କୁଳୀନମାନଙ୍କ ମଧ୍ୟରେ ବି ଖରାପ ଦେଖା ଯାଏ କାହିଁକି ।।

କେତେରକମର ଗୋଳମାଳ ହୋଇ ଯାଇ ଥାଇ ପାରେ। କିନ୍ତୁ କୌଣସି interpolation (ବ୍ୟତୟ) ନ ରହିଲେ, specific channel (ବିଶିଷ୍ଟ ଧାରା) କୌଣସି-ନା-କୌଣସି ଭାବରେ ଠିକ୍ ଥାଏହିଁ। ଯେପରି ନ୍ୟାଂଡ଼ା, ବୋମ୍ବାଇ, ଫଜଲି ଏହାର ପ୍ରତ୍ୟେକଟିର ଗୋଟିଏ ବୈଶିଷ୍ଟ୍ୟ ଅଛି। ବାହ୍ୟିକ କୌଣସି କାରଣରୁ ଏ ଗୁଡ଼ିକ ଛୋଟ ହୋଇ ପାରେ, ଖଟା ହୋଇ ପାରେ, କିନ୍ତୁ ମୂଳ character (ଚରିତ୍ର) ଯାଏ ନାହିଁ। Nuture (ପୋଷଣ) ଦେଇ ପୁଣି ଭଲ ନ୍ୟାଂଡ଼ା, ବୋମ୍ବାଇ, ଫଜଲି କରା ଯାଏ। କୁଳୀନମାନଙ୍କର biological adjustment of system (ବୈଧାନିକ ଜୈବ ସଙ୍ଗତି) ଏପରି ଥାଏ ଯେ ବିଶେଷ ରକମର possibility (ସମ୍ଭାବନା) ଥାଏ।

ଆ.ପ୍ର. ୧୪/୧୫.୧୦.୧୯୪୮

## ।। ବିବାହ ଦେବାରେ ବଂଶର ବିଚାର କରିବ କାହିଁକି ।।

ଜଣେ କହିଲେ – ଆଜିକାଲି ତ କହନ୍ତି – ବିବାହ ହେବ ମନର ମେଳ ହେଲେ, ସେଠାରେ ପୁଣି ବଂଶ କଣ ?

ଶ୍ରୀଶ୍ରୀଠାକୁର – ମନଟା ମଣିଷର ନା କାହାର ? ମନଟା ଏକ ଶରୀରବିଧାନ ଅବଲମ୍ବନ କରି ଚଳିବ ତ ? ଜଳଟା ନଦୀରେ ବହେ, ନା ଶୂନରେ ବୋହି ଚାଲେ ?

ଆ.ପ୍ର. ୧୪/୧୫.୧୦.୧୯୪୮

## ।। କୁଳୀନ ମୌଳିକର ଝିଅ ନେଲେ କଣ ହୁଏ ।।

ଶ୍ରୀଶ୍ରୀଠାକୁର ଜିତେନ ଦା (ମିତ୍ର)-କୁ କହିଲେ – ମୋର ମନେ ହୁଏ, କୁଳୀନର ଝିଅ ମୌଳିକର ଘରକୁ ଗଲେ ଫଳ ସେତେ ଭଲ ହୁଏ ନା, କିନ୍ତୁ କୁଳୀନ ମୌଳିକର ଝିଅ ନେଲେ ଭଲ ହିଁ ହୁଏ ।

ଜିତେନ ଦା – ଆମର ଏକ ଜ୍ଞାତିଭାଇ ଅଛନ୍ତି, ତାଙ୍କ ମା ମୌଳିକ ଘରର ଝିଅ। ସେମନେ ସବୁ ପି.ଆର.ଏସ.,ପି.–ଏଇଚ ଡି ଏହିସବୁ।

ଶ୍ରୀଶ୍ରୀଠାକୁର – ଅବଶ୍ୟ କେବଳ ଡିଗ୍ରୀହିଁ ସବୁ ନୁହେଁ। Characteristics (ବୈଶିଷ୍ଟ୍ୟ) ଦେଖିବାକୁ ହେବ, character (ଚରିତ୍ର) ଦେଖିବାକୁ ହେବ। Real character (ପ୍ରକୃତ ଚରିତ୍ର) ରହିଲେ, ତାଙ୍କ ପାଖକୁ ଯାଇ ମଣିଷର ପ୍ରାଣ ଥଣ୍ଡା ହୋଇ ଯାଏ। ଶ୍ରଦ୍ଧା, ସେବା, ସହାନୁଭୂତି, ସମ୍ବର୍ଦ୍ଧନା ସେମାନଙ୍କର ସ୍ୱତଃ-ସମ୍ପଦ।

ଆ.ପ୍ର. ୧୪/୧୫.୧୦.୧୯୪୮

## ।। ଅନୁଲୋମକ୍ରମିକ ରକ୍ତ-ସଂମିଶ୍ରଣ ସବୁଦିଗ ଦେଇହିଁ କଲ୍ୟାଣକର ।।

ଅନୁଲୋମ ଅସବର୍ଣ୍ଣ ବିବାହରେ ସମାଜର ବିଭିନ୍ନ ବର୍ଣ୍ଣର ମଧ୍ୟରେ ଗୋଟିଏ ଶ୍ରଦ୍ଧା, ପ୍ରୀତି ଓ ଐକ୍ୟର ସମ୍ପର୍କ ଗଢ଼ି ଉଠେ। ତା ବ୍ୟତୀତ, ସମାଜ ମଧ୍ୟରେ ଗୋଟିଏ ଊର୍ଦ୍ଧ୍ୱମୁଖୀ ଭାବ ଦେଖା ଯାଏ। ସନ୍ତାନର ଶରୀର, ମନ, ବୁଦ୍ଧିରେ ଗୋଟିଏ ଶକ୍ତି ଓ ଦୀପ୍ତି ଦେଖା ଦିଏ। ବିହିତ ଅନୁଲୋମକ୍ରମିକ ରକ୍ତ-ସଂମିଶ୍ରଣ ସବୁଦିଗ ଦେଇହିଁ କଲ୍ୟାଣକର। ଆ.ପ୍ର. ୧୪/୧୬.୧୦.୧୯୪୮

## ।। ଝିଅମାନଙ୍କର ପରିଚ୍ଛନ୍ନତା, ଆଚାର, ନିଷ୍ଠାର ଉପରେ ଜୋର ଦିଆ ହୁଏ କାହିଁକି ।।

ଝିଅମାନେ କେବଳ ଶରୀରର ବିନ୍ୟାସ କରିଲେ ହେବ ନାହିଁ, ସେହିପରି ମନର ବିନ୍ୟାସ ମଧ୍ୟ ହେବା ଦରକାର। Soothing (ସ୍ନିଗ୍ଧକର), nurishing (ପୁଷ୍ଟିପ୍ରଦ), elating approach (ଉଦ୍ଦୀପନୀ ଅଭିଗମନ) ହେବା ଦରକାର। ସ୍ତ୍ରୀ ହୁଏତ ଖୁବ୍ ସାଜି ଗୁଜି ମନଲୋଭା ରକମରେ ସ୍ୱାମୀର ଅନ୍ତରଙ୍ଗ ସାନିଧ୍ୟରେ ଆସିଲା। ସ୍ୱାମୀଙ୍କର ମିଳନାଗ୍ରହ ହେଲା। ସେତେବେଳେ ସ୍ତ୍ରୀର ମୁଖରୁ ହୁଏତ ଭକ୍‌କରି ବିରକ୍ତିକର ଗନ୍ଧ ବାହାରିଲା। ଏହି ମିଳନରେ ଯଦି କୌଣସି ସନ୍ତାନ ହୁଏ, ତାର ଘ୍ରାଣସ୍ନାୟୁର ବୈକଲ୍ୟ

ପ୍ରାୟ ନିଶ୍ଚିତ। ସେଥିପାଇଁ ସ୍ତ୍ରୀ ଲୋକର ପରିଚ୍ଛନ୍ନତା, ଆଚାର, ନିଷ୍ଠାର ଉପରେ ଏତେ ପରିମାଣରେ ଜୋର ଦିଆଯାଏ। ତୁମେ ହୁଏତ ଗୋଟିଏ ଖାଦ୍ୟ ଖାଇବ, ତାର ଗନ୍ଧ ମଧ୍ୟ ଭଲ। ଦେଖିବାକୁ ମଧ୍ୟ ଭଲ, କିନ୍ତୁ ସ୍ୱାଦ ଭଲ ନୁହେଁ, ସେଥିରେ ସବୁପ୍ରକାର ସ୍ନାୟୁର ଭଲ କ୍ଷରଣ ହେବ ନାହିଁ, ଫଳରେ ହଜମ ଠିକ୍ ହେବ ନାହିଁ। ସବୁ ରକମର କ୍ଷରଣ ଭଲ ହେବା ଦରକାର। ଜନନ ବେଳକୁ ମଧ୍ୟ ଶରୀର—ମନର ଯୁକ୍ତ ଆଗ୍ରହ-ପ୍ରସୂତସୁସଙ୍ଗତିରେ proper nurture (ବିହିତ ପୋଷଣ) ଦେବା ଭଳି secretion (କ୍ଷରଣ) ଯଦି ଡିମ୍ବକୋଷରେ ହୁଏ, ସେଥିରେ ସନ୍ତାନର ଉପକାର ହୁଏ।

ଆ.ପ୍ର. ୧୪/୨୬.୧୦.୧୯୪୮

## ।। ଅନୁଲୋମ ବିବାହ ଦରକାର କାହିଁକି ।।

କେବଳ ବହୁବିବାହ ନୁହେଁ, ଅନୁଲୋମ ଦରକାର, ଏଥିରେ superior progeny (ଉନ୍ନତ ସନ୍ତତି) ବଢ଼େ। ପ୍ରତିଲୋମ ଦିଗକୁ ଝୋଙ୍କ ଗଲେ ସମାଜରେ inferior type (ନିକୃଷ୍ଟ ଶ୍ରେଣୀ) ବଢ଼ିଯାଏ। Inferior (ନିକୃଷ୍ଟ)-ର ଯଦି ଜୋର ବଢ଼େ ସେ Superior (ଉନ୍ନତ)-କୁ ନଷ୍ଟ କରି ଦେବ। ତୁମର ଯେ self control (ଆତ୍ମସଂଯମ), ତୁମର ଯେ wisdom (ଜ୍ଞାନ), ତାହା ଯାହାର—ତାହାର ହେବ ନାହିଁ। ଭାବି ଦେଖ, ଆହୁରି ଭଲ ଚାହଁ କିନା। ଅନୁଲୋମରେ ଛୋଟ ବଡ଼ ହେବା ଦିଗରେ ଯିବ।

ଆ.ପ୍ର. ୧୪/୨୯.୧୦.୧୯୪୮

## ।। ସତୀତ୍ୱ ଉପରେ ଜୋର କାହିଁକି ।।

ଝିଅମାଙ୍କର ସତୀତ୍ୱର ଉପରେ ଜୋର ଦିଆଯାଇଛି କାରଣ ସେମାନଙ୍କର ପ୍ରବୃତ୍ତିଗୁଡ଼ିକ ଯଦି concentrated (ଏକମୁଖୀ) ହୁଏ through love & service (ଭଲପାଇବା ଓ ସେବାର ଭିତର ଦେଇ) ସେତେବେଳେ glandular exudation (ଗ୍ରନ୍ଥିର କ୍ଷରଣ) regular (ନିୟମିତ) ହୁଏ, ସେଥିରେ sperm (ଶୁକ୍ର) properly nurtured (ଠିକ୍‌ଭାବରେ ପରିପୋଷିତ) ହୁଏ, ସନ୍ତାନ ମଧ୍ୟ ଭଲ ହୁଏ। ସେଥିପାଇଁ ବିବାହ-ବିଚ୍ଛେଦ ବିରୁଦ୍ଧରେ ଯୀଶୁଖ୍ରୀଷ୍ଟ ଏତେ ତୀବ୍ରଭାବରେ କହିଛନ୍ତି। ସ୍ୱାଭାବିକ ସଂଯମ ଦରକାର। କ୍ଷୁଧା ସମୟରେ ଭଲ ଖାଇବା ପାଇଲେ glandular secretion (ଗ୍ରନ୍ଥିର କ୍ଷରଣ) ଭଲ ହୁଏ, ସେଥିରେ digestive function (ହଜମ-କ୍ଷମତା) enhanced (ବୃଦ୍ଧିପ୍ରାପ୍ତ) ହୁଏ। କିନ୍ତୁ କ୍ଷୁଧାରେ ନ ଖାଇ ଲୋଭରେ ଖାଇଲେ ସେପରି healthy secretion

(ସ୍ୱାସ୍ଥ୍ୟପ୍ରଦ କ୍ଷରଣ) ହୁଏ ନାହିଁ। ତାହାଦ୍ୱାରା ହଜମରେ ସାହାଯ୍ୟ ହୁଏ ନା।

ଆ.ପ୍ର. ୧୪/୨୯.୧୦.୧୯୪୮

## ॥ ପ୍ରକୃତ ବ୍ରହ୍ମଚାରୀ ଯଦି ବିଧିମତ ବିବାହ କରେ – କଣ ହୁଏ ॥

ପ୍ରଶ୍ନ–ସ୍ୱାମୀଜୀଙ୍କର ସନ୍ତାନ ହୋଇଥିଲେ କଣ ଭଲ ହୋଇଥାନ୍ତା ?

ଶ୍ରୀଶ୍ରୀଠାକୁର – ଯଦି ଉପଯୁକ୍ତ ବିବାହ ହୋଇଥାନ୍ତା ତାହେଲେ ଭଲ ହେବାରହିଁ ସମ୍ଭାବନା। ବ୍ରହ୍ମଚର୍ଯ୍ୟେ ଅର୍ଥାତ୍ ବୃଦ୍ଧିମୁଖୀ ଆଚରଣରେ ବୀର୍ଯ୍ୟ ଲାଭ ହୁଏ। ତା ମାନେ, ସୁପ୍ତ ଶକ୍ତିଗୁଡ଼ିକ ଜାଗ୍ରତ ହୋଇ ଉଠେ। ଯେଉଁମାନେ ପ୍ରକୃତ ବ୍ରହ୍ମଚାରୀ ସେମାନେ ବିଧିମତ ବିବାହ କରିଲେ ଭଲ ଛଡ଼ା ମନ୍ଦ ହୁଏ ନାହିଁ।

ଆ.ପ୍ର. ୧୪/୨୯.୧୦.୧୯୪୮

## ॥ ପ୍ରତ୍ୟେକେ କିପରି ତା କାହା ଉପରେ ନିର୍ଭର କରେ ॥

ପ୍ରତିଲୋମ ଜାତି ପକ୍ଷରେ କ୍ଷତିକର, ଅନୁଲୋମ ଭଲ। ପ୍ରତ୍ୟେକେ ଯେପରି ଉନ୍ନତ ଓ ଭଲ ହୋଇ ପାରନ୍ତି ତାହା କରିବା ଭଲ। ମଣିଷଟା କିପରି ତାହା ନିର୍ଭର କରେ ତାର seed (ଜନ୍ମଗତ ବୀଜ)-ର ଉପରେ। ଗୋଟିଏ ଲିଚୁକୁ ତରଭୁଜ ପରି ବଡ଼ କରା ଯାଏ। ଶୁଣିଛି କୌଣସି କ୍ଷତ୍ରିୟ ପରିବାରରେ ଯଦି ପର-ପର ପାଞ୍ଚପୁରୁଷ ବ୍ରହ୍ମଜ୍ଞ ହୁଅନ୍ତି, ସେହି ପରିବାରରେ ବିପ୍ରତ୍ୱର ବୀଜ ସୁପ୍ରତିଷ୍ଠିତ ହୁଏ। ସେତେବେଳେ କ୍ଷତ୍ରିୟତ୍ୱ ବିପ୍ରତ୍ୱରେ ଉନ୍ନୀତ ଓ ରୂପାନ୍ତରିତ ହୁଏ।

ପ୍ରଶ୍ନ – ବିପ୍ରର ପୁଅ କେତେ ଖରାପ ଦେଖା ଯାଏ ପୁଣି ନିମ୍ନ ବର୍ଣ୍ଣର ପୁଅ କେତେ ଭଲ ହୁଏ।

ଶ୍ରୀଶ୍ରୀଠାକୁର – ଯାହାର ଯେଉଁ instinctive trait (ସହଜାତ ଗୁଣ) ଅଛି, ତାର proper nurture (ଠିକ୍ ପୋଷଣ) ହେଲେ, ସେହି ଗୁଣର ବିକାଶର ସମ୍ଭାବନା ଅନେକ ବେଶୀ। କିନ୍ତୁ ଯାହାର ତାହା ନାହିଁ ତା ଭିତରେ ତାହା ଗଜେଇ ତୋଳିବା ବହୁ ସମୟସାପେକ୍ଷ ବ୍ୟାପାର। ଆ.ପ୍ର. ୧୪/୨୯.୧୦.୧୯୪୮

## ॥ କିପରି ବୁଝିବ କିଏ କାହା ସହିତ ଖାପ ଖାଇବ ॥

ପ୍ରଶ୍ନ – ବିବାହ ସମ୍ବନ୍ଧରେ ସମବିପରୀତ ସତ୍ତା ଠିକ୍ କରା ଯିବ କିପରି ? କିଏ କାହା ସହିତ ଖାପ ଖାଇବ, ବୁଝା ଯିବ କିପରି ?

ଶ୍ରୀଶ୍ରୀଠାକୁର – Culture (ଅନୁଶୀଳନ) କରିବାକୁ ହେବ। ପୂର୍ବେ ଘଟକମାନଙ୍କର ଏପରି intution (ଅନ୍ତର୍ଦୃଷ୍ଟି) ଥିଲା ଯେ ସେମାନେ କହି ପାରୁଥିଲେ। ବର୍ତ୍ତମାନ ସେ-ସବୁ ଆଉ ଖୋଜି ପାଇବାର ଜୋ ନାହିଁ। ସେତେବେଳେ ଘଟକମାନଙ୍କର କେତେ ସମ୍ମାନ ଥିଲା। ଆ.ପ୍ର. ୧୪/୩୦.୧୦.୧୯୪୮

## ।। ପ୍ରତିଲୋମ ଗର୍ଭସଞ୍ଚାର ହେଲେ ଏବଂ ପ୍ରତିଲୋମ ସନ୍ତାନର ସଂଖ୍ୟା ନ ବଢ଼ାଇବା ପାଇଁ କଣ କରିବ ।।

ପ୍ରଶ୍ନ – ଯଦି ଗୋଟିଏ ପ୍ରତିଲୋମ conception (ଗର୍ଭସଞ୍ଚାର) ହୁଏ, ସେଠାରେ କଣ abortion (ଗର୍ଭପାତ) କରିବା ଚଳିବ ?

ଶ୍ରୀଶ୍ରୀଠାକୁର – ସେଠାରେ ସମଗ୍ର ପରିବାର ଓ ସମାଜର ଭାବୀ କଲ୍ୟାଣ ଅକଲ୍ୟାଣର କଥା ଚିନ୍ତା କରି କରଣୀୟ ସ୍ଥିର କରିବ।

ପ୍ରଶ୍ନ – ପ୍ରତିଲୋମ ଯାହା ହୋଇ ଯାଇଛି, ସେମାନଙ୍କର ସଂଖ୍ୟା ତ ବଢ଼ୁଛି।

ଶ୍ରୀଶ୍ରୀଠାକୁର – ସେମାନଙ୍କୁ sterilise (ନିର୍ବୀଜ) କରି ଦେବା ଦରକାର। ବଂଶ ଯେପରି ବଢ଼ି ନ ପାରେ। ଆ.ପ୍ର. ୧୪/୪.୧୧.୧୯୪୮

## ।। ସ୍ତ୍ରୀର କିପରି ଭାବ ସୁସନ୍ତାନର ଜନ୍ମ ସମ୍ଭବ କରି ତୋଳେ ।।

ପ୍ରକୃତରେ କ୍ଷୁଧା ଯଦି ଥାଏ ଏବଂ ସେତେବେଳେ ପସନ୍ଦଯୁକ୍ତ, ଭଲ, ଆଗ୍ରହ-ଉଦ୍ଦୀପୀ ଖାଇବା ଯଦି ମିଳେ, ସେଥିରେ ଯେପରି ଲାଳକ୍ଷରଣ ଓ ହଜମ ଭଲ ହୁଏ ସେହିପରି ସ୍ତ୍ରୀର ମଧ୍ୟ ସ୍ୱାମୀ ପ୍ରତି ଯଦି ଶ୍ରଦ୍ଧାବିଭୋର କ୍ଷୁଧା ଥାଏ, ଅଚ୍ୟୁତ କେନ୍ଦ୍ରାୟିତ ଅନୁରାଗ ଥାଏ, ତେବେ ସେମାନଙ୍କର ମିଳନ ସମୟରେ ସ୍ତ୍ରୀର ଦେହରୁ ଏପରି ରସକ୍ଷରଣ ହୁଏ ଯାହା ପୁଂବୀଜକୁ ସର୍ବାତୋଭାବରେ ପୋଷଣ ଦେଇ ସୁସନ୍ତାନର ଜନ୍ମ ସମ୍ଭବ କରି ତୋଳେ। ଅବଶ୍ୟ ବିବାହ ଠିକ୍‌ଭାବରେ ହେବା ଦରକାର। ବୈଶିଷ୍ଟ୍ୟକୁ ନଷ୍ଟ କରି ବିରୁଦ୍ଧ ମିଳନ ଘଟାଇବାକୁ ଗଲେ ବିପର୍ଯ୍ୟୟ ହୁଏ। ଉଦ୍ଭିଦ-ଜଗତରେ, ମଣିଷ ଜଗତରେ, ଜୀବଜନ୍ତୁର ଜଗତରେ ସର୍ବତ୍ର ଏହା ଘଟେ। ମିଳନ ହେବା ଦରକାର ସଙ୍ଗତିଶୀଳ। ପୁଣି ଇଷ୍ଟ-କୃଷ୍ଟିର ଅନୁସରଣ ମଧ୍ୟ ଦରକାର। ତାଦ୍ୱାରା ବଂଶଗତ ଗୁଣାବଳୀ ଅଟୁଟ ଓ ବର୍ଦ୍ଧନଶୀଳ ରହେ। ଜନ୍ମଗତ ସଂସ୍କାର ଓ ଅର୍ଜିତଗୁଣ ମଧ୍ୟରେ ଢ଼େର ପାର୍ଥକ୍ୟ। ଜଣେ ବୈଶ୍ୟ ଯେତେ ବଡ଼ ହେଉ ନା କାହିଁକି, ସେ କିନ୍ତୁ ବିପ୍ରକନ୍ୟାକୁ ବିବାହ କରିପାରିବ

ନାହିଁ। କାରଣ ତାର ବୀଜ ବିପ୍ରକନ୍ୟାର ଡିମ୍ବକୋଷକୁ ପରିପୂରଣୀ ରସଦ ଯୋଗାଇ ପାରିବ ନାହିଁ। ତେଣୁ, ପ୍ରତିଲୋମ-ବିବାହ ନିଷିଦ୍ଧ।

ଆ.ପ୍ର. ୧୫/୧୧.୧୨.୧୯୪୮

## ।। ସୁପ୍ରଜନନ ପାଇଁ କଣ କଣ ଦେଖିବାକୁ ହୁଏ ।।

ମଣିଷର ସହଜାତ ସଂସ୍କାରଗତ କର୍ମର organic adjustment (ବୈଧାନିକ ସଂସ୍ଥିତି) ଯେପରି ଥାଏ, ମସ୍ତିଷ୍କର ସ୍ନାୟୁବିଧାନର ବିନ୍ୟାସ ସେହିପରି ଥାଏ, ବିଶେଷଗୁଣର moudle (ପିଣ୍ଡ) ଥାଏ, ତାର ଉପଯୋଗୀ ଓ ପୋଷଣୀ environmental impulse (ପାରିବେଶିକ ସାଡ଼ା) ପାଇଲେ ବା ତା ପାଖକୁ ଗଲେ ତାହା ଜାଗ୍ରତ ଓ ଜ୍ୱଳନ୍ତ ହୋଇଉଠେ। ଯେପରି ଛଣ ଫୁଲର ବିଭିନ୍ନ ରକମ ଅଛି, ତାର ପ୍ରତ୍ୟେକଟାର ପୋଷଣ ଅଲଗା। ସେଗୁଡ଼ିକ ଓଲଟ-ପାଲଟ କରି ଏକାକାର କରିବାକୁ ଗଲେ ହୁଏତ ଫଳ ମିଳିବ ନାହିଁ। ପ୍ରତ୍ୟେକର ଧରଣହିଁ ଅଲଗା, ବୈଧାନିକ ସମାବେଶ ସ୍ୱତନ୍ତ୍ର, ସାର୍ଥକତା ଓ ଉପଯୋଗିତା ମଧ୍ୟ ବିଶିଷ୍ଟ, ତେଣୁ ଯାହା-କିଛିର ସଂଯୋଗ ମଧ୍ୟ ବିହିତଭାବରେ କରାଇବାକୁ ହେବ, ନହେଲେ ଫଳ ଭଲ ହେବ ନାହିଁ।

ଏହା-ହିଁ ବର୍ଣ୍ଣ। ସୁପ୍ରଜନନ ପଇଁ ବର୍ଣ୍ଣ ଓ ଅନ୍ୟାନ୍ୟ ଜିନିଷ ଦେଖିବା ଦରକାର। କାହା ସହିତ କାହାର ମେଳ ହୋଇପାରେ, ଦେଖିବାକୁ ହୁଏ। ଆଉ, ପ୍ରତ୍ୟେକକୁ ତାର instinct (ସହଜାତ-ସଂସ୍କାର) ଅନୁଯାୟୀ କାମରେ engage (ନିଯୁକ୍ତ) କରିବାହିଁ ଭଲ। ...ପ୍ରତ୍ୟେକଙ୍କର ସଂସ୍କାର-ଅନୁଯାୟୀ ବୃତ୍ତିନିର୍ବାଚନ ହେଲେ ଜାତିଟାର efficiency (ଦକ୍ଷତା) ବଢ଼ି ଯାଏ। ଏହିଠାରେ ମଧ୍ୟ ଏହି ବର୍ଣ୍ଣ। ଆଉ chastity (ସତୀତ୍ୱ) ଜିନିଷଟା ଏକାନ୍ତ ପ୍ରୟୋଜନ। ଠିକ୍ ଠିକ୍ କ୍ଷୁଧା ଯଦି ହୁଏ, ଏବଂ ସେତେବେଳେ ପସନ୍ଦଯୁକ୍ତ ଉପାଦେୟ ଖାଦ୍ୟ ଯଦି ମିଳେ, ତାହା ଖାଇବା ସମୟରେ ଯେପରି ଉପଯୁକ୍ତ ଲାଳକ୍ଷରଣ ହୁଏ ଏବଂ ହଜମ ମଧ୍ୟ ଭଲ ହୁଏ, ସ୍ୱାସ୍ଥ୍ୟର ମଧ୍ୟ ଉନ୍ନତି ହୁଏ, – ସେହିପରି ବିହିତ ପରିଣୟ ଯଦି ହୋଇ ଥାଏ ଏବଂ ସ୍ତ୍ରୀର ଯଦି ସ୍ୱାମୀ ପ୍ରତି ଶ୍ରଦ୍ଧାବିଭୋର ସୁକେନ୍ଦ୍ରିକ ଅନୁରାଗ ଅର୍ଥାତ୍ ତାର ସମଗ୍ର ସତ୍ତା ଦେଇ ସ୍ୱାମୀର ସେବା କରି ଯଦି ନିଜକୁ ଧନ୍ୟ ଓ କୃତାର୍ଥ ବୋଧ କରେ ତାହେଲେ ସେହିପରି ଦମ୍ପତିର ବିଧିମାଫିକ ଉପଗତିର ସମୟରେ ସ୍ତ୍ରୀର ଦେହରୁ ଏପରି ସୁଷ୍ଠୁ ବୈଧାନିକ

କ୍ଷରଣ ହୁଏ ଯାହା ସନ୍ତାନକୁ ସର୍ବାଂଶେ ପୁଷ୍ଟ କରି ତୋଳେ। ସତୀ ସ୍ତ୍ରୀର ସେବା ଓ ପ୍ରେରଣାରେ ସ୍ୱାମୀ ମଧ୍ୟ ସବୁଦିଗ ଦେଇ ବଢ଼ି ଉଠନ୍ତି ଏବଂ ଏହାରି ଭିତର-ଦେଇ ସ୍ତ୍ରୀର ଜୀବନ ମଧ୍ୟ ସାର୍ଥକ ହୋଇ ଉଠେ। ସମଗ୍ର ପରିବାରରେ ମଧ୍ୟ ଶାନ୍ତି ଓ ସମୃଦ୍ଧି ଆସେ। ତେଣୁ ସତୀତ୍ୱର ଏତେ ପ୍ରୟୋଜନ। ସ୍ୱାମୀର ଯଦି ପୂର୍ଣ୍ଣ ସ୍ୱାମୀ ନ ଥାନ୍ତି, ତାର ଯଦି surrender (ଆତ୍ମସମର୍ପଣ) ନ ରହେ ତାଙ୍କଠାରେ, ସେ ଯଦି ସ୍ତ୍ରୀକୁ ଖୁସି କରିବାପାଇଁ ଛୁଟେ, ସେଥିରେ ଫଳ ବିପରୀତ ହୁଏ। ...ସ୍ୱାମୀ-ସ୍ତ୍ରୀ ଉଭୟେ ଯଦି ତାଙ୍କଠାରେ କେନ୍ଦ୍ରାୟିତ ହୋଇ ଚଳନ୍ତି, ସନ୍ତାନ ଗୋଟିଏ ଗୋଟିଏ ସୂର୍ଯ୍ୟଙ୍କୁ ବଗଲରେ ଧରିଥିବା ହନୁମାନ ପରି ହୁଏ।

ଆ.ପ୍ର. ୧୫/୧୯.୧୨.୧୯୪୮

## ।। କଷ୍ଟ କେତେବେଳେ ପାଇବାକୁହିଁ ହେବ ।।

ଧର୍ମ କହେ ଛୋଟକୁ ବଡ଼ କରି ତୋଳ, ବଡ଼କୁ ଛୋଟ କର ନାହିଁ। ପ୍ରତିଲୋମ ବିବାହ ଦିଅନା। ନୀଚ ଘରେ ତୁମର ଝିଅ ଦିଅନା, ବରଂ ସେମାନଙ୍କର ଝିଅ ତୁମେ ନେଇପାର। କୃଷ୍ଣ ଠାକୁରଙ୍କୁ ଆମେ ଭଗବାନ ବୋଲି ମାନୁ, ସେ ବହୁ-ବିବାହ କରିଛନ୍ତି, କିନ୍ତୁ ଗୋଟିଏ ମଧ୍ୟ ବ୍ରାହ୍ମଣ ଝିଅକୁ ବିବାହ କରି ନାହାନ୍ତି। ବୁଦ୍ଧଦେବ ବିବାହ କରି ସନ୍ୟାସୀ ହେଲେ, ସେ ମଧ୍ୟ ପ୍ରତିଲୋମ କରି ନାହାନ୍ତି, କରିବାକୁ କହି ମଧ୍ୟ ନାହାନ୍ତି। କୌଣସି ମହାପୁରୁଷ ବୈଶିଷ୍ଟ୍ୟ ନଷ୍ଟ କରିବା କଥା କହି ନାହାନ୍ତି। ସବୁ କିଛିର ଗୋଟିଏ ବିଧି ଅଛି। ଖରାପ ଆମ୍ବର କଲମି ଦେବାକୁ ହୁଏ ଭଲ ଆମ୍ବ ସହିତ। ଗାଈ ଗର୍ଭିଣୀ ହେବା ସମୟରେ ଭଲ ଷଣ୍ଢର ଖୋଜା ପଡ଼େ ଦୁଧ ଯେପରି ବେଶୀ ଦେବ, ବାଛୁରୀଟା ଭଲ ହବ। କୁକୁର—ମେଣ୍ଢା ବେଳକୁ ମଧ୍ୟ ତାହା କରନ୍ତି। ମଣିଷ ବେଳକୁ ଛାଡ଼ିଦେଲୁ, ଯେପରି ଖୁସି ସେପରି କରିଲେ ହେଲା। ବିବାହ ଗୋଟିଏ ବଡ଼ ଜିନିଷ। ସବର୍ଣ୍ଣ ଓ ଅନୁଲୋମ ବିବାହ ଦେବାକୁ ଗଲେ ମଧ୍ୟ ବିଧି ମାଫିକ ଦେବାକୁ ହେବ। ଏହି ସବୁ ଠିକ୍‌ଭାବରେ ନ କଲେ କଷ୍ଟ ପାଇବାକୁ ହେବ। ଆ.ପ୍ର. ୧୫/୧୪.୧.୧୯୪୯

## ।। ଗୋତ୍ର ଭିନ୍ନ ହେଲେ ମଧ୍ୟ କେତେବେଳେ ବିବାହ ହୁଏ ନା ।।

ପ୍ରଶ୍ନ — ବିଭିନ୍ନ ଗୋତ୍ରର ଏକ ପ୍ରବର ଦେଖାଯାଏ, ତାର କାରଣ କଣ?

ଶ୍ରୀଶ୍ରୀଠାକୁର — କେଷ୍ଟଦା ଜାଣନ୍ତି।

କେଷ୍ଟଦା – ଏକ ବଂଶରେହିଁ ଗୋତ୍ରକାରକ ବିଭିନ୍ନ ଋଷି ହୁଏତ ଥିଲେ, ତେଣୁ ସେମାନଙ୍କର ପ୍ରବର ଏକ। ସମାନ-ପ୍ରବର ଯେଉଁମାନଙ୍କର, ବିଭିନ୍ନ ଗୋତ୍ର ହେଲେ ମଧ୍ୟ ସେମାନଙ୍କ ମଧ୍ୟରେ ବିବାହ ହୁଏନା। ଆ.ପ୍ର. ୧୫/୧୫.୧.୧୯୪୯

## ।। ମଣିଷ ଗେଡ଼ା–ଲମ୍ବା ହୁଏ କାହିଁକି ।।

ଏହାର ଗୋଟିଏ କାରଣ ମାଟିର ଦୋଷଗୁଣ। ଗୋଟିଏ ବାଇଗଣର ମଞ୍ଜି, ବିଭିନ୍ନ ମାଟିରେ ବୁଣିଲେ ବିଭିନ୍ନ ରକମର ଫଳ ହୁଏ। ଉପଯୁକ୍ତ ସାର ମଧ୍ୟ ଦେବାକୁ ହୁଏ। ମା ହେଲା ମାଟି ପରି। ମା ଯଦି ସ୍ୱାମୀଗତପ୍ରାଣା ହୁଏ, ନିଜର ପ୍ରବୃତ୍ତି ଉପରେ ତାର ଯେଉଁ ନିଶା, ତାଠାରୁ ସ୍ୱାମୀ ନିଶା ଯଦି ପ୍ରବଳତର ହୁଏ, ସ୍ୱାମୀଙ୍କୁ ଖୁସି କରିବା ପାଇଁ ନିଜର ଯେ-କୌଣସି ଖିଆଲ ଯଦି ଉପେକ୍ଷା କରିପାରେ, ତାହେଲେ ତାର ବ୍ୟକ୍ତିତ୍ୱର ଗୋଟିଏ ଏକକେନ୍ଦ୍ରିକ ରୂପାନ୍ତର ହୁଏ। ଏହାକୁ କହନ୍ତି ସତୀତ୍ୱ। ସେଥିରୁ ତାର ଶରୀର ଭିତରର ଅନ୍ତଃକ୍ଷରା ଗ୍ରନ୍ଥିଗୁଡ଼ିକରୁ କ୍ଷରଣ ଠିକ୍‌ଭାବରେ ହୁଏ ଏବଂ ସେଗୁଡ଼ିକ ପୁଣି ସଭାପୋଷଣୀ ହୁଏ। ଏହିଗୁଡ଼ିକ ଗର୍ଭସ୍ଥ ସନ୍ତାନର ଶରୀର-ମନର ଭବିଷ୍ୟତ ସୁସଙ୍ଗତ ବିକାଶ ପାଇଁ ଯେଉଁ-ସବୁ ମୁଖ୍ୟ ଉପାଦାନ ପ୍ରୟୋଜନ, ସେଗୁଡ଼ିକ ସରବରାହ କରେ। ଏହିସବୁ ପୁଅଝିଅ ମାତୃଭକ୍ତ, ପିତୃଭକ୍ତ, ଗୁରୁଭକ୍ତ ହୁଅନ୍ତି। ସଂଯତ ହୁଅନ୍ତି, ଦକ୍ଷ ହୁଅନ୍ତି। ଲୋକସ୍ୱାର୍ଥୀ ହୁଅନ୍ତି। ଚୌକସ ହୁଅନ୍ତି। ସେମାନେ ସାଧାରଣତଃ ମୋଟାମୋଟି ସୁସ୍ଥ, ସବଳ ଓ ଦୀର୍ଘାୟୁ ମଧ୍ୟ ହୁଅନ୍ତି। ଅବଶ୍ୟ ଯଦି ପିତାମାତା ରୁଗ୍‌ଣ ନ ହୁଅନ୍ତି ଏବଂ ସେମାନଙ୍କର ବିବାହ ଓ ଯୌନମିଳନ ବିଧିମାଫିକ ସଂଗଠିତ ହୁଏ।

ପ୍ରଶ୍ନ – ସ୍ୱାମୀ-ସ୍ତ୍ରୀର ଇଷ୍ଟପ୍ରାଣ ହେବା ଦରକାର ନୁହେଁ କି ?

ଶ୍ରୀଶ୍ରୀଠାକୁର – ଯେଉଁ ମା'ର ଏପରି ସ୍ୱାମୀଭକ୍ତି ହୁଏ, ତା ମଧ୍ୟରେ ଈଶ୍ୱରାନୁରାଗ ଥାଏହିଁ। ପ୍ରହ୍ଲାଦର ବାବା କିଏ ଥିଲେ ?

ଉତ୍ତର – ହିରଣ୍ୟକଶିପୁ।

ଶ୍ରୀଶ୍ରୀଠାକୁର – ସେ କଣ ପ୍ରହ୍ଲାଦ ପରି ହରିଭକ୍ତିପରାୟଣ ଥିଲେ।

ଉତ୍ତର – ବରଂ ଓଲଟା। ପ୍ରହଲ୍ଲାଦକୁ ହରିନାମ ଛଡ଼ାଇବା ପାଇଁ ସେ କଣ ନ କରିଛନ୍ତି। ସେଥିରେ ଅକୃତକାର୍ଯ୍ୟ ହୋଇ ରାଗିଯାଇ ସେ ପ୍ରହ୍ଲାଦକୁ ମାରିପକାଇବା ପାଇଁ ହୁକୁମ ଦେଇଥିଲେ। ପ୍ରହ୍ଲାଦ ବିନ୍ଦୁମାତ୍ର ବିଚଳିତ ନ ହୋଇ ସେତେବେଳେ ମଧ୍ୟ କ୍ରମାଗତ ହରିନାମ କରି ଚାଲିଛନ୍ତି। ତାଙ୍କୁ ହତ୍ୟା କରିବା ପାଇଁ ବିଷ ପ୍ରୟୋଗ, ଖଡ୍‌ଗାଘାତ,

ହାତୀ ପାଦ ତଳକୁ ପକେଇବା, ପାହାଡ଼ ଉପରେ ରହି ତଳକୁ ଫୋପାଡ଼ିବା ଇତ୍ୟାଦି କେତେ କଣ କରା ହେଲା। କିନ୍ତୁ ଈଶ୍ୱରଙ୍କ କୃପାରୁ କୌଣସିପ୍ରକାରେ ତାଙ୍କର ମୃତ୍ୟୁ ହେଲା ନାହିଁ। ବିଭତ୍ସ ଅତ୍ୟାଚାର ମଧ୍ୟରେ ବି ସେ ଅଦ୍ଭୁତ ଭାବରେ ନାମମୟ ହୋଇ ରହିଥିଲେ। ସେତେବେଳେ ହିରଣ୍ୟକଶିପୁ ତାଙ୍କୁ ହରିର ଆବାସସ୍ଥଳ ସମ୍ବନ୍ଧରେ ପ୍ରଶ୍ନ କଲେ। ପ୍ରହ୍ଲାଦ କହିଲେ, ହରି ସର୍ବତ୍ରହିଁ ବିରାଜମାନ। ତାଙ୍କ ଦୟାରୁ ସବୁ କିଛି ସୃଷ୍ଟ ହୋଇଛି, ଏବଂ ସବୁ କିଛି ମଧ୍ୟରେ ସେ ଅଛନ୍ତି। ନିକଟରେ ଥିବା ଗୋଟିଏ ପଥର ସ୍ତମ୍ଭକୁ ଦେଖାଇ ସେତେବେଳେ ହିରଣ୍ୟକଶିପୁ ପଚାରିଲେ – ଏହା ମଧ୍ୟରେବି କଣ ହରି ଅଛନ୍ତି? ପ୍ରହ୍ଲାଦ କହିଲେ – ଅବଶ୍ୟ ହିଁ ଅଛନ୍ତି। ଏପରି କିଛି ନାହିଁ, ଯାହା ମଧ୍ୟରେ ହରିଙ୍କର ଅସ୍ତିତ୍ୱ ନାହିଁ। ହିରଣ୍ୟକଶିପୁ ସେହି କଥା ଶୁଣି କ୍ରୋଧରେ ଉନ୍ମତ୍ତ ହୋଇ ଖୁବ୍‌ଜୋରରେ ସେହି ସ୍ତମ୍ଭରେ ପଦାଘାତ କଲେ। ସ୍ତମ୍ଭ ଭାଙ୍ଗି ଗଲା ଏବଂ ସେଥିମଧ୍ୟରୁ ନୃସିଂହମୂର୍ତ୍ତି ବାହାରି ହିରଣ୍ୟକଶିପୁଙ୍କୁ ନିଜ ଜଙ୍ଘ ଉପରେ ରଖି ନଖ ଦେଇ ତାଙ୍କର ପେଟ ଚିରି ପକାଇଲେ।

ଶ୍ରୀଶ୍ରୀଠାକୁର – ସେ ତ ହେଲା, ପ୍ରହ୍ଲାଦର ମା କିଏ ଏବଂ କେମିତି ଥିଲେ, ତାହା ତ କହିଲୁ ନାହିଁ।

ଉତ୍ତର – ପ୍ରହ୍ଲାଦର ମା ଥିଲେ କୟାଧୁ। ସେ ଯେତେବେଳେ ପରିପୂର୍ଣ୍ଣା ଗର୍ଭବତୀ ଥିଲେ ସେହି ସମୟରେ ଇନ୍ଦ୍ର ତାଙ୍କୁ ବନ୍ଦୀ କରିନେଲେ। ସେତେବେଳେ ନାରଦ ତାଙ୍କୁ ରକ୍ଷା କଲେ। କେବଳ ଉଦ୍ଧାର କରା ନୁହେଁ, ସେ ନିଜ ଆଶ୍ରମରେ ତାଙ୍କୁ ଆଶ୍ରୟ ଦିଅନ୍ତି। ସେତେବେଳେ କୟାଧୁ ଋଷିବରଙ୍କ ପ୍ରତି କୃତଜ୍ଞତାବଶତଃ ତାଙ୍କୁ ଭକ୍ତିଭରେ ସେବା କରନ୍ତି। ନାରଦ ସନ୍ତୁଷ୍ଟ ହୋଇ ତାଙ୍କୁ ଅନେକ ହରିକଥା ଶୁଣାନ୍ତି। ପ୍ରହ୍ଲାଦଙ୍କ ବିଷୟରେ ଶୁଣାଯାଏ ଯେ ମାତୃଗର୍ଭରେ ଥିବା ସମୟରେ ନାରଦ ତାଙ୍କ ମା'ଙ୍କୁ ଯେଉଁ ହରିକଥା, ଭକ୍ତିତତ୍ତ୍ୱ ଓ ଆତ୍ମଜ୍ଞାନବିଷୟକ ବାଣୀ କହିଥିଲେ, ସେଗୁଡ଼ିକ ତାଙ୍କର (ପ୍ରହ୍ଲାଦଙ୍କର) ସ୍ମୃତିରେ ସମ୍ୟକ ଜାଗ୍ରତ ଥିଲା।

ଶ୍ରୀଶ୍ରୀଠାକୁର – ତାହେଲେ ଭାବି ଦେଖ, କୟାଧୁଙ୍କର ସତ୍‌ସଙ୍ଗ ଓ ସାଧୁସେବା ପ୍ରହ୍ଲାଦଙ୍କର ଚରିତ୍ରକୁ କିପରି ପ୍ରଭାବିତ କରିଥିଲା। ପୁଣି ମୋର ମନେ ହୁଏ, କୟାଧୁର ହିରଣ୍ୟକଶିପୁଙ୍କ ପ୍ରତି ଗଭୀର ଶ୍ରଦ୍ଧା ଥିଲା। ହିରଣ୍ୟକଶିପୁ ମଧ୍ୟ ଶକ୍ତିଧର ତପସ୍ୱୀ ଥିଲେ ବୋଲି ଶୁଣାଯାଏ, ବ୍ରହ୍ମା ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ତାଙ୍କୁ ଦର୍ଶନ ଦେଇଥିଲେ। ବ୍ରହ୍ମାଙ୍କ ଠାରୁ ବର ପାଇ ଅସାଧାରଣ ଶକ୍ତିର ଅଧିକାରୀ ହୋଇ ସେ ତ୍ରିଭୁବନର ଅଧିପତି

ହୋଇଥିଲେ କିନ୍ତୁ ପରେ ପ୍ରବୃତ୍ତିର ପ୍ରରୋଚନାରେ ନାନା ଅପକର୍ମ ଆରମ୍ଭ କରି ଦେବାରୁ ଏବଂ ବିଷ୍ଣୁଙ୍କର ପ୍ରତିଦ୍ୱନ୍ଦୀ ହୋଇ ଛିଡ଼ା ହେବା ଫଳରେ ଏହିପରି ତାଙ୍କର ବିନାଶ ହୋଇଥିଲା। ମଣିଷର ଆତ୍ମନିୟନ୍ତ୍ରଣ ଓ କାମନାର sublimation (ଉଦ୍‌ଗତି) ବା transformation (ରୂପାନ୍ତର) ନ ହେବା ପର୍ଯ୍ୟନ୍ତ କୌଣସି ସିଦ୍ଧିର କିଛି ଦାମ୍ ନାହିଁ। ଯା ହେଉ, ମୋର ପ୍ରଧାନ କଥା ଏହା ଯେ ଝିଅ ମାନେ ସତୀସାଧ୍ୱୀ ହେଲେ, ସୁସନ୍ତାନର ଆବିର୍ଭାବ ସହଜ ହୋଇ ଉଠେ। ମୋର ଏହି କଥାରୁ ମନେ କର ନାହିଁ ଯେ, ତୁମେ ଯେଉଁମାନେ ପୁରୁଷ ତୁମ୍ଭମାନଙ୍କର ଏହି ବ୍ୟାପାରରେ କୌଣସି ଦାୟିତ୍ୱ ନାହିଁ। ତୁମମାନଙ୍କର ଚଳନ, ଚରିତ୍ର ଏପରି ହେବା ଦରକାର, ଯେଉଁଥିରେ ଝିଅମାନେ ତୁମମାନଙ୍କର ସେବା-ପୂଜା କରି ନିଜକୁ ଧନ୍ୟ ମନେ କରିବେ।

ଆ.ପ୍ର. ୧୫/୧୯.୧.୧୯୪୯

## ।। କାହାରି ବାୟୋଲଜିକ୍ୟାଲ ସୁପିରିୟରିଟି-ର (ଜୈବ ଉତ୍କର୍ଷର) ମାନଦଣ୍ଡ କଣ ହେବ।।

Admiration for superior, will-power, adherence, tendency towards unity, presence of mind, sympathy, power of resistance, cautious inquisitiveness, intelligence (ଶ୍ରେୟଙ୍କ ପ୍ରତି ଶ୍ରଦ୍ଧା, ଇଚ୍ଛାଶକ୍ତି, ନିଷ୍ଠା, ଐକ୍ୟପ୍ରବଣତା, ଉପସ୍ଥିତବୁଦ୍ଧି, ସହାନୁଭୂତି, ପ୍ରତିରୋଧ–କ୍ଷମତା, ସତର୍କ ଅନୁସନ୍ଧିତ୍ସା, ବୁଦ୍ଧି) ଏହି କେତେଟାର ମାପ କାଠିରେ higher biological efficiency (ଉଚ୍ଚତର ଜୈବ ଦକ୍ଷତା) determine (ନିର୍ଦ୍ଧାରଣ) କରା ଯାଏ।

ଆ.ପ୍ର. ୧୫/୩.୨.୧୯୪୯

## ।। ଗୋତ୍ରାନ୍ତରିତ କରି ବିବାହ ହୋଇ ପାରିବ କି ନା।। ୧୬୯

ପ୍ରଶ୍ନ – ଆପଣ କହନ୍ତି ସଗୋତ୍ରରେ ବିବାହ ହୁଏ ନା, କିନ୍ତୁ ପଣ୍ଡିତ ମାନେ ତ ବିଧାନ ଦିଅନ୍ତି – ଶାଣ୍ଡିଲ୍ୟ ଗୋତ୍ରର ଝିଅକୁ ଯଦି ଭରଦ୍ୱାଜ ଗୋତ୍ର ପୋଷ୍ୟପୁତ୍ରୀ ଗ୍ରହଣ କରନ୍ତି ସେତେବେଳେ ତାକୁ ଶାଣ୍ଡିଲ୍ୟ ଗୋତ୍ରର ପୁଅ ସହିତ ବିବାହ ଦିଆ ଯାଏ।

ଶ୍ରୀଶ୍ରୀଠାକୁର – ଧରନ୍ତୁ, ମୋର ହୁଏତ ପିଲା ନାହିଁ, ଆପଣ ମୋର ପିଲାର

ସ୍ଥଳାଭିସିକ୍ତ ହୋଇ ପାରନ୍ତି, କିନ୍ତୁ in flesh and blood (ରକ୍ତ-ମାଂସରେ) ତ ଆପଣ ମୋର ପିଲା ହେଲେ ନାହିଁ। ଆପଣ ଆପଣଙ୍କ ବାପାର ପିଲା ହୋଇ ରହିଲେ। ତାଙ୍କର ଗୋତ୍ର ଓ ରକ୍ତହିଁ ଆପଣଙ୍କ ଠାରେ ରହିଲା, ତାର ପରିବର୍ତ୍ତନ ହେଲା ନାହିଁ। ତେଣୁ legal right (ଆଇନଗତ ଅଧିକାର) ପାଇ ପାରନ୍ତି କିନ୍ତୁ biological right (ଜୈବ ସଂସ୍ଥିତିଗତ ଅଧିକାର) ପାଇବେ କିପରି ? ଏହିଭଳି ଗୋତ୍ରାନ୍ତରିତ କରି ବିବାହ ଚଳେ ନାହିଁ, ପଣ୍ଡିତ ମାନେ ଯାହା ବି କୁହନ୍ତୁ। ଲୌକିକ ବିଧାନ ଯଦି ସୁବିଧାବାଦର ଖାତିରରେ ବିଜ୍ଞାନକୁ ଉପେକ୍ଷା କରେ, ତାହା ସମର୍ଥନଯୋଗ୍ୟ ନୁହେଁ। ଅନ୍ତତଃ ମୋର ମତ ଏହିପରି। ଆ.ପ୍ର. ୧୫/୪.୨.୧୯୪୯

## ।। ବିବାହରେ ସମ ବିପରୀତ ସତ୍ତାର ମିଳନ କରେଇବାକୁ ହୁଏ କାହିଁକି ।।

ଜୀବନ ଗୋଟିଏ particular wave (ବିଶେଷ ତରଙ୍ଗ)। ଲିଡେନଜାରରେ ବିଦ୍ୟୁତ ଧରିବା ପରି ଆମର କେତେଗୁଡ଼ିଏ ଜିନିଷ ଧରିବାର କ୍ଷମତା ଅଛି। ପ୍ରତିଟି ଗୋରୁ, ଗଛ, ମଣିଷର ଗୋଟିଏ ଗୋଟିଏ wave-length (ତରଙ୍ଗ-ଦୈର୍ଘ୍ୟ) ଥାଏ। ତାହା ରଜୋବୀଜର ସମ୍ବେଗ ଓ ସଙ୍ଗତିର ଉପରେ ନିର୍ଭର କରେ। ତାହା ଦ୍ୱାରା ଜୀବନୀ-ଶକ୍ତି ନିର୍ଦ୍ଧାରିତ ହୁଏ। ତାଳ ମେଳ ଠିକ୍ ରହିବା ଦରକାର। ଚିନିର ଗୋଟିଏ ପାଗ କରି ସେଥିରେ କାଇଦା କରି ସୂତା ଦେଲେ ମିଶ୍ରି ଦାନା ବାନ୍ଧେ। ଦାନାର ପୁଣି ତରଙ୍ଗ ଅଛି। ତାକୁ ବୈଶିଷ୍ଟ୍ୟ କହନ୍ତି। ଦାନାର ତରଙ୍ଗ ତଜ୍ଜାତୀୟ ତରଙ୍ଗରହିଁ ସୃଷ୍ଟି କରେ। ସଜନା ଠାରୁ ସଜନା ହୁଏ। ଛଣ ଫୁଲ ଠାରୁ ଛଣ ହୁଏ। ଅବଶ୍ୟ ତା ମଧ୍ୟ ବିଭିନ୍ନ ପ୍ରକାର ହୋଇ ପାରେ। ଏହି ବୈଶିଷ୍ଟ୍ୟର ଗୁଚ୍ଛ ନେଇ ବର୍ଣ୍ଣାଶ୍ରମ। କେଉଁଟା କାହାର ମିଳନଯୋଗ୍ୟ, ତାହା ବୁଝି ନାରୀ ପୁରୁଷର ମିଳନ ସଂଘଠିତ କରିବାକୁ ହୁଏ। ସମ ବିପରୀତ ସତ୍ତାର ମିଳନ କରାଇବାକୁ ହୁଏ। ସଗୋତ୍ର ବିବାହ ଠିକ୍ ନୁହେଁ। Similar (ସଦୃଶ) ଅଥଚ different (ସ୍ୱତନ୍ତ୍ର) ହେବା ଦରକାର। ବ୍ରାହ୍ମଣର ପୁଅ ବ୍ରାହ୍ମଣର ଝିଅ ହେଲେହିଁ ହେବ ନାହିଁ। ସବୁ ପ୍ରକାରର ସଙ୍ଗତି ହେବା ଦରକାର। ଆ.ପ୍ର. ୧୫/୫.୨.୧୯୪୯

## ।। ବିବାହ ସମୟରେ କଣ ଦେଖିବାକୁ ହୁଏ ।।

ବିବାହ ସମୟରେ ଦେଖିବାକୁ ହୁଏ, ପୁରୁଷ ଓ ନାରୀର ଜୈବୀ-ସଂସ୍ଥିତି ଓ ବ୍ୟକ୍ତିଗତ ପ୍ରକୃତିର ମଧ୍ୟରେ ଶୁଭସଙ୍ଗତି ଅଛି କି ନାହିଁ। ପ୍ରତିଲୋମ–ସଂମିଶ୍ରଣରେ

ସନ୍ତାନର cohesive coherence (ବୈଧାନିକ କୋଷ ସଂଲଗ୍ନତାର ସଙ୍ଗତି) ଠିକ୍ ନଥାଏ। ସ୍ତ୍ରୀ ସ୍ୱାମୀର nurturing (ପରିପୋଷଣୀ) ସର୍ବୋତଭାବରେ ହୁଏ ନା। ତା ଫଳରେ ପ୍ରତିଲୋମ ଜାତକ ମଧ୍ୟରେ ଅକୃତଜ୍ଞତା, ପ୍ରଲୋଭନରେ ଆତ୍ମସମର୍ପଣ ଇତ୍ୟାଦି ଦୋଷ ଦେଖା ଦିଏ। ବିହିତ-ବିବାହଜାତ ସନ୍ତାନ ସାଧାରଣତଃ ଉସକୁ କେତେବେଳେ ମଧ୍ୟ ଅସ୍ୱୀକାର କରେ ନାହିଁ, ତାର association of ideas (ଭାବ-ଅନୁଷଙ୍ଗ) ପ୍ରାୟହିଁ ତୁଖୋଡ଼ ହୁଏ। ସେ ଇଷ୍ଟଙ୍କର ସ୍ୱାର୍ଥ କୌଣସି ପ୍ରକାରରେ ବିସର୍ଜନ ଦିଏ ନାହିଁ। ଆ.ପ୍ର. ୧୫/୯.୨.୧୯୪୯

## ।। ସଠିକ ବିବାହର ସର୍ତ୍ତ କଣ ।।

ସ୍ୱାମୀ ଓ ସ୍ତ୍ରୀ ସମବିପରୀତ ସତ୍ତା ହେବା ଦରକାର। ଉଭୟଙ୍କ ମଧ୍ୟରେ ପ୍ରକୃତିଗତ ସାମଞ୍ଜସ୍ୟ ଦରକାର। ପୁରୁଷ ବଂଶ, ବିଦ୍ୟା, ଚରିତ୍ର, ଯୋଗ୍ୟତା, ନିଷ୍ଠା, ବୟସ ଇତ୍ୟାଦି ଦିଗ ଦେଇ ନାରୀ ଠାରୁ ଉନ୍ନତ ହେବା ବାଞ୍ଛନୀୟ। ଝିଅ ମଧ୍ୟରେ ଏହି ପୁରୁଷକୁ ବରଣ କରିବାର ନିଶା ଥିବା ଦରକାର। ଏପରି ଶ୍ରଦ୍ଧା ରହିବା ଦରକାର ଯେପରି ସେ ମନେ କରେ ତାଙ୍କୁ ପାଇଲେ ତାର ଜୀବନ ଧନ୍ୟ ହୋଇ ଯିବ। ପୂର୍ବରୁ ଘଟକମାନେ ସବୁଦିଗ ଦେଇ ମେଳ କରି ବିବାହ କରାଉଥିଲେ। ସେତେବେଳେ ମଣିଷର ଅଭାବ ହେଉ ନ ଥିଲା। Generation after generation (ବଂଶ-ପରମ୍ପରାକ୍ରମେ) ମଣିଷ ମିଳୁ ଥିଲା। ଆ.ପ୍ର. ୧୫/୯.୨.୧୯୪୯

## ।। ଉଚ୍ଚବଂଶର ଝିଅକୁ ବିବାହ କରିଲେ କଣ ହୁଏ ।।

ଉଚ୍ଚବଂଶର ଝିଅ ବିବାହ କରିଲେ ସନ୍ତାନର gene-cohesion (ଜିନ୍-ସଂସକ୍ତି) ଦୁର୍ବଳ ହୋଇ ପଡ଼େ, ଫଳରେ ଜନ ଓ ସମାଜ ଅଳ୍ପାୟୁ ହୁଏ। ତା ବ୍ୟତୀତ ମୋର ମନେ ହୁଏ, ପ୍ରତିଲୋମ ଯୌନ ସଂସ୍ରବ ଫଳରେ ପୁରୁଷ ଓ ନାରୀ ଉଭୟଙ୍କର ସ୍ୱାସ୍ଥ୍ୟର କ୍ଷତିହୁଏ। ଆ.ପ୍ର. ୧୫/୨୬.୨.୧୯୪୯

## ।। ପ୍ରଜନନର ତାତ୍ପର୍ଯ୍ୟ କଣ ।।

ଏହା ପଛରେ ଅଛି ନିଜକୁ ବଞ୍ଚାଇ ରଖିବାର ଆକୂତି। ତୁମେ ଯଦି ପାଞ୍ଚଭାଇ ହୁଅ, ତେବେ ତୁମେ ପ୍ରତ୍ୟେକହିଁ ତୁମ ବାବାଙ୍କର ଗୋଟିଏ ଗୋଟିଏ ନିବାସସ୍ଥଳ,

ଯେଉଁଠାରେ ତୁମର ବାବା ଆଶ୍ରୟ ନେଇଛନ୍ତି, ତୁମ ମା'ଙ୍କ ସାହାଯ୍ୟରେ। ଅର୍ଥାତ୍ ପୁରୁଷ ପ୍ରକୃତିର ସହଯୋଗିତାରେ ବଞ୍ଚି ରହିଥାଏ। ସନ୍ତାନ ଭିତରଦେଇ ପିତା ଓ ମାତା ଉଭୟେ କିନ୍ତୁ ଅସ୍ତିତ୍ୱକୁ ପ୍ରଲମ୍ବିତ କରନ୍ତି। ଅସ୍ତିତ୍ୱର କ୍ରମାଗତି କହିଲେ ବୁଝାଯାଏ ମୃତ୍ୟୁ ପରେ ନୂତନ ଦେହଲାଭ ଏବଂ ପିତାମାତାଙ୍କ ଭିତର ଦେଇ ଜନ୍ମନେଇ ଆସିବା – ଏହି ଦୁଇଟି। ଆ.ପ୍ର. ୧୫/୬.୩.୧୯୪୯

## ।। ବିଷମ ପରିଣୟରେ କଣ ହୁଏ ।।

ବିଷମ ପରିଣୟରେ ବୀଜର ଅନ୍ତର୍ନିହିତ ବୈଶିଷ୍ଟ–ସମାବେଶୀ ସଂଯୋଗ ବିକୃତ କରି ଦିଏ, — ଫଳରେ, ବଂଶ ପ୍ରବାହ ଚିରଦିନ ପାଇଁ ବିକୃତ ହୋଇ ଚାଲେ। ଆପଣଙ୍କର ପୁଅ ଓ ଝିଅ ଉଭୟଙ୍କ ମଧ୍ୟରେ ଆପଣଙ୍କର ବୀଜକୋଷ ପୁଅର ବୀଜକୋଷ ଓ ଝିଅର ଡିମ୍ବାଣୁ ସୃଷ୍ଟି କରିବ। ତେଣୁ ଆପଣଙ୍କର ବିବାହ ସଙ୍ଗତିଶୀଳ ନ ହେଲେ ଆପଣଙ୍କର ବଂଶ-ବୈଶିଷ୍ଟ୍ୟ ବିକୃତ ହୋଇ ଯିବ। ଆ.ପ୍ର. ୧୫/୭.୩.୧୯୪୯

## ।। ହିନ୍ଦୁ କୋର୍ଡ଼ ବିଲ୍‌ର ପରିଣାମ କଣ ହେବ ।।

ଏହି ବିଲ୍ ପାଶ୍ ହେଲେ ସମୟ କ୍ରମେ ବହୁ ପରିବାରରେ ଝିଅମାନଙ୍କର ସ୍ୱାମୀ ରହିବେ ନାହିଁ। ପୁରୁଷଙ୍କ ସ୍ତ୍ରୀ ରହିବ ନାହିଁ, ଛୁଆପିଲାଙ୍କର ମା ରହିବ ନାହିଁ। ପୁରୁଷ ଅଧିକ ନିରୂପାୟ ହେବେ। ସେମାନଙ୍କର ମୃତ୍ୟୁ ବରଣ କରିବା ଭଳି ଦୂରବସ୍ଥା ହେବ। ଆମେ ଇଚ୍ଛା କଲେ ଏହାର ପ୍ରତିବିଧାନ କରିପାରନ୍ତୁ। ଗୁଣ୍ଡଚିମୂଷା ମଧ୍ୟ ସାଗର ବାନ୍ଧିଥିଲା, କିନ୍ତୁ ଆମେ କଲୁ ନାହିଁ। ସମୟ ଆସିଲେ ହୁଏତ ଏହାର ବିରୁଦ୍ଧରେ କଥା କହିବାକୁ ଦେବେ ନାହିଁ। ହୁଏତ ସେହିପରି ଭାବଧାରା–ସମନ୍ୱିତ ସାହିତ୍ୟରେ ମଧ୍ୟ ହାତ ପଡ଼ିବ। ତେବେ ଲୋକତାନ୍ତ୍ରିକ ଦେଶରେ ତା ନ–ହେବାହିଁ ଉଚିତ।

ଆ.ପ୍ର. ୧୫/୭.୩.୧୯୪୯

## ।। ବହୁ ବିବାହର ଫଳରେ କଣ ହୁଏ ।।

ସୁନିୟନ୍ତ୍ରିତ ବହୁ ବିବାହର ଫଳରେ ଝିଅମାନେ ଉଚ୍ଚଘରେ ପଡ଼ନ୍ତି ଏବଂ ସେଥିରେ ପ୍ରଜନନ ମଧ୍ୟ ଭଲ ହୁଏ। ପୁଣି ବହୁ ବିବାହ ନ ରହିଲେ ପ୍ରତିଲୋମ ହୋଇ ପାରେ ଏବଂ ତାଦ୍ୱାରା କୃଷ୍ଟିଘାତୀ ମତବାଦର ଆମଦାନୀ ବେଶୀ ହୋଇ ପାରେ।

ଆ.ପ୍ର. ୧୫/୧୨.୩.୧୯୪୯

## ।। ବିବାହବନ୍ଧନ ବିଚ୍ଛିନ୍ନା ସ୍ତ୍ରୀକୁ ବିବାହ କରିଲେ କଣ ହୁଏ ।।

କ୍ରାଇଷ୍ଟ କହିଛନ୍ତି, ଯିଏ ବିବାହ ବନ୍ଧନ ବିଚ୍ଛିନ୍ନା ସ୍ତ୍ରୀକୁ ବିବାହ କରେ ସେ ବ୍ୟଭିଚାର କରେ, ତା ମାନେ ଏପରି ସ୍ତ୍ରୀର ଗର୍ଭଜାତ ସନ୍ତାନ ବିକୃତ ହେବାର ସମ୍ଭାବନା ଥାଏ, ତେଣୁ ଏ ବିବାହ ଦୋଷର। କାରଣ, ତା ମୁଣ୍ଡରେ ତାର ପୂର୍ବସ୍ୱାମୀର ଛାପ ରହିଥାଏ। ପରେ ତାକୁ ଯିଏ ବିବାହ କରେ ତାର ମଧ୍ୟ କ୍ଷତି ହୁଏ, କାରଣ, ଏହି ସ୍ତ୍ରୀର ଶରୀର-ମନ ଅଶୁଦ୍ଧ ଥାଏ। ତାକୁ ବିବାହ କଲେ ସଂସର୍ଗଦୋଷରେ ପୁରୁଷ ମଧ୍ୟ କିଛିଟା ଅଶୁଦ୍ଧ ହୋଇ ପଡ଼େ। ଆ.ପ୍ର. ୧୫/୧୩.୩.୧୯୪୯

## ।। ଯେଉଁ ଝିଅମାନେ ସତୀତ୍ୱ ହରାଇବାକୁ ବାଧ୍ୟ ହୁଅନ୍ତି, ସେମାନଙ୍କର କଣ ହେବ ।।

ପ୍ରଶ୍ନ – ସାମ୍ପ୍ରଦାୟିକ ଗୋଳମାଳ ଯୋଗୁଁ ଯେଉଁ ସବୁ ଝିଅମାନେ ସତୀତ୍ୱ ହରାଇବାକୁ ବାଧ୍ୟ ହୋଇଛନ୍ତି, ସେମାନଙ୍କୁ ସମାଜରେ ଗ୍ରହଣ କରିବା ଉଚିତ ନୁହେଁ?

ଶ୍ରୀଶ୍ରୀଠାକୁର – ଉଚିତ୍ ତ! ପୂର୍ବେ କରୁ ନ ଥିଲେ, ତେବେ ବର୍ତ୍ତମାନ ସମାଜର ଦିଗକୁ ଚାହିଁ, ତାର ପରିବର୍ତ୍ତନ ଘଟାଇ, ଶୁଦ୍ଧି କରି ଗ୍ରହଣ କରିବା ଉଚିତ୍।

ଆ.ପ୍ର. ୧୫/୧୩.୩.୧୯୪୯

## ।। ପୁଅ ବା ଝିଅ କେତେବେଳେ ହୁଏ ।।

ପ୍ରଶ୍ନ – ପୁଅ ଓ ଝିଅମାନଙ୍କ ମଧ୍ୟରେ ତଫାତ କଣ? ସୋଡି-ବାଇ-କାର୍ବ ଖାଇଲେ ପୁଅ ହୁଏ ନା କଣ।

ଶ୍ରୀଶ୍ରୀଠାକୁର – ପୁରୁଷ ଓ ନାରୀର ଦେହକୋଷହିଁ ଅଲଗା। ମୁଁ ସୋଡି-ବାଇ-କାର୍ବ ଖୁଆଇ ଅନେକଙ୍କୁ ଦେଖିଛି। ଗର୍ଭସଞ୍ଚାର ଆଗରୁ ବିଧିମତ ଖୁଆଇଲେ ଫଳ ହୁଏ।

ପ୍ରଶ୍ନ – ପ୍ରସୂତିର ଶରୀର କ୍ଷାରପ୍ରଧାନ ହେଲେ ଝିଅ ହୋଇ ପାରେ ନା?

ଶ୍ରୀଶ୍ରୀଠାକୁର – Alkali (କ୍ଷାର) positive (ରଜୀ) ନୁହେଁକି। Acid (ଅମ୍ଳ) negative (ରିଟୀ)। Acid-prominet (ଅମ୍ଳ-ପ୍ରଧାନ) ହେଲେ ଝିଅ ହେବାର ସମ୍ଭାବନା ବେଶୀ ଥାଏ। କୌଣସି-କୌଣସି ପ୍ରସୂତିର ଟକ ଖାଇବାର tendency (ଝୋଙ୍କ) ହେବାର ଦେଖାଯାଏ। ଆ.ପ୍ର. ୧୫/୧୪.୩.୧୯୪୯

## ।। ପରିଣୟ ସତ୍ତାପୋଷଣୀ ହେବା ଦରକାର କାହିଁକି ।।

ସତ୍ତାପୋଷଣୀ ପରିଣୟ ନ ହେଲେ ବୈଶିଷ୍ଟ୍ୟ ନଷ୍ଟ ହୋଇଯାଏ, ତେଣୁ (ଶାସ୍ତ୍ରରେ) ତୀବ୍ର-ଭାବରେ ଏହାର ବିରୁଦ୍ଧରେ କୁହା ଅଛି । ଅନୁଲୋମ ବା ସବର୍ଣ୍ଣ-ବିବାହ ହେଲେ ମଧ୍ୟ ଉଭୟଙ୍କର ପ୍ରକୃତି ଉଭୟଙ୍କର ସତ୍ତାପୋଷଣୀ ହେବା ଦରକାର ।

ପ୍ରଶ୍ନ – ଏହା କିପରି ଭାବରେ ଠିକ୍ କରାଯାଏ ?

ଶ୍ରୀଶ୍ରୀଠାକୁର – ଘଟକମାନେହିଁ ଥିଲେ ଏହି ବିଷୟରେ ବିଧାନଦାତା । ସେମାନେ ଜାଣିଥିଲେ । ତୁମେ ହୁଏତ ଟ୍ରାଇପୋସ (କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ପ୍ରାପ୍ତ ସମ୍ମାନ) । ତୁମର ବିବାହ ଠିକ୍ କରିଲେ ଗୋଟିଏ କଳା ରଙ୍ଗର ଝିଅ ସହିତ । ତୁମେ ଅସନ୍ତୁଷ୍ଟ ହେଲ । ପୁଣି ହୁଏତ ଗୋଟିଏ ମେଟ୍ରିକୁଲେଟ୍ ସହିତ ଜଣେ ସୁନ୍ଦରୀ ଝିଅର ବିବାହ ବ୍ୟବସ୍ଥା କରା ଗଲା । ସେମାନେ ଜାଣୁଥିଲେ ଯେ ଏଥିରେ ଭଲ ହେବ । ଏହିଟା ସେମାନେ ନିର୍ଦ୍ଧାରଣ କରି ପାରୁଥିଲେ । କେଉଁ ବଂଶର କେଉଁ ଝିଅ କେଉଁଠି ଖାପ୍ ଖାଇବ – ସେମାନେ ବୁଝୁଥିଲେ ।

ପ୍ରଶ୍ନ – ବର୍ତ୍ତମାନ ତ ନାହିଁ ।

ଶ୍ରୀଶ୍ରୀଠାକୁର – ବର୍ତ୍ତମାନ revive (ପୁନରୁଦ୍ଧାର) କରିବା ଦରକାର । ପୁଣି ବର୍ତ୍ତମାନ ହୁଏତବା କେଉଁଠାରେ କିଛି କିଛି ଅଛି । ଆ.ପ୍ର. ୧୫/୧୪.୩.୧୯୪୯

## ।। ଫର୍ସା ବାବା-ମାର କଳା ପୁଅଝିଅ ହୁଏ କାହିଁକି ।।

Psycho-physical adjustment (ଶାରୀରିକ ମାନସିକ ବିନ୍ୟାସ) ସେପରି ଥାଏ । ବାବା-ମାର କାହାରି ବାବା କିମ୍ବା ମା କିମ୍ବା ଉର୍ଦ୍ଧତନ କେହି ହୁଏ କଳା ଥିଲେ, ପରେ ତାହା ଫେରି ଆସିଲା । ପିତାମାତାଙ୍କର ବୈଧାନିକ ସମାବେଶର ଭିତରେ ସବୁ ଥାଏ । ଆ.ପ୍ର. ୧୫/୧୪.୩.୧୯୪୯

## ।। ସୌନ୍ଦର୍ଯ୍ୟ ଜିନିଷଟା କଣ ? ।।

ଯାହା ଅସ୍ତିତ୍ୱ ପକ୍ଷରେ, ମନ ପକ୍ଷରେ ପ୍ରୀତିପଦ, ତୃପ୍ତିପଦ ଓ ଶାନ୍ତିଦାୟକ ତାହାହିଁ ସୌନ୍ଦର୍ଯ୍ୟ । ଜଣ ଜଣକ ପାଖରେ ଜଣେ ଜଣେ ସୁନ୍ଦର । ଜଣେ କଳା ଝିଅର ଦାନ୍ତ ବାହାରି ଅଛି । ସେଥିରେ ହୁଏତ ଜଣେ ପୁରୁଷ ମୁଗ୍ଧ ହୋଇଅଛି । କାରଣ, ସେ ସେହିପରି pulse (ସାଡ଼ା) ଦିଏ ପୁରୁଷକୁ । ପୁଣି ସୁନ୍ଦରୀ, ଟାଣା ଟାଣା ଆଖି, ଭ୍ରୂ,

ନାକ, ଲାଲ ଓଠ କିନ୍ତୁ ସ୍ୱାମୀ ତାକୁ ଦେଖି ହୁଏତ ଆତଙ୍କି ଉଠେ, ତିରିଶ ହାତ ଦୂରରେ ରହିବାକୁ ଚାହେଁ, ହୁଏତ କହେ ରୂପାଲୀ ରାକ୍ଷସୀ। ... ଜୀବନମନର ତୃପ୍ତିପଦ ଯାହା ତାହାହିଁ ସୁନ୍ଦର। ଆ.ପ୍ର. ୧୫/୧୪.୩.୧୯୪୯

## ।। ଆଗରୁ ଆମ୍ଭମାନଙ୍କର ବିବାହଟା କଣ ଥିଲା ।।

ଆମ୍ଭମାନଙ୍କର ବିବାହଟା ଥିଲା ଏକ ପବିତ୍ର ସଂସ୍କାର। ସେଠାରେ ଗୃହର ସର୍ବମୟୀ କର୍ତ୍ତ୍ରୀ ଥିଲେ ସ୍ତ୍ରୀ। ବିବାହ-ବିଚ୍ଛେଦରେ ସ୍ୱାମୀ ସ୍ତ୍ରୀ କାହାରି ମଧ୍ୟ ଭଲ ହୁଏ ନାହିଁ। ଆଜି ଜଣକୁ ପସନ୍ଦ ହେଲା ନାହିଁ, ତାକୁ ଛାଡ଼ି ଦେଲା। ହୁଏତ ଗୋଟିଏ ସନ୍ତାନ ଅଛି। ଆଉ ଜଣଙ୍କ ପାଖକୁ ଗଲା। ସେତେବେଳେ ଏହି ସବୁ ସନ୍ତାନମାନଙ୍କର ନା ରହିବ ମା, ନା ରହିବ ବାପା।

ପ୍ରଶ୍ନ – ଝିଅମାନଙ୍କୁ ବାନ୍ଧି ରଖିବା ତ ଚଳିବ ନାହିଁ।

ଶ୍ରୀଶ୍ରୀଠାକୁର – ବାନ୍ଧି ରଖିବା କଣ ? ଝିଅର ବୈଶିଷ୍ଟ୍ୟ ଝିଅ ପରି। ପୁରୁଷର ବୈଶିଷ୍ଟ୍ୟ ପୁରୁଷ ପରି। ପୁରୁଷ ସାଧାରଣତଃ ନାରୀର ନିଜସ୍ୱ ଇଲାକା ଆକ୍ରମଣ କରିନାହିଁ। ନାରୀ ମଧ୍ୟ ପୁରୁଷର ଇଲାକା ଆକ୍ରମଣ କରିନାହିଁ। ପ୍ରତ୍ୟେକେହିଁ ନିଜର ବୈଶିଷ୍ଟ୍ୟ ଅନୁସାରେ ଉନ୍ନତ ହୋଇଛନ୍ତି। ଅଗରୁ କେତେ ବିଦୁଷୀ ଥିଲେ – ଖନା, ଲୀଳାବତୀ, ଆହୁରି କେତେଜଣ। ଆଜି କୌଣସି କୌଣସି କ୍ଷେତ୍ରରେ ପ୍ରବୃତ୍ତିକୁ ଉତ୍ତେଜିତ କରି ବିବାହ-ବିଚ୍ଛେଦର କଥା କହୁଛନ୍ତି। କାହାରି ସ୍ୱାମୀର ଅର୍ଥ କମ୍, ରୂପ କମ୍, ତାକୁ ହୁଏତ କହୁଛି — ତୁମେ ଏହା ପାଖରେ ପଡ଼ିଛ କାହିଁକି ? ସେ ମଧ୍ୟ ହୁଏତ ଭାବିଲା — ଠିକ୍ତ ! ଆଗରୁ ଝିଅମାନଙ୍କର ଧାରଣା ଥିଲା — ମୋ ସ୍ୱାମୀ ମୋର ସ୍ୱାମୀହିଁ, ସେ ଗରିବହିଁ ହେଉ, ଧନୀ ହିଁ ହେଉ, ବଦ୍‌ମେଜାଜୀ ହିଁ ହେଉ, ଥଣ୍ଡା ପ୍ରକୃତିର ହିଁ ହେଉ, ସେ ମୋର ସତ୍ତା, ତାଙ୍କର ପରିପାଳନ, ପରିପୂରଣ, ପରିରକ୍ଷଣ ହିଁ ମୋର ଧର୍ମ। ସ୍ତ୍ରୀର ସହ୍ୟ, ଧୈର୍ଯ୍ୟ, ଭଲପାଇବାର ଗୁଣରୁ କେତେ ଦୁଃଶ୍ଚରିତ୍ର ସ୍ୱାମୀ ମଧ୍ୟ ଶୁଧୁରି ଯାଇଛନ୍ତି। ସ୍ୱାମୀର ଅତ୍ୟାଚାର କେହି ମଧ୍ୟ ସମର୍ଥନ କରନ୍ତି ନାହିଁ, କିନ୍ତୁ ଏହିସବୁ ସ୍ତ୍ରୀର ଗୁଣର କଣ ତୁଳନା ହୁଏ ? ସେମାନଙ୍କ ଦୌଲତରେ ପାରିବାରିକ ଜୀବନ ମଣିଷର କେତେବଡ଼ ଗୋଟିଏ ଶାନ୍ତିର ଆଶ୍ରୟସ୍ଥଳ ଥିଲା। ଝିଅମାନଙ୍କ ଉପରେ ପୁରୁଷମାନେ ଯଦି ଆସ୍ଥା ରଖି ନ ପାରନ୍ତି ତେବେ ସଂସାର ଟେକିବ କିପରି ? ଆପଣ ନିଜ ଉପରେ ପକାଇ ଦେଖନ୍ତୁ, ଆପଣ ଯଦି ଘରକୁ ଯାଇ ଦେଖନ୍ତି – ଆପଣଙ୍କ

ସ୍ତ୍ରୀ ଯଦି ମିସେସ୍ ଦାଁ ହୋଇ ବାହାରି ଯାଇଛି, କିପରି ଲାଗେ ? ଅବଶ୍ୟ ପୁରୁଷକୁ ମଧ୍ୟ ତାର ଦାୟିତ୍ୱ ଓ କର୍ତ୍ତବ୍ୟ ପାଳନ କରିବାକୁ ହେବ। ସାମଞ୍ଜସ୍ୟ ଯେପରି ହୁଏ, ତାହା-ହିଁ କରଣୀୟ।

ପ୍ରଶ୍ନ – ଆଇନଗୁଡ଼ିକ ତ ମଣିଷର ମଙ୍ଗଳ ପାଇଁ। ନ ହେଲେ (ବିବାହ-ବିଚ୍ଛେଦ ନେଇ) ଏସବୁ ଆଇନ କରାଯାଇଛି କାହିଁକି ?

ଶ୍ରୀଶ୍ରୀଠାକୁର – ଗୋଟିଏ ଲାଞ୍ଜକଟା ଶିଆଳ ଯେପରି ସବୁଶିଆଳର ଲାଞ୍ଜ କାଟିବାକୁ ଚାହେଁ, ଦଳ ବଢ଼ାଇବା ପାଇଁ, କୌଣସି କୌଣସି କ୍ଷେତ୍ରରେ ଆଇନ ପ୍ରଣୟନ ପଛରେ ମୁରବୀମାନଙ୍କର ଏହିପରି ମତଲବ ଥିବା ଅସମ୍ଭବ ନୁହେଁ।

ପ୍ରଶ୍ନ – ଆଇନ୍ ହେଲେ ମଧ୍ୟ ସମସ୍ତେ ଖରାପ ହେବେ ନାହିଁ।

ଶ୍ରୀଶ୍ରୀଠାକୁର – ଝିଅ ପୁଅ ସମସ୍ତଙ୍କ ଠାରେ ଯଦି ପ୍ରବୃତ୍ତିର ଯାଜନ ଚାଲେ, ସେତେବେଳେ ଆଉ ଠିକ୍ ରହିବ କେତେଦିନ ? ସମାଜର ଚାପରେ, ଶାସ୍ତ୍ରର ଚାପରେ ବ୍ୟଷ୍ଟି ଠିକ୍‌ଥାଏ, କିନ୍ତୁ ତାହାହିଁ ଯଦି ଧ୍ୱଂସ ହୋଇ ଯାଏ ସେଠାରେ ବ୍ୟକ୍ତି ତାର ସଂଯମ ରକ୍ଷା କରିବ କେତେଦିନ ? ...ଏତେ କରୁଛେ କିନ୍ତୁ ପଣପ୍ରଥାର ଦେହରେ ହାତ ଦିଆଯାଉ ନାହିଁ। ଆ.ପ୍ର. ୧୬/୨୯.୩.୧୯୪୯

## ।। ଝିଅମାନଙ୍କ ସାନ୍ନିଧ୍ୟରେ ପୁରୁଷମାନଙ୍କର କଣ ହୁଏ ।।

ଝିଅମାନେ ଯେଭଳି ତଳକୁ ଟାଣନ୍ତି। Gravity (ଅଭିକର୍ଷ) ଅଛି। ତେଣୁ ପୁରୁଷର ମନ ସ୍ୱଭାବତଃ ହିଁ କିଛି ସମୟ ପାଇଁ ନିମ୍ନଗାମୀ କରି ତୋଳନ୍ତି। ପୁରୁଷର ସାନ୍ନିଧ୍ୟରେ ଝିଅମାନଙ୍କର ଅବଶ୍ୟ କିଛିଟା ଭଲ ହୋଇ ପାରେ। କବୀର ସାହେବଙ୍କର ଗୋଟିଏ କଥା ଅଛି –

ଦୁନିୟାମେ ଲୋଗ ସବ ବାଓରା ହୋକ
ଘର ଘର ବାଘିନୀ ପୋଷେ,
ଦିନକା ମୋହିନୀ ରାତ କା ବାଘିନୀ
ପଲ ପଲ ଲୋହ ଚୋଷେ।

ଅବଶ୍ୟ ସମସ୍ତେ ସେପରି ନୁହଁନ୍ତି।

ପ୍ରଶ୍ନ – ସାଂସାରିକ ଜୀବନରେ ଏମାନଙ୍କୁ ବାଦ୍‌ଦେଇ ତ ଚାଲି ହୁଏନା।

ଶ୍ରୀଶ୍ରୀଠାକୁର – ସାଂସାରିକ ଜୀବନରେ ଚାଲିବାକୁ ହେଲେ ପୁରୁଷକୁ ଖର୍ଚ୍ଚର ମଧ୍ୟ

ଦେଇ ଚାଲିବାକୁ ହୁଏ। ଉଠେ ପୁଣି ପଡ଼େ। ଖର୍ଚ୍ଚ ହୁଏ, ପୁଣି ତାହା ପୂରଣ କରିବାକୁ ହୁଏ। ଅବଶ୍ୟ ପୁରୁଷର ସଂସର୍ଗରେ ଏମାନେ ଯେତେଟା ଉନ୍ନତ ହୁଅନ୍ତି, ସେତେଟା ସୁବିଧା ହୁଏ। ଆ.ପ୍ର. ୧୬/୩୦.୩.୧୯୪୯

## ॥ ନାରୀ ପୁରୁଷ ସମାନ କି ନୁହେଁ॥

ଜଣେ ପଚାରିଲେ – ନାରୀ ପୁରୁଷ ସମାନ – ଏହି କଥାଟା ରାଜନୀତିରେ ଖୁବ୍ ଚାଲେ।

ଶ୍ରୀଶ୍ରୀଠାକୁର – ଯେଉଁ ରାଜନୀତିର ବାସ୍ତବତାର ସହିତ ସମ୍ପର୍କ ନାହିଁ, ସେ ପୁଣି କେଉଁ ରାଜନୀତି ? ନାରୀପୁରୁଷ ଉଭୟଙ୍କର ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଅଛି।

ଆ.ପ୍ର. ୧୬/୩.୪.୧୯୪୯

## ॥ ଯେଉଁଠାରେ ବର୍ଣ୍ଣବିଧାନ ନାହିଁ, ସେଠାରେ କିପରି ବିବାହ ଦେବାକୁ ହେବ॥

ଦେଖିବାକୁ ହେବ ପୁଅ ଓ ଝିଅର ପାରିବାରିକ ଐତିହ୍ୟ ଓ ବ୍ୟକ୍ତିଗତ ପ୍ରକୃତି ସଙ୍ଗତିଶୀଳ କି ନା। ଝିଅ ଏପରି ହେବା ଉଚିତ ଯେ କି ପୁରୁଷର ବଂଶଗତ ଓ ବ୍ୟକ୍ତିଗତ ସଂସ୍କାର ଓ ବୈଶିଷ୍ଟ୍ୟକୁ ମୂର୍ତ୍ତ କରି ତୋଳି ପାରେ। ଆ.ପ୍ର. ୧୬/୬.୪.୧୯୪୯

## ॥ ପ୍ରତିଲୋମ ଓ ଅସମୀଚୀନ ବିବାହରେ କଣ ହୁଏ॥

ପ୍ରତିଲୋମ ଓ ଅସମୀଚୀନ ବିବାହ ପ୍ରସୂତ ସନ୍ତାନ ବାବା ଓ ମା କାହାରି ଭଲଟା ପାଏ ନାହିଁ। ଏଥିରେ ସ୍ୱାମୀ ଓ ସ୍ତ୍ରୀ ଉଭୟଙ୍କର ବୈଶିଷ୍ଟ୍ୟ ବିଧ୍ୱସ୍ତ ହୁଏ। ମାଟି ଯଦି ବୀଜର ଅନୁକୂଳ ନ ହୁଏ, ତାହେଲେ ଗୋଳମାଳ ହୁଏ। ଗୋଟିଏ ଦେଶର ମାଟି ଯୋଗୁଁ ଯେଉଁ କମଳା ମିଠା ହୁଏ. ତାର ମଞ୍ଜି ଅନ୍ୟ ମାଟିରେ ପୋତିଲେ ହୁଏତ କମଳା ଟକ ହୋଇ ଯାଏ। ତାର କାରଣ ମାଟି ବୀଜକୁ proper nurture (ବିହିତ ପୋଷଣ) ଦେଇ ପାରେ ନା କିମ୍ବା ଏହି ବୀଜର ଅନ୍ତର୍ନିହିତ କୌଣସି କୌଣସି ଗୁଣ ନଷ୍ଟ କରିଦିଏ। ଉନ୍ନତ ଜାତିର ଗାଈ ଓ ନିକୃଷ୍ଟ ଜାତିର ଷଣ୍ଢର ମିଳନ ଫଳରେ ଛୁଆ ଖରାପହିଁ ହୁଏ। ପ୍ରତିଲୋମ-ସଂଯୋଗରେ କେତେବେଳେବି ଭଲ ହୋଇ ପାରେ ନାହିଁ।

ଆ.ପ୍ର. ୧୬/୬.୪.୧୯୪୯

## ।। କାମର ଚରିତାର୍ଥତା–ସାଧନହିଁ ମୁଖ୍ୟ ହେଲେ କଣ ହୁଏ ।।୧୮୮

ସ୍ତ୍ରୀ ପ୍ରତି ଅନୁଗତିର ଭିତର ଦେଇ ଆସେ ସନ୍ତାନରେ ରତି। ପୁଣି ସନ୍ତାନ ପ୍ରତି ଟାଣ ହୁଏ ନାହିଁ, ଯଦି ତା ପାଇଁ କିଛି କରା ନ ଯାଏ। ତା ବ୍ୟତୀତ ତୁମର ଯଦି ସ୍ତ୍ରୀ ପ୍ରତି ଭଲ ପାଇବାର ଟାଣ ନ ଥାଏ ଏବଂ ତାର ଯଦି ତୁମ ଉପରେ ସଶ୍ରଦ୍ଧ ଟାଣ ନ ଥାଏ, କାମର ଚରିତାର୍ଥତା – ସାଧନହିଁ ଯଦି ଦାମ୍ପତ୍ୟ ଜୀବନରେ ମୁଖ୍ୟ ହୁଏ, ତାହେଲେ ସନ୍ତାନର ମଧ୍ୟ ପିତାମାତାଙ୍କ ପ୍ରତି ପ୍ରକୃତ ଭାବ, ଭକ୍ତି, ଭଲପାଇବା କମ୍ ଗଜାଏ। ପୁଣି ପିତାମାତାଙ୍କ ପ୍ରତି ସନ୍ତାନର ଯଦି ନିଶା ନ ଥାଏ, ତାହେଲେ ସେମାନଙ୍କର ଆତ୍ମବିକାଶ ଓ ଚାରିତ୍ରିକ ସଙ୍ଗତି ବ୍ୟାହତ ହୁଏ। ହୁଏତ ତଥାକଥିତ ଉନ୍ନତି କରି ପାରେ, କିନ୍ତୁ ଜୀବନରେ ସାମଞ୍ଜସ୍ୟର ପ୍ରତିଷ୍ଠା ହୁଏ ନା। ଆତ୍ମସଂଯମ ଓ ଆତ୍ମସମର୍ପଣ ସେମାନଙ୍କ ପକ୍ଷରେ ଦୂରୂହ ହୁଏ। ତେଣୁ ସେମାନେ ଶାନ୍ତି, ଆନନ୍ଦ ସନ୍ତୋଷ, ସାର୍ଥକତା ଓ ଆତ୍ମପ୍ରସାଦର ମୁଖ ଦେଖି ପାରନ୍ତି ନାହିଁ କହିଲେ ଚଳେ

ଆ.ପ୍ର. ୧୬/୮.୪.୧୯୪୯

## ।। ସନ୍ତାନ ଭଲ ହୋଇପାରେ ନାହିଁ କେତେବେଳେ ।।

ନାରୀ ଓ ପୁରୁଷର କୂଳ–ସଂସ୍କୃତି ଓ ବ୍ୟକ୍ତିଗତ ପ୍ରକୃତି ଯଦି ସଙ୍ଗତିଶୀଳ ଓ ପାରସ୍ପାରିକଭାବରେ ସତ୍ତାପୋଷଣୀ ନ ହୁଏ ତାହେଲେ ସନ୍ତାନ ଭଲ ହୋଇ ପାରେ ନାହିଁ। ସବର୍ଣ୍ଣ ବିବାହ ମଧ୍ୟରେ ଯେ କେତେଟା ବିବାହ ଠିକ୍‌ଭାବରେ ହୁଏ ତାହା କୁହ ଯାଏ ନା। ତେଣୁ ଆଜି ଦେଶରେ ମଣିଷ ଖୋଜି ମିଳୁ ନାହିଁ।

ପ୍ରଶ୍ନ – ଏହାର ଉପାୟ କଣ ?

ଶ୍ରୀଶ୍ରୀଠାକୁର – ପ୍ରକୃତ ଘଟକମାନେ ଯାହା ଦ୍ୱାରା ସମାଜରେ ବିହିତ ମର୍ଯ୍ୟାଦ ପାଆନ୍ତି ତାର ବ୍ୟବସ୍ଥା କରିବା ଦରକାର। ଆ.ପ୍ର. ୧୬/୧୦.୪.୧୯୪୯

## ।। ସ୍ତ୍ରୀ-ସହବାସର ଉଦ୍ଦେଶ୍ୟ କଣ ହେବା ଉଚିତ ।।

ସ୍ତ୍ରୀ-ସହବାସ କରିଲେ ଉଭୟଙ୍କ ଭିତରର intent (ଉଦ୍ଦେଶ୍ୟ) ରହିବା ଉଚିତ ସୁପ୍ରଜନନ। ତାକୁ sacrifice କରି (ବିସର୍ଜନ ଦେଇ) ଯେଉଁମାନେ ସମ୍ଭୋଗ କରନ୍ତି, ସେମାନେ ସର୍ବନାଶର ଆବାହନୀ ଗାଆନ୍ତି। ଅବଶ୍ୟ ସ୍ତ୍ରୀର ସ୍ୱାଭାବିକ ଚାହିଦା–ପୂରଣାର୍ଥେ ଉପଗତ ହେଲେ ସୁପ୍ରଜନନ କମ୍‌ହିଁ ବ୍ୟାହତ ହୁଏ। ଆ.ପ୍ର. ୧୬/୧୭.୪.୧୯୪୯

## ।। ଯୌନ ମିଳନର କ୍ଷେତ୍ରରେ ମଣିଷ ପଶୁ ଅପେକ୍ଷା ଅସଂଯତ କାହିଁକି ।।

ଯେତେ rational (ବିଚାରଶକ୍ତିସମ୍ପନ୍ନ) ହୁଏ complex (ପ୍ରବୃତ୍ତି)-ଟା ସେତେ free (ସ୍ୱାଧୀନ) ଅର୍ଥାତ୍ voluntary (ସ୍ୱୀୟ ଇଚ୍ଛାଧୀନ) ହୁଏ । ସେମାନଙ୍କର ଅନେକଟା ବେଶୀ cirumscribed (ସୀମାବଦ୍ଧ) । ସେମାନେ obsessed (ଆବିଷ୍ଟ/ଅଭିଭୂତ) ସେଥି ପାଇଁ ସେମାନେ educated (ଶିକ୍ଷିତ) କମ୍ ହୁଅନ୍ତି । ମଣିଷର ମନନଶକ୍ତି ଓ ବିଚାରବୁଦ୍ଧି ଥିବାରୁ ସେ educated (ଶିକ୍ଷିତ) ବେଶୀ ହୁଏ । Educated (ଶିକ୍ଷିତ) ହୁଏ, ଅଥଚ ଯଦି adjusted (ନିୟନ୍ତ୍ରିତ) ନ ହୁଏ, ତାହେଲେ disintegrated (ବିଶ୍ଲିଷ୍ଟ) ହୋଇଯାଏ । ମଣିଷର ଅଙ୍କ ବହୁତ ସ୍ୱାଧୀନତା ଥିବାରୁ ତାର ଯେପରି ଉନ୍ନତି ହୋଇପାରେ, ସେହିପରି ତାର ଅବନତି ମଧ୍ୟ ହୋଇପାରେ । ପଶୁମାନଙ୍କର ଏହି ପରି ନାହିଁ କହିଲେ ଚଳେ, ତେବେ pedigree (ବଂଶଧାରା) ଅନୁଯାୟୀ ଏକ ଜାତୀୟ ପଶୁମାନଙ୍କ ମଧ୍ୟରେ ଆଚରଣରେ କିଛି କିଛି ପାର୍ଥକ୍ୟ ଦେଖାଯାଏ । ମଣିଷମାନଙ୍କ ମଧ୍ୟରେ gradation (କ୍ରମ) ଦେଖିବାକୁ ଗଲେ, ଦେଖିବାକୁ ହୁଏ କାହାର complex-ର (ପ୍ରବୃତ୍ତିର) କେତେ ପରିମାଣରେ fulfilling and meaningful adjustment (ପରିପୂରଣୀ ଓ ସାର୍ଥକ ନିୟନ୍ତ୍ରଣ) ହୋଇଛି । ତା ବ୍ୟତୀତ ଆହୁରି ଦେଖିବାକୁ ହେବ ସେଗୁଡ଼ିକ କେତେପରିମାଣରେ unicentric (ଏକକେନ୍ଦ୍ରିକ) ହୋଇ କେତେପରିମାଣରେ sublimated (ଭୂମାୟିତ) ହୋଇଛି । ଏହା ଯାହାର ଯେତେ ବେଶୀ ହୁଏ ସେ ସେତେ great man (ମହାନ ପୁରୁଷ) ।

ଆ.ପ୍ର. ୧୬/୧୭.୪.୧୯୪୯

## ।। ବିବାହରେ ଏତେ ବିଧି-ବିଧାନ କାହିଁକି ମାନା ଯାଉଥାଏ ।।

ଆଗରୁ ଆମର biological structure (ଜୈବ ଗଠନ) ଠିକ୍ ରଖିବା ଉପରେ ଜୋର ଦିଆ ଯାଉଥିଲା । ତେଣୁ ବିବାହାଦି ଏପରି ଭାବରେ ଦିଆଯାଉଥିଲା ଯାହାଦ୍ୱାରା ସ୍ୱାମୀ-ସ୍ତ୍ରୀ ମନୋଗତ ଓ ଦେହଗତ ସଙ୍ଗତିର ଭିତର ଦେଇ ସୁସନ୍ତାନର ଜନକ-ଜନନୀ ହୋଇ ପାରୁଥିଲେ । ତେଣୁ ପ୍ରତିଲୋମ ନ ଥିଲା, କାରଣ ପ୍ରତିଲୋମ ବିଧି-ବିରୁଦ୍ଧ, ବିଜ୍ଞାନ-ବିରୁଦ୍ଧ । ଏହା ପରିଧ୍ୱଂସରହିଁ ସୃଷ୍ଟି କରେ । ବିହିତ ସବର୍ଣ୍ଣ ଓ ଅନୁଲୋମ ଅସବର୍ଣ୍ଣ ବିବାହର ପ୍ରଚଳନ ଥିଲା । କେବଳ ସବର୍ଣ୍ଣ ଓ ଅନୁଲୋମ ହେଲେହିଁ ହେଉ ନଥାଏ, ପ୍ରତ୍ୟେକଟା

ବିବାହ ଯେପରି ସତ୍ତାପୋଷଣୀ ଓ ବୈଶିଷ୍ଟ୍ୟବର୍ଦ୍ଧନୀ ହୁଏ, ସେ ଦିଗକୁ ଶ୍ୟେନ ଦୃଷ୍ଟି ରଖା ଯାଉଥିଲା।     ଆ.ପ୍ର. ୧୬/୧୯.୪.୧୯୪୯

## ।। ବହୁବିବାହ ବନ୍ଦ କରିବା ଆତ୍ମଘାତୀ ବ୍ୟାପାର କାହିଁକି ।।

ଉପଯୁକ୍ତ ପୁରୁଷର ବହୁବିବହ ବନ୍ଦ କରିବା ଗୋଟିଏ suicidal (ଆତ୍ମଘାତୀ) ଜିନିଷ। ଆମେ ଚାହୁଁ ଏଭଳି ମଣିଷ ସୃଷ୍ଟି କରିବାକୁ, ଆମଦାନୀ କରିବାକୁ, ଯେଉଁମାନେ ସମାଜର ସେବା କରି ପାରିବେ, ଉତ୍କର୍ଷ ଆଣି ପାରିବେ। ଉପଯୁକ୍ତ ପୁରୁଷର ବହୁବିବାହ ବ୍ୟତୀତ ଏହା ସମ୍ଭବ ନୁହେଁ। ବହୁବିବାହ ରଦ୍ଦ ହେଲେ ଅନେକ ଝିଅମାନଙ୍କର ହୁଏତ ବିବାହ ହେବ ନାହିଁ। ଧୀରେ-ଧୀରେ ଝିଅମାନେ ସମାଜର ବାହାରକୁ ଚାଲିଯିବାକୁ ବସିବେ, କିମ୍ବା ହିନ୍ଦୁ ସମାଜ ଭିତରେ ପ୍ରତିଲୋମ ବିବାହ ହେବ। ତାହାଦ୍ୱାରା ତାର normal sentiment (ସ୍ୱାଭାବିକ ଭାବାନୁକମ୍ପିତା) ନଷ୍ଟ ହେଲେ ସେ undone (ନିରୁପାୟ) ହୋଇଯିବ। ଆଉ ପ୍ରତିଲୋମ ବିବାହ ଫଳରେ ପୁରୁଷର structure (ଗଠନ), ଗୁଣ, ପ୍ରକୃତି ଓ ବୈଶିଷ୍ଟ୍ୟ ମଧ୍ୟ ପରବର୍ତ୍ତୀ ପିଢ଼ିକୁ ଆସି ପାରିବ ନାହିଁ। ଦୁନିଆରେ ତାର ବୈଶିଷ୍ଟ୍ୟର ମଧ୍ୟ ଗୋଟିଏ ପ୍ରୟୋଜନ ଅଛି। ଦୁନିଆ ତାହା ହରାଇବ ପୁଣି ତାର ସନ୍ତାନ ହେବ' ପରିଧ୍ୱଂସୀ। ତାକୁ ଦେଇ ଜୀବନବୃଦ୍ଧି ଓ ସଂହତି ବିଧ୍ୱସ୍ତ ହେବହିଁ।

ଆ.ପ୍ର. ୧୬/୧୯.୪.୧୯୪୯

## ।। ବହୁବିବାହ କିଏ କରିପାରିବ ।।

ବହୁବିବାହ ଯାହା ତାହା ପାଇଁ ନୁହେଁ। ଯିଏ ଆଦର୍ଶଙ୍କ ଠାରେ ଅଟୁଟ କଠୋର, ସେହିଁ ବହୁବିବାହରେ ସମର୍ଥ। ଆମ ସମାଜ ବରାବର ନୀଚକୁ ଉଚ୍ଚ କରିବା ପାଇଁ ଚାହିଁଛି। ତାହା ପ୍ରଜନନର ଦିଗ ଦେଇ, ସାଧନାର ମାଧ୍ୟମରେ ଏବଂ ଅନୁଲୋମକ୍ରମେ ସାମାଜିକ ସମ୍ବନ୍ଧ ସୃଷ୍ଟି କରି।     ଆ.ପ୍ର. ୧୬/୧୯.୪.୧୯୪୯

## ।। ଟେଷ୍ଟ-ଟିଉବ ବେବୀ ସୁପ୍ରଜନନର ସହାୟକ କି ନୁହେଁ ।।

ଏଥିରେ ଦୋଷ ଅଛି। କ୍ଷୁଧା ଥିଲେ ଜିହ୍ୱାରୁ ଯେପରି ହଜମର ଉପଯୋଗୀ ରସ- କ୍ଷରଣ ହୁଏ, ଯାହାଦ୍ୱାରା ଖାଦ୍ୟରୁ ଭଲ ଭାବରେ ପୁଷ୍ଟି ସଂଗ୍ରହ କରା ଯାଏ, ସେହିପରି ସ୍ତ୍ରୀର ସତୀତ୍ୱ ଅର୍ଥାତ୍ ସ୍ୱାମୀଙ୍କ ପ୍ରତି ସୁକେନ୍ଦ୍ରିକ ଟାଣ ରହିଲେ ତା'ର ଯୌନ

ଗ୍ରନ୍ଥିରୁ ଏପରି କ୍ଷରଣ ନିସୃତ ହୁଏ ଯେଉଁଥିରୁ ବୀଜ-ସତ୍ତା ଭଲ ପୋଷଣ ପାଏ ଏବଂ ସନ୍ତାନ ତେଜବୀର୍ଯ୍ୟର ଅଧିକାରୀ ହୁଏ। ଲୋଭୀ ମଣିଷ ଯେଉଁମାନେ ସେମାନେ କ୍ଷୁଧାରେ ଖାଆନ୍ତି ନାହିଁ, ଲୋଭରେ ଖାଆନ୍ତି। ସେଥିରେ ଜୀବନୀୟ ରସକ୍ଷରଣ ହୁଏ ନାହିଁ, ତେଣୁ ଖାଦ୍ୟ ଶରୀରର ବିହିତ ପୁଷ୍ଟିର କାରଣ ହୁଏ ନାହିଁ। ସ୍ୱାମୀ ଉପରେ ସ୍ତ୍ରୀର ପ୍ରାଣର ଟାଣ ନ ରହିଲେ କିମ୍ବା କେବଳ ମାତ୍ର କାମାସକ୍ତି ରହିଲେ ତାର ଯୌନଗ୍ରନ୍ଥିରୁ ପୋଷଣପ୍ରଦ ରସ ନିଃସରଣ ହୁଏ ନାହିଁ। ତେଣୁ ସନ୍ତାନ ମଧ୍ୟ ଦେହ, ମନ ଓ ମସ୍ତିଷ୍କର ଦିଗ ଦେଇ ଯଥାଯଥ ପୁଷ୍ଟି ପାଏ ନାହିଁ। ଆ.ପ୍ର. ୧୬/୧୯.୪.୧୯୪୯

## ॥ ପ୍ରତିଲୋମରେ କୁ–ଏର ଜନମ – କହିଁକି ॥

Incompatible weak sperm ଓ strong ovum (ଅସଙ୍ଗତିଶୀଳ ଦୁର୍ବଳ ଶୁକ୍ରାଣୁ ଏବଂ ଶକ୍ତିମାନ ଡିମ୍ବାଣୁ)-ର ମିଳନରେ ବଂଶାନୁକ୍ରମିକ ବୈଶିଷ୍ଟ୍ୟ ନଷ୍ଟ ହୋଇ ଯାଏ। ବୈଜ୍ଞାନିକ ଭାଷାରେ କିପରି କହିବାକୁ ହୁଏ ମୁଁ ତାହା ଜାଣେ ନା କିନ୍ତୁ ମୋର ବକ୍ତବ୍ୟ ଏହି ଯେ, – ପୁଂବୀଜ ଯଦି ଡିମ୍ବାଣୁର ତୁଳନାରେ ବିବର୍ତ୍ତନର ଦୃଷ୍ଟିକୋଣରୁ ନିକୃଷ୍ଟ ହୁଏ, ସେଥିରେ ଫଳ ଭଲ ହୁଏ ନାହିଁ। ସେଥିରେ ପୁଂବୀଜ ଓ ଡିମ୍ବାଣୁ ଦୁଇଟି ଉପରେ ଗୋଟିଏ ବିପର୍ଯ୍ୟୟୀ ପ୍ରଭାବ ହୁଏ, ଜନ୍ମନିଏ ଗୋଟିଏ ବାଜେ ଜିନିଷ। ପୁରୁଷ ଓ ନାରୀର ବୈଶିଷ୍ଟ୍ୟ – ଦୁଇଟିହିଁ ସେଠାରେ ବିଧ୍ୱସ୍ତ ହୋଇଯାଏ। ଖଟା, ଛୋଟ ନ୍ୟାଡ଼ା ଆମ୍ବକୁ ଭଲ କରିବାର ଉପାୟ ଅଛି। କିନ୍ତୁ ବୈଶିଷ୍ଟ୍ୟ ନଷ୍ଟ ହେଲେ ତାର ଆଉ ଉତ୍କର୍ଷର ଉପାୟ ରହେ ନାହିଁ। ସେତେବେଳେ ବିକୃତିହିଁ ବଢ଼ିବାକୁ ଲାଗେ।

ବଙ୍ଗଳାରେ ଆଜି କୂଟନୀତିଜ୍ଞାନସମ୍ପନ୍ନ ସୂକ୍ଷ୍ମଦର୍ଶୀ କାୟସ୍ଥ ପାଇବାର ଜୋ ନାହିଁ, ତାହେଲେ କଣ ଏହି ଦୁର୍ଦ୍ଦଶା ହୁଏ ? କୁଳୀନର ଝିଅ ସର୍ବଦା ମୌଳିକର ଘରକୁ ଯାଉଛି। କହିଛି ତ ଅନେକ, ତୁମ୍ଭେମାନେ କରିଲ ବି ନାହିଁ, ଧରିଲ ବି ନାହିଁ, ବୁଝିଲ ବି ନାହିଁ, ତେଣୁ ଦେଶସାରାଟା ମରିବାକୁ ବସିଛି। ବୈଶିଷ୍ଟ୍ୟ ରକ୍ଷା କରିବା ଗୋଟିଏ ବଡ଼ କଥା। ନ୍ୟାଡ଼ା ଆମ୍ବକୁ ଫଜଲି ଆମ୍ବ କରାଯିବ ନାହିଁ, ଫଜଲିକୁ ମଧ୍ୟ ନ୍ୟାଡ଼ା କରାଯିବ ନାହିଁ। ଫଜଲିକୁ ଆହୁରି ଭଲ ଫଜଲି କରିବାକୁ ହେବ, ନ୍ୟାଡ଼ାକୁ ଆହୁରି ଭଲ ନ୍ୟାଡ଼ା କରିବାକୁ ହେବ। ଆ.ପ୍ର. ୧୭/୨୯.୪.୧୯୪୯

## ।। ଦାମ୍ପତ୍ୟ-ଜୀବନରେ କେତେବେଳେ ଭୂମିକମ୍ପ ଲାଗି ରହେ ।।୧୯୨

ଅନିୟନ୍ତ୍ରିତ ଦାମ୍ପତ୍ୟ—ଜୀବନ ଯାହା-କିଛି ଗୋଳମାଳର ସୃଷ୍ଟି କରେ। ଦାମ୍ପତ୍ୟ-ସମ୍ପର୍କର ଉପରେ ଛିଡ଼ାହୋଇ ପରିବାରର ମୂଳଦୁଆ ତିଆରି ହୁଏ। ସେଠାରେ ଯଦି ଭୂମିକମ୍ପ ଲାଗି ରହେ ତାହା ହେଲେ କଣ ସାତତାଲା ବା ଚୌଦତାଲା କୋଠା ଠିକ୍ ରହିବ ? ଉଚ୍ଛୃଙ୍ଖଳ ଝିଅମାନଙ୍କ ଚେହେରାହିଁ ଅଲଗା। ଧରିତ୍ରୀର ଯଦି ଆକର୍ଷଣୀ ଶକ୍ତି ନଷ୍ଟ ହୋଇଯାଏ, ତାହେଲେ ଧାରଣ କରିବ କିଏ ? ପୁରୁଷ ଅଚ୍ୟୁତ ଇଷ୍ଟନିଷ୍ଠ ହେଲେ ଯାହା ହୁଏ, ସେହିପରି ସ୍ୱାମୀଙ୍କ ଠାରେ ଏହି ଧରଣର ନିଷ୍ଠା ରହିଲେ ଝିଅମାନଙ୍କର ସେହିପରି adjustment (ନିୟନ୍ତ୍ରଣ) ହୁଏ। ପୁରୁଷ ପୁଣି ନାରୀର ପରିପୂରଣୀ ନ ଦେଲେ ବିକ୍ଷୋଭ ସୃଷ୍ଟି ହୁଏ। ଦାମ୍ପତ୍ୟ-ଜୀବନରେ ଭୂମିକମ୍ପ ଲାଗିହିଁ ରହେ। ବିବାହ ଯଦି ଠିକ୍‌ଭାବରେ ନ ହୁଏ, ତାହେଲେ ଭଲ ଭଲ ପୁରୁଷ ଓ ନାରୀର ଜୀବନ ନଷ୍ଟ ହୋଇ ଯାଏ। ଆ.ପ୍ର. ୧୭/୪.୫.୧୯୪୯

## ।। ବିବାହ ବ୍ୟାପାରରେ ବୀର୍ଯ୍ୟୋକ୍ରର୍ଷରେ କିଏ ବଡ଼ କିଏ ଛୋଟ ବୁଝି ନ ପାରିଲେ କଣ କରିବ ।।

ଯେତେଦିନ ଠିକ୍‌ଭାବରେ ବୁଝି ନ ପାରୁ, ସେତେଦିନ ତ୍ରିକାଳଦର୍ଶୀ ମହାପୁରୁଷମାନେ ଯେଉଁ ବିଧାନ କରି ଦେଇ ଯାଇଛନ୍ତି, ସେହି ଅନୁଯାୟୀ ଚାଲିବା ଭଲ। ସେମାନଙ୍କର ବୁଦ୍ଧି ଯେ କିଛି କମ୍ ଥିଲା ତାହା ଭାବିବାର କୌଣସି କାରଣ ନାହିଁ।

ଆ.ପ୍ର. ୧୭/୯.୫.୧୯୪୯

## ।। ସବୁହିଁ ତାଲଗୋଲ ପାକିୟେ ଯାଚ୍ଛେ କେନ ।।

ଆମର ସମାଜ ଚାହେଁ – ଘରେ–ଘରେ ଭାଗବାନ ଜନ୍ମ ହୁଅନ୍ତୁ, କିନ୍ତୁ ଆଜିକାଲି ପ୍ରତିଲୋମର ଝୋଁକ ଯେ ଏପରି ହୋଇଛି, ତାହାଦ୍ୱାରା ସବୁହିଁ ତାଲଗୋଲ ପାକିୟେ ଯାଚ୍ଛେ। ସବୁ ସ୍ଥାନରେ, ବିଶେଷ କରି ବଙ୍ଗଳାରେ ମଣିଷ ଆଜି ଖୁବ୍ ବିଭ୍ରାନ୍ତ ହୋଇ ପଡ଼ିଛି। କଣ କହି କଣ କରୁଛି, ଫୁଲର ମାଳା କହି ସାପ ଧରି ବସୁଛି – ଏହା ବଡ଼ ଦୁଃଖର କଥା।

ଯଦି mathematically (ଗାଣିତିକ ଭାବରେ) ପ୍ରତିଲୋମର କୁଫଳ ପ୍ରମାଣ

କରି ଦେଇ ପାରିବ, ତାହେଲେ ଗୋଟିଏ ବଡ଼ କାର୍ଯ୍ୟ ହେବ। କରି ଦିଅ – ଦେଖେଇ ଦିଅ – ଜାତିଟାକୁ ବଞ୍ଚାଇ ଦିଅ – west (ପାଶ୍ଚାତ୍ୟ) ପର୍ଯ୍ୟନ୍ତ saved (ବଞ୍ଚି) ଯିବେ ସେଥିରେ। ଆ.ପ୍ର. ୧୭/୯.୫.୧୯୪୯

## ।। ଚଣ୍ଡାଳ କିଏ ।।

ପ୍ରତିଲୋମ ସନ୍ତାନକୁ ଚଣ୍ଡାଳ କହନ୍ତି। ଚଣ୍ଡାଳ କଥାର ମାନେ କ୍ରୋଧୀ। ତା ମାନେ ପ୍ରତିଲୋମ ଜାତକର inter-cellular cohesion (ଅନ୍ତର୍କୌଷିକ ସଂସକ୍ତି)-ଟା ଶ୍ଳଥ, ତେଣୁ ସେମାନଙ୍କର balance (ସମତା) ଠିକ୍ ରହେ ନାହିଁ।

ଆ.ପ୍ର. ୧୭/୯.୫.୧୯୪୯

## ।। ପ୍ରତିଲୋମ ବିବାହରେ ଉପଗତିର ସମୟରେ ସ୍ତ୍ରୀର ମାନସିକତା କିପରି ହୁଏ ।।

ମୁଁ ଅନେକ confession (ସ୍ୱୀକାରୋକ୍ତି) ଶୁଣିଛି ଯେ, ଝିଅଟିର ପୁଅ ପ୍ରତି ଖୁବ୍ ପ୍ରଲୋଭନ ଥିବା ସତ୍ତ୍ୱେବି ଉପଗତିର ସମୟରେ ସେ ଅଜ୍ଞାତସାରରେ ସ୍ୱାମୀକୁ ଗୋଇଠା ମାରିଥାଏ। ପ୍ରଥମେ repeatedly (ବାରମ୍ବାର) ଏହିପରି କରେ, ପରେ habituated (ଅଭ୍ୟସ୍ତ) ହୋଇଗଲେ ଆଉ ସେପରି କରେ ନାହିଁ। ଆଉ ଏହିପରି ଉପଗତି ସମୟରେ ପ୍ରଥମେ ପ୍ରଥମେ ଝିଅଟିର ମନେ ହୁଏ ଯେପରି ଗୋଟିଏ ଜାହାଜ ବୁଡ଼ି ଯାଉଛି ଆଉ ହଜାର ହଜାର ଯାତ୍ରୀ ଯେପରି, ବଞ୍ଚାଅ ବଞ୍ଚାଅ ବୋଲି ଚିତ୍କାର କରୁଛନ୍ତି। ତାର ମାନେ, ତାର ଅନ୍ତର୍ନିହିତ ପୂର୍ବପୁରୁଷମାନେ ଯେପରି ସମବେତଭାବରେ ଏହିପରି ଆକୁଳି-ବିକୁଳି କରୁଛନ୍ତି।

ଆ.ପ୍ର. ୧୭/୯.୫.୧୯୪୯

## ।। ସହବାସ–ସୁଖର ଅନ୍ତର୍ନିହିତ କାମନା କଣ ।।

ମଣିଷ ଯେତେହିଁ କାମପ୍ରବଣ ହେଉନା କାହିଁକି, ନିଛକ ଇନ୍ଦ୍ରିୟସୁଖହିଁ କିନ୍ତୁ ତାର ଚରମ ଓ ପରମ କାମ୍ୟ ନୁହେଁ, ଯଦି ତାହା ହୁଅନ୍ତା ତାହେଲେ ସନ୍ତାନ ପ୍ରତି ମଣିଷର ଟାଣ ହୁଅନ୍ତା ନାହିଁ, ସନ୍ତାନ ପାଇଁ ମଣିଷ କୌଣସି ଦାୟିତ୍ୱ ଗ୍ରହଣ କରି ପାରି ନଥାନ୍ତା। ନାରୀ-ପୁରୁଷ ଯେତେବେଳେ କାମଚର୍ଯ୍ୟାରେ ରତ ହୁଅନ୍ତି ସେହି ମୁହୂର୍ତ୍ତରେ ହୁଏତ ଭାବି ନ ଥାନ୍ତି ଯେ, ଏହା ଫଳରେ ଯେଉଁ ସନ୍ତାନଟି ଆସିବ ସେ କିପରି ହେବ। କିନ୍ତୁ ତଥାପି

ସେମାନେ ଚାହାନ୍ତି ନାହିଁ ଯେ, ତାଙ୍କର କୌଣସି ସନ୍ତାନ ବଣବୃଷ ହେଉ ବା ଅଯତ୍ନରେ ଜୀବନ ହରାଉ। ମଣିଷ ସନ୍ତାନ-ସନ୍ତତିଙ୍କ ଭିତର-ଦେଇ ଅନନ୍ତ କାଳ ବଞ୍ଚି ରହିବାକୁ ଚାହେଁ। ଅନ୍ତର୍ନିହିତ ଏହି କାମନା ଅଜ୍ଞାତସାରରେ ସହବାସ-ସୁଖର ପଛରେ ସକ୍ରିୟ ରହିଥାଏ। ସ୍ୱାମୀ-ସ୍ତ୍ରୀ, ଝିଅ ଏବଂ ପୁଅ ଦୁଇଟି ରୂପହିଁ ନିଅନ୍ତି, ସେମାନଙ୍କ ଭିତର-ଦେଇହିଁ ସେମାନେ ବଞ୍ଚି ରହିବାକୁ ଚାହାଁନ୍ତି। ପୁରୁଷର ଅନୁପୋଷକ ଝିଅ, ଝିଅର ଅନୁପୂରକ ପୁରୁଷ। କେବଳ ମଣିଷର କ୍ଷେତ୍ରରେ ଏହା ନୁହେଁ, ଜୀବଜଗତରେ ସର୍ବତ୍ର ଏହା ଅଛି।

ଆ.ପ୍ର. ୧୭/୧୧.୫.୧୯୪୯

## ।। ନାରୀ-ପୁରୁଷ ସୁକେନ୍ଦ୍ରିକ ନ ହେଲେ କଣ ହୁଏ ।।

ଝିଅମାନେ ଯଦି ସ୍ୱାମୀଙ୍କ ଠାରେ concentric (ସୁକେନ୍ଦ୍ରିକ) ନ ହୁଅନ୍ତି ଏବଂ ପୁରୁଷ ଯଦି Godcentric (ଈଶ୍ୱର-କେନ୍ଦ୍ରିକ) ନ ହୁଏ, ତାହେଲେ ଏହି ଫାଙ୍କ ଦେଇ ବହୁ ଦୋଷ ପ୍ରବେଶ କରିପାରେ ଏବଂ କାଳ-କାଳକୁ ଜାତିଟାହିଁ ନଷ୍ଟ ହୋଇ ଯାଇ ପାରେ। ପୁରୁଷ ସ୍ୱାଧୀନ ଭଗବାନଙ୍କୁ ନେଇ ଆଉ ଝିଅ ସ୍ୱାଧୀନ ସ୍ୱାମୀଙ୍କୁ ନେଇ – ସ୍ୱାମୀ ପୁଣି ହେବା ଦରକାର ଇଷ୍ଟମୁଖୀ ଓ ସ୍ତ୍ରୀର ବୈଶିଷ୍ଟ୍ୟପୂରଣୀ।

ଆ.ପ୍ର. ୧୭/୧୧.୫.୧୯୪୯

## ।। କେହି କେହି ପ୍ରତିଲୋମ ସନ୍ତାନ ଲେଖାପଢ଼ାରେ ଭଲ ହୁଅନ୍ତି କାହିଁକି।।

ତାହା ହେବ ନାହିଁ କାହିଁକି ? ତାହା ତ ଆଉ ଶିକ୍ଷା ନୁହେଁ। ଶିକ୍ଷା ଅର୍ଥାତ୍ ସୁନିୟନ୍ତ୍ରିତ ଚରିତ୍ର ଗଠନ ଏବଂ ପ୍ରବୃତ୍ତି-ପ୍ରଲୋଭନକୁ ଜୟ କରିବା, ଇଷ୍ଟ ଓ କୃଷ୍ଟି ପ୍ରତି ସୁନିଷ୍ଠ ହେବା — ଇତ୍ୟାଦି ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ଦେଖିବାକୁ ପାଇବ, ସେଦିଗରୁ ସେମାନଙ୍କର ଅଗ୍ରଗତି କମ୍ ହେବ।

ପ୍ରଶ୍ନ – ଡିଗ୍ରୀଗତ ଶିକ୍ଷାରେ ମଧ୍ୟ ସେମାନଙ୍କର ବିଶେଷ ଉନ୍ନତି ହେବା ଉଚିତ୍ ନା।

ଶ୍ରୀଶ୍ରୀଠାକୁର – ଗୋଟିଏ ମାଙ୍କଡ଼କୁ ମଧ୍ୟ କେତେ କଣ ଶିକ୍ଷା ଦିଆଯାଏ, ସେଥିରେ କଣ ମାଙ୍କଡ଼ର ମାଙ୍କଡ଼ତ୍ୱ ଦୂର ହୋଇଯାଏ ?

ଆ.ପ୍ର. ୧୭/୧୩.୫.୧୯୪୯

## ।। ମଙ୍ଗଳ କେତେବେଳେ ଅବଧାରିତ ।।

ସମସ୍ତ ସଂହିତା ଚାହିଁଛନ୍ତି – ସମାଜଟାକୁ ଏବଂ ତାର ବିଧିନୀତିକୁ becoming-ର (ବିବର୍ଦ୍ଧନର) ଦିଗରେ adjust (ନିୟନ୍ତ୍ରଣ) କରିବାକୁ, ଆଉ ତାର ଅନ୍ତରାୟ ଯାହା ତାକୁ ଦୃଢ଼ ଭାବରେ ନିରୁଦ୍ଧ କରିବାକୁ ହେବ। ଏ ଗୁଡ଼ିକର ତାତ୍ପର୍ଯ୍ୟ ବୁଝି ବିହିତ ଭାବରେ ଅନୁସରଣ କରିପାରିଲେ ମଙ୍ଗଳ ଅବଧାରିତ। ତେବେ ଯେଉଁ–ସଂହିତା ଋଷି–ଅନୁଶାସିତ ନୁହେଁ, ତାହା ଅନୁସରଣ କରିବା ବେଳେ ହିସାବ କରି ଚାଲିବାକୁ ହୁଏ। ରଘୁନନ୍ଦନ ଯେ କଳିରେ ଅନୁଲୋମ ଅସବର୍ଣ୍ଣ ବିବାହ ନିଷିଦ୍ଧ କରିଛନ୍ତି, ତାହା ମାନିବା ସମୀଚୀନ ବୋଲି ମନେ ହୁଏନା। ଏହା ଚାଲୁ ରହିଲେ ହିନ୍ଦୁ ସମାଜର ସଂହତିହିଁ ବ୍ୟାହତ ହେବ। ଆଜିକାଲି ଯେ ବିପ୍ର ଛଡ଼ା କ୍ଷତ୍ରିୟ ଓ ବୈଶ୍ୟମାନଙ୍କ ଉପନୟନ–ସଂସ୍କାର ଉଠି ଯାଇଛି, ଏହା ମଧ୍ୟ ଠିକ୍ ହୋଇନାହିଁ। ବିହିତ ସଂସ୍କାର ଓ ଆଚାରଠାରୁ ଭ୍ରଷ୍ଟ ହେଲେ, ତା ଭିତର-ଦେଇ ପାତିତ୍ୟ ଆକ୍ରମଣ କରେ। ପାରଶବ ବିପ୍ରମାନଙ୍କ ମଧ୍ୟରେ ଯେ କାହିଁକି ଉପନୟନ-ସଂସ୍କାର ନାହିଁ ତା ମଧ୍ୟ ମୁଁ ବୁଝି ପାରେନା। କୌଣସି ଧର୍ମସୂତ୍ରରେ ବା ମହାସୂତ୍ରରେ ଏ ସମ୍ବନ୍ଧରେ କୌଣସି ନିଷେଧାତ୍ମକ ନିର୍ଦ୍ଦେଶ ଅଛି ବୋଲି ମୁଁ ଜାଣେନା। ମୁଁ ନିଜେ ଅବଶ୍ୟ ଏ-ସବୁ ପଢ଼ି ନାହିଁ, କିନ୍ତୁ କେଷ୍ଟଦା ଯାହା ଘାଣ୍ଟି ଦେଖିଛନ୍ତି ସେଥିରେ ମୋର ମନେ ହୁଏ ଏମାନଙ୍କ ମଧ୍ୟରେ ଉପନୟନ-ସଂସ୍କାର ଚାଲୁ ହେବା ଉଚିତ। ତେଣୁ ମୁଁ ତ ଲଗେଇ ଦେଇଛି। ତେବେ ଏମାନେ ଯେ scheduled caste-ର (ତଫସିଲ ଜାତିର) ମଧ୍ୟରେ ନିଜ ନାମ ପ୍ରବେଶ କରାଇଛନ୍ତି, ଏହା ଆମ ନିକଟରେ ଖୁବ୍ insulting (ଅପମାନଜନକ) ବୋଲି ମନେ ହୁଏ।

ଆ.ପ୍ର. ୧୭/୧୬.୫.୧୯୪୯

## ।। ପ୍ରତିଲୋମ ଜାତକର ପ୍ରକୃତି ସଂଶୋଧନ ପ୍ରାୟ ଅସମ୍ଭବ କାହିଁକି ।।

ପ୍ରତିଲୋମ ବିବାହରେ ସନ୍ତାନର structure (ଛାଞ୍ଚ)-ଟାହିଁ ବିପର୍ଯ୍ୟସ୍ତ ହୋଇ ଯାଏ। ତାର ପ୍ରକୃତି ସଂଶୋଧନ କରିବା ପ୍ରାୟହିଁ ଅସମ୍ଭବ ହୋଇ ଉଠେ।

ପ୍ରଶ୍ନ – ଭଗବାନଙ୍କ ରାଜ୍ୟରେ ଏତେ ପରିମାଣରେ hopeless (ଆଶାଶୂନ୍ୟ) ଘଟଣା କଣ ଘଟିପାରେ – ଯାହାର ପ୍ରତିକାର ସମ୍ଭବ ନୁହେଁ।

ଶ୍ରୀଶ୍ରୀଠାକୁର – ତାଙ୍କ ରାଜ୍ୟରେ ତ hopeless (ନୈରାଶ୍ୟଜନକ) କିଛି

ନାହିଁ। କିନ୍ତୁ ଯେତେବେଳେ ଆମେ ତାଙ୍କର ବିଧାନକୁ ଅମାନ୍ୟ କରି ଚାଲୁଁ, ସେତେବେଳେହିଁ ଯେତେ ଗୋଳମାଳର ସୃଷ୍ଟି ହୁଏ। ଭଗବାନଙ୍କର ଅନ୍ୟ ଏକ ନାମ ବିଧି।

ପ୍ରଶ୍ନ – ମଣିଷର ଭୁଲଭ୍ରାନ୍ତି ତ ଅଛି।

ଶ୍ରୀଶ୍ରୀଠାକୁର – ଯାହାକୁ କହନ୍ତି ଆରମ୍ଭରୁ ଭୁଲ, ସେପରି ଘଟଣା ଯଦି ଘଟେ, ସେତେବେଳେ ତାର ପ୍ରତିକାର କରିବେ କିପରି? ସଂଶୋଧିତ ହେବା ପାଇଁ ଜୈବୀ-ସଂସ୍ଥିତିର ଭିତରେ ଯେଉଁ ଉପାଦାନଟି ରହିବା ଦରକାର ତାହା ଯଦି ଆରମ୍ଭରୁ ବିକୃତିଦୁଷ୍ଟ ହୋଇଥାଏ ଅର୍ଥାତ ଖରାପଟା ଯେଉଁଠି ଭ୍ରୂଣ ମଧ୍ୟରେ ସଂଘଟିତ ହୁଏ ସେତେବେଳେ ସେହି ଭ୍ରୂଣର ପୂର୍ଣ୍ଣତାପ୍ରାପ୍ତ ରୂପ ହିସାବରେ ଯେଉଁ ଜାତକର ଜନ୍ମ ହୁଏ ସେତେବେଳେ ତାକୁ post-natal nurture (ଜନ୍ମର ପରବର୍ତ୍ତୀକାଳୀନ ପୋଷଣ) ଯାହାହିଁ ଦିଆ ଯାଉନା କାହିଁକି, ତାହା ଦ୍ୱାରା ମାତୃଗର୍ଭରେ ଆସିବା ଓ ରହିବା-କାଳରେ ଯେଉଁ ବୈଧାନିକ ବିପର୍ଯ୍ୟୟ ଘଟିଯାଇଛି, ତାହାର ପ୍ରତିକାର କରିବ କିପରି?

ତେବେ ଏହି ସବୁ ଜାତକମାନଙ୍କ ମଧ୍ୟରେ ଯେଉଁମାନେ ଝିଅ ସେମାନଙ୍କର ଯଦି ଅନୁଲୋମ କ୍ରମେ ଖୁବ୍ ଉଚ୍ଚ ଘରେ ବିବାହ ଦିଆଯାଏ, ଏବଂ ଭାଗ୍ୟକ୍ରମେ ସ୍ୱାମୀଙ୍କ ପ୍ରତି ଯଦି ସେମାନେ ଖୁବ୍ ସଶ୍ରଦ୍ଧ ହୋଇ ଉଠନ୍ତି ଏବଂ ଏହି ପ୍ରକାରଟା କିଛି ପୁରୁଷ ଧରି ଯଦି ଚାଲୁ ରଖାଯାଏ, ତାହେଲେ ହୁଏତ କିଛିଟା ସୁଫଳ ଫଳି ପାରେ। ଆଉ, ଏହି ପ୍ରକାର ପୁଅ ଯେଉଁମାନେ ସେମାନଙ୍କ ବଂଶ-ବୃଦ୍ଧି ନ ହେବାହିଁ ତ ଶ୍ରେୟ।

ଆ.ପ୍ର. ୧୬/୧୮.୫.୧୯୪୯

## ।। ଦାମ୍ପତ୍ୟ ଜୀବନରେ ଆମେଳ ହେଲେ କଣ ହୁଏ ।।

ସ୍ତ୍ରୀର କାମ ହେଲା ସ୍ୱାମୀଙ୍କର ପୋଷଣ। ଆଉ ସ୍ୱାମୀର କାମ ହେଲା ସ୍ତ୍ରୀର ପରିପୂରଣ। ସ୍ତ୍ରୀ ଯଦି ସ୍ୱାମୀର ମନୋବୃତ୍ତ୍ୟନୁସାରିଣୀ ଓ ପୋଷଣଦାୟିନୀ ହୁଏ, ତାହେଲେ ସେ ସ୍ୱାମୀର ପ୍ରତ୍ୟେକଟି gene(ଜିନ)-କୁ ଏପରି ଭାବେ ପୁଷ୍ଟି ଯୋଗାଏ ଯେ, ସନ୍ତାନ ବିହିତ ସମ୍ଭାବ୍ୟତା ନେଇ ଜନ୍ମଲାଭ କରି ପାରେ। ନଚେତ୍ ଯେତେ ହିଁ ସୁନ୍ଦରୀ, କାଇଦାଦୂରନ୍ତ ଝିଅ ବିବାହ କରା ଯାଉନା କାହିଁକି, ସେ ଯଦି ଉଚ୍ଛୃଙ୍ଖଳ ଭାବରେ ନିଜର ଖିଆଲ ଅନୁଯାୟୀ ଚାଲେ, ତାର ଯଦି ସେବାବୁଦ୍ଧି ଓ ପୋଷଣଦାନର ପ୍ରବୃତ୍ତି ନଥାଏ, ସେଠାରେ ପୁରୁଷ ଜୀବନରେ ଆଉ କିଛି ରହେ ନାହିଁ। ସେ କହିବି ପାରେ ନା, ସହିବି ପାରେନା, ପକାଇବି ପାରେ ନା, ଛାଡ଼ିବି ପାରେ ନା, ଗିଳିବି ପାରେ

ନା। ତାର ଆଗ ଓ ପଛ ସବୁ ବନ୍ଦ ଚାପା – କହିବାରବି ଜୋ ନାହିଁ, ଭିତରର କଷ୍ଟ ନିଃସରଣ କରିଦେବାରବି ଜୋ ନାହିଁ। ଛେଳି କାଟିବା ସମୟରେ ମୁହଁ ବନ୍ଦ କରି ମାଟି ତଳକୁ ପୋତି ରହିବାର ଯେଉଁ ଅବସ୍ଥା, ଏହି ପୁରୁଷଟିର ସେହି ଅବସ୍ଥା ହୋଇଥାଏ। ପୁଣି ସ୍ୱାମୀର ମଧ୍ୟ ଯଦି ସ୍ତ୍ରୀ ପ୍ରତି ଗୋଟିଏ ସ୍ନେହଳ ମମତା ଓ ପରିପୂରଣୀ ପ୍ରୟାସ ନ ଥାଏ, ତା ହେଲେ ସ୍ତ୍ରୀର ମଧ୍ୟ ତାରି ପରି ଏହି ଧରଣର ଦମ୍ ଅଟକା ଅବସ୍ଥା ସୃଷ୍ଟି ହୁଏ। ତେବେ ସ୍ତ୍ରୀ ଯେତେବେଳେ ସନ୍ତାନ-ସନ୍ତତିର ମା ହୁଏ, ସେତେବେଳେ ସେମାନଙ୍କୁ ନେଇ କିଛିଟା ଭୁଲି ରହିପାରେ, ଅବଶ୍ୟ ସ୍ୱାମୀ ଯଦି ନିତାନ୍ତ ବଦ୍‌ଖିଆଲି ଓ ଅତ୍ୟାଚାରୀ ନ ହୁଏ। ମୋଟ ଉପରେ ଦାମ୍ପତ୍ୟ–ଜୀବନ ଯେଉଁଠି ସୁଖର ନୁହେଁ, ସେଠାରେ ସ୍ୱାମୀ-ସ୍ତ୍ରୀ ଉଭୟହିଁ କଷ୍ଟ ପାଆନ୍ତି ଏବଂ ପୁଅଝିଅମାନଙ୍କର ମଧ୍ୟ ଉପଯୁକ୍ତଭାବରେ ଗଢ଼ି ଉଠିବା କଠିନ ବ୍ୟାପାର ହୋଇଉଠେ। ସଂସାରରେ ଯେତେପ୍ରକାର ସମସ୍ୟାହିଁ ଥାଉ, ଦାମ୍ପତ୍ୟ-ଜୀବନରେ ମନର ଅମେଳ ମଣିଷକୁ ଯେତେ ବେଶୀ ଘାଇଲାକରେ ଅନ୍ୟ କୌଣସି ସମସ୍ୟା ସେମାନଙ୍କୁ ସେତେଟା ବିଧ୍ୱସ୍ତ କରି ପାରେ ନା।      ଆ.ପ୍ର. ୧୭/୧୯.୫.୧୯୪୯

॥ କେତେବେଳେ ପୁରୁଷର ଗୁଣ ସନ୍ତାନଠାରେ ସଂକ୍ରାମିତ ହୋଇ ପାରେ ॥

ପ୍ରଶ୍ନ – ପୁରୁଷ ଯଦି ଉଚ୍ଚତର ଭାବଭୂମିରେ ଅବସ୍ଥାନ କରେ ଏବଂ ସ୍ତ୍ରୀ ଯଦି ତା ଉପରେ ସଶ୍ରଦ୍ଧ ରହେ, ସେ କ୍ଷେତ୍ରରେ ଉପଗତିର ସମୟରେ ସ୍ତ୍ରୀ ଯଦି ପୁରୁଷକୁ ଉଦ୍‌ବୁଦ୍ଧ ନ କରେ, ତା ହେଲେ କଣ ପୁରୁଷର ଗୁଣ ସନ୍ତାନ ଠାରେ ସଂକ୍ରାମିତ ହେବ ନାହିଁ ?

ଶ୍ରୀଶ୍ରୀଠାକୁର – ସ୍ତ୍ରୀ ସ୍ୱାମୀଠାରେ ସଶ୍ରଦ୍ଧ ଓ ଅନୁରାଗୀ ହେଲେ ତା ହେବାର ବାଧା ନାହିଁ। କାରଣ ପୁରୁଷହିଁ ସ୍ତ୍ରୀଠାରେ ସତ୍ତା ପରିଗ୍ରହ କରେ। ତେବେ ସ୍ତ୍ରୀ ଯଦି ସେବାର ଭିତର-ଦେଇ ପୁରୁଷକୁ ଉଦ୍ଦୀପ୍ତ କରି ତା ଠାରେ ଆନତ କରାଏ, ତା ଫଳରେ ସେହି ବୀଜକୁ ପୋଷଣ ଦେବା ପରି ଉପକରଣ ସ୍ତ୍ରୀର ମଧ୍ୟରେ ସକ୍ରିୟ ହୋଇ ଉଠେ। ନଚେତ୍, ସନ୍ତାନର ଶରୀର-ମନର ସଙ୍ଗତି ଠିକ୍-ଠିକ୍ ଭାବରେ ହୁଏ ନା। ଅନେକ ସମୟରେ ବିଶିଷ୍ଟ ଲୋକର ସନ୍ତାନ ଭଲ ହୁଏ ନା। କାରଣ, ସ୍ତ୍ରୀ ପୁରୁଷକୁ ହୃଦୟଙ୍ଗମ କରି ପାରେ ନା। ପୁଣି ଅଛି, ନିଜର ଅନିଚ୍ଛାସତ୍ତ୍ୱେମଧ୍ୟ ସ୍ତ୍ରୀକୁ ଖୁସି ରଖିବା ପାଇଁ ପୁରୁଷ ଉପଗତ ହେଲା ଏବଂ ତା ଫଳରେ ସନ୍ତାନ ହେଲା। ଏଥିରେ ମଧ୍ୟ ସନ୍ତାନ

ଠିକ୍-ଠିକ୍ ଭାବରେ ଯାହା ପାଇବାର କଥା ପାଏ ନା। ପୁରୁଷ ଓ ନାରୀର ଉଭୟଙ୍କର ଶରୀର- ମନର ସମ୍ମତି ଓ ସଙ୍ଗତି ନ ରହିଲେ, ସେପରି ସମୟରେ ଉପଗତ ନ ହେବାହିଁ ଭଲ। ଅବଶ୍ୟ, ସ୍ତ୍ରୀର ଚାହିଦା-ଅନୁଯାୟୀ ମିଳିତ ହେଲେ ସେଥିରେ ସାଧାରଣତଃ ଉଭୟଙ୍କ ପକ୍ଷରେ ତାହା ଜୀବନୀୟ ହେବାର ସମ୍ଭାବନା ବେଶୀ। ଏହି ପ୍ରସଙ୍ଗରେ ଗୋଟିଏ କଥା ସ୍ମରଣୀୟ ଯେ, ପୁରୁଷ ଯଦି ସ୍ୱଭାବତଃ ବଡ଼ ନହୁଏ, ତେବେ ତାର ବଡ଼ତ୍ୱ ସନ୍ତାନ ଠାରେ ବଜାଇ ରହେ ନାହିଁ। କୌଣସି ଲୋକ ନାମକୁ ମାତ୍ର ହେଲେ ହିଁ ଯେ ସେ ଖୁବ୍ ବଡ଼ ହେଲା ଏପରି କୌଣସି କଥା ନାହିଁ। ଅନେକେ ହୀନମନ୍ୟତା ଯୋଗୁଁ ଉଚ୍ଚ ଆକାଂକ୍ଷା ବଶରେ, ଆତ୍ମପ୍ରତିଷ୍ଠାର ଲୋଭରେ ସମାଜରେ ନେତୃତ୍ୱର ସ୍ଥାନ ଦଖଲ କରନ୍ତି। ତାହା ଦେଖି ବୁଝାଯାଏନା ଯେ ସେମାନେ ସ୍ୱଭାବତଃ ବଡ଼। ସ୍ୱଭାବତଃ ବଡ଼ କି ନା – ତାହା ବୁଝା ଯାଏ, ଛୋଟଖାଟ ବ୍ୟାପାରରେ ଜଣକର conduct (ଆଚରଣ) ଦେଖି। ଆ.ପ୍ର. ୧୭/୨୦.୫.୧୯୪୯

## ॥ ପରିବାର ତଳକୁ ତଳକୁ ଓହ୍ଲାଇ ଯାଏ କିପରି ॥

ବିବାହ ଯଦି ଅନ୍ୟ ସବୁ ଦିଗରୁ ଠିକ୍‌ବି ହୁଏ, ଅଥଚ ପୁରୁଷ ଯଦି ଇଷ୍ଟନିଷ୍ଠ ନ ହୁଏ ଏବଂ ସ୍ତ୍ରୀମଧ୍ୟ ସ୍ୱାମୀ-ଭକ୍ତିପରାୟଣା ନ ହୁଏ, ତାହେଲେ ଦାମ୍ପତ୍ୟ-ଜୀବନ ସେଠାରେ ଉଦ୍‌ବର୍ଦ୍ଧନମୁଖର ହୋଇ ଉଠି ପାରେନା। ଏଥିରେ ପୁରୁଷର ପୂରଣପ୍ରବଣତା ଏବଂ ସ୍ତ୍ରୀର ପୋଷଣପରାୟଣତା ଶିଥିଳ ହୋଇଥାଏ। ପାରସ୍ପରିକ ସେବାପ୍ରାଣତା ମଧ୍ୟ ଦେଖା ଯାଏ ନାହିଁ। ଉଭୟେ ଉଭୟଙ୍କ ପାଖରେ ଭାର-ସ୍ୱରୂପ ହୋଇ ଉଠିବାର ଦେଖା ଯାଏ। ସେଥିରେ ଦାବୀଦାଓ୍ୱା ଓ ବାଧ୍ୟବାଧକତାର ଭାବ ମୁଣ୍ଡ ଟେକେ। ସନ୍ତାନ ଜନ୍ମ ସୂତ୍ରରେ ଯେଉଁ ସମ୍ପଦ ପାଇବାର କଥା ତା ପାଏନା ଏବଂ ଏହି ପାରିବାରିକ ପରିବେଶରେ ସେମାନଙ୍କର ମାତୃଭକ୍ତି ଓ ପିତୃଭକ୍ତି କମ୍ ପୁଷ୍ଟ ହୋଇ ପାରେ। ଏହିପରି ଭାବରେ ପରିବାରଗୁଡ଼ିକମଧ୍ୟ ତଳକୁ ତଳକୁ ଓହ୍ଲାଇ ଯାଇପାରେ। ସମାଜରେ ଏହି ଧରଣ ଯଦି ପ୍ରଶ୍ରୟ ପାଏ ତେବେ ଦେଶର ଅବନତିମଧ୍ୟ ଅନିବାର୍ଯ୍ୟ ହୋଇ ଉଠେ।

ଆ.ପ୍ର. ୧୭/୨୨.୫.୧୯୪୯

## ॥ ପ୍ରଥମେ ମଣିଷର ଚାଷ କରିବା ଦରକାର କାହିଁକି ॥

ଧାନ ଚାଷ ଆଗରୁ ମଣିଷ ଚାଷ କରିବା ଦରକାର। କେତେଗୁଡ଼ିଏ ମୁରଗୀ ଜନ୍ମ ଦେଇ ଲାଭ କଣ? ପୂର୍ବେ ସବୁ ସମୟରେ ବଙ୍ଗଳାର ଶୀର୍ଷ ସ୍ଥାନରେ ଏକଗୁଚ୍ଛ

ଜରିତ୍‌କର୍ମା ଧୀମାନ୍ ମଣିଷ ରହୁଥିଲେ। ତାଙ୍କ ତଳକୁ ଆଉ ଏକଦଳ ରହୁଥିଲେ ଏବଂ ଏହି ପ୍ରବୀଣ ମାନେ ଗତ ହେଲା ପରେ ପରବର୍ତ୍ତୀକାଳରେ ସେମାନେ ତାଙ୍କର ସ୍ଥାନ ଅଧିକାର କରୁଥିଲେ। ସାଧାରଣ ଲୋକଙ୍କୁ ଚାଳନା କରିବା ଲୋକଙ୍କର ଅଭାବ ହେଉ ନ ଥିଲା। କିନ୍ତୁ ଆଜି ବଙ୍ଗଳାରେ ଉପଯୁକ୍ତ ଲୋକର ଅଭାବ ଖୁବ୍ ବେଶୀ।

ଆ.ପ୍ର. ୧୭/୨୬.୫.୧୯୪୯

## ।। ଉତ୍କର୍ଷ ନା ଅପକର୍ଷ -କେଉଁଟା ଆମେ ଚାହୁଁ।।

ଆଜିକାଲି ଏତେ ଅପ୍ରୟୋଜନୀୟ ଆଡ଼ମ୍ବର କରୁ, କିନ୍ତୁ ପଣପ୍ରଥା ଦୂର କରିବାର ଚେଷ୍ଟା କରୁ ନା। ବଡ଼ଲୋକମାନେ ଭାବୁଛନ୍ତି ବିଭିନ୍ନ ବର୍ଣ୍ଣର ବୈଶିଷ୍ଟ୍ୟକୁ ଲୋପ କରି ଦେଇ ସବୁ ଏକାକାର କରି ଅଳ୍ପଦିନ ଭିତରେ ରାମରାଜ୍ୟ ସ୍ଥାପନ କରି ପକାଇବେ। ଏସବୁ ପାଗଳାମୀ ବୁଦ୍ଧି। ଆଜିକାଲି ଅନୁଲୋମ ଅପେକ୍ଷା ପ୍ରତିଲୋମର ଉପରେ ବେଶୀ ଜୋର ଦିଆ ହେଉଛି। ପୂର୍ବେ ନିୟମ ଥିଲା ପ୍ରଥମେ ସବର୍ଣ୍ଣ ବିବାହ କରି ତା ପରେ ଅନୁଲୋମ ଅସବର୍ଣ୍ଣ ବିବାହ କରିବା ଚଳିବ। ଆଜିକାଲି ବହୁବିବାହ ନିଷିଦ୍ଧ। ବର୍ତ୍ତମାନ ଯଦି କାହାରିକୁ ଅନୁଲୋମ ଅସବର୍ଣ୍ଣ ବିବାହ କରିବାକୁ ହୁଏ ତାହେଲେ ତାକୁ ସବର୍ଣ୍ଣ ବିବାହ ବାଦ୍ ଦେବାକୁ ପଡୁଛି। ତା ମାନେ, ତାର ବଂଶର ମୂଳ ଧାରାଟିକୁ ହରାଇବାକୁ ହେବ, ଯେଉଁଟାକି ସଦୃଶ ଘରେ ସବର୍ଣ୍ଣ ବିବାହର ଭିତର ଦେଇ ବଜାଇ ରହେ। ଅନୁଲୋମ ବିବାହରେ ନିମ୍ନବଂଶ ଉଚ୍ଚବଂଶର ଆତ୍ମୀୟ ସଂଶ୍ରବରେ ଅନେକପରିମାଣରେ ଉନ୍ନତ ହୋଇ ଉଠେ। କଳିରେ ଗୁରୁଙ୍କର ଆଦର ନାହିଁ, କିନ୍ତୁ ଜୋଇଁର ଆଦର ଯାଇ ନାହିଁ। ପ୍ରତିଲୋମ ବିବାହ ଯଦି ହୁଏ, ବ୍ରାହ୍ମଣର ଝିଅକୁ ଯଦି ମେହେନ୍ତରକୁ ଦିଅ, ତେବେ ଏହି ବ୍ରାହ୍ମଣ ମଧ୍ୟ ଧୀରେ ଧୀରେ କିଛିଟା ଜୋଇଁର ରକମ ଧରିବାକୁ ବାଧ୍ୟ ହୁଏ। ଆଉ ଯେଉଁ ଝିଅଟି ଏହି ଘରକୁ ଗଲା ତାକୁ ତ ସେହି ଘରର ଧରଣ ଧରିବାକୁହିଁ ହେବ। ଉତ୍କର୍ଷ ନା ଅପକର୍ଷ – କେଉଁଟା ଆମେ ଚାହୁଁ – ଭାବି ଦେଖିବାକୁ ତ ହେବ ! ଫଳକଥା, ଧର୍ମ ଓ କୃଷ୍ଟିର ପ୍ରତି ଶ୍ରଦ୍ଧା ହରାଇ ଆମ୍ଭେମାନେ ବେହିଆ ହୋଇ ଯାଇଛୁ, ନିର୍ବୁଦ୍ଧିଆ ହୋଇ ଯାଇଛୁ। ଏହି ସବୁ କେବଳ କହିବାଟାହିଁ ମୋର କାର୍ଯ୍ୟ ହୋଇ ଛିଡ଼ାହୋଇଛି। ଭାବେ, ଏହାରି ଭିତର ଦେଇ ଲୋକ ଯଦି ସଜାଗ ହୁଅନ୍ତି। ସେମାନେ ନିଜକୁ ନିଜେ ଯଦି ଚିହ୍ନିବାକୁ ଶିଖନ୍ତି। ତୁମ୍ଭେମାନେ ଚେଷ୍ଟାକର – ଯେପରି ପୁଣି ଭାରତକୁ ସୁନାର ଭାରତ କରି ତୋଳି ପାର, ଦେବଭୂମି କରି ତୋଳି ପାର। ନହେଲେ ଜଗତର ମଧ୍ୟ ନିସ୍ତାର ନାହିଁ। ଆ.ପ୍ର. ୧୭/୨୬.୫.୧୯୪୯

## ।। ସମସ୍ୟାର ସମାଧାନରେ କଣ କରିବାକୁ ହେବ ।।

ପ୍ରତିଲୋମ–ବିବାହର ଯେଉଁ ଝୋଁକ ଆସିଛି ତାହା ରୋକିବା ଦରକାର। ତାହା ସମ୍ଭବ ହେବ ଅନୁଲୋମ ବିବାହକୁ ପ୍ରଚଳିତ କରି। ଝିଅମାନଙ୍କର ସମୟ ଅନୁସାରେ ବିବାହ ହୁଏ ନାହିଁ, ଏହା ଖୁବ୍ ଖରାପ, ସେତେବେଳେ ସେମାନେ ଯାହା-ତାହା ଗୋଟିଏ ଧରି ନିଅନ୍ତି। ଆଗରୁ ଗ୍ରାମରେ କୌଣସି ଝିଅ ବଡ଼ ହେଲେ ପଡ଼ୋଶୀ ଓ ସମାଜର ଦଶଜଣ ମିଶି ଚେଷ୍ଟା କରୁଥାନ୍ତି ତାକୁ କିପରି ଭାବରେ ସ୍ୱତ-ପାତ୍ରସ୍ଥ କରାଯାଏ। ଏବେ ତ ଅନେକ କିଛି ଓଲଟ-ପାଲଟ ହୋଇ ଯାଇଛି। ପଣପ୍ରଥା ଯୋଗୁଁ ସଧାରଣ ମଣିଷର ଝିଅର ବିବାହ ଦେବା ଦୁଃସାଧ୍ୟ ହୋଇ ପଡ଼ିଛି। ପୁଣି ନୀତିଜ୍ଞାନହୀନ ବହୁ ଯୁବକ ଅଛନ୍ତି ଯେଉଁମାନେ ଝିଅମାନଙ୍କର ଜୀବନ ନଷ୍ଟ କରନ୍ତି କିନ୍ତୁ ସେମାନଙ୍କର କୌଣସି ଦାୟିତ୍ୱ ନିଅନ୍ତି ନାହିଁ। ଆଜିକାଲି ଅନେକଙ୍କରହିଁ କର୍ତ୍ତବ୍ୟର ଉପରେ ଝୋଁକ ନାହିଁ, କିନ୍ତୁ ପାଇବାର ନିଶା ପ୍ରବଳ। ନାନାଭାବରେ ଶୟତାନର ଫାନ୍ଦ ସୃଷ୍ଟି ହୋଇ ଅଛି। ଏବେହିଁ ବିଧିମାଫିକ ଅନୁଲୋମ ଅସବର୍ଣ୍ଣ ବିବାହ ଓ ବହୁବିବାହ ଚଳାଇବା ଦରକାର, ଯାହାଦ୍ୱାରା ଝିଅମାନଙ୍କର ବିବାହ ହେବାରେ ଅସୁବିଧା ନ ହୁଏ। ପଣପ୍ରଥା ଉଠେଇ ଦେବାକୁ ହୁଏ। ବିଶେଷ-ବିଶେଷ କ୍ଷେତ୍ରରେ ଗୌରୀଦାନ ଚଳାଇ ଦେବାକୁ ହୁଏ। ଯାହାଦ୍ୱାରା ଝିଅମାନେ ନଷ୍ଟ ହୋଇ ନ ପାରନ୍ତି। ଆମେ ଯଦି ନିଜ ନିଜର ସମସ୍ୟାର ସମାଧାନ କରି ନ ପାରୁ, ସେତେବେଳେ ବିଜାତୀୟ ଯେ-କୌଣସି ଆନ୍ଦୋଳନ ଆମ ଉପରେ ଆଧିପତ୍ୟ କରିବାରେ ସୁଯୋଗ ପାଇବ।

ଆ.ପ୍ର. ୧୭/୨୯.୫.୧୯୪୯

## ।। କାମର ସୁଷ୍ଠୁ ଉପଭୋଗ ଓ ସୁଜନନ କେତେବେଳେ ହୁଏ ।।

ଆମେ ସାଧାରଣତଃ ଏମିତିଭାବରେ ଭୋଗ କରୁ ନା ଯାହା କିନା ଶରୀର ମନର ଅନୁକୂଳ ଓ ପରିପୋଷକ। କାମର ଭିତର ଦେଇ ପ୍ରୀତି-ପ୍ରତିଷ୍ଠା ହୋଇଛି ଏମିତି ଦେଖା ଯାଏ ନାହିଁ। ପ୍ରୀତି-ପ୍ରତିଷ୍ଠାର ମଧ୍ୟ ଦେଇହିଁ ବରଂ କାମର ସୁଷ୍ଠୁ ଉପଭୋଗ ଦେଖା ଯାଇଛି ଏବଂ ସୁଜନନ ମଧ୍ୟ ହୋଇଛି। ଅନିୟନ୍ତ୍ରିତ କାମର ଫଳରେ ଯେଉଁ ସନ୍ତାନ ହୁଏ, ସାଧାରଣତଃ ସେ ହାତର ବାହାରେ ହୁଏ।

ଆ.ପ୍ର. ୧୭/୨୯.୫.୧୯୪୯

## ।। ବଞ୍ଚିବାକୁ ଗଲେ କଣ କଣ କରିବାକୁ ହେବ ।।

ମୁଁ କହେ – 'ମୃଦୁ ପ୍ରତିକାରରେ ବ୍ୟାଧିର ନିପାତ ହେବ ନାହିଁ।' ଏବେ ଖୁବ୍ ଜୋର ଲଗାଇବାକୁ ହେବ । ମଣିଷର କାନ ପାଖକୁ ଯାଇ ବାରମ୍ବାର ଶୁଣାଇବା ଦରକାର — ଇଷ୍ଟାର୍ଥେ ବିପୁଳଭାବରେ ଲୋକସଂଗ୍ରହ କରିବାକୁ ହେବ। ସେମାନଙ୍କ ମଧ୍ୟରେ ଅଚ୍ୟୁତ ନିଷ୍ଠା ଓ କୃଷ୍ଟି-ସମ୍ବୋଧନା ଜଗେଇ ତୋଳିବାକୁ ହେବ। ଅନୁଲୋମ ଅସବର୍ଣ୍ଣ ବିବାହ ଚାଲୁ କରିବାକୁ ହେବ, ପ୍ରତିଲୋମକୁ ଲୌହ ହସ୍ତରେ ପ୍ରତିରୋଧ କରିବାକୁ ହେବ, ଧର୍ମ୍ମ ଓ କୃଷ୍ଟିର ପ୍ରତିଷ୍ଠାର୍ଥେ ପ୍ରଚୁର ଅର୍ଥ ସଂଗ୍ରହ କରିବାକୁ ହେବ। ସତ୍ତା-ପୋଷଣୀ ଭାବଧାରାଗୁଡ଼ିକୁ ସମାଜର ସ୍ତରେ-ସ୍ତରେ ଜାଗ୍ରତ କରି ଦେବାକୁ ହେବ। ନଚେତ୍ ଏ ଜାତିକୁ ବଞ୍ଚାଇ ହେବ ନାହିଁ। ଆମେ ଆମର ବୈଶିଷ୍ଟ୍ୟକୁ ଜାଣୁନା। ଆମେ ବରାବର ନୀଚକୁ ଉଚ୍ଚ କରିବାକୁ ଚାହିଁଛୁ, ବଡ଼କୁ ଆହୁରି ବଡ଼ କରିବାକୁ ଚାହିଁଛୁ। ଆପଣଙ୍କ ଝିଅକୁ ଯଦି ମେହନ୍ତର ସହିତ ବିବାହ ଦିଅନ୍ତି, ତେବେ ତାର ସନ୍ତାନ ପ୍ରତିଲୋମ ହେବ। ପ୍ରତିଲୋମ ସନ୍ତାନ ହୋଇ ଉଠେ ପରିଧ୍ୱଂସୀ ଓ ଚଣ୍ଡାଳ। ଧର୍ମ ଓ କୃଷ୍ଟି ବିରୋଧୀ ହୁଅନ୍ତି ସେମାନେ। ବ୍ରାହ୍ମଣ-କାୟସ୍ଥର ଝିଅ ବିପୁଳଭାବରେ ନୀଚ ଘରକୁ ଚାଲି ଯାଉଛନ୍ତି। ଗୋଟିଏ ପୁଅ ଟିକିଏ ଲେଖାପଢ଼ା ଜାଣେ, ଦୁଇ ପଇସା କମାଣି କରେ, ତା ହେଲେହିଁ ହେଲା। ଆମେ ଧାନ-ପାନ ଚାଷ କରୁ, କୁକୁର ଚାଷ କରୁ, ଗରୁ-ଛେଳି-ଘୋଡ଼ାର ଚାଷ କରୁ, କିନ୍ତୁ ମଣିଷର ଚାଷ ନ କରିଲେ କି ହୁଏ? ଆମ୍ଭମାନଙ୍କର ଋଷିମାନେ ଘରେ-ଘରେ ଭଗବତ୍‌କଳ୍ପ ପୁରୁଷ ସୃଷ୍ଟି କରିବା ପାଇଁ ଚାହିଁଛନ୍ତି। ତାହାହିଁ ତ କାମ୍ୟ!

ଆ.ପ୍ର. ୧୭/୨.୬.୧୯୪୯

## ।। ବିବାହଟା କେବଳ ଇନ୍ଦ୍ରିୟ—ଉପଭୋଗ ପାଇଁ ନୁହେଁ।।

କୃଷ୍ଟି ଯଦି ନ ବଞ୍ଚେ, ଜାତି ବଞ୍ଚିବ ନାହିଁ। ସମସ୍ତେ ମୁରଗୀ ହୋଇଯିବେ। ଆମେ ନିଜନିଜର ସମ୍ପଦ ଓ ବୈଶିଷ୍ଟ୍ୟ ହରେଇ – 'ହରେଇ ମରେଇ କାଶ୍ୟପ ଗୋତ୍ର' ହୋଇଯାଇଛୁ, ନା କଣ ହୋଇଛୁ ଠିକ୍‌ପାଉ ନା। ମଣିଷର ଚାଷ ଦରକାର, ଉନ୍ନତିର ଚାଷ ଦରକାର। ବିବାହଟା କେବଳ ଇନ୍ଦ୍ରିୟ-ଉପଭୋଗ ପାଇଁ ନୁହେଁ। ଯେମିତି-ସେମିତି ବିବାହ କରିଲେ, ପ୍ରତିଲୋମ କରିଲେ ସନ୍ତାନର ବୈଧାନିକ ସଂସ୍ଥିତି ନଷ୍ଟ ହୋଇ ଯାଏ। ସେ ପିତାମାତା କାହାରି ଭଲ ଜିନିଷଟା ପାଏ ନାହିଁ। ଆମେ ଏସବୁ ଜାଣୁ

ନାହୁଁ, ମାନୁବି ନାହୁଁ, ତେଣୁ ପଦେ-ପଦେ କ୍ଷତିଗ୍ରସ୍ତ ହେଉ। Cultural conquest (କୃଷ୍ଟିଗତ ପରାଭବ) ହେଲେ ଯାହା ହୁଏ, ଆମ୍ଭମାନଙ୍କର ସେହି ଦଶା ହୋଇଛି।

ଆ.ପ୍ର. ୧୭/୭.୬.୧୯୪୯

## ।। କେମିତି ପ୍ରକୃତିର ଝିଅ ବିବାହ କରିବ ।।

ସତ୍ତା-ସମ୍ବର୍ଦ୍ଧନୀ ଅନୁପୋଷକ କୁଳସଂସ୍କୃତି ଓ ବ୍ୟକ୍ତିଗତ ପ୍ରକୃତିବାଲା ଝିଅ ବିବାହ କରିବାହିଁ ବିଧି। ହୋମିଓପ୍ୟାଥିରେ ଯେମିତି complementary (ପରିପୂରକ) ଔଷଧ ଦେବାର କଥା ଅଛି, ଏହା ମଧ୍ୟ କେତେଟା ସେହିପରି। ସବର୍ଣ୍ଣ ଓ ଅନୁଲୋମ – ଦୁଇ ପ୍ରକାରର ବିବାହର କ୍ଷେତ୍ରରେହିଁ ଏଦିଗରେ ନଜର ରଖି ଚାଲିବାକୁ ପଡ଼ିବ। ତାହାଦ୍ୱାରା ସ୍ତ୍ରୀ ହେବ ମନୋବୃତ୍ତ୍ୟନୁସାରିଣୀ ଏବଂ ଦାମ୍ପତ୍ୟ ପ୍ରଣୟ ହେବ ଗଭୀର। ତାହାଦ୍ୱାରା ସନ୍ତାନ ମଧ୍ୟ ଭଲ ହେବ। ପୁରୁଷ ଯଦି ଇଷ୍ଟପ୍ରାଣ ନ ହୁଏ, ତାହେଲେ ତାର ନାରୀମୁଖୀ ହେବାର ସମ୍ଭାବନା ଥାଏ। ଝିଅମାନେ କେତେବେଳେବି ନାରୀମୁଖୀ ପୁରୁଷକୁ ପସନ୍ଦ କରନ୍ତି ନାହିଁ। ପୁରୁଷର ଦରକାର ଆଦର୍ଶ ପ୍ରାଣତା ଓ ପୌରୁଷ। ଚରିତ୍ର ଓ ବ୍ୟକ୍ତିତ୍ୱ- ସମ୍ପନ୍ନ ପୁରୁଷକୁହିଁ ସାଧାରଣତଃ ଝିଅମାନେ ପସନ୍ଦ କରନ୍ତି। ପୁରୁଷ ଯେତେ ଶ୍ରଦ୍ଧାର୍ହ ଚରିତ୍ରସମ୍ପନ୍ନ ହୁଏ ଏବଂ ଝିଅମାନଙ୍କର ସେମାନଙ୍କ ପ୍ରତି ଯେତେ ମାତ୍ରାରେ ଶ୍ରଦ୍ଧା ଥାଏ ସେତେହିଁ ଭଲ। ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଥଟ୍ଟାପରିହାସର ଭାବ ଭଲ ନୁହେଁ। ପ୍ରତ୍ୟେକେ ଯାହାଦ୍ୱାରା କ୍ରମାଗତ ଉର୍ଦ୍ଧମୁଖୀ ହୁଅନ୍ତି ସେହି ଦିଗକୁହିଁ ଲକ୍ଷ୍ୟ ରଖିବାକୁ ହେବ। ଆ.ପ୍ର. ୧୭/୯.୬.୧୯୪୯

## ।। ଦାମ୍ପତ୍ୟ ଜୀବନର ସଂଗତି ଓ ସନ୍ତାନ ଦୁଇଟିହିଁ ଭଲ ହୁଏ କେଉଁଥିରେ ।।

ବିବାହାଦି ଖୁବ୍ ଠିକ୍‌ଭାବରେ ହେବା ଦରକାର। ପୁଅର କୂଳ-ସଂସ୍କୃତି ଓ ପ୍ରକୃତି ଝିଅର କୂଳ-ସଂସ୍କୃତି ଓ ପ୍ରକୃତିର ପରିପୂରଣୀ ହେବା ଦରକାର। ପୁଣି, ଝିଅର କୂଳ-ସଂସ୍କୃତି ଓ ପ୍ରକୃତି ପୁଅର କୂଳ-ସଂସ୍କୃତି ଓ ପ୍ରକୃତିର ପରିପୋଷଣୀ ହେବା ଦରକାର। ଏହାଦ୍ୱାରା ଦାମ୍ପତ୍ୟ ଜୀବନର ସଙ୍ଗତି ଓ ସନ୍ତାନ ଦୁଇଟିହିଁ ଭଲ ହୁଏ। ଆଗ କାଳରେ ଘଟକମାନେ ଥିଲେ eugenic science-ର (ସୁପ୍ରଜନନ ବିଜ୍ଞାନର) ମାଷ୍ଟର। ଏ-ସବୁ ଯେତେଦିନ ଠିକ୍‌ଥିଲା ଜାତି ବୀର୍ଯ୍ୟରେ, ବିଭବରେ, ବିଭୂତିରେ ଉଚ୍ଛଳ ହୋଇ ରହୁଥିଲା। ଆମେ ଶିକ୍ଷିତ ହୋଇ ଯେତେବେଳେ ଘଟକମାନଙ୍କର decision (ସିଦ୍ଧାନ୍ତ)

ଅବଜ୍ଞା କରିବାକୁ ଶିଖିଲୁ, ସେତେବେଳେ ଠାରୁ ଆମ୍ଭମାନଙ୍କର ଅଧଃପତନ ଅରମ୍ଭ ହେଲା। ସେମାନେ ଜାଣିଥିଲେ ମିଳନ କେଉଁଠି ସାର୍ଥକ ହେବ, ସଭାପୋଷଣୀ ହେବ। ସେ-ସବୁ science (ବିଜ୍ଞାନ), ସେ-ସବୁ specialist (ବିଶେଷଜ୍ଞ) ଏବେ କଣ ଅଛନ୍ତି ?

ଆ.ପ୍ର. ୧୭/୧୨.୬.୧୯୪୯

## ।। ସମାଜର ଗଣ୍ଡୀ-କିପରି ଭାବରେ ବଢ଼ିପାରେ ।।

ଆମେ କନୌଜୀ। କିନ୍ତୁ ସେମାନଙ୍କ ସହିତ ଆମ୍ଭମାନଙ୍କର ସଂସ୍ରବ ନାହିଁ, ଏହା ଭଲ ହେଇନାହିଁ। ବଙ୍ଗଳାର ବିପ୍ର, କ୍ଷତ୍ରିୟ, ବୈଶ୍ୟ ଭାରତର ବୃହତ୍ତର ସମାଜ ଠାରୁ ଆଜି ବିଚ୍ଛିନ୍ନ ହୋଇଯାଇଛି। ଏହାଦ୍ୱାରା ସମାଜଟା ଛୋଟ ହୋଇଯାଇଛି। ମୋର ମନେ ହୁଏ ବିଭିନ୍ନ ପ୍ରଦେଶର ହିନ୍ଦୁମାନଙ୍କ ମଧ୍ୟରେ ଯଦି ଶାସ୍ତ୍ରୀୟ ନିର୍ଦ୍ଦେଶ ଅନୁଯାୟୀ ବିବାହାଦି ଚାଲୁ ହୁଏ, ତାହେଲେ ସମାଜର ଗଣ୍ଡୀ ଅନେକ ପରିମାଣରେ ବଢ଼େ ଏବଂ ପ୍ରାଦେଶିକ ବିରୋଧର ଅନେକ ପରିମାଣରେ ସମାଧାନ ହୁଏ। ମଧ୍ୟବିତ୍ତମାନଙ୍କର ଝିଅ ଥିଲେ ଆଜି ମହା ବିପଦ। ଗୋଟିଏ-ଗୋଟିଏ ବାହାଘର ପାଇଁ ଅଜସ୍ର ଟଙ୍କା ଦରକାର। ଏଠାକୁ ସବୁ ସ୍ଥାନରୁ ଲୋକ ଆସନ୍ତି। କେତେ ଯେ ପ୍ରତିଲୋମ ବିବାହର ସମ୍ବାଦ ଶୁଣେ ତାର ଶେଷ ନାହିଁ। ବିପ୍ର, କ୍ଷତ୍ରିୟ, ବୈଶ୍ୟ ସମସ୍ତଙ୍କ ମଧ୍ୟରେହିଁ ଏହି ଧାରାଟା ଚାଲିଛି। କିନ୍ତୁ ବ୍ରାହ୍ମଣଙ୍କ ମଧ୍ୟରେ ଯେପରି ଟିକିଏ ବେଶୀ। ବର୍ଣ୍ଣାଶ୍ରମ ଭାଙ୍ଗି ଦେବାକୁ କହନ୍ତି, ଅଥଚ ଏହି ଭଙ୍ଗା ବର୍ଣ୍ଣାଶ୍ରମର ଦୌଲତରେ ତୁ ରହିଛୁ। ଭାଙ୍ଗିଲେ ତୁ ଆଉ ତୁ ହୋଇ ରହିବୁନି, କଣ ଥିଲୁ ତାହା ମଧ୍ୟ ଜାଣି ପାରିବୁନି। Structure (ଗଠନ) ବଦଳି ଯିବ। ଯେଉଁ ଜୈବୀ-ସଂସ୍ଥିତି ରହିଲେ ଜିନିଷର ମର୍ମ ବୁଝା ଯାଏ, ସେହି ଜୈବୀ-ସଂସ୍ଥିତି ନଷ୍ଟ ହୋଇଯିବ।

ଆ.ପ୍ର. ୧୭/୧୨.୬.୧୯୪୯

## ।। ସ୍ୱାମୀ-ସ୍ତ୍ରୀ ଉଭୟଙ୍କରହିଁ ଉଭୟଙ୍କ ପ୍ରତି କରଣୀୟ ଅଛି କି ନାହିଁ ।।

ସ୍ୱାମୀ-ସ୍ତ୍ରୀ ଉଭୟଙ୍କରହିଁ ଉଭୟଙ୍କ ପ୍ରତି କରଣୀୟ ଅଛି। ସ୍ୱାମୀ ଯଦି ସ୍ତ୍ରୀ ପ୍ରତି ତାର କର୍ତ୍ତବ୍ୟ ନ କରେ, ତାହେଲେ ତାହା ଯେପରି ତା ପକ୍ଷରେ ଅନ୍ୟାୟ, ଆଉ ସ୍ତ୍ରୀ ଯଦି ସ୍ୱାମୀ ପ୍ରତି ତାର କରଣୀୟ ନ କରେ ତାହା ମଧ୍ୟ ତା ପକ୍ଷରେ ଅନ୍ୟାୟ। ବର୍ତ୍ତମାନ କେଉଁଠି କେଉଁଠି ଝିଅମାନଙ୍କ ମଧ୍ୟରେ ଏପରି ଏକ ଧାରଣା ଜନ୍ମି ଯାଇଛି ଯେ ସେମାନେ ଯାହା ବି କରନ୍ତୁ, ପୁରୁଷ ସେମାନଙ୍କର ଖୋରାକପୋଷାକ ଦେବାକୁ

ବାଧ। ଏଥିରେ କୌଣସି-କୌଣସି ପୁରୁଷର ମନରେ ଝିଅମାନଙ୍କ ସମ୍ବନ୍ଧରେ ଯେପରି ଗୋଟିଏ ଆତଙ୍କର ସୃଷ୍ଟି ହୋଇଯାଇଛି। ଗୋଟିଏ କାରଣ, ଟଙ୍କା-ପଇସାର ଅଭାବ-ଅଭିଯୋଗ, ଓ ଦ୍ୱିତୀୟ କାରଣ ଝିଅମାନଙ୍କର ଏହି ମନୋଭାବ – ଏଥିରେ ପୁରୁଷ ବିବାହ କରିବାକୁ ଭୟ ପାଏ। ଅବଶ୍ୟ, ସବୁ କ୍ଷେତ୍ରରେ ଯେ ଏହିପରି ତାହା ମୁଁ କହୁ ନାହିଁ। ଯାହାହେଉ, ଏହି ଜାତୀୟ ଝିଅମାନେ ବଳ ହୁଅନ୍ତି ନାହିଁ, ଭାର ହୁଅନ୍ତି। ସେମାନେ ପୁଣି ଅନେକ ସମୟରେ ପୁରୁଷମାନଙ୍କୁ ଉତ୍ୟକ୍ତ କରନ୍ତି। ପୁରୁଷଙ୍କ ପାଇଁ ଯେ ସେମାନଙ୍କର କିଛି କରଣୀୟ ଅଛି, ସେ ମଧ୍ୟ ଯେ ଅକ୍ଷମ ହୋଇପଡ଼ି ପାରନ୍ତି, ସେ ଅବସ୍ଥାରେ ତାକୁ ଯେ ବହନ କରିବାକୁ ହେବ – ଏକଥା ସେମାନେ କମ୍ ଭାବନ୍ତି। ତେବେ ମୁଁ ଦେଖିଛି, ଝିଅମାନେ ନଡ଼ିଆ ଗଛ ଲଗାନ୍ତି, ସୁପାରି ଗଛ ଲଗାନ୍ତି, କଦଳୀ ଗଛ ଲଗାନ୍ତି, ବାଇଗଣ ବାଡ଼ି କରନ୍ତି, ଗୋରୁ ପାଳନ୍ତି, ଗୁଡ଼ ତିଆରି କରନ୍ତି, ଘିଅ ତିଆରି କରନ୍ତି – ଏସବୁ ବିକ୍ରି କରି ପଇସା ଜମାନ୍ତି। ପୁରୁଷର ଗୋଟିଏ ଭରସା ଥାଏ, ଭାବେ – ମୁଁ ଅଶକ୍ତ ହୋଇ ପଡ଼ିଲେ ଗୋଟିଏ ଆଶ୍ୱାସ ପାଇବି, ଭରସା ପାଇବି। ଏହି ଝିଅମାନେ ପୁଣି ହିସାବ ଜାଣନ୍ତି – କେଉଁ ମାସରେ, କେଉଁ ପର୍ଯ୍ୟାୟରେ, କିଭଳି ଭାବରେ ଗଛ ଲଗାଇଲେ ବାରମାସ ଫଳ ମିଳିବ। ଚାକର ଦ୍ୱାରା କେତେ କାମ କରାଇ ନିଅନ୍ତି। ଏହିପରି ନାନାପ୍ରକାର କରି ମାସକୁ-ମାସ ପଚାଶ-ଷାଠିଏ ଟଙ୍କା ଲେଖାଁଏ ଆୟ କରନ୍ତି। ସେମାନେ ପୁଣି ଛୁଆପିଲାକୁ ଶିଖାନ୍ତି। କୃଷି ପରିଚର୍ଯ୍ୟାର ଧରଣ ଯେପରି ଶିଥିଳ ହୋଇ ଚାଲିଛି, ଏହି ଭାବରେ ଯଦି ଚଳେ, ତାହେଲେ କିଛି ପୁରୁଷ ପରେ କଣ ହେବ କହିବା ମୁସକିଲ। ...ଆପଣଙ୍କ ମା ମଧ୍ୟରେ ଯାହା ଥିଲା, ଆପଣଙ୍କ ସ୍ତ୍ରୀ ମଧ୍ୟରେ ତାହା ପାଇବେ ନାହିଁ, ଝିଅ ଭିତରେ ଆହୁରି କମ୍ ପାଇବେ। ଆଗ କାଳରେ ପାନରୁ ଟିକିଏ ଚୂନ ଖସିଗଲେ ଶାଶୁ, ଗୋସେଇଁ–ଶାଶୁ ଗାଳିରେ ଭୂତ ଛଡ଼ାଇ ଦେଉଥିଲେ, ତଥାପି ସ୍ତ୍ରୀମାନେ ହସ ହସ ମୁଖରେ ସବୁ ସହ୍ୟ କରି ଯାଉଥିଲେ। ...ଫଳକଥା, ଆଗରୁ ପ୍ରତ୍ୟେକଟି ଗୃହସ୍ଥାଶ୍ରମ ଥିଲା ଗୋଟିଏ practical school (ବାସ୍ତବ ବିଦ୍ୟାପୀଠ)। ଆଉ ତାହାହିଁ ହେବା ଉଚିତ।

ଆ.ପ୍ର. ୧୭/୧୭.୬.୧୯୪୯

## ।। ବିବାହ କରିବା ଖୁବ୍ କଠିନ ବ୍ୟାପାର କାହିଁକି ।।

ଶ୍ରୀଶ୍ରୀଠାକୁର – ବିବାହ କରିବା ଖୁବ୍ କଠିନ ବିଷୟ।

ପ୍ରଶ୍ନ – କାହିଁକି ?

ଶ୍ରୀଶ୍ରୀଠାକୁର – Compatible (ସଙ୍ଗତିଶୀଳ) ନ ହେଲେ ମୁସ୍କିଲ।

ପ୍ରଶ୍ନ – କିପରି ବୁଝା ଯିବ ?

ଶ୍ରୀଶ୍ରୀଠାକୁର – ପରୀକ୍ଷା କରିବାକୁ ହୁଏ। ମଣିଷ ନୀତିଗତ ଶିଷ୍ଟତା ନେଇ ମିଶେ। ତେଣୁ ଅସତର୍କ ମୂହୂର୍ତ୍ତର ବ୍ୟବହାର କିପରି ତାହା ଦେଖିବାକୁ ହୁଏ। ସେଥିରେ ଚରିତ୍ର ବୁଝା ଯାଏ। ଦେଖିବାକୁ ହେବ, ଉଭୟଙ୍କର ପାରିବାରିକ ଲକ୍ଷଣ ଏବଂ ବ୍ୟକ୍ତିଗତ ପ୍ରକୃତି compatible (ସଙ୍ଗତିଶୀଳ) କିନା। ଆମେ ଯାହାକୁ ଶିକ୍ଷା କହୁ, ତାହା ପ୍ରକୃତ ଶିକ୍ଷା ନୁହେଁ। ତାହା ବରଂ ଶିକ୍ଷାର ଅନ୍ତରାୟ। ଏହା ମଣିଷକୁ ଶିଖାଇ ଦିଏ, କିପରି ଗୋଟିଏ ଖୋଳପା ପିନ୍ଧି ଚାଲିବାକୁ ହୁଏ।

ଆ.ପ୍ର. ୧୬/୨୬.୬.୧୯୪୯

## ।। ସ୍ୱାମୀଙ୍କ ପାଇଁ ଗର୍ବବୋଧ କାହାର ଲକ୍ଷଣ ।।

ସ୍ୱାମୀ ପ୍ରତି ସ୍ତ୍ରୀର ଗଭୀର ଶ୍ରଦ୍ଧା ରହିଲେ ତା ସମ୍ବନ୍ଧରେ ଗୋଟିଏ ଗର୍ବବୋଧ ଥାଏ। ଏହା ସତୀତ୍ୱର ଗୋଟିଏ ଲକ୍ଷଣ। ସ୍ୱାମୀ ଉପରେ ଗଭୀର ଟାଣ ନ ରହିଲେ ସ୍ତ୍ରୀର ବୁଦ୍ଧି ହୁଏ, ସ୍ୱାମୀଙ୍କ ଦ୍ୱାରା ନିଜର ପ୍ରବୃତ୍ତି–ଚାହିଦା ପୂରଣ କରିବା ପାଇଁ। ସେମିତି ଟାଣ ରହିଲେ ସ୍ତ୍ରୀ ସ୍ୱାମୀକୁ ସର୍ବତୋଭାବରେ ପୋଷଣ ଦେବାପାଇଁ ଚେଷ୍ଟା କରେ। ସେ ଦେଖେ କିପରି ଭାବରେ ସ୍ୱାମୀ ଶରୀରରେ, ମନରେ ଓ ଆତ୍ମାରେ ସୁସ୍ଥ ରହନ୍ତି ଓ ସମୃଦ୍ଧିଶାଳୀ ହୋଇ ଉଠନ୍ତି, ଆଉ ସେଥିରେ ସେ ନିଜକୁ ସୁସ୍ଥ ଓ ସମୃଦ୍ଧଶାଳୀ ବୋଲି ବୋଧ କରେ। ବାଇବେଲରେ ଅଛି – ସ୍ୱାମୀ ଓ ସ୍ତ୍ରୀ ଯେପରି same flesh ଅର୍ଥାତ୍ ଏକଦେହ, ଏକମନ, ଏକପ୍ରାଣ।

ଆ.ପ୍ର. ୧୬/୨୬.୬.୧୯୪୯

## ।। ବିବାହ ସଙ୍ଗତିଶୀଳ ନ ହେଲେ କଣ ହୁଏ ।।

ବିବାହ ଯଦି ସଙ୍ଗତିଶୀଳ ନ ହୁଏ, ସେଥିରେ ସତ୍ତାବିଧ୍ୱସ୍ତ ହୋଇ ଉଠେ। ତାହା ସ୍ୱାମୀ-ସ୍ତ୍ରୀର ଶରୀର–ମନର ଖୋରାକ ହୁଏ ନାହିଁ। ସେତେବେଳେ ସ୍ୱାଭାବିକଭାବରେହିଁ ଉଭୟଙ୍କ ମଧ୍ୟରେ ଦ୍ୱନ୍ଦ ଲାଗିଯାଏ। ପରସ୍ପର ସଙ୍ଗତିଶୀଳ ହେଲେ, ସ୍ୱାମୀର ସତ୍ତାକୁ ପୁଷ୍ଟ କରିବା ସ୍ତ୍ରୀର ସ୍ୱାର୍ଥ ହୋଇ ଉଠେ। ଏବଂ ସ୍ୱାମୀଙ୍କର ମଧ୍ୟ ସ୍ୱାର୍ଥ ହୁଏ ସ୍ତ୍ରୀର ସତ୍ତାକୁ ପୂରଣ କରିବା। ଆ.ପ୍ର. ୧୬/୧୪.୭.୧୯୪୯

## ।। ବିବାହ-ସମ୍ବନ୍ଧରେ କେଉଁଦିଗକୁ ଲକ୍ଷ୍ୟ ରଖିବାକୁ ହୁଏ ।। ୧୦୬

ଆମେ ଚାହୁଁ ମଣିଷମାନେ ସୁସ୍ଥ ଜୈବୀ ସଂସ୍ଥିତି ନେଇ ଆସନ୍ତୁ। କୌଣସି ଅଭାବ ଚାହୁଁନା। ସେଥିପାଇଁ ଏ ସମ୍ବନ୍ଧରେ ସର୍ବାଙ୍ଗୀନ ସଙ୍ଗତିର ଦିଗକୁ ଲକ୍ଷ୍ୟ ରଖିବାକୁ ହୁଏ। ନହେଲେ ସ୍ୱାମୀ, ସ୍ତ୍ରୀ ଓ ସନ୍ତାନ ଉଭୟଙ୍କ ପକ୍ଷରେ ଖରାପ ହୁଏ।

ଆ.ପ୍ର. ୧୭/୧୭.୭.୧୯୪୯

## ।। ସ୍ତ୍ରୀର ବହୁବିବାହରେ କଣ ଦୋଷ ହୁଏ ।।

ସେଥିରେ ସୁପ୍ରଜନନର ଦିଗ ଦେଇ ଭଲ ହୁଏ ନାହିଁ। ସ୍ତ୍ରୀ ଯଦି concentric (ସୁକେନ୍ଦ୍ରିକ) ନ ହୁଏ, ତେବେ ତାର secretion (କ୍ଷରଣ) ଠିକ୍ ହୁଏ ନା। ସେ proper nurture (ଯଥାଯଥ ପୋଷଣ) ଦେଇ ପାରେ ନାହିଁ। ସେ ଯେତେ ଏକନିଷ୍ଠ ସ୍ୱାମୀଭକ୍ତିପରାୟଣ ହୁଏ, ସେତେହିଁ ସନ୍ତାନକୁ ଉପଯୁକ୍ତ ପୋଷଣ ଦେଇ ପାରେ। ଝିଅମାନଙ୍କର ବହୁବିବାହର ଅଧିକାର ନାହିଁ। ତା ବୋଲି ଯେ ସେମାନଙ୍କର ଶକ୍ତି କିଛି କମ୍, ତା ନୁହେଁ। ସେମାନଙ୍କର ସ୍ନାୟୁର ତୁଳନା ହୁଏ ନାହିଁ। ସେମାନଙ୍କର ପ୍ରତ୍ୟେକଟି କୋଷ କେତେ ପରିମାଣରେ ସହନଶୀଳ। ସେ ଦିଗରୁ ପୁରୁଷମାନଙ୍କ ସହିତ ସେମାନଙ୍କର ତୁଳନାହିଁ ହୁଏ ନାହିଁ। ସନ୍ତାନପାଳନର ଚାପ ସେମାନେ ଯେପରି ନେଇ ପାରନ୍ତି, ପୁରୁଷପକ୍ଷରେ ତାହା ଅସମ୍ଭବ। ସେମାଙ୍କର ବହୁବିବାହ ଯେ ନିଷିଦ୍ଧ ତାହା law of nature (ପ୍ରକୃତିର ବିଧି) ଅନୁଯାୟୀ। ଏହାର ମାନେ ଏ ନୁହେଁ ଯେ ସେମାନେ ପୁରୁଷ ଠାରୁ ନିକୃଷ୍ଟ। ...ସୁପ୍ରଜନନର ଦିଗ ଦେଇ ଦ୍ରୌପଦୀଙ୍କର ପଞ୍ଚସ୍ୱାମୀ ରହିବାର ଫଳ ଭଲ ହୋଇ ନାହିଁ। ଆମେ ଚାହୁଁ – ଏକଙ୍କ ପାଇଁ ଅର୍ଥାତ୍ ଏକଙ୍କର ପରିପୂରଣ ପାଇଁ ସମସ୍ତଙ୍କୁ ଭଲପାଇବା। ନହେଲେ ବିଚ୍ଛିନ୍ନତା ଓ ବିକେନ୍ଦ୍ରିକତା ଆସି ଯାଏ।

ଆ.ପ୍ର. ୧୭/୧୭.୭.୧୯୪୯

## ।। ସ୍ତ୍ରୀକୁ ସ୍ୱାମୀର ପୋଷଣ କରିବାକୁ ହେବ କି ନା ।।

ହଁ! ସ୍ୱାମୀର ସ୍ତ୍ରୀକୁ ପୋଷଣ କରିବା ଦରକାର। କିନ୍ତୁ ସ୍ତ୍ରୀର ଯେ ସ୍ୱାମୀକୁ ପୋଷଣ କରିବା ଦରକାର ନାହିଁ ତା ନୁହେଁ। କର୍ତ୍ତବ୍ୟଟା କେବଳ ସ୍ୱାମୀର ନୁହେଁ। ସ୍ତ୍ରୀର ମଧ୍ୟ ଅଛି। ସାଧାରଣତଃ ସ୍ତ୍ରୀ ଯଦି କାୟମନୋବାକ୍ୟରେ ପୋଷଣୀ ଓ ସହନଶୀଳ ହୁଏ, (ତେବେ) ସ୍ୱାମୀପୂରଣୀ ହୁଏହିଁ। ସ୍ତ୍ରୀ ସ୍ୱାମୀକୁ ପୋଷଣ ନ ଦେଲେ ସ୍ୱାମୀର

ପୂରଣପ୍ରବୃତ୍ତି ଓ ପୂରଣକ୍ଷମତା ଶିଥିଳ ହୋଇ ଯାଏ। ତଥାପି ସାଧ୍ୟାନୁସାରେ ତାର କର୍ତ୍ତବ୍ୟ ତାର କରିବାହିଁ ଭଲ।

ଆ.ପ୍ର. ୧୭/୧୮.୭.୧୯୪୯

## ।। ବିବାହ ବିଚ୍ଛେଦ କେଉଁଠାରେ ପ୍ରୟୋଗ କରା ଯାଏ ।।

Divorce (ବିବାହବିଚ୍ଛେଦ) ଯଦି କେଉଁଠି ପ୍ରୟୋଗ କରିବାକୁ ହୁଏ, ତେବେ ପ୍ରତିଲୋମ ଯେଉଁଠାରେ ହୋଇଛି ସେହିଠାରେ କରିବାକୁ ହୁଏ।

ଆ.ପ୍ର. ୧୭/୨୨.୭.୧୯୪୯

## ।। ଯେ-କୌଣସି ପୁରୁଷ ଯେ-କୌଣସି ନାରୀକୁ ବିବାହ କରି ପାରିବ ନାହିଁ କାହିଁକି ।।

ପ୍ରଶ୍ନ – ଅନେକଙ୍କର ଧାରଣା ଯେ-କୌଣସି ପୁରୁଷ ଯେ କୌଣସି ନାରୀକୁ ବିବାହ କରି ପାରିବ। ବିଧିନିଷେଧ ସାମାଜିକ ବିଧାନ।

ଶ୍ରୀଶ୍ରୀଠାକୁର – ତାହେଲେ ନାଇଟ୍ରୋଗ୍ଲିସାରିନର ସମାବେଶ ଘଟାଇବାକୁ ଗଲେ ବିସ୍ଫୋରଣ ହୁଏ କାହିଁକି ? ସମାବେଶ କରିଲେହିଁ ହୋଇଗଲା ? ତା ମଧ୍ୟରେ ସଙ୍ଗତି, ଅସଙ୍ଗତି ବୋଲି କିଛି ନାହିଁ ? ବ୍ୟକ୍ତିବୈଶିଷ୍ଟ୍ୟ ଓ କୁଳସଂସ୍କୃତିର ଦିଗ ଦେଇ ନାରୀପୁରୁଷର ସାମଞ୍ଜସ୍ୟର କୌଣସି ପ୍ରଶ୍ନ ନାହିଁ ? ତାପରେ ଆଜିକାଲି ବିବାହ ବିଚ୍ଛେଦର ଜୟଗାନ କରା ହେଉଛି। ବିଶେଷ କ୍ଷେତ୍ରରେ ସ୍ୱାମୀ-ସ୍ତ୍ରୀର ସ୍ୱତନ୍ତ୍ରଭାବରେ ରହିବା ସମର୍ଥନୀୟ ହୋଇ ପାରେ। କିନ୍ତୁ ଧରାଯାଉ, ଜଣକର ମା କାଲି ତାର ବାବାକୁ ଛାଡ଼ି ଅନ୍ୟ ପୁରୁଷ ସହିତ ଚାଲି ଗଲା। ସେହି ମା ସହିତ ପିଲାଟି ଯାଇ ସେତେବେଳେ ତାର କି ଦଶା ? ଏକ ସଙ୍ଗରେ ସେ ପିତୃହରା ଓ ମାତୃହରା ହେଲା। ଦୁନିଆରେ ତାର ରହିଲା କିଏ ? ଗୋଟିଏ street-dog (ରାସ୍ତାର କୁକୁର)-ର ପରି ତାର ଅବସ୍ଥା ହେଲା। ସେତେବେଳେ ସେ କୌଣସି ପ୍ରକାରେ ଗୋଟାଏ ନିରାଶ୍ରୟ ଘୃଣିତ ଜୀବନ ବହନ କରି ଚାଲେ। ସତୀ ସ୍ତ୍ରୀର ପ୍ରାଣକାଢ଼ା ପାଳନ-ପରିଚର୍ଯ୍ୟା ଓ ମମତା, ନିତାନ୍ତହିଁ ମୋର ବୋଲି ଯାହାକୁ ଜାଣୁ – ସେହି ପବିତ୍ର ସମ୍ପର୍କ ଯଦି ନଷ୍ଟ କରି ଦେଉ, ତାହେଲେ ଆମର ଆଶ୍ରୟ ବୋଲି କଣ ରହିଲା ? ତାପରେ ନିଜର କୃଷ୍ଟିର ପ୍ରତି ଅଶ୍ରଦ୍ଧା କରିବା ପରି ଖରାପ ଜିନିଷ ନାହିଁ। ନିଜର ବାପାକୁ ବାପା ବୋଲି କହିବାକୁ ରାଜୀ ନୁହେଁ, ଏ କିପରି କଥା ? ନିଜର ବାପା ପ୍ରତି tracherous (ବିଶ୍ୱାସଘାତକ) ହୋଇ ଅନ୍ୟର ବାପା

ପ୍ରତି କିପରି true (ଖାଁଟି) ହେବ ? ନିଜର ଉସ ଯିଏ, ନିଜର ପିତା ଯିଏ ତାଙ୍କୁ ଅବଜ୍ଞା କରି ଅନ୍ୟର ପିତା ବା ପିତୃପୁରୁଷଙ୍କ ପ୍ରତି ଆମ୍ଭମାନଙ୍କର ଆଗ୍ରହ–ଶ୍ରଦ୍ଧା ଅବାଧ ଭାବରେ ଯଦି ଚଳାଇ ରଖୁ, ତେବେ ସେଥିରେ କେତେ ପରିମାଣରେ ବା ଶ୍ରଦ୍ଧା ଅଛି – ତା କଣ ବୁଝା ଯାଏ ନା ? ଆମ୍ଭମାନଙ୍କର ବାପା, ବଡ଼ବାପା କଣ କହି ଯାଇଛନ୍ତି ଓ ସେ କଥାରେ ମାଲମସଲା କିଛି ଅଛି କି ନା ଖୋଜି ଦେଖିବା ଭଲ। ପ୍ରଥମରୁ ଯଦି ଧରି ରଖୁ ଯେ ବାପା, ବଡ଼ବାପା ମୂର୍ଖ, ତାହେଲେ ଷୋହଳ ଅଣା ବଞ୍ଚିତ ହେବୁ। ଆଉ, ସେତେବେଳେ ପରର ବାପାଙ୍କୁ ବାପା ବୋଲି କହିବାର ପ୍ରବୃତ୍ତି ହେବ। ସେଥିରେ ମଧ୍ୟ ନିଜର ମାଲ ବୋଲି ଆଉ କିଛି ରହିବ ନାହିଁ।

ଆ.ପ୍ର. ୧୮/୨୬.୭.୧୯୪୯

## ।। ସନ୍ତାନର ଜନ୍ମ ଗୋଟାଏ ଆକସ୍ମିକ ଘଟଣା ହେଲେ କଣ ହୁଏ।।

Accident-ରେ (ଆକସ୍ମିକଭାବରେ) ଯାହା ଜନ୍ମ ନିଏ ତାହା ବୁନୋ (ଅସଙ୍ଗତ); ବିହିତ ସୁଫଳପ୍ରଦ ଚାଷରେ ଯାହା ଜନ୍ମ ନିଏ ତା ପୁଣ୍ୟ। ଅବିଧିପୂର୍ବକ ପ୍ରବୃତ୍ତି-ଲାଳସାରେ ଉପଗତ ହେଲେ ଯେଉଁ ସନ୍ତାନ ଜନ୍ମ ନିଏ, ତାର ଚରିତ୍ରର କୌଣସି ଠିକ୍ ରହେ ନାହିଁ। ତାର କଥା ମଧ୍ୟ ସେହିପରି ହୁଏ। ଗର୍ଭାଧାନ–ସଂସ୍କାରର ଭିତର-ଦେଇ, ଉନ୍ନତ ଚିନ୍ତାପ୍ରସୂତ ବିଧିମାଫିକ୍ ପବିତ୍ର ଯେଉଁ-ଜନ୍ମ ତାର ରକମହିଁ ଅଲଗା। ଆମ୍ଭମାନଙ୍କ ଘରେଘରେ ଭଗବାନ ଯେପରି ଜନ୍ମନିଅନ୍ତି, ସେହିପରି ଆମ୍ଭମାନଙ୍କର ବିଧାନ ଥିଲା। ... କୁକୁର–ଗୋରୁ ଇତ୍ୟାଦିର ଜନ୍ମ ଯେପରି ଭଲ ହୁଏ ସେଥିପାଇଁ ବିଜ୍ଞାନସମ୍ମତଭାବରେ ଆମେ କେତେ ଚେଷ୍ଟା କରୁ। କିନ୍ତୁ ମଣିଷର ସୁଜନନର ଦିଗକୁ ଆମର ଲକ୍ଷ୍ୟ କମ୍। ବିବାହାଦି ଓ ନିଜ ନିଜର ଆଚରଣ – ଦୁଇ ଦିଗ ଠିକ୍ ନ ରହିଲେ ଛୁଆପିଲା ଭଲ ହୁଏ ନାହିଁ। ଆମେ ଭଲ ଖାଉ, ଭଲ ପିନ୍ଧୁ, ଯେତେହିଁ ଯାହା କରୁ, ଭଲ ପିଲା ହେଉ ଏହା ସମସ୍ତେ ଚାହାଁନ୍ତି। ମୁଁ ବାପାଙ୍କୁ ମାନି ନ ପାରେ, କିନ୍ତୁ ମୋ ପିଲା ମୋତେ ନ-ମାନୁ, ତାହା ଚାହୁଁନା। କିନ୍ତୁ ମୋର ଅବାଧ୍ୟତାର ଭିତର-ଦେଇ ସେହିପରି ପ୍ରାପ୍ୟଟା ବୁଣି ରଖିଲି – ଯାହା ମୁଁ ଆଦୌ ଚାହେଁନା। ମୁଁ ହୁଏତ ଭାବେ – ମୁଁ ଖରାପ କଲେ କଣ ହେବ ? ଭଲ ପାଇବିହିଁ। କିନ୍ତୁ ତାହା କଣ ହୁଏ ?

ଆ.ପ୍ର. ୧୮/୨୬.୭.୧୯୪୯

## ।। ସୁପ୍ରଜନନ କେତେବେଳେ ହୁଏ ।।

ଆପଣ ଏବଂ ଆପଣଙ୍କର ସ୍ତ୍ରୀ ହୁଏତ ଗୌରାଙ୍ଗଦେବଙ୍କର ଗଳ୍ପ କରୁଛନ୍ତି । ଆପଣ ଏପରି ଭାବରେ କହୁଛନ୍ତି ଯେ ସେ ମୁଗ୍ଧ ହୋଇ ଆପଣଙ୍କ ଚକ୍ଷୁମୁଖର ଦିଗକୁ ଚାହିଁ ରହିଛି, ଭାବୁଛି – ଏହାଙ୍କ ମଧ୍ୟରେ ଯେପରି ଗୌରାଙ୍ଗଦେବଙ୍କ ଆବିର୍ଭାବ ଦେଖୁଛି, ଆହା କି ସୁନ୍ଦର ! ସେତେବେଳେ ହୁଏତ ଆପଣଙ୍କୁ ଗୋଟିଏ ଚୁମ୍ବ ଖାଇଲା । ଆପଣ ଆହୁରି କହିବାକୁ ଲାଗିଲେ । ସେହି ଅବସ୍ଥାରେ ଶ୍ରଦ୍ଧା-ଭକ୍ତି ଓ ଭାବରେ ଗଦ୍‌ଗଦ୍ ହୋଇ ପବିତ୍ର ଉଦ୍ଦୀପନାରେ ଯେ-ମିଳନ ଘଟିଲା, ସେହି ଭାବଭୂମିର ମିଳନରେ ଯଦି କୌଣସି ସନ୍ତାନ ହୁଏ, ସେ ଜନ୍ମ ଠାରୁ ହୁଏତ ବୋଲ ଧରିବ – 'ହରିବୋଲ', 'ହରିବୋଲ' । କଥା କହିନାହିଁ, ତଥାପି ଅଧା-ଅଧା ଭାଷାରେ ହରିବୋଲର ତାନଟିକକ ଠିକ୍ ଅଛି । ... ସ୍ୱାମୀସ୍ତ୍ରୀ ଉଭୟଙ୍କ ପ୍ରତି ଉଭୟଙ୍କର ସାତ୍ୱତ ପ୍ରୀତିସନ୍ଦୀପ୍ତ ଆଗ୍ରହ ଓ ପ୍ରକୃତିଗତ ସଶ୍ରଦ୍ଧ ସଙ୍ଗତି ଓ ସାମଞ୍ଜସ୍ୟଟାହିଁ ମିଳନକାଳରେ ସନ୍ତାନର ଜୈବୀ-ସଂସ୍ଥିତିରେ ସଞ୍ଚାରିତ ହୁଏ । ତେଣୁ ଦାମ୍ପତ୍ୟ ମିଳନର ଗଭୀରତା ଯେପରି, ସନ୍ତାନର ସ୍ୱାସ୍ଥ୍ୟ, ଆୟୁ ଓ ପ୍ରକୃତି ମଧ୍ୟ ସେହିପରି ଭାବରେ ହୋଇ ଥାଏ । ଅବଶ୍ୟ ବିବାହଟା ବିଧିବଦ୍ଧ ଭାବେ ହେବା ଦରକାର । Perfect biochemical unision (ସୁଷ୍ଠୁ ଜୈବ-ରସାୟନିକ ଐକ୍ୟସଙ୍ଗତି) ଯେତେ ହୁଏ ସେତେହିଁ ଭଲ । ଆ.ପ୍ର. ୧୮/୨୬.୭.୧୯୪୯

## ।। ଶିଶୁମୃତ୍ୟୁ ହୁଏ କାହିଁକି ।।

Physical (ଶାରୀରିକ) କାରଣରୁ ହୋଇପାରେ, ହୁଏତ ପିତାମାତା ରୁଗ୍‌ଣ । ଉଭୟଙ୍କର ବୈଶିଷ୍ଟ୍ୟଗତ ପ୍ରକୃତି ଓ ପ୍ରକୃତିଗୁଡ଼ିକରେ ମେଳ ନ ରହିବା ଯୋଗଁ ମଧ୍ୟ ହୋଇ ପାରେ । ଆ.ପ୍ର. ୧୮/୨୬.୭.୧୯୪୯

## ।। ସ୍ତ୍ରୀଲୋକ ହେଲେହିଁ ବିବାହ କରିବା ଚଳିବ ନାହିଁ କାହିଁକି ।।

ଯାହା-ତାହା ସହିତ ବିବାହ ହେଲେ ଯଦି ହୁଏ, ତେବେ ଛେଳି କିମ୍ବା ଗଧ ସହିତ ବିବାହ ହେଲେ କଣ ହେବ ? ସେଠାରେ difference (ପାର୍ଥକ୍ୟ) ବେଶୀ, ମଣିଷ ବେଳକୁ ହୁଏତ କମ୍ । କିନ୍ତୁ ସ୍ତ୍ରୀ ଯଦି ସ୍ୱାମୀର ପରିପୋଷକ ନ ହୁଏ, ସ୍ୱାମୀ ଯଦି ସ୍ତ୍ରୀର ପରିପୂରକ ନ ହୁଏ, ତେବେ ସନ୍ତାନ କେତେବେଳେ ମଧ୍ୟ ଭଲ ହୁଏ ନାହିଁ । ସ୍ତ୍ରୀଲୋକ ହେଲେହିଁ ଯଦି ବିବାହ କରିବା ଚଳେ, କିଏ କାହାର ପୂରଣୀ,

କାହାର ବଂଶ-ବୈଶିଷ୍ଟ୍ୟ କାହାର ଅନୁକୂଳ, ତାହା ଯଦି ବିଚାର କରା ନ ଯାଏ ତାହେଲେ ଅଷ୍ଟ୍ରେଲୟେଡ, ନିଗ୍ରୋୟେଡ୍, ଗଧ, ଗୁରୁ ସମସ୍ତଙ୍କୁହିଁ ବିବାହ କରିବା ଚଳିବ।

ଆ.ପ୍ର. ୧୮/୩୧.୭.୧୯୪୯

## ।। ସମାଜର ଅପକର୍ଷ ହେଉଛି କାହିଁକି ।।

ମୋର ମନେ ହୁଏ ବଙ୍ଗଳା, ବିହାର, ୟୁ.ପି. ପ୍ରଭୃତି ରାଜ୍ୟର ଆର୍ଯ୍ୟଦ୍ୱିଜମାନଙ୍କ ମଧ୍ୟରେ ଯଦି ସବର୍ଣ୍ଣ ଏବଂ ଅନୁଲୋମକ୍ରମେ ବିବାହ ହୁଏ, ତେବେ ସମାଜର ପରିଧିଟା ଖୁବ୍ ବଢ଼ି ଯିବ। ଆଉ ସନ୍ତାନ ମଧ୍ୟ ଭଲ ହେବ। ବର୍ତ୍ତମାନ close in-breedingର (ଛୋଟ ଗଣ୍ଡୀର ମଧ୍ୟରେ ପ୍ରଜନନରେ) ନୂତନ ରକ୍ତର ଆମଦାନୀ ନ ହେବାରୁ ସମାଜରେ ଅପକର୍ଷ ହେଉଛି। ...ଦୁଇଟି ଜିନିଷ ଜାତିକୁ ଐକ୍ୟବଦ୍ଧ କରେ – ଏକାଦର୍ଶ ଓ ଅନୁଲୋମ ଅସବର୍ଣ୍ଣ ବିବାହ।

ଆ.ପ୍ର. ୧୮/୯.୮.୧୯୪୯

## ।। କୌଣସି ବୈଶିଷ୍ଟ୍ୟକୁହିଁ ନଷ୍ଟ କରିବା ଭଲ ନୁହେଁ କାହିଁକି ।।

ବିବାହ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବ୍ୟାପାର। ରଜଃ ଓ ବୀଜର ସମାବେଶ ଠିକ୍ ଭାବରେ ନହେଲେ ସନ୍ତାନ ଭଲ ହୁଏ ନାହିଁ। ତାର ଜୈବୀ ଗଠନ ଓ ଗୁଣ ଦୁଇଟି ହିଁ ଭାଙ୍ଗିଯାଏ। ସେପରି ସନ୍ତାନମାନଙ୍କର right conception (ଠିକ୍ ଧାରଣା) ଆସିବା ମୁସକିଲ। କୌଣସି ବୈଶିଷ୍ଟ୍ୟକୁ ନଷ୍ଟ କରିବା ଭଲ ନୁହେଁ। ବ୍ରାହ୍ମଣକୁ ନଷ୍ଟ କଲେ ଶିକ୍ଷା ଦେବ କିଏ ? ସମ୍ପୋଷଣ ଯୋଗାଇବ କିଏ ? କ୍ଷତ୍ରିୟ ନଷ୍ଟ ହେଲେ ବ୍ରାହ୍ମଣର କ୍ଷମତା ନାହିଁ ବଞ୍ଚିବାର। ବୈଶ୍ୟକୁ ଯଦି ନଷ୍ଟ କରୁ ବ୍ୟବସାୟ ବୁଦ୍ଧି ନଷ୍ଟ ହୋଇ ଯିବ। ଦେଶକୁ ଦ୍ରବ୍ୟସମ୍ଭାର ଯୋଗାଇବ କିଏ ?

ଆ.ପ୍ର. ୧୮/୯.୮.୧୯୪୯

## ।। ସ୍ତ୍ରୀର ସାର୍ଥକତା କେଉଁଠି ।।

ଆଜିକାଲି ଅନେକ ଝିଅ ପୁରୁଷଙ୍କୁ ମାନନ୍ତି ନାହିଁ। ତା ପଛରେ ମଧ୍ୟ ପୁରୁଷର ଦୋଷ ଅଛି। ସ୍ୱାମୀ ଯଦି ସ୍ତ୍ରୀର ଅନୁଗତ ହୋଇ ଚାଲେ, ତାକୁ ଖୁସି କରିବାକୁ ଓ ସେବା ଦେବାକୁ ବ୍ୟସ୍ତ ହୁଏ, ସେଠାରେ ସ୍ତ୍ରୀ ଖରାପ ହେବହିଁ। ଏଥିରେ ସନ୍ତାନ ମଧ୍ୟ ଖରାପ ହୁଏ। ସ୍ତ୍ରୀର ସାର୍ଥକତା ହେଲା ସ୍ୱାମୀକୁ ଖୁସି କରାଇବା। ପୁଣି, ବିବାହାଦି ହେବା ଉଚିତ ସତ୍ତାସାମଞ୍ଜସ୍ୟ ଓ ସଙ୍ଗତିଶୀଳ। ଘଟକମାନେ ଏସବୁ ନିର୍ଣ୍ଣୟରେ ଦକ୍ଷ

ଥିଲେ। ଆଜିକାଲି ସେମାନଙ୍କର ଶୁଭାବହ ସିଦ୍ଧାନ୍ତ କେତେଜଣ ମାନନ୍ତି ?

ଆ.ପ୍ର. ୧୮/୧୫.୮.୧୯୪୯

## ।। ସନ୍ତାନର ବ୍ୟକ୍ତିତ୍ୱରେ ବିଚ୍ଛିନ୍ନତା ଆସେ କାହିଁକି ।।

ସ୍ତ୍ରୀ ପୁରୁଷର ଯେଉଁ-ଯେଉଁ ଗୁଣର ପରିପୋଷଣୀ, ସେଗୁଡ଼ିକ ସନ୍ତାନଠାରେ ଭଲ ଖୋଲେ। କିନ୍ତୁ ଯେଗୁଡ଼ିକ ପ୍ରତି ବିମୁଖ, ସେଗୁଡ଼ିକ ସନ୍ତାନଠାରେ କିଛିଟା ଅସଂଲଗ୍ନ ଓ ଅସମ୍ବନ୍ଧରକମରେ ସଞ୍ଚାରିତ ହୁଏ। ତା ଦ୍ୱାରା ବ୍ୟକ୍ତିତ୍ୱର ମଧ୍ୟରେ ଗୋଟିଏ ବିଚ୍ଛିନ୍ନତା ଆସେ। ବିଚ୍ଛିନ୍ନତା ଓ ବିକୃତି ଯେତେ ବେଶୀ, ମଣିଷ ସେତେହିଁ ମାଲୁମ ପାଏ ନା, କେଉଁଥିରେ ସେ ସୁଖୀ ହେବ। ଏହି ମୁହୂର୍ତ୍ତରେ ଗୋଟିଏପ୍ରକାର ଚାହେଁ, ପରମୁହୂର୍ତ୍ତରେ ଅନ୍ୟପ୍ରକାର। କଣ ଯେ ସେ ଚାହେଁ, ସେ ନିଜେହିଁ ଠିକ୍‌ପାଏ ନାହିଁ। ଏହି ଯେ ଦେଶର ଅବସ୍ଥା, ଏହି ଯେ ମଣିଷର ଅଭାବ, ଯଦି ଭଲ ଘଟକ ବ୍ରାହ୍ମଣ ପ୍ରଭୃତି ଛିଡ଼ା ହୁଅନ୍ତି, ବିବାହଗୁଡ଼ିକ ଯଦି ଠିକ୍‌ଭାବରେ ହୁଏ, ତାହେଲେ ଯଦି ଏହାର ପ୍ରତିକାର ହେଇପାରେ।

ଆ.ପ୍ର. ୧୮/୧୮.୮.୧୯୪୯

## ।। ବିବାହର ନୀତି କଣ ।।

ନାରୀ ଯେପରି ପୁରୁଷର ଆତ୍ମୀକୃତ ଓ ସତ୍ତାପୋଷଣୀ ହୁଏ, ତାହା ହିଁ ବିବାହର ନୀତି। ଆ.ପ୍ର. ୧୮/୮.୧୦.୧୯୪୯

## ।। କେଉଁ ଶୁକ୍ରକୀଟ ଗର୍ଭାହିତ ହୁଏ ।।

ପ୍ରଶ୍ନ – କୋଟି-କୋଟି ଶୁକ୍ରକୀଟ, ତା ମଧ୍ୟରେ କେଉଁଟା ଯେ ଗର୍ଭାହିତ ହେବ ସେହିଟାତ ଗୋଟିଏ ଦୈବ।

ଶ୍ରୀଶ୍ରୀଠାକୁର – ମୁଁ କହେ ଦୈବ ନୁହେଁ। ବାପାର ଯେଉଁ ବିଶେଷ ଶୁକ୍ରକୀଟର ସହିତ ମାର ଡିମ୍ବାଣୁର ମେଳ ଅଛି, ସେହିଟାହିଁ ମିଳିତ ହୁଏ। ସେଥିପାଇଁ ବିବାହ ଓ ଦାମ୍ପତ୍ୟ ଜୀବନର ଚଳନ ଠିକ୍ କରିବା ଦରକାର।

ଆ.ପ୍ର. ୧୮/୯.୧୦.୧୯୪୯

## ।। ଝିଅର ବିବାହ ଦେବାକୁ ହେଲେ କଣ ଦେଖିବାକୁ ହୁଏ ।।

ପୁଅଝିଅର କୁଳସଂସ୍କୃତି ଓ ବ୍ୟକ୍ତିଗତ ପ୍ରକୃତି ପରସ୍ପର ସଙ୍ଗତିଶୀଳ କି ନୁହେଁ ଦେଖିବା ଦରକାର। ଅଭ୍ୟାସ ଓ ପ୍ରଥା ଦେଖିବା ଦରକାର, ସେଥିରେ କୁଳସଂସ୍କୃତି ବୁଝାଯାଏ। ଅସତର୍କ ମୁହୂର୍ତ୍ତରେ ଚାକର-ବାକର ଓ ଘରର ଲୋକଙ୍କ ସହିତ ବ୍ୟବହାର ଦେଖି ଅନ୍ତର୍ନିହିତ ପ୍ରକୃତି ବୁଝା ଯାଏ।

ପ୍ରଶ୍ନ – ପ୍ରଥା କଣ ?

ଶ୍ରୀଶ୍ରୀଠାକୁର – ପ୍ରତ୍ୟେକ ପରିବାରରେ କେତେଗୁଡ଼ିଏ ପ୍ରଥା ଅଛି। ଯେପରି ଅନେକ ଘରେ ଛୁଆପିଲାମାନଙ୍କୁ ରନ୍ଧା ଘରକୁ ପ୍ରବେଶ କରିବାକୁ ଦିଆଯାଏ ନାହିଁ। ତାଦ୍ୱାରା ବୁଝାଯାଏ, ସଦାଚାରର ଦିଗକୁ ଲକ୍ଷ୍ୟ ଅଛି। ଛୁଆଁ-ଛୁଇଁ, ଖାଇବା-ପିଇବା ସମ୍ବନ୍ଧରେ ଗୋଟିଏ-ଗୋଟିଏ ପରିବାରରେ ଅଲଗା-ଅଲଗା ପ୍ରକାରର। ଗ୍ଲାସରେ ପାଣିପିଇ ଗ୍ଲାସ୍‌ଟା ବା ହାତଟା ହୁଏତ ଧୋଇଲ ନାହିଁ। ମାର୍ବଲର ଘର, ହୁଏତ ଯେଉଁଠି-ସେଇଠି ଛେପ ପକାନ୍ତି, ପାନଛେପ ପକାନ୍ତି। ଅନେକ ଘରେ ଗ୍ଲାସ ମଧ୍ୟରେ ଆଙ୍ଗୁଳି ବୁଡ଼ାଇ ଜଳ ଦିଅନ୍ତି। ଆ.ପ୍ର. ୧୮/୧୬.୧୦.୧୯୪୯

## ।। ମୌଳିକର ପୁଅ ସହିତ କୁଳୀନ ଝିଅର ବିବାହ ହେଲେ କଣ ହୁଏ ।।

ବିବାହର ଗୋଳମାଳ ହେଲେହିଁ ମୁସ୍‌କିଲ। ମୌଳିକ ପୁଅ ସହିତ କୁଳୀନର ଝିଅର ବିବାହ କେତେ ହୁଏ। ମୋର ଏହା ଭଲ ମନେ ହୁଏ ନା। ମନେ ହୁଏ ଏଥିରେ କ୍ଷତି ହୁଏ। ନଚେତ ଆଜି ବଙ୍ଗଳାରେ ସେପରି କାୟସ୍ଥ ଦେଖୁ ନାହିଁ କାହିଁକି। ବଙ୍ଗଳାରେ କାୟସ୍ଥ ପରି କାୟସ୍ଥ ରହିଲେ କଣ ଏପରି ଦୁର୍ଦ୍ଦଶା ହୁଅନ୍ତା ? ସେମାନଙ୍କର ଯେପରି ମୁଖ, ସେପରି ମୁଣ୍ଡ, ସେପରି କାଇଦା, ସେପରି ଚଳନ, ସେପରି କଥା – ମଣିଷକୁ ମୁଗ୍ଧ କରିପକାଏ। ବଙ୍ଗଳାରେ ଜଣେ ଥିଲେ ନେତାଜୀ।

ପ୍ରଶ୍ନ–କୁଳୀନ ଯେଉଁମାନେ ସେମାନଙ୍କ ମଧ୍ୟରେ ତ ଭଲ ଲୋକ ରହିବା ଉଚିତ ଥିଲା !

ଶ୍ରୀଶ୍ରୀଠାକୁର – ତା ମଧ୍ୟରୁ ତ ପାଇଛ ନେତାଜୀଙ୍କୁ। ତାଙ୍କ ମା ମୌଳିକର ଝିଅ ଆଉ ବାବା କୁଳୀନ। ତାହା ମଧ୍ୟ ଘଟକର ବିଜ୍ଞାନ ପୁରାପୁରି ପ୍ରୟୋଗ କରି ବିବାହ ହୋଇଛି କି ନା ଜାଣେ ନାହିଁ। ବାବା ମୌଳିକ, ମା କୁଳୀନ ଏପରି ବହୁ ଝିଅ ମଧ୍ୟ କୁଳୀନ ଘରର ବୋହୁ ହୁଅନ୍ତି। ଏହା ଭିତର ଦେଇ ମଧ୍ୟ ଖୁଁତ ପ୍ରବେଶ କରେ। ଯଦିଓ ଏହା ମନ୍ଦ ମଧ୍ୟରେ ଭଲ। ଆ.ପ୍ର. ୧୮/୧୬.୧୦.୧୯୪୯

## ।। ପ୍ରତ୍ୟେକଙ୍କର ବିବାହ କରିବା କର୍ତ୍ତବ୍ୟ କି ନୁହେଁ ।।

ଯାହାର ଯୋଗ୍ୟତା ଅଛି ତାର କରିବା ଭଲ। ଅନେକଙ୍କର ବିବାହ ନ କରିବାହିଁ ସମୀଚୀନ। ଆଉ, ଅନୁଲୋମ କରିବାକୁ ଗଲେ ପ୍ରଥମେ ସବର୍ଣ୍ଣ କରିବା ଦରକାର, ନଚେତ ମୂଳ ଝାଡ଼ଟା ନଷ୍ଟ ହୋଇ ଯାଏ। ଆ.ପ୍ର. ୧୮/୧୬.୧୦.୧୯୪୯

## ।। ସଗୋତ୍ର ବିବାହରେ କଣ ହୁଏ ।।

ସେଥିରେ ସଦ୍‌ଗୁଣ ଯେପରି ବଢ଼େ, ଅବଗୁଣ ମଧ୍ୟ ସେହିପରି ବଢ଼େ। ଶୁଣିଛି ମସ୍ତିଷ୍କ, ଶରୀର ଓ ବ୍ୟକ୍ତିତ୍ୱ ଦିଗ ଦେଇ କିଛିଟା କମ୍ ହୁଏ।

ଜଣେ ମା କହିଲେ – ମୋର ଜଣେ ଭାଉଣୀର ସଗୋତ୍ର ବିବାହ ହୋଇଛି, ତାର ଗୋଟିଏ ପୁଅ ଅତ୍ୟନ୍ତ ତୀକ୍ଷ୍ଣଧୀ।

ଶ୍ରୀଶ୍ରୀଠାକୁର – ଅସ୍ତିତ୍ୱର ଲକ୍ଷଣ ହେଲା ପରିସ୍ଥିତିରୁ ସତ୍ତାପୋଷଣୀ ଯାହା କିଛି ସଂଗ୍ରହ କରିବା – ଗୋଳେଇ ନ ଯିବା – ନିଜକୁ ବିକ୍ରି ନ କରିବା –ଏହିଗୁଡ଼ିକ ବ୍ୟକ୍ତିତ୍ୱର ଲକ୍ଷଣ। କିନ୍ତୁ ସାଗୋତ୍ର ବିବାହରେ ସନ୍ତାନ ଶତ brilliance (ଦୀପ୍ତି) ନେଇ ମଧ୍ୟ ଏହିପରି ହୋଇ ପାରେ ଯେ, ପାରିପାର୍ଶ୍ୱିକଙ୍କୁ ନିୟନ୍ତ୍ରିତ କରି ପାରିଲା ନାହିଁ। ଅନ୍ୟ ଦ୍ୱାରା ପ୍ରଭାବିତ ହୋଇ କିଛିଟା ଖରାପର ଦିଗକୁ ଗଲା। ପ୍ରତ୍ୟେକ କ୍ଷେତ୍ରରେ ଏପରି ନ ହୋଇ ପାରେ। ତେବେ ସଗୋତ୍ର ବିବାହ ଭଲ ନୁହେଁ।

ଆ.ପ୍ର. ୧୮/୨୦.୧୦.୧୯୪୯

## ।। ନମଃଶୂଦ୍ର ମଧ୍ୟରେ ସଭିଏଁ ପାରଶବ ନୁହଁନ୍ତି ।।

ନମଃଶୂଦ୍ରଙ୍କ ମଧ୍ୟରେ ଅନେକ କରଣ, ଚଣ୍ଡାଳ, ପ୍ରତିଲୋମ ମଧ୍ୟ ପ୍ରବେଶ କରି ଯାଇଛନ୍ତି। ସମସ୍ତଙ୍କୁ ଯଦି ପାରଶବ ମନେ କରି ଉପନୟନ ଦିଅ ଓ ସମସ୍ତଙ୍କ ସହିତ (ବିବାହାଦି) କାର୍ଯ୍ୟକର୍ମ ଚଳାଅ, ତାହେଲେ କିନ୍ତୁ ମହାକ୍ଷତି ହୋଇ ଯିବ।

ଆ.ପ୍ର. ୧୮/୨୧.୧୦.୧୯୪୯

## ।। ପାରଶବମାନେ କାହା ସମ୍ବନ୍ଧରେ ସାବଧାନ ହେବେ, କେଉଁମାନଙ୍କୁ ବିବାହ କରିବେ ।।

ଯେଉଁମାନଙ୍କ ହାତରୁ ତୁମ୍ଭେମାନେ ଖାଉ ନଥାଅ, ଯେଉଁମାନଙ୍କ ସହିତ ତୁମର କାର୍ଯ୍ୟକର୍ମ ହେଉ ନଥାଏ। ପାରଶବର ଝିଅ ଯଦି କୌଣସି କାୟସ୍ଥ କିମ୍ବା ବୈଶ୍ୟଙ୍କୁ

ବିବାହ କରେ, ତାହେଲେ କିନ୍ତୁ ଖରାପ ହେବ। ପାରଶବ ମାନେ କରଣ ଓ ଉଗ୍ରକ୍ଷତ୍ରିୟର ଝିଅକୁ ବିବାହ କରି ପାରନ୍ତି। ପାରଶବମାନଙ୍କର ଉପନୟନ-ସଂସ୍କାର ହେବ ଆପସ୍ତନ୍ବ ସଂହିତାର 'ଅଶୂଦ୍ରାନାମ୍ ଅଦୁଷ୍ଟ କର୍ମ୍ମାନାମ୍ ଉପନୀୟତାମ୍' – ଏହି ସୂତ୍ର ଅନୁସାରେ। ଯେଉଁ ବ୍ରାହ୍ମଣମାନେ ଦୁଷ୍ଟ କର୍ମ୍ମା ସେମାନେ କିନ୍ତୁ ପତିତ।

ଆ.ପ୍ର. ୧୮/୨୧.୧୦.୧୯୪୯

## ॥ ପ୍ରତିଲୋମ ଜାତକର କୌଣସି ସଂସ୍କାର ରହିବ କି ନା॥

ପ୍ରତିଲୋମ ପ୍ରତ୍ୟେକ ବର୍ଣ୍ଣର ମଧ୍ୟରେ ହୋଇପାରେ। ଯେଉଁ–ବର୍ଣ୍ଣର ମଧ୍ୟରେବି ପ୍ରତିଲୋମ ସଂଘଠିତ ହେଉ ସେମାନଙ୍କର କୌଣସି ସଂସ୍କାର ରହିବ ନାହିଁ। ସେମାନେ ବାହ୍ୟ ହୋଇ ଯିବେ। ଆ.ପ୍ର. ୧୮/୨୧.୧୦.୧୯୪୯

## ॥ ପ୍ରତିଲୋମ ଜାତକ ଶିକ୍ଷିତ ହୁଏ କି ନା॥

ଜଣେ ଦାଦା କହିଲେ – ଆମର ପରିଚିତ ଜଣେ ବଡ଼ ଡାକ୍ତର ପ୍ରତିଲୋମ ବିବାହ କରିଛନ୍ତି, ତାଙ୍କର ପିଲାମାନେ ତ ଖୁବ educated (ଶିକ୍ଷିତ)।

ଶ୍ରୀଶ୍ରୀଠାକୁର – Educated (ଶିକ୍ଷିତ) କୁହ କାହିଁକି ? Literated (ଲେଖାପଢ଼ା ଜାଣିଥିବା) କହି ପାର। ସେମାନେ ଶ୍ରଦ୍ଧାହୀନ ଓ କୃଷ୍ଟିହରା ହେବେହିଁ। ସେମାନଙ୍କର ଯୋଗାବେଗ କମ୍ ଥାଏ। ଅକାମର ଗୁରୁଠାକୁର ସେମାନେ। ଘରେ ଯାଇ ଦେଖ – ଛୁଚାର କୀର୍ତ୍ତନ।

ଆ.ପ୍ର. ୧୮/୨୧.୧୦.୧୯୪୯

## ॥ ପାରଶବମାନେ ତପଶୀଳୀ ସମ୍ପ୍ରଦାୟର ନୁହଁନ୍ତି॥

ସାମାନ୍ୟ ସୁବିଧା ପାଇଁ ତପଶୀଳୀ ସମ୍ପ୍ରଦାୟଭୁକ୍ତ ବୋଲି ନିଜକୁ ସ୍ୱୀକାର କରିବା ତୁମ୍ଭମାନଙ୍କର ମସ୍ତବଡ଼ ଦୋଷ ହୋଇଛି। ତୁମ୍ଭେମାନେ ପାରଶବ ବିପ୍ର ତାହା ପ୍ରତିଷ୍ଠା କର ନାହିଁ କାହିଁକି ? ମୋର ମନେ ହୁଏ ଅନ୍ଧକ ମୁନି ପାରଶବ ଏବଂ ବିଦୁରଙ୍କର ବଂଶଧର ତୁମ୍ଭେମାନେ।

ଆ.ପ୍ର. ୧୮/୨୧.୧୦.୧୯୪୯

## ।। ଉପଗତ ହେବନାହିଁ କେତେବେଳେ ।।

ପ୍ରଶ୍ନ – ଶଙ୍କର ଯେତେବେଳେ ତପସ୍ୟା କରୁଥିଲେ, ସେତେବେଳେ ପାର୍ବତୀ ତାଙ୍କର ମନ ଭୁଲାଇବା ପାଇଁ ଯାଇଥିଲେ, ଶଙ୍କର ସେତେବେଳେ ତାଙ୍କୁ ତଡ଼ି ଦେଇଥିଲେ, କିନ୍ତୁ ସେ ତପସ୍ୟା କରି ଶୁଦ୍ଧ-ସତ୍ତ୍ୱ ଅବସ୍ଥାରେ ଉପନୀତ ହେଲେ, ଶଙ୍କର ସେତେବେଳେ ତାଙ୍କର ପ୍ରାର୍ଥନା ପୂରଣ କଲେ ।

ଶ୍ରୀଶ୍ରୀଠାକୁର – ଶୁଣିଛି ସେହି ଗର୍ଭରେ ଦେବସେନାପତି କାର୍ତ୍ତିକଙ୍କ ଆବିର୍ଭାବ ହେଲା । କାର୍ତ୍ତିକ ଦେବତାଙ୍କର ଉତ୍ପାତକାରୀ ବୃତ୍ରାସୁରକୁ ବଧ କରି ପାରିଥିଲେ ।

ପ୍ରଶ୍ନ – ପୁରୁଷର libido (ସୁରତ) କେତେବେଳେ କେଉଁ ସ୍ତରରେ ଅଛି, ନାରୀ ତାହା ବୋଧ କରିବ କିପରି, ଆଉ ବୋଧ କରି ପାରିଲେ ମଧ୍ୟ nurture (ପୋଷଣ)-ହିଁ ବା ଦେବ କିପରି ?

ଶ୍ରୀଶ୍ରୀଠାକୁର – ଆମର libido (ସୁରତ) ଯେଉଁଠାରେ ଥାଏ, ଚିନ୍ତା ଓ ଚଳନ ମଧ୍ୟ ସେହିପରି ହୁଏ । ତା ଦେଖିହିଁ ବୁଝା ଯାଏ । ଶୁଭଭାବ ଥିଲେ ସେହିଟାକୁ ଉସ୍‌କାଇ ଦେବାକୁ ହୁଏ । ସ୍ୱାମୀ ବା ସ୍ତ୍ରୀର ମନ ସାମ୍ୟହାରା ଅବସ୍ଥାରେ ରହିଲେ ସେତେବେଳେ ଉପଗତ ହେବା ଉଚିତ ନୁହେଁ । ସେଥିରେ ପୁଅଝିଅ ଖରାପ ହୁଅନ୍ତି ।

ଆ.ପ୍ର. ୧୮/୨୯.୧୦.୧୯୪୯

## ।। କେତେଦିନ ପର୍ଯ୍ୟନ୍ତ ସ୍ତ୍ରୀର ଗର୍ଭସଞ୍ଚାର ନ ହେବା ଭଲ ।।

ଗୌରୀ ନିଜକୁ ସ୍ୱାମୀଙ୍କର ପ୍ରକୃତିର ପରିପୋଷଣୀ କରି ତୋଳିବା ପାଇଁ କେତେ ତପସ୍ୟା କରିଥିଲେ । ଯେତେଦିନ ପର୍ଯ୍ୟନ୍ତ ସ୍ତ୍ରୀର ଚରିତ୍ର, ଚଳନ ଓ ପ୍ରକୃତି ସ୍ୱାମୀର ପ୍ରକୃତିର ସମ୍ୟକ ପରିପୋଷଣୀ ନ ହୋଇ ଉଠେ, ତା ଆଗରୁ ତାର ଗର୍ଭସଞ୍ଚାର ହେଲେ ସ୍ୱାମୀର ଶୁଭସଂସ୍କାରଗୁଡ଼ିକ ତାର ସନ୍ତାନ ମଧ୍ୟରେ ସମ୍ୟକ୍ ବିକଶିତ ହୋଇ ପାରେ ନାହିଁ । କାରଣ ସେ ସେଗୁଡ଼ିକର ପୋଷଣ ଠିକ୍‌ଭାବରେ ଦେଇ ପାରେ ନାହିଁ ।

ଆ.ପ୍ର. ୧୮/୧୧.୧୧.୧୯୪୯

## ।। କୃତ୍ରିମ-ଉପାୟରେ ଜନ୍ମ-ନିୟନ୍ତ୍ରଣରେ ସୁସନ୍ତାନ ଲାଭ ହୁଏ କି ନା ।।

ସୁସନ୍ତାନ ବଢ଼ାଇବାକୁ ହେଲେ ସତ୍-ଚଳନଶୀଳ ହେବା, ସତ୍-ମନନଶୀଳ ହେବା ଦରକାର । ଏହିଭାବରେ ଯେଉଁମାନେ ଚାଲନ୍ତି, ସେମାନଙ୍କର ମନ ଉଚ୍ଚମାର୍ଗରେ

ବିଚରଣ କରେ। ତାହାଦ୍ୱାରା ସେମାନଙ୍କର କାମ-ପ୍ରବୃତ୍ତି ସ୍ୱତଃହିଁ ସୁନିୟନ୍ତ୍ରିତ ହୁଏ। ତେଣୁ ସ୍ୱାଭାବିକ ଭାବରେ ସନ୍ତାନ-ସଂଖ୍ୟା ଅଳ୍ପବହୁତ ସୀମିତ ହୁଏ। ଅବଶ୍ୟ, ସ୍ତ୍ରୀର ଚାହିଦା ଅନୁଯାୟୀ ସ୍ୱାମୀ ତା ଠାରେ ଉପଗତ ହେଲେ ତାହା ଧର୍ମର ପରିପନ୍ଥୀ ହୁଏ ନାହିଁ। ଯାହାହେଉ, କୃତ୍ରିମ ଉପାୟରେ ସନ୍ତାନ ସଂଖ୍ୟା କମା ଯାଇ ପାରେ, କିନ୍ତୁ ସେତେବେଳେ ଯେଉଁ-ସବୁ ସନ୍ତାନ ଜନ୍ମଗ୍ରହଣ କରିବେ, ସେମାନେ କମ୍ ଶୁଭ ଭାବ ନେଇ ଜନ୍ମିବେ। କାରଣ, ଏହିସବୁ ଅନିୟନ୍ତ୍ରିତ ପୁରୁଷର ଶୁକ୍ରକୀଟ ସୁଚିନ୍ତା ଓ ସୁଚିନ୍ତକୁ ବହନ କରି ପାରିବ ନାହିଁ। ଆ.ପ୍ର. ୧୮/୨୫.୧୧.୧୯୪୯

## ।। ପତିବ୍ରତା ସ୍ତ୍ରୀଠାରୁ ସତୀ ସ୍ତ୍ରୀ ବଡ଼ କାହିଁକି ।।

ସତୀ ସ୍ତ୍ରୀ ସ୍ୱାମୀର ମଙ୍ଗଳ ପାଇଁ ସ୍ୱାମୀ ସହିତ ଝଗଡ଼ା କରିବାକୁ ମଧ୍ୟ ପ୍ରସ୍ତୁତ। ତଥାକଥିତ ପତିବ୍ରତା ସ୍ତ୍ରୀମାନେ କିନ୍ତୁ ତାହା ପାରନ୍ତିନି। ତେଣୁ ପତିବ୍ରତା ଠାରୁ ସତୀ ବଡ଼। ଆ.ପ୍ର. ୧୮/୨.୧୨.୧୯୪୯

## ।। ମାହିଷ୍ୟ କୁହାଯାଏ କାହିଁକି ।।

ମାହିଷ୍ୟ ଜାତି ବଡ଼ ସମ୍ଭ୍ରାନ୍ତ ଜାତି। ମହୀୟାନ ଜାତି, ତେଣୁ ବୋଧ ହୁଏ କୁହାଯାଏ ମାହିଷ୍ୟ। ମାହିଷ୍ୟର କଥା କହିଲେ ବର୍ତ୍ତମାନ ବି ମୋ ହୃଦୟରେ ଶିହରଣ ଜାଗେ। ଏମାନେ ତ ଏକଦା ରାଜା ଥିଲେ। ସେଦିନର ସେହି ମୋହନଲାଲର କଥାହିଁ ଧର ନା। କେତେ ବଡ଼ ବୀର। ଆଉ, ବିଶ୍ୱାସଘାତକତା ବୋଲି ଜିନିଷ ତା ଜୀବନରେ ନ ଥିଲା। ବଙ୍ଗ ଏପରି ବିଶ୍ୱସ୍ତ ମଣିଷ କମ୍‌ହିଁ ମିଳେ।

ପ୍ରଶ୍ନ* – ଆମ୍ଭମାନଙ୍କ ମଧ୍ୟରେ ସଗୋତ୍ର ବିବାହ ଖୁବ୍ ହେଉଛି। ସଗୋତ୍ର ବିବାହର ଦୋଷ କଣ? (*ପ୍ରଶ୍ନକର୍ତ୍ତା ମାହିଷ୍ୟ।)

ଶ୍ରୀଶ୍ରୀଠାକୁର – ତାହାଦ୍ୱାରା ସବୁ କିଛି ଖର୍ବୀକୃତ ହୁଏ। ଚେହେରା, ଗୁଣ, ଶକ୍ତି ସବୁକିଛିହିଁ। ଆଉ, ଅବଗୁଣଗୁଡ଼ିକ ବଢ଼ିବାକୁ ଲାଗେ।

ଆ.ପ୍ର. ୧୮/୧୪.୧୨.୧୯୪୯

## ।। ସ୍ୱାଭାବିକଭାବରେ ଛୁଆପିଲା କେତେବେଳେ କମ୍ ହୁଏ ।।

ପୁରୁଷ ଯଦି ଗଭୀରଭାବରେ ଇଷ୍ଟପ୍ରାଣ ହୁଏ, ତେବେ ତାର ସଂଯମ ଜିନିଷଟା ପ୍ରଚୁର ପରିମାଣରେ ଥାଏ। ତା କ୍ଷେତ୍ରରେ କୃତ୍ରିମଭାବରେ ସନ୍ତାନର ଜନ୍ମ-ନିରୋଧ

କରିବା ପ୍ରୟୋଜନ ହୁଏ ନା। ଆତ୍ମସଂଯମ ଓ ଇଷ୍ଟପ୍ରାଣତା ଥିବା ଯୋଗୁଁ ତା ମନ ଉର୍ଦ୍ଧ୍ୱଲୋକରେ ବିଚରଣ କରେ। ତାର ଦାମ୍ପତ୍ୟ ଜୀବନ ହୁଏ ମଧୁର ଓ ସଂଯତ। ସ୍ୱାଭାବିକଭାବରେହିଁ ତାର ଛୁଆପିଲା କମ୍ ହୁଏ ଏବଂ ଅତି ଅଳ୍ପସଂଖ୍ୟକ ଯାହା ହୁଅନ୍ତି ସେମାନେ ଜଣେ-ଜଣେ ହୁଅନ୍ତି କାଖରେ—ସୂର୍ଯ୍ୟ-ଧରିବା ହନୁମାନ ପରି। ଯେଉଁମାନେ କୃତ୍ରିମ ଭାବରେ ଜନ୍ମନିୟନ୍ତ୍ରଣ କରନ୍ତି, ସେମାନଙ୍କର ଶିଶ୍ନୋଦରପରାୟଣତା ଜୀବନର ନିୟାମକ ପ୍ରବୃତ୍ତି ହୋଇ ଛିଡ଼ାହୁଏ। ତେଣୁ ସେମାନଙ୍କର ସନ୍ତାନ ମଧ୍ୟ ନିମ୍ନମୁଖୀ ମନ ଓ ପ୍ରବୃତ୍ତି ନେଇ ଜନ୍ମ ନିଏ। ଯେଉଁମାନେ ସୁକେନ୍ଦ୍ରିକ ଓ ସଂଯତ ନୁହଁନ୍ତି, ସେମାନେ ଶୁଭ ସଂସ୍କାର-ସମ୍ପନ୍ନ ସୁସନ୍ତାନର ଜନକ କମ୍ ହୋଇ ପାରନ୍ତି। ଅବଶ୍ୟ, ସୁପ୍ରଜନନର ବ୍ୟାପାରଟା ମାଆମାନଙ୍କ ଉପରେ ଅନେକପରିମାଣରେ ନିର୍ଭର କରେ। ତେଣୁ ବାପ ପରି ମାଆର ମଧ୍ୟ ସୁକେନ୍ଦ୍ରିକ ଓ ସଂଯତ ହେବା ପ୍ରୟୋଜନ।   ଆ.ପ୍ର. ୧୮/୨୭.୧.୧୯୫୦

## ।। ଜନ୍ମରେ ଭୂଲ ରହିଲେ କଣ ହୁଏ ।।

ବାପାର ଔରସରୁ ମାଆର ଗର୍ଭରୁ ମଣିଷର ସୃଷ୍ଟିହୁଏ। ସୁସ୍ଥ ବୀଜ ଓ ଭଲ ଜମି ଦୁଇଟିହିଁ ଦରକାର। ତାପରେ ଦରକାର ସତ୍ ଶିକ୍ଷା ଓ ଭଲ ପରିବେଶ। ଯାହା କୁହ, ମଣିଷର ଜନ୍ମରେ ଭୂଲ ରହିଲେ ଶିକ୍ଷା ଓ ପରିବେଶ ଦେଇ ତାର ପ୍ରତିକାର କରିବା ସମ୍ଭବ କମ୍। ପ୍ରତିଲୋମର କୌଣସି ପ୍ରତିକାର ନାହିଁ। ଆମ ଦେଶରେ ପଣପ୍ରଥା ଥିବା ଯୋଗୁଁ ଅନେକ ସମୟରେ ମଣିଷ ନୀଚ ଘରେ ଝିଅ ଦେବାକୁ ବାଧ୍ୟ ହୁଏ। ପଣପପ୍ରଥାର ଯେପରି ବିଲୋପ ହୁଏ ତାହା କରିବା ଦରକାର।

ଆ.ପ୍ର. ୧୮/୨୭.୧.୧୯୫୦

## ।। ସଂସାର ସ୍ୱର୍ଗ ହୋଇ ଉଠେ କେତେବେଳେ ।।

ମା-ବାବା ପରସ୍ପର ପରସ୍ପରଙ୍କ ପ୍ରତି ସକ୍ରିୟ ସେବା-ସମ୍ବର୍ଦ୍ଧନୀ, ପ୍ରୀତି-ଉଦ୍ଦୀପନୀ ଭାବ ନେଇ ଯଦି ଚାଲନ୍ତି ତେବେ ସଂସାର ସ୍ୱର୍ଗ ହୋଇ ଉଠେ। ବାପା-ମା ଏପରି ହେଲେ ଗୋଟିଏ ଗୋଟିଏ ଦେବସନ୍ତାନ-ଉତ୍ତମ ଜୈବୀ-ସଂସ୍ଥିତି ନେଇ ଜନ୍ମ ନିଏ। ଏହି ସଂସ୍ଥିତି ଯୋଗୁଁ ସେମାନେ ଜନ୍ମର ପରଠାରୁ ଭଲଟା ଧରି ପାରନ୍ତି, ବୁଝି ପାରନ୍ତି ଏବଂ ସେହି ପଥରେ ଚଳି ପାରନ୍ତି ମଧ୍ୟ। ଏହାଦ୍ୱାରା ସମାଜର ରୂପ ବଦଳି ଯାଏ।

ଆ.ପ୍ର. ୧୯/୧୨.୨.୧୯୫୦

## ।। ଝିଅକୁ କିପରି ଘରେ ବିବାହ ଦେବାକୁ ହୁଏ ।।

ଝିଅମାନଙ୍କୁ ଏପରିଭାବରେ ଶିକ୍ଷା ଦେବାକୁ ହେବ ସେମାନେ ଯେପରି ଉଚ୍ଚ ଦିଗ ବ୍ୟତୀତ ନୀଚରେ ଦିଗକୁ ନ ଯାଆନ୍ତି। ଝିଅକୁ କେତେବେଳେ ମଧ୍ୟ ନୀଚ ଘରେ ବିବାହ ଦେବା ଉଚିତ ନୁହେଁ। ତାର ବ୍ୟକ୍ତିଗତ ପ୍ରକୃତି ଓ କୂଳସଂସ୍କୃତିର ପରିପୂରଣୀ ସର୍ବାଂଶେ ଶ୍ରେୟ ଉଚ୍ଚ ଘରେ ତାକୁ ଦେବା ଦରକାର।

ଆ.ପ୍ର. ୧୯/୧୨.୨.୧୯୫୦

## ।। ପରିବାରରେ ଶାନ୍ତି ଆସେ କିପରି ।।

ସ୍ତ୍ରୀ ସ୍ୱାମୀକୁ ଭଲ ପାଇବ, ସ୍ୱାମୀ ସ୍ତ୍ରୀକୁ ଭଲପାଇବ। ଏହା ଯେତେ ବଢ଼ିବ ସେତେ ଶାନ୍ତି ଆସିବ। ମନର ସେବା ନ କରି କେବଳ ବାହାରେ ସେବା କରିବାରେ ଶାନ୍ତି ହୁଏ ନାହିଁ। ଏହା କେବଳ ସ୍ୱାମୀ ସ୍ତ୍ରୀର କ୍ଷେତ୍ରରେ ନୁହେଁ – ସବୁ କ୍ଷେତ୍ରରେ। ପରିବାରରେ ପରସ୍ପର ପରସ୍ପରର ମନକୁ ଆନନ୍ଦିତ କରି ବାହ୍ୟିକ ସେବା ଯଦି କରନ୍ତି, ତେବେ ପରିବାରରେ ସମସ୍ତଙ୍କ ମଧ୍ୟରେ ଗୋଟିଏ ପ୍ରୀତିପ୍ରଫୁଲ୍ଲଭାବ ବିରାଜ କରେ। ଆଉ ଗୋଟିଏ ଜିନିଷ – ସେବା କରିବାକୁ ଯାଇ ଗୋଟିଏ ସମ୍ଭ୍ରାନ୍ତ ଦୂରତ୍ୱ ବଜାୟ ରଖିବାକୁ ହୁଏ। ସେବା କରିବାକୁ ଯାଇ ଦେହଘସା ହେବା ଭଲ ନୁହେଁ। ଯାହା ସହିତ ଯେଉଁଠି ଯେପରି ଦରକାର, ସେଠାରେ ସେହିପରି ଚଲାବୁଲା କରିବା ଉଚିତ। ମାତ୍ରା ଉଲ୍ଲଙ୍ଘନ କରି ଯିବା ଭଲ ନୁହେଁ। ଏହା ସ୍ୱାମୀ, ଆତ୍ମୀୟସ୍ୱଜନ, ଯିଏ ହେଉ ନା କାହିଁକି, ସମସ୍ତଙ୍କ ସେବା ବେଳରେ ସ୍ମରଣ ରଖିବାକୁ ହେବ।

ଆ.ପ୍ର. ୧୯/୧୨.୨.୧୯୫୦

## ।। ବିଧବାକୁ କେତେବେଳେ ବିବାହ ନ ଦେବାହିଁ ଭଲ ।।

ଏକ ଆପଦ୍ଧର୍ମ ଛଡ଼ା ବିଧବାକୁ ବିବାହ ଦେବାକୁ ଗଲେ ମଧ୍ୟ ସନ୍ତାନବତୀ ବିଧବାକୁ ବିବାହ ନ ଦେବାହିଁ ଭଲ। ତାହାଦ୍ୱାରା ସନ୍ତାନ ତ ଖରାପ ହେବହିଁ, ତା ଛଡ଼ା ପୂର୍ବର ସନ୍ତାନମାନଙ୍କର ଦୁର୍ଦ୍ଦଶା ହୁଏ। ଆ.ପ୍ର. ୧୯/୧୬.୨.୧୯୫୦

## ।। ସ୍ୱାମୀ-ସ୍ତ୍ରୀର ଭଲପାଇବା କେତେବେଳେ ଗଭୀର ଓ ସାର୍ଥକ ହୋଇ ଉଠେ ।।

କେବଳ ନିଜେ ପରସ୍ପର ସ୍ୱାର୍ଥାନ୍ୱିତ ହେଲେ ହେବ ନାହିଁ। ତା ପଛରେ ଉଦ୍ଦେଶ୍ୟ

ଥିବା ଦରକାର ଏକଯୋଗରେ କୌଣସି ଶ୍ରେୟଙ୍କ ପରିପୂରଣ। ସ୍ୱାମୀ-ସ୍ତ୍ରୀ ଉଭୟେ ମିଶି ଯେତେବେଳେ ଗୁରୁଜନ, ଗୁରୁ କିମ୍ବା ଆଦର୍ଶଙ୍କର ପରିପୂରଣରେ ଉଦ୍ଦାମ ହୋଇ ଉଠନ୍ତି ସେତେବେଳେ ସେମାନଙ୍କର ଭଲପାଇବାଟା ମଧ୍ୟ ଗଭୀର ଓ ସାର୍ଥକ ହୋଇ ଉଠେ। ସାର୍ଥକତାର କେନ୍ଦ୍ରହିଁ ହେଲେ ପରମପିତା ଏବଂ ପରମପିତାଙ୍କର ସ୍ପର୍ଶ ଆମେ ଇଷ୍ଟଙ୍କ ଭିତରଦେଇ ପାଉଁ। ଆ.ପ୍ର. ୧୯/୨୭.୨.୧୯୫୦

## ।। ସନ୍ତାନର ଶରୀର, ମନ, ଆୟୁ କ୍ଷୁର୍ଣ୍ଣ ହୁଏ କେତେବେଳେ ।।

ପ୍ରତ୍ୟେକଙ୍କର ଗୋଟିଏ ଜୈବୀ-ସଂସ୍ଥିତି ଅଛି। ବିବାହ କ୍ଷେତ୍ରରେ ନାରୀ-ପୁରୁଷ ପରସ୍ପରର ଜୈବୀ-ସଂସ୍ଥିତି, ରକ୍ତ ଓ ପ୍ରକୃତିର ପରିପୂରକ ଓ ପରିପୋଷକ ନ ହୋଇ ଯଦି ପ୍ରତିରୋଧକ ହୁଅନ୍ତି, ସେଠାରେ ସନ୍ତାନର ଶରୀର, ମନ, ଆୟୁ ସବୁହିଁ କ୍ଷୁର୍ଣ୍ଣ ହୁଏ। ଏପରିକି ସନ୍ତାନର ଜୀବନ ମାତୃଗର୍ଭରେ ଥାଇହିଁ ନଷ୍ଟ ହୋଇ ଯାଇ ପାରେ। ଆ.ପ୍ର. ୧୯/୯.୪.୧୯୫୦

## ।। ସନ୍ତାନ ଶ୍ରେୟନିଷ୍ଠ ହୁଏ ନାହିଁ କେତେବେଳେ ।।

ସ୍ତ୍ରୀ ପାଖରେ yield (ନତିସ୍ୱୀକାର) କରି ଯେଉଁଠି ଦାମ୍ପତ୍ୟ-ସଂହତି ବଜାୟ ରଖା ଯାଏ, ସେଠାରେ ବାହାରୁ ଖୁବ୍ ମେଳ ଅଛି ବୋଲି ମନେ ହେଲେ ମଧ୍ୟ ସ୍ତ୍ରୀର ସ୍ୱାମୀ ପ୍ରତି ଗଭୀର ଅନୁରାଗ ଅଛି – ତାହା କହିବା ଚଳେ ନାହିଁ। ଏପରି ସ୍ଥଳେ ସନ୍ତାନ କମ୍‌ହିଁ ଭଲ ହୋଇ ପାରେ। ଭଲ ମାନେ ମୁଁ କହିବାକୁ ଚାହେଁ ଶ୍ରେୟନିଷ୍ଠ। ସ୍ତ୍ରୀର ଚରିତ୍ର ଓ ମାନସିକତା ସନ୍ତାନର ମଧ୍ୟରେ ପ୍ରତିଫଳିତ ହୁଏହିଁ। ମାଆର ଯାହା ପ୍ରତି ଶ୍ରଦ୍ଧା-ଭକ୍ତି ଥାଏ, ସନ୍ତାନ ମଧ୍ୟରେ ତାହାର ଛାପ ଫୁଟି ଉଠେ। ଏଠାକାର ଅନେକ ଛୁଆପିଲାଙ୍କ ମଧ୍ୟରେ ମୋର କିଛି-କିଛି ରକମ ଦେଖାଯାଏ, ଯାହା ହୁଏତ ସେମାନଙ୍କ ପରିବାର ମଧ୍ୟରେ ପାଇ ହୁଏ ନାହିଁ। ପିତାମାତା ବିଶେଷତଃ ମାଆମାନେ ଶ୍ରେୟଭକ୍ତି-ପରାୟଣ ହେଲେ ଜାତି ଧୀରେ-ଧୀରେ ଅଜ୍ଞାତସାରରେ ଉନ୍ନତ ହୋଇ ଚାଲେ। ଆ.ପ୍ର. ୧୯/୯.୪.୧୯୫୦

## ।। ଅନୁଲୋମ ଅସବର୍ଣ୍ଣ ବିବାହରେ ସଗୋତ୍ର ଭଲ କି ନୁହେଁ ।।

ମୋର ମନେ ହୁଏ, ଅନୁଲୋମ ଅସବର୍ଣ୍ଣ ବିବାହ ବେଳରେ ମଧ୍ୟ ସଗୋତ୍ର ବିବାହ ନ ହେବା ଭଲ। ଆ.ପ୍ର. ୧୯/୯.୪.୧୯୫୦

## ।। ଦାମ୍ପତ୍ୟ ଜୀବନର ଅଶାନ୍ତିରେ ପୁରୁଷ କଣ କରିବ ।।

ବିବାହ ଠିକ୍‌ଭାବରେ ନ ହେଲେ ଅନେକ ସମୟରେ ଦାମ୍ପତ୍ୟ ଜୀବନରେ ଦ୍ୱନ୍ଦର ସୃଷ୍ଟି ହୁଏ। ତେବେ ପୁରୁଷର ଉଚିତ ଶ୍ରଦ୍ଧାର୍ହ ଚଳନରେ ଚାଲିବା। ଆଉ ସ୍ତ୍ରୀର ଛୋଟଖାଟ ଦୋଷତ୍ରୁଟି ignore (ଉପେକ୍ଷା) କରିବାକୁ ହୁଏ। ସ୍ୱାମୀର ଚଳନ ଯଦି ଏମିତି ହୁଏ ଯେ ଦଶଜଣ ତାକୁ ଶ୍ରଦ୍ଧା କରନ୍ତି, ସେତେବେଳେ ସ୍ତ୍ରୀ ତାହା ଦେଖି ମଧ୍ୟ ଅନେକ ସମୟରେ ଅନୁଗତ ହୁଏ। ତେବେ ଏହି ଧରଣର ପରିବର୍ତ୍ତନ ହେବାକୁ ଟିକିଏ ସମୟ ନିଏ। ପୁଣି, ଖରାପ ମଧ୍ୟରେ ଭଲ ଯେତେ ଟିକକ ଯାହା ଦେଖାଯାଏ ସେଥିପାଇଁ ସ୍ତ୍ରୀକୁ ପ୍ରଶଂସା କରିବାକୁ ହୁଏ ଏବଂ ତାହା ଘରେ-ବାହାରେ ସର୍ବତ୍ର।

ଆ.ପ୍ର. ୧୯/୧୨.୪.୧୯୫୦

## ।। କୃଷ୍ଟିଗତ ବ୍ୟାଭିଚାରର ପ୍ରତିକାର କେଉଁଠି ।।

ଥରେ-ଥରେ ମୋର ମନେ ହୁଏ ଦେଶ ମଧ୍ୟରେ ଯେପରି ଗୋଟିଏ cultural debauchery (ସାଂସ୍କୃତିକ ବ୍ୟାଭିଚାର) ପ୍ରବେଶ କରିଛି। ଆମ୍ଭମାନଙ୍କର କୃଷ୍ଟି କଣ, ଧର୍ମ କଣ, ବୈଶିଷ୍ଟ୍ୟ କଣ, ସେ-ସମ୍ବନ୍ଧରେ ଆମ୍ଭମାନଙ୍କର ସ୍ୱଷ୍ଟ ଧାରଣା ନାହିଁ। ତେଣୁ ଶତ ଦୁଃଖ ସହି ମଧ୍ୟ ଇଷ୍ଟ, କୃଷ୍ଟି, ଧର୍ମ ଓ ବୈଶିଷ୍ଟ୍ୟକୁ ଜାବୁଡ଼ି ଧରି ରଖିବାର ବୁଦ୍ଧି ପୁରୁଷ-ନାରୀ ସମସ୍ତଙ୍କ ଭିତରୁ ଅପସୃତ ହୋଇ ଯାଉଛି। ଏହାଦ୍ୱାରା ମଣିଷମାନଙ୍କର ଆତ୍ମିକ ଓ ନୈତିକ ମାନ ଖସି ଯାଉଛି। ବିବାହ ସମ୍ବନ୍ଧରେ ମଧ୍ୟ ଆମ୍ଭେମାନେ କୁଳଶୀଳ ଅପେକ୍ଷା ଅର୍ଥନୈତିକ ଦିଗ ଉପରେ ବେଶୀ ନଜର ଦେବାକୁ ଆରମ୍ଭ କରିଛୁ। ଏହିସବୁ ବିଭିନ୍ନ କାରଣରୁ ଭଲ ମଣିଷ କମ୍ ଜନ୍ମ ନେଉଛି। କ୍ଷେତର ଚାଷକୁ ଆମେ ଯେତେ ନଜର ଦେଉ ତା ଠାରୁ ଢ଼େରୀ ବେଶୀ ନଜର ଦେବା ଉଚିତ ଭଲ ମଣିଷ କିପରି ଜନ୍ମ ନେବ ସେହି ଦିଗକୁ। ତା ସହିତ ଦୀକ୍ଷା-ଶିକ୍ଷା ଇତ୍ୟାଦିର ବ୍ୟବସ୍ଥା ଦରକାର। ଏପରି ସବୁ ମଣିଷ ଜନ୍ମ ଗ୍ରହଣ କରିବା ଦରକାର ଯେଉଁମାନେ ସାରା ଦୁନିଆକୁ

ମଙ୍ଗଳର ପଥ ଦେଖାଇ ପାରିବେ। ଘରେ-ଘରେ ଯେପରି ନାରାୟଣଙ୍କର ଆବିର୍ଭାବ ହୁଏ ସେହିପରି ବ୍ୟବସ୍ଥା କରିବାକୁ ହେବ। ଏକ ସମୟରେ କହୁଥିଲେ ଭାରତରେ ତେତ୍ରିଶ କୋଟି ଦେବତା ଥିଲେ। ତା ମାନେ ଭାରତର ଅଧିକାଂଶ ମଣିଷ ସେତେବେଳେ ଦେବୋପମ ଚରିତ୍ରସମ୍ପନ୍ନ ଥିଲେ। ଏହିପରି ମଣିଷ ଜନ୍ମ ହେଲେହିଁ ସେମାନେ ଦେଶର ସନାତନ ଗୌରବ ପୁନରୁଦ୍ଧାର କରି ପାରିବେ। ଆ.ପ୍ର. ୧୯/୩୦.୪.୧୯୫୦

## ।। ସମାଜ-ସଂହତିର ପାଇଁ କଣ ପ୍ରୟୋଜନ।।

ହରିଜନ-ଆନ୍ଦୋଳନ କରି ହିନ୍ଦୁ ସମାଜକୁ ଆହୁରି ଦୁର୍ବଳ କରି ଦିଆଯାଇଛି। ସମାଜର ସଂହତି ପାଇଁ ପ୍ରୟୋଜନ ପୂରୟମାଣ ଏକାଦର୍ଶର ଅନୁସରଣ ଏବଂ ଅନୁଲୋମ ଅସବର୍ଣ୍ଣ ବିବାହ। ଏହି ଦୁଇଟି ଜିନିଷ ଯଦି ଥାଏ ତା ହେଲେ ହିନ୍ଦୁ ସମାଜ କାହିଁକି, ବିରାଟ ମାନବ-ସମାଜର ସଂହତି ସହଜ ହୋଇ ଉଠେ। ଅନୁଲୋମକ୍ରମରେ ଅନ୍ୟ ସମ୍ପ୍ରଦାୟର ଝିଅ ବିବାହ କରିବାରେ କୌଣସି ଦୋଷ ନାହିଁ ଏବଂ ଏହା କରିବା ଦ୍ୱାରା ସମାଜର ପରିଧି ଆପେ ଆପେ ବଢ଼ିଯାଏ। ଆମ୍ଭମାନଙ୍କର ବୁଦ୍ଧି ହେଲା ନୀଚକୁ ଉଚ୍ଚ କରାଇବା, ଉଚ୍ଚକୁ ନୀଚ କରାଇବା ନୁହେଁ। ଆଜିକାଲି ପ୍ରତିଲୋମର ଧୂଆଁ ଉଠିଛି। ସେଥିରେ କିନ୍ତୁ ସମସ୍ତଙ୍କର ସର୍ବନାଶ। ଆ.ପ୍ର. ୧୯/୩୦.୪.୧୯୫୦

## ।। ପ୍ରତିଲୋମ ବିବାହ ଦୋଷଣୀୟ କାହିଁକି।।

ପ୍ରଜନନର ଗୋଟିଏ ବିଧି ଅଛି। ସେ-ବିଧିର ବ୍ୟତ୍ୟୟ ହେଲେ ଜାତିକୁ ଯେପରି ତାର ଫଳ ଭୋଗ କରିବାକୁ ହୁଏ, ତାର ପରିବେଶକୁ ମଧ୍ୟ ସେହିପରି ତାର ଫଳ ଭୋଗ କରିବାକୁ ହୁଏ। ଅନ୍ତର୍ଜଗତରେ ସେ ଏକ ଅଭିଶପ୍ତ ଜୀବନ ବହନ କରି ଚାଲେ। ଜୈବୀ-ସଂସ୍ଥିତିର ଗୋଳମାଳରେ ମଣିଷକୁ ଯେ କି କଷ୍ଟ ପାଇବାକୁ ହୁଏ ତାହା କେବଳ ଭୁକ୍ତଭୋଗୀ ମାତ୍ରହିଁ ବୁଝେ। ଆ.ପ୍ର. ୧୯/୩୧.୫.୧୯୫୦

## ।। ସୁବିବାହରେ କଣ ହୁଏ।।

ଜନ୍ମର ସାଥେ ସାଥେ ଏକ ଜୈବି-ସଂସ୍ଥିତି ହୁଏ। ସେହିଟାହିଁ ମଣିଷର ଆୟୁ, ବୁଦ୍ଧି, ବଳ ପ୍ରଭୃତି ନିୟନ୍ତ୍ରିତ କରେ। ଆଗରୁ ବିବାହାଦି, ଗର୍ଭାଧାନ ପ୍ରଭୃତି ସଂସ୍କାର ଏପରି ଭାବରେ ହେଉଥିଲା ଯେଉଁଥିରେ ଦୀର୍ଘାୟୁ, ସୁସ୍ୱାସ୍ଥ୍ୟ, ସଦ୍‌ଗୁଣ ପ୍ରଭୃତି ସହଜ

ହୋଇ ଉଠୁଥିଲା। ବର୍ତ୍ତମାନ ସଦ୍‌ଗୁଣସମ୍ପନ୍ନ ମଣିଷର ଜନ୍ମ ବିରଳ। ପୁଣି ଆଜିକାଲି ପ୍ରତିଲୋମର ଦିଗକୁ ଝୋଙ୍କ ଉଠିଛି। ସେଥିରେ କୌଣସି ପ୍ରକାରରେ ଭଲ ମଣିଷର ଆବିର୍ଭାବ ହୋଇ ପାରେ ନା। ଏଥିରେ ଅସଙ୍ଗତି ଓ ବିପର୍ଯ୍ୟୟ ସୃଷ୍ଟି ହେବହିଁ।

ଆ.ପ୍ର. ୧୯/୧୮.୭.୧୯୫୦

## ।। ମହତ ଲୋକର ସନ୍ତାନ ସେମାନଙ୍କ ପରି ହୁଏନା କାହିଁକି।।

ଅନେକ ସମୟରେ ସେମାନଙ୍କର wife (ସ୍ତ୍ରୀ) ସେମାନଙ୍କଠାରେ reach (ପହଞ୍ଚି) ପାରେ ନାହିଁ। Soil (ମାଟି) ଯଦି ଠିକ୍‌ହୁଏ ତେବେ ବୀଜ-ଅନୁପାତିକ ଗଛ ହେବାର କଥା। ସାଧାରଣତଃ ବାପା ଉପରେ ଯଦି ଟାଣଥାଏ, ବାପା ପାଇଁ ଯଦି କିଛି କରିବା ଥାଏ, ଦେବା ଯଦି କିଛି ଥାଏ, ତାହେଲେ ବାପାର ଚରିତ୍ରଗତ ଗୁଣଗୁଡ଼ିକ ଭଲପାଇବାର ଭିତର-ଦେଇ ସନ୍ତାନର ଆୟତ୍ତ ହୁଏ। କାରଣ ଟାଣର ଲକ୍ଷଣ ହେଲା ସେବା। ତାହା ନ ହେଲେ ବାପ ପାଖରୁ ଯଦି କେବଳ ପାଏ, ତାଙ୍କ ପାଇଁ କିଛି କରା ନ ହୁଏ, ସେଥିରେ ଭଲ ପାଇବା ଗଜାଏ ନାହିଁ। ତାଙ୍କର ସଦ୍‌ଗୁଣ imbibe (ଗ୍ରହଣ)-ମଧ୍ୟ କରେ କମ୍। ଆ.ପ୍ର. ୧୯/୧୭.୭.୧୯୫୦

## ।। ଜନନ-ବ୍ୟାପାରରେ ନୂତନତର ରକ୍ତ ଭଲ ନ ହେଲେ କଣ ହୁଏ।।

ଜନନ-ବ୍ୟାପାରରେ newer blood (ନୂତନତର ରକ୍ତ) ଭଲ ନ ହେଲେ ଜୈବୀ-ସଂସ୍ଥିତି nurture (ପରିପୋଷିତ) ହୁଏନା Dwarf (ଖର୍ବ) ହୋଇ ଯାଏ, intelligence (ବୁଦ୍ଧି) କମିଯାଏ। ଆ.ପ୍ର. ୧୯/୧୯.୭.୧୯୫୦

## ।। କୌଳିନ୍ୟ ପ୍ରଥାର ଉପରେ ଜୋର ଦେବାକୁ ହେବ କାହିଁକି।।

ମୋର ମନେ ହୁଏ, ମଣିଷ ଯେପରି ଜନ୍ମଗତ ଭାବରେ ଶୁଭସଂସ୍କାର ଲାଭ କରି ପାରେ, ସେଇଥି ପାଇଁହିଁ ଏହାର ପ୍ରୟୋଜନ। ସମାଜର ବିବର୍ତ୍ତନ ପାଇଁ ଦରକାର ମହଛର ଗୁଣ ଓ ଯୋଗ୍ୟତାସମ୍ପନ୍ନ ମଣିଷ। ଏହିସବୁ ଉଚ୍ଚତର ଗୁଣ ଓ ଯୋଗ୍ୟତାର ବିକାଶର ଦିଗକୁ କୂଳୀନମାନଙ୍କ ମଧ୍ୟରେ ବେଶୀ ଝୋଙ୍କ ଦିଆ ଯାଉଥିଲା। ବାହ୍ୟିକ ଐଶ୍ୱର୍ଯ୍ୟର ଉପରେ ସେମାନେ କମ୍ ଗୁରୁତ୍ୱ ଦେଉଥିଲେ। ସେମାନେ ମନପ୍ରାଣ ଦେଇ ଚରିତ୍ରର ସମ୍ପଦ ଓ ପ୍ରଜ୍ଞାର ଐଶ୍ୱର୍ଯ୍ୟକୁ କାମନା କରୁଥିଲେ। ଏହା ଦ୍ୱାରା କିନ୍ତୁ ଜୀବନ-

ଚାଳନା ପାଇଁ ଯାହା ପ୍ରୟୋଜନ, ତାହାର ଅଭାବ ହେଉନଥିଲା। ଯେଉଁମାନେ ପ୍ରବୃତ୍ତି-ଅଭିଭୂତ ହୀନମନ୍ୟ ଅହଂ ଦ୍ୱାରା ପରିଚାଳିତ ହୁଅନ୍ତି, ସେହିମାନେହିଁ ଧନ-ଦୌଲତ, ବାଡ଼ି-ଗାଡ଼ି ଇତ୍ୟାଦିକୁ ଐଶ୍ୱର୍ଯ୍ୟ ବୋଲି ମନେ କରନ୍ତି ଏବଂ ତାକୁ ବାଦ୍‌ଦେଲେ ନିଜକୁ ନିଃସ୍ୱ ବୋଲି ଭାବନ୍ତି। ଭାରତୀୟ ସଂସ୍କୃତିର ମୂଳକଥାହିଁ ହେଲା, ଚାରିତ୍ରିକ ଉତ୍କର୍ଷ-ସାଧନ। ପୁଣି, ଚାରିତ୍ରିକ ଉନ୍ନତି ଯଦି କାହାରି ହୁଏ, ବୈଷୟିକ ଉନ୍ନତି ମଧ୍ୟ ତାର ଅଳ୍ପବହୁତ ହେବାକୁ ବାଧ୍ୟ। ତେବେ ଯେଉଁମାନଙ୍କ ମନରେ ସନ୍ତୋଷ ଥାଏ, ସେମାନେ ବାହ୍ୟିକ ଐଶ୍ୱର୍ଯ୍ୟ ବୃଦ୍ଧିର ଦିଗରେ ବେଶୀ ନଜର ଦିଅନ୍ତି ନାହିଁ।

ଆ.ପ୍ର. ୧୯/୨.୮.୧୯୫୦

## ।। ପ୍ରଜନନ କ୍ଷେତ୍ରରେ ରକ୍ତର ବିଭିନ୍ନ ରକମର ସମ୍ମିଶ୍ରଣ ଭଲ କିନୁହେଁ।।

ଯଦି ବିଧିବିରୁଦ୍ଧ କୌଣସି ସମ୍ମିଶ୍ରଣ ନ ହୁଏ, ତାହେଲେ ଗୋଳମାଳ ହୁଏ ନା। ବୀଜରୁହିଁ ଗଛ, ମାଟିର ଗଛ ତ ନୁହେଁ! ତୁମେ ଯେ-କୌଣସି ବଂଶରୁହିଁ ଝିଅ ବିବାହ କର ନା କାହିଁକି, ସନ୍ତାନ ପାଇବ ପିତୃବର୍ଣ୍ଣ। ଅବଶ୍ୟ ମାଆର ବର୍ଣ୍ଣ ଅନୁଯାୟୀ ଅଲଗା ଅଲଗା ଥାକ ହେବ। ମା କିନ୍ତୁ soil (ମାଟି)। ପ୍ରତିଲୋମ ବିବାହ ହେଲେ ପ୍ରତିଲୋମ ଯୌନ-ସଂଶ୍ରବର ଫଳରେ ପୁରୁଷର ଅନେକଗୁଡ଼ିଏ trait (ଗୁଣ) ଟାଣି ନେଇ ବିଚ୍ଛିନ୍ନ କରି ଦେଇ ଅଲଗା orbit (କକ୍ଷ) ସୃଷ୍ଟି କରି ସନ୍ତାନକୁ ବହୁମୁଖୀ ବିଭିନ୍ନ ବ୍ୟକ୍ତିତ୍ୱର ଗୋଟିଏ ଜଗାଖେଚୁଡ଼ି-ରୂପେ ସୃଷ୍ଟି କରେ। ସେମାନେ କେତେବେଳେ ମଧ୍ୟ integrated personality (ସଂହତ ବ୍ୟକ୍ତିତ୍ୱ) ହୋଇ ଗଢ଼ି ଉଠି ପାରନ୍ତି ନାହିଁ। ସେମାନେ କେତେବେଳେ ଯେ କେଉଁ ଧରଣ ଧରିବେ, ତାର କୌଣସି ଠିକଣା ନ ଥାଏ। ଆ.ପ୍ର. ୧୯/୮.୮.୧୯୫୦

## ।। ପରିବେଶ ଭଲ ହେଲେହିଁ ମଣିଷ ଭଲ ହୋଇ ପାରେ କିନା।।

ପରିବେଶ କାମ କରିବ କାହା ଉପରେ? ସେ ତ କାମ କରିବ ଜୈବୀ-ସଂସ୍ଥିତିର ଉପରେ। ବିହିତ ଜୈବୀ-ସଂସ୍ଥିତି ରହିଲେ, ତାହାହିଁ ପରିବେଶରୁ ପୋଷଣ ଗ୍ରହଣ କରି ନିଜେ ପୁଷ୍ଟ ହୋଇ ଉଠି ପାରେ। ପୋଷଣ ଗ୍ରହଣ କରିବାବାଲା ଯଦି ନ ଥାଏ, ତାହେଲେ ପୋଷଣ ତ ବ୍ୟାହତ ହୋଇ କାନ୍ଦି ଫେରିବାକୁ ଲାଗିବ। ପରିବେଶ ଗୋଟିଏ major factor (ବଡ଼ ଦିଗ), ସେ ବିଷୟରେ ସନ୍ଦେହ କଣ? କିନ୍ତୁ ସେ

ଯାହା ଉପରେ ସାର୍ଥକ-ଭାବରେ କାମ କରି ପାରିବ, ସେହି ଜୈବୀ ସମ୍ଭାବନାଟା ରହିବା ଦରକାର।

ଆଜିକାଲି ବିଭିନ୍ନ ଆନ୍ଦୋଳନରେ ପ୍ରତିଲୋମ ବଢ଼ି ଯାଉଛି। ପ୍ରତିଲୋମ ଯଦି ଭଲ ହୋଇଥାନ୍ତା, ବଢ଼ିଥିଲେ – କ୍ଷତି ନଥିଲା। କିନ୍ତୁ ଏହା ଫଳରେ ମଣିଷଗୁଡ଼ିକୁ ଯେ street-dog (ରାସ୍ତାର କୁକୁର) ପରି ଘୁରିବାକୁ ପଡ଼ିବ ଏବଂ ସେମାନଙ୍କ ମଧ୍ୟରେ ସଂହତି ନ ଥିବାରୁ ସେମାନଙ୍କୁ ଦୁଷ୍ଟଶକ୍ତି କୁକୁଡ଼ା (ମୁର୍ଗୀ) ପରି ଧରି କାଟି-କାଟି ଖାଇବ। ତାହା କଣ ଭଲ? ଆ.ପ୍ର. ୧୯/୮.୮.୧୯୫୦

## ।। ପ୍ରଜନନର କ୍ଷେତ୍ରରେ ମଣିଷ ବେଳକୁ ପୃଥକ ନିୟମ ହେବ କିନା ।।

ସଗୋତ୍ର ବିବାହ ମଧ୍ୟ ଭଲ ନୁହେଁ। ଲାଉ-କଖାରୁ ବେଳକୁ ଗୋଟିଏ ଗଛର ପୁଂ-ବୀଜ ନେଇ ସେହି ଗଛର ସ୍ତ୍ରୀ-ବୀଜକୁ breed (ଜନ୍ମଦାନ) କରାଯାଏ, ତେବେ ଦେଖାଯାଏ ଫଳ ଛୋଟ ହୋଇଯାଏ। ଗଛପତ୍ର, ଗୋରୁ-ମେଣ୍ଢା ବେଳକୁ ଯେଉଁ ନିୟମ, ପ୍ରଜନନ କ୍ଷେତ୍ରରେ ମଣିଷ ବେଳକୁ ମଧ୍ୟ ସେହି ନିୟମ। ଶାସ୍ତ୍ର ଯାହା କହେ ତା ପଛରେ କିନ୍ତୁ ବିଜ୍ଞାନ ଅଛି। ଆମେ ବିଜ୍ଞାନ ମାନିବାକୁ ପ୍ରସ୍ତୁତ, କିନ୍ତୁ ଶାସ୍ତ୍ରର କଥା କହିଲେହିଁ ନାକ ଟେକୁ, ତାର କି କୌଣସି ମାନେ ଅଛି?

ଆ.ପ୍ର. ୧୯/୮.୮.୧୯୫୦

## ।। ବିବାହ ଠିକ୍‌ଭାବରେ ହେଲେ ଏବଂ ସ୍ତ୍ରୀ ସ୍ୱାମୀ ପ୍ରତି ଶ୍ରଦ୍ଧାସମ୍ପନ୍ନ ହେଲେ କଣ ହୁଏ ।।

ବିବାହ ଯଦି ଠିକ୍ ଭାବରେ ହୁଏ ଏବଂ ସ୍ତ୍ରୀ ଯଦି ସ୍ୱାମୀ ପ୍ରତି ଶ୍ରଦ୍ଧାସମ୍ପନ୍ନ ହୁଏ, ତେବେ ସ୍ତ୍ରୀର ovum-ର secretion (ଡିମ୍ବାଣୁର କ୍ଷରଣ) ଅର୍ଥାତ୍ enzyme-ଗୁଡ଼ିକ ପୁରୁଷର gene (ଜିନ୍)-ଗୁଡ଼ିକୁ ଭଲ nurture (ପୋଷଣ) ଦେଇ ପାରେ। ମୋର ମନେ ହୁଏ ଝିଅମାନଙ୍କର ଯୌନଗ୍ରନ୍ଥିଗୁଡ଼ିକ ଏହି ଏନ୍‌ଜାଇମ୍‌ର ଲ୍ୟାବରେଟରୀ (ପରୀକ୍ଷାଗାର)। ପୁରୁଷ-ନାରୀ ପ୍ରତ୍ୟେକେ ଯେତେ ସୁକେନ୍ଦ୍ରିକ ହୁଅନ୍ତି — ବଞ୍ଚିବା-ବଢ଼ିବାର ଆକୂତି ନେଇ, ସେତେହିଁ ସେମାନଙ୍କର ଶରୀର ବିଧାନର ପ୍ରତ୍ୟେକଟି ଯନ୍ତ୍ର ସୁଷ୍ଠୁ ଭାବରେ କ୍ରିୟା କରିବ। ଏହା ଦ୍ୱାରା ଶରୀର, ମନ, ମୁଣ୍ଡ ଏକ ସଙ୍ଗରେ ସ୍ୱଚ୍ଛ ହେବ। ତେଣୁ ଧର୍ମପ୍ରାଣ ମଣିଷ କେତେବେଳେ dull (ବୋକା) ହୁଏ ନା। ସେମାନଙ୍କର ଚଲାବୁଲାରେ ଗୋଟିଏ ଦୀପ୍ତି ଥାଏ। ଆ.ପ୍ର. ୧୯/୯.୮.୧୯୫୦

## ।। ସନ୍ତାନର ଜୀବନୀ-ଶକ୍ତି କିପରିଭାବରେ ନିର୍ଦ୍ଧାରିତ ହୁଏ ।।

ବିହିତ ପରିଣୟ ଯଦି ହୁଏ ଏବଂ ସ୍ତ୍ରୀ ଯଦି ସ୍ୱାମୀଙ୍କ ପ୍ରତି ସୁକେନ୍ଦ୍ରିକ ହୁଏ — ଇଷ୍ଟାନୁଗଭାବରେ, — ପ୍ରବୃତ୍ତିର ପଥରେ ହେଲେ ହେବ ନାହିଁ, ଆଉ ସ୍ୱାମୀର ଯଦି ଶ୍ରେୟଙ୍କ ପ୍ରତି ଟାଣ ଥାଏ, ତେବେ ସୁସନ୍ତାନର ଆବିର୍ଭାବ ସହଜ ହୋଇ ଉଠେ । ଧର, ସ୍ୱାମୀ–ସ୍ତ୍ରୀ ଥିଏଟର ଦେଖିବାକୁ ଗଲେ, ସେଠାରେ ବୁଦ୍ଧଦେବଙ୍କ ଜୀବନ ଅବଲମ୍ବନ କରି ଲେଖା ହୋଇଥିବା ନାଟକ ଦେଖି ଆସିଲେ । ଏହି-ସବୁ ବିଷୟରେ ଆଳାପ କରୁ-କରୁ ସ୍ୱାମୀ–ସ୍ତ୍ରୀର ମିଳନ ହେଲା, ସେତେବେଳେ ସେହି ଭାବସମ୍ପନ୍ନ ସନ୍ତାନର ଆଗମନ ହେବ । ପିତାମାତାଙ୍କର ସମଞ୍ଜସା ଅନୁରାଗ ଓ ମିଳନର ଭିତର–ଦେଇ ସନ୍ତାନର ଜୀବନୀ–ଶକ୍ତି ନିର୍ଦ୍ଧାରିତ ହୁଏ । ପ୍ରତ୍ୟେକଟି cell ଓ organ ସେହିପରି ଭାବରେ adjusted (ବିନ୍ୟସ୍ତ) ହୁଏ । Resisting capacity (ପ୍ରତିରୋଧ କ୍ଷମତା)–ମଧ୍ୟ ଏହାଦେଇ determined (ନିର୍ଦ୍ଧାରିତ) ହୁଏ । ଆମ୍ଭମାନଙ୍କର ଆର୍ଯ୍ୟମାନଙ୍କର ବୁଦ୍ଧିଥିଲା ଘରେ-ଘରେ ଯେପରି ଭଗବାନ ହୁଅନ୍ତି । ମନେ କର ଶତକଡ଼ା ପଚିଶ ଜଣ ମଧ୍ୟ ଯଦି ଶୁଭ ସଂସ୍କାର ନେଇ ଜନ୍ମ ନିଅନ୍ତି, ତାର ପ୍ରଭାବ ମଧ୍ୟ ଅସୀମ ହୁଏ ।

ଆ.ପ୍ର. ୧୯/୧୦.୮.୧୯୫୦

## ।। ଆହାର ଓ ପ୍ରଜନନର ପାରସ୍ପରିକ ସମ୍ପର୍କ କଣ ।।

ପୁଷ୍ଟିକର ଖାଦ୍ୟ ଯଥେଷ୍ଟ ମାତ୍ରାରେ ନ ଖାଇଲେ ଏବଂ ପେଟରେ କିଛି-କିଛି କ୍ଷୁଧା ରହିଲେ endocrene secretion (ଶରୀରର ଆଭ୍ୟନ୍ତରୀଣ ଗ୍ରନ୍ଥିର କ୍ଷରଣ) ବେଶୀ ହୁଏ । ଏହି କ୍ଷରଣ ଯେତେ ବଢ଼େ sexual excitement (କାମୋଦ୍ଦୀପନା) ସେତେ ବଢ଼େ । ଏଥିପାଇଁ ଏବଂ ଦାରିଦ୍ର୍ୟର ନିଷ୍ପେଷଣରେ ମଧ୍ୟ ସତ୍ତାର ପ୍ରବାହ ଠିକ୍ ରଖିବା ପାଇଁ ମଣିଷ ବଂଶବିସ୍ତାର କରି ସନ୍ତାନସନ୍ତତିର ଭିତର-ଦେଇ ବଞ୍ଚିବାକୁ ଚାହେଁ । ତେଣୁ ସାଧାରଣତଃ ଦେଖା ଯାଏ ଅତି ଦରିଦ୍ର ଘରେ ସନ୍ତାନସନ୍ତତି ବେଶୀ ହୁଏ । ଆହାର ସମ୍ବନ୍ଧରେ ମୋର ମନେ ହୁଏ ବିହିତ ମାତ୍ରାରେ ସାତ୍ତ୍ୱିକ ଆହାର ହିଁ ଭଲ ।

ଆ.ପ୍ର. ୧୯/୨୨.୮.୧୯୫୦

## ।। ପ୍ରତିଲୋମ-ସଂମିଶ୍ରଣରେ କି ପ୍ରତିକ୍ରିୟା ହୁଏ ।।

ଏଥିରେ sperm (ବୀଜ), ovum (ରଜ)-ର ତୁଳନାରେ ନିକୃଷ୍ଟତର ଶକ୍ତିସମ୍ପନ୍ନ ହେବାରୁ, ଏକ ଧରଣର atomic rapture (ପାରମାଣବିକ ବିସ୍ଫୋରଣ)

ପରି ହୁଏ। ତା ଫଳରେ ରଜ-ବୀଜର ସମ୍ମିଶ୍ରଣ ହେଲେ-ମଧ୍ୟ ସନ୍ତାନ ପିତୃବୈଶିଷ୍ଟ୍ୟ ଏବଂ ମାତୃବୈଶିଷ୍ଟ୍ୟ – ଦୁଇଟି ବୈଶିଷ୍ଟ୍ୟରୁ ବଞ୍ଚିତ ହୁଏ ଏବଂ ତା ମଧ୍ୟରେ ଗୁଣପନା ଯାହା ଥାଉନା କାହିଁକି, ତାର ବ୍ୟକ୍ତିତ୍ୱ ସ୍ଥୈର୍ଯ୍ୟ ଲାଭ କରେନା। ଗୋଟିଏ ବିଚ୍ଛିନ୍ନ, ବିଶ୍ଳିଷ୍ଟ, ଦୁର୍ବଳ, ଇତସ୍ତତଃମନା, ନିଷ୍ଠାହୀନ ବିଧ୍ୱଂସୀ ଶାରୀରିକ ଓ ମାନସିକ ଭାବ ଉକ୍ତ ସନ୍ତାନ ମଧ୍ୟରେ କ୍ରିୟା କରୁଥାଏ। ସେଥିପାଇଁ କୌଣସି ଗୁରୁତର ବ୍ୟାପାରରେ ସେମାନେ ବିଶ୍ୱାସୀ ଓ ନିର୍ଭରଯୋଗ୍ୟ ହୁଅନ୍ତି ନାହିଁ। ଇଷ୍ଟକୃଷ୍ଟି ଓ ସତ୍ତା-ସମ୍ବର୍ଦ୍ଧନାର ପରିପନ୍ଥୀ ଗୋଟିଏ ପ୍ରବଣତା ସେମାନଙ୍କ ମଧ୍ୟରେ ବିଶେଷ ଭାବରେ ଦେଖା ଯାଏ। ଶ୍ରେୟଙ୍କ ପ୍ରତି ଆନତି ମଧ୍ୟ ସେମାନଙ୍କର ନ ଥାଏ। ପିତୃବୈଶିଷ୍ଟ୍ୟ ଓ ମାତୃବୈଶିଷ୍ଟ୍ୟ– ଉଭୟରୁ ବଞ୍ଚିତ ହୋଇ ସେମାନେ ଯେପରି କେତେଟା ତ୍ରିଶଙ୍କୁର ଅବସ୍ଥା ପ୍ରାପ୍ତ ହୁଅନ୍ତି। କୌଣସି ସଦ୍‌ବିଷୟରେ ସେମାନଙ୍କର conviction (ପ୍ରତ୍ୟୟ) ପକ୍କା ହୁଏନା ଏବଂ ଯେତେବେଳେ କୌଣସି ପ୍ରଲୋଭନ ବା ପରୀକ୍ଷା ଉପସ୍ଥିତ ହୁଏ ସେତେବେଳେ ସେମାନେ ପ୍ରବୃତ୍ତି ନିକଟରେ ଆତ୍ମସମର୍ପଣ କରନ୍ତି ଏବଂ ଧର୍ମ, ଇଷ୍ଟ, କୃଷ୍ଟିକୁ ଅକ୍ଳେଶରେହିଁ ବିସର୍ଜନ ଦିଅନ୍ତି। ଆ.ପ୍ର. ୧୯/୪.୯.୧୯୫୦

## ।। ବୈଶ୍ୟ ବାରୁଜୀବୀ ପୁଅ ବୈଦ୍ୟର ଝିଅକୁ ବିବାହ କରି ପାରିବ କିନା।

ଜଣେ* କହିଲେ – ମୋର ପୁଅ ଜଣେ ବୈଦ୍ୟ**ର ଝିଅକୁ ବିବାହ କରିପାରିବ ବୋଲି ଲୋକେ କୁହନ୍ତି।

ଶ୍ରୀଶ୍ରୀଠାକୁର – ନିଜର ସର୍ବନାଶ ଆଉ କିପରି କରିବ ? ଏହାଦ୍ୱାରା ଯେ କେବଳ ସେହି ଝିଅଟି ଯିବ ତା ତ ନୁହେଁ, ତୁମର ବଂଶ ମଧ୍ୟ ନିକେଶ ହେବ। ଆମେ ଯେପରି ନିଜର ସର୍ବନାଶ କରିବାର ଆତ୍ମଘାତୀ ପରିକଳ୍ପନାରେ ନିଜକୁ ପକେଇ ଦେଇଛୁ। ଆ.ପ୍ର. ୧୯/୧୧.୯.୧୯୫୦

*ବୈଶ୍ୟ ବର୍ଣ୍ଣ, ବାରୁଜୀବୀ ** ବିପ୍ର ପିତା ବୈଶ୍ୟ ମାତା ଠାରୁ ଜାତକଙ୍କୁ ବୈଦ୍ୟ କହନ୍ତି। ଏମାନେ ଅସଲରେ ଅନ୍ୱଷ୍ଠ ବିପ୍ର।

## ।। ବହୁ ବିବାହର ଯୋଗ୍ୟ କେଉଁମାନେ।।

ସୁକେନ୍ଦ୍ରିକ ଯେଉଁମାନେ, ଯେଉଁମାନଙ୍କର ଇନ୍ଦ୍ରିୟସଂଯମ ଅଛି, ଧକ୍କା ଦେଲେ ମଧ୍ୟ ଯା–ଖୁସୀ କରେ ନା, ସୁନିୟନ୍ତ୍ରିତ ଯେଉଁମାନେ, ସେହିମାନେହିଁ ବହୁବିବାହ କରିପାରନ୍ତି। ଆ.ପ୍ର. ୧୯/୨୩.୧୦.୧୯୫୦

## ।। ନାରୀ ଏକନିଷ୍ଠ ନ ହେଲେ କଣ ହୁଏ ।।

ପୁରୁଷ ଆଦର୍ଶପ୍ରାଣ ନ ହେଲେ ବିକେନ୍ଦ୍ରିକ ହୁଏ, ଆଉ ନାରୀ ସ୍ୱାମୀଙ୍କ ପ୍ରତି ଏକନିଷ୍ଠ ନ ହେଲେ ବ୍ୟଭିଚାରୀ ହୋଇ ଉଠେ । ବହୁପୁରୁଷର ଛାପ ମଥାରେ ଥିବାରୁ, ସେମାନଙ୍କର ସନ୍ତାନ ମଧ୍ୟ ବିକେନ୍ଦ୍ରିକ ହୁଏ । ପୁରୁଷ ଆଦର୍ଶପ୍ରାଣ ନ ହୋଇ କାମାର୍ତ୍ତ ହୋଇ ବହୁବିବାହ କରିବା ଠିକ୍ ନୁହେଁ । ଏହା ଦ୍ୱାରା ସମାଜର କ୍ଷତି ହୁଏ ।

ଆ.ପ୍ର. ୧୯/୨୩.୧୦.୧୯୫୦

## ।। ମଣିଷର ଚାଷ ନ କରିଲେ କଣ ହେବ ।।

ଆମେ ଗୋରୁ, ଘୋଡ଼ା, ଛେଳି, ମେଣ୍ଢା, କୁକୁର, ଧାନ, ଶାଗ-ସବଜୀ ସବୁ – କିଛିର ଚାଷ କରୁ — କିନ୍ତୁ ମଣିଷ ଚାଷ ଯଦି ନ କରୁ, – ମଣିଷର ଜୈବୀ-ସଂସ୍ଥିତି ଯାହାଦ୍ୱାରା ଭଲ ହୁଏ, ସେହିପରି eugenic adjustment (ସୁପ୍ରଜନନର ବ୍ୟବସ୍ଥିତି) ଯଦି ନ କରୁ ତ (କିଛିହିଁ) ହେବ ନାହିଁ । Street dog (ରାସ୍ତାର କୁକୁର) ପରି ହୋଇ ଘୁରି ବୁଲିବ । କୁଳୀନର ଝିଅ ମୌଳିକ ଘରକୁ ଯିବ ଏହା ମଧ୍ୟ ଠିକ୍ ନୁହେଁ । ଆ.ପ୍ର. ୧୯/୨୮.୧୦.୧୯୫୦

## ।। ଝିଅମାନଙ୍କର ବିବାହର ବୟସ କେତେ ହେବା ଉଚିତ ।।

ଝିଅମାନଙ୍କର ବେଶୀ ବୟସରେ ବିବାହ ଦେବା ଭଲ ନୁହେଁ । ମୋର ମନେ ହୁଏ, ପୂର୍ବେ ଯେଉଁ ଗୌରୀ ଦାନର ପ୍ରଥା ଥିଲା, ତାହାହିଁ ଭଲ ଥିଲା । ତେବେ ଆଜିକାଲି ଷୋଢ଼ଶବର୍ଷ ବୟସ ମଧ୍ୟରେ ବିବାହ ହେବା ଉଚିତ । ତା ଉପରକୁ କୌଣସି ପ୍ରକାରେ ଯିବା ଉଚିତ୍ ନୁହେଁ । Statere (ରାଜ୍ୟର) ଆଇନ୍ ଭିତରେ ଏହା enforce (କାର୍ଯ୍ୟକାରୀ) କରିବା ଯୁକ୍ତିଯୁକ୍ତ ।

ଆ.ପ୍ର. ୨୦/୧୫.୧୨.୧୯୫୦

## ।। କେତେବେଳେ ବେଶୀ ବୟସର ବିଧବାରମଧ୍ୟ ପୁନର୍ବିବାହ ହେବା ଭଲ ।।

(ଯେଉଁମାନେ ବିଧବା), ଯେଉଁମାନଙ୍କର ସନ୍ତାନ ହୋଇଛି ସେମାନଙ୍କର ବିବାହ ହେବା ଉଚିତ ନୁହେଁ । ତେବେ otherwise (ଅନ୍ୟଭାବରେ) ଯଦି ନଷ୍ଟ ହେବାର ସମ୍ଭାବନା ଥାଏ ତେବେ ବେଶୀ ବୟସର ବିଧବାର ମଧ୍ୟ ପୁନର୍ବିବାହ ହେବା ଭଲ – ଏହି ଭାବରେ ନଷ୍ଟ ହେବା ଅପେକ୍ଷା । ଅବଶ୍ୟ ତାହା abnormal (ଅସ୍ୱାଭାବିକ) ବ୍ୟାପାର । ଆ.ପ୍ର. ୨୦/୧୫.୧୨.୧୯୫୦

## ।। ଗର୍ଭାଧାନ ସଂସ୍କାର ପ୍ରବର୍ତ୍ତନ କରିବା ଦରକାର କାହିଁକି ।।

ଶାସ୍ତ୍ରରେ ଯେପରି ଅଛି, ସେହି ଭାବରେ ଗର୍ଭାଧାନ ସଂସ୍କାର ପ୍ରବର୍ତ୍ତନ କରି ଯଦି ଉନ୍ନତତର ଗୁଣଗୁଡ଼ିକୁ ସନ୍ତାନ ଭିତରେ ସଞ୍ଚାରିତ କରାଯାଏ, ତେବେ ମଣିଷର ଦୁଃଖ, କଷ୍ଟ, ଦୈନ୍ୟ ଅନେକପରିମାଣରେ ଘୁଞ୍ଚିଯାଏ। ଆ.ପ୍ର. ୨୦/୧୮.୧.୧୯୫୧

## ।। ସୁଖୀ ଦାମ୍ପତ୍ୟ ଜୀବନରେ ସୁପ୍ରଜନନ କେତେବେଳେ ସମ୍ଭବ ହୁଏ ।।

ବିତୃଷ୍ଣାରୁ ଭଲ ସନ୍ତାନ ଆସେ ନାହିଁ। ସ୍ତ୍ରୀର ଯଦି ସ୍ୱାମୀଙ୍କ ପ୍ରତି ସୁକେନ୍ଦ୍ରିକ ଟାଣ ଥାଏ ଏବଂ ଉଭୟଙ୍କ ମଧ୍ୟରେ ଏକତ୍ୱବୋଧ ପ୍ରବଳ ହୁଏ, ତେବେ ହୁଏ। ଆଉ ସ୍ୱାମୀ-ସ୍ତ୍ରୀ ଉପଗତ ହେବା ପୂର୍ବରୁ ଯଦି ଧରନ୍ତୁ ଚୈତନ୍ୟଦେବଙ୍କ କଥା ଆଲୋଚନା କରୁ-କରୁ ଏହି ଭାବରେ ଭାବିତ ହୋଇ ମୁଗ୍ଧ ଆକର୍ଷଣରେ ମିଳିତ ହୁଅନ୍ତି, ତେବେ ହୁଏତ ଏହି ଭାବର ସନ୍ତାନ ଆସି ପାରେ। ଉଭୟଙ୍କର ସତ୍‌ଭାବରେ ଉଦ୍ଦୀପିତ ହେବା ପ୍ରୟୋଜନ। ଆଉ, ସ୍ତ୍ରୀର ଚାହିଦା ବ୍ୟତୀତ ମିଳିତ ହେବା ଭଲ ନୁହେଁ। ଉଭୟଙ୍କ ମଧ୍ୟରେ କୌଣସି ଶ୍ରେୟଙ୍କୁ ପୂରଣ କରିବାର ଆକୂତି ରହିବା ଉଚିତ। ତେବେହିଁ ଭଲ ହୁଏ।
ଆ.ପ୍ର. ୨୦/୧୮.୧.୧୯୫୧

## ।। ପ୍ରତିଲୋମ ସନ୍ତାନ ଲେଖାପଢ଼ାରେ ଭଲ ହେଲେ କଣ ହେବ ।।

ସୁଶୀଲଦା କହିଲେ – ପ୍ରତିଲୋମ ସନ୍ତାନ ଲେଖାପଢ଼ାରେ ଭଲ ହୋଇ ପାରେ, କିନ୍ତୁ ଭକ୍ତିମାନ ହୁଏ ନା।

ଶ୍ରୀଶ୍ରୀଠାକୁର – ଲେଖାପଢ଼ା ମଧ୍ୟ ଭଲ ହୁଏନା।

ସୁଶୀଲଦା – ଦେଖୁଛି ଅନେକଙ୍କର ତ ଲେଖାପଢ଼ାରେ ଭଲ ହୁଏ।

ଶ୍ରୀଶ୍ରୀଠାକୁର – ଲେଖାପଢ଼ାରେ ଯେତେ ଭଲ ହେବ, ସେତେ ବିଚ୍ଛିନ୍ନ ହେବ। ବିଦ୍ୟା ଦେଇ ଇଷ୍ଟକୃଷ୍ଟିର ବିରୋଧିତା କରିବ। ଆ.ପ୍ର. ୨୦/୧୦.୨.୧୯୫୧

## ।। ଆମେ କେଉଁଠାକୁ ଯାଉଛୁ ।।

ଆଗ କାଳରେ, ଆମ୍ଭମାନଙ୍କର ପୂର୍ବପୁରୁଷମାନେ ସବୁକିଛିର ବୈଜ୍ଞାନିକ ବ୍ୟାଖ୍ୟା ନ ଜାଣିଲେ ମଧ୍ୟ custom (ପ୍ରଥା)-ଗୁଡ଼ିକ ମାନି ଚାଲୁଥିଲେ – ତାହାର ସୁଫଳ ଯାହା ଫଳୁଥାଏହିଁ। ସତୀତ୍ୱ ଜିନିଷଟାର ଖୁବ୍ ମୂଲ୍ୟ ଥିଲା। ସ୍ତ୍ରୀ ତା ସ୍ୱାମୀଙ୍କୁ ନିଜର

ସ୍ୱାର୍ଥ ମନେ କରୁଥିଲା। ଏହି ସଶ୍ରଦ୍ଧଭାବ ଯୋଗୁଁ ଭଲ-ଭଲ ସନ୍ତାନର ଜନ୍ମ ହେଉଥିଲା।

ଆମ ଦେଶରେ ବ୍ରାହ୍ମସମାଜର ଯୁଗ ଠାରୁ ଧୀରେ-ଧୀରେ ପ୍ରତିଲୋମ ଆରମ୍ଭ ହୋଇଛି। ଏହାର ଫଳ ଭଲ ହୁଏନା। ଆଜି ଆମ ଦେଶରେ ଉପଯୁକ୍ତ ମଣିଷ ମିଳୁ ନାହିଁ। କେବଳ ଆମ ଦେଶରେ ନୁହେଁ, ଇଂଲଣ୍ଡ, ଆମେରିକା ପ୍ରଭୃତି ଦେଶରେ ସତୀତ୍ୱ ଯେତେ ଅନାଦୃତ ହୋଇଛି, ବିବାହ-ବିଚ୍ଛେଦ ଯେତେ ବଢ଼ି ଯାଉଛି, ସେତେହିଁ ମଣିଷର ଅଭାବ ହେଉଛି। ବଡ଼ ପ୍ରତିଭା ମିଳୁ ନାହିଁ। ତାଙ୍କ ଦେଶର ଲୋକମାନେହିଁ ଏ-କଥା କହୁଛନ୍ତି। ଝିଅ ଯଦି ମନେ କରେ ଯେ, ବିବାହ-ସମ୍ବନ୍ଧ ଛେଦ୍ୟ, ତେବେ ତା ମଧ୍ୟରେ ସହ୍ୟ, ଧୈର୍ଯ୍ୟ, ଅଧ୍ୟବସାୟ ଇତ୍ୟାଦି ରହେନା। ବଞ୍ଚାନ୍ତି ତ ଝିଅମାନେ। ଏମାନେ ଜନ୍ମ ଦିଅନ୍ତି, ଖୁଆନ୍ତି-ପିଆନ୍ତି, ଗୃହ ସଫା କରନ୍ତି, ଯାହା-କିଛି ଏମାନେ କରନ୍ତି। ଏମାନଙ୍କ କୋଳରେ ଏମ୍-ଏ., ପି.ଏଚ୍-ଡି. ଯାହା କିଛି ହୁଏ। ଆଜି ଯେଉଁଠାକୁ ଛୁଟି ଚାଲିଛୁଁ ସେଠାରେ ବୋହୂ, ଝିଅ, ଘର-ସଂସାର, ନିଜଲୋକ, କୃଷ୍ଟି – କିଛି ବୋଲି କିଛି ରହିବ ନାହିଁ। ଆ.ପ୍ର. ୨୦/୧୨.୨.୧୯୫୧

## ॥ ପ୍ରତିଭା କିପରି ଗଜାଏ ॥

ପ୍ରତିଭା ଏମିତି-ସେମିତି ଗଜାଏ ନାହିଁ। ଏହା ପଛରେ ଦରକାର ଉପଯୁକ୍ତ custom (ପ୍ରଥା) ଓ instinct (ସଂସ୍କାର)। ଆମେ ତାଙ୍କୁ (ଈଶ୍ୱରଙ୍କୁ) ବିଧାତା କହୁ। ବିଧାତା କହି ମଧ୍ୟ ଯଦି ଯାହା-ତାହା କରି ଚାଲି ଭଲ ଭଲ ଫଳ ପାଇବାକୁ ଚାହୁଁ, ତାହା ହେବ ନାହିଁ। ଗୋଟିଏ crystal (ସ୍ଫଟିକ) ଯଦି ପାଇବାକୁ ଚାହୁଁ ତାର ବିଧି (ନିୟମ) ଅନୁସରଣ କରି ପାଇବାକୁ ହେବ। ଆ.ପ୍ର. ୨୦/୧୨.୨.୧୯୫୧

## ॥ ବୈଶିଷ୍ଟ୍ୟର ଅନୁପୂରକ କରି ବିବାହ ଦେଲେ କଣ ହୁଏ ॥

ଆମ୍ବଗଛ ପଣସ ଗଛ ହୁଏନା। ପଣସଗଛ ଆମ୍ବଗଛ ହୁଏନା। ସଜନାଗଛରେ ଗୋଲାପ ଫୁଟେ ନାହିଁ। ଲାଲ, ଧଳା, ହଳଦିଆ ଗୋଲାପ ତେଣୁ ଗଛରେ ଫୁଟେ, ଅନ୍ୟଟା ଫୁଟେନା। ପ୍ରତ୍ୟେକଟାରହିଁ ବୈଶିଷ୍ଟ୍ୟ ଅଛି। ତେଣୁ ବିବାହ ଦେବାକୁ ହୁଏ ବୈଶିଷ୍ଟ୍ୟର ଅନୁପୂରକ କରି। ପରସ୍ପରର କୁଳସଂସ୍କୃତି ଓ ବ୍ୟକ୍ତିଗତ ବୈଶିଷ୍ଟ୍ୟର ସଙ୍ଗତି ଦେଖି ବିବାହ ଦେବାକୁ ହୁଏ। ସେଥିରେ ଅଙ୍କୁରଣ ଭଲ ହୁଏ।

ଆ.ପ୍ର. ୨୦/୧୨.୨.୧୯୫୧

## ।। ସୁଜନନର ଯବନିକା ପଡ଼ି ଯାଇଛି କାହିଁକି ।।

ଭାରତ କଣ, ପାଶ୍ଚାତ୍ୟ କଣ, ସବୁଆଡ଼େ ବିଶିଷ୍ଟ ମଣିଷ କମ୍ ଜନ୍ମ ନେଉଛନ୍ତି, ଯେପରି ଯବନିକା ପଡ଼ିଯାଇଛି । ପୁରୁଷର ନାହିଁ Ideal centric attitude (ଆଦର୍ଶ କେନ୍ଦ୍ରିକ ଭାବ), ସ୍ତ୍ରୀଲୋକର ନାହିଁ concentric chastity (ସୁକେନ୍ଦ୍ରିକ ସତୀତ୍ୱ) । ଏହି ମାନସିକତାର ଛାପ ନେଇ ତ ଛୁଆପିଲା ଜନ୍ମ ନିଅନ୍ତି, ଭଲ ହେବ କିପରି?

ଆ.ପ୍ର. ୨୦/୧୩.୨.୧୯୫୧

## ।। କୂଳୀନ କାୟସ୍ଥ ଠିକ୍ ରହିଲେ କଣ ହୋଇ ପାରେ ।।

ଶ୍ରୀଶ୍ରୀଠାକୁର ଜଣକୁ କହିଲେ – କୂଳୀନକୁ ଠିକ୍ ରଖିବା ଦରକାର । କୂଳୀନର ସଂଖ୍ୟା ବଢ଼ିବା ଦରକାର । କୂଳୀନ କାୟସ୍ଥ ଯଦି ଠିକ୍ ରହେ, ତେବେ ବ୍ରାହ୍ମଣ ଓ ଆଉ ସମସ୍ତଙ୍କୁ ବଞ୍ଚାଇ ପାରିବେ ।

ପ୍ରଶ୍ନ – ଆଜିକାଲି କାୟସ୍ଥମାନେ ଅନେକେ ମନ୍ତ୍ରପାଠ ସମୟରେ ଦାସ କଥା ବ୍ୟବହାର କରିବାକୁ ଚାହାନ୍ତି ନାହିଁ ।

ଶ୍ରୀଶ୍ରୀଠାକୁର – ଦାସ ଆସିଛି ଦା-ଧାତୁରୁ । ଦା-ଧାତୁ ମାନେ ଦାନ । ଯେ ନିଜକୁ ଆଦର୍ଶ ଓ କୃଷ୍ଟିର କାର୍ଯ୍ୟରେ ସମର୍ପଣ କରିଛି ସେହିଁ ହେଲା ଦାସ ।

ଆ.ପ୍ର. ୨୦/୧୬.୨.୧୯୫୧

## ।। ବିରୂପ ସ୍ତ୍ରୀର ପ୍ରଭାବରେ କଣ ହୁଏ ।।

ବିରୂପ ସ୍ତ୍ରୀର ପ୍ରଭାବ ସ୍ୱାମୀର ଆୟୁ ଯେ କମାଇ ଦିଏ ଏହା ଠିକ୍ । ସତ୍ତାର ଉପରେ ବିରୁଦ୍ଧ ସଂଘାତ ଦେବାକୁ ଲାଗେ । ତା ଫଳରେ ପୁରୁଷର ଶରୀର-ମନର ଉପର ଦେଇ ଯେପରି ଗୋଟିଏ ଭୂମିକମ୍ପ ଚାଲିଥାଏ । Nerve (ସ୍ନାୟୁ), muscle (ପେଶୀ) ଏ-ସବୁ ଶିଥିଳ ହୋଇ ଉଠେ ।

ଆ.ପ୍ର. ୨୦/୧୮.୩.୧୯୫୧

## ।। ଆମେ ରୁଗ୍‌ଣ ଓ ଦୁର୍ବଳ ହୋଇ ପଡୁଛୁ କାହିଁକି ।।

ଆଗରୁ ଆମ୍ଭମାନଙ୍କର କେତେଗୁଡ଼ିଏ ସଦାଚାର ଓ ସୁଜନନ-ନୀତି ମାନିବାର ବିଷୟ ଥିଲା । ସେଗୁଡ଼ିକ ପାଳନ କରିବାର ଇଚ୍ଛା ଆଜି ଆମ୍ଭମାନଙ୍କର ନାହିଁ । ତେଣୁ ଦିନକୁ ଦିନ ରୋଗନିରୋଧୀ-ଶକ୍ତି ଆମ୍ଭମାନଙ୍କର କମି ଯାଉଛି । ଆମେ ରୁଗ୍‌ଣ ଓ

ଦୁର୍ବଳ ହୋଇ ପଡୁଛୁ । ଆମ୍ଭମାନଙ୍କର ସୁପ୍ରଜନନ-ଶକ୍ତିମଧ୍ୟ କମି ଯାଉଛି । ପଞ୍ଜିକାରେ ଯେପରି ବିଶେଷ–ବିଶେଷ ତିଥିରେ ଲେଖା ଅଛି — ସ୍ତ୍ରୀ, ତୈଳ, ମତ୍ସ୍ୟସମ୍ଭୋଗ ନିଷେଧ । ଆଜିକାଲି ଆମେ ସେସବୁ ମାନୁ ନାହୁଁ । ଅନେକ କିଛି ନ ମାନିବା ଫଳରେ ଆଜି ଆମ୍ଭମାନଙ୍କର ଅବସ୍ଥା ଏପରି ହୋଇଛି । ଆ.ପ୍ର. ୨୦/୨୪.୫.୧୯୫୧

## ।। କାୟସ୍ଥ ମାନଙ୍କର ଉତ୍ପତ୍ତି କିପରି ହେଲା ।।

ପରଶୁରାମ ଯେତେବେଳେ ପୃଥିବୀ ନିଃକ୍ଷତ୍ରିୟ କଲେ, ସେତେବେଳେ ଗର୍ଭବତୀ କ୍ଷତ୍ରିୟା ନାରୀମାନଙ୍କୁ ମାରି ନଥିଲେ ନା କଣ । ପରେ ସେମାନଙ୍କ ଗର୍ଭରୁ ଯେଉଁ ସନ୍ତାନ ହେଲେ, ସେମାନେ କାୟସ୍ଥ ବୋଲି ପରିଚିତ । ଆ.ପ୍ର. ୨୦/୨୬.୫.୧୯୫୧

## ।। ସନ୍ତାନସନ୍ତତିମାନଙ୍କର ଆୟୁ କମିଯାଏ କେତେବେଳେ ।।

ପୁରୁଷମାନଙ୍କର ବଂଶ ଯଦି ଦୀର୍ଘାୟୁ ହୁଏ, କିନ୍ତୁ ସ୍ତ୍ରୀର ପିତୃକୁଳ ଯଦି ସ୍ୱଳ୍ପାୟୁ ହୁଏ, ତେବେ ସେମାନଙ୍କ ମିଳନରେ ପରବର୍ତ୍ତୀ ବଂଶଧରମାନଙ୍କର ଅର୍ଥାତ୍ ସେମାନଙ୍କର ସନ୍ତାନସନ୍ତତିମାନଙ୍କର ଆୟୁ କମି ଯାଏ । ଆ.ପ୍ର. ୨୦/୧୧.୬.୧୯୫୧

## ।। ଜନ୍ମ ନେବା ଏକ କଠିନ ବିଷୟ କାହିଁକି ।।

ପ୍ରଶ୍ନ – ପ୍ରକୃତି ମଧ୍ୟରେ ତ ଗୋଟିଏ ମିତବ୍ୟୟିତା ଦେଖା ଯାଏ । (ତେବେ) ଯେଉଁଠାରେ ଗୋଟିଏ ସନ୍ତାନ ହେବାକୁ ଗୋଟିଏ ଶୁକ୍ରକୀଟ ଲାଗେ, ସେଠାରେ ଲକ୍ଷ-ଲକ୍ଷ ଶୁକ୍ରକୀଟର ଆମଦାନୀ ହୁଏ କାହିଁକି ?

ଶ୍ରୀଶ୍ରୀଠାକୁର – ଲକ୍ଷ-ଲକ୍ଷର ମଧ୍ୟରେ ସ୍ତ୍ରୀର ଡିମ୍ବକୋଷର ସହିତ ଯେଉଁଟାର ସଙ୍ଗତି ଅଛି, ସେହିଟାହିଁ ସ୍ଥାନ ପାଏ । ଜନ୍ମଗ୍ରହଣ କରିବା ଖୁବ୍ କଠିନ କଥା । ଆମରି ପରି ଲକ୍ଷ-ଲକ୍ଷ ସତ୍ତା ଘୁରି ବୁଲୁଛନ୍ତି । ଧରାଯାଉ କାଳୀଘାଟ ମନ୍ଦିରରେ, ଜଣେ-ଜଣେ କରି ପଶିପାରିବେ, ଅଥଚ ଲକ୍ଷ ଲକ୍ଷ ଲୋକ ଛିଡ଼ା ହୋଇଛନ୍ତି । ଯଦି ଜଣେ ପ୍ରବେଶ କରେ, ଆଉ ସମସ୍ତେ ଯଦି ବାହାରେ ପଡ଼ିଥାନ୍ତି, ପଶିବା ପାଇଁ ଭିଡ଼ାଭିଡ଼ି ହୁଅନ୍ତି, ସେ ଅବସ୍ଥା କଳ୍ପନା କରିପାରୁଛ ? ଜନ୍ମ ନେବା ଏହି-ପ୍ରକାରେ କଠିନ ବିଷୟ । ପ୍ରତ୍ୟେକଟି ଶୁକ୍ରକୀଟ ଜୀବନ୍ତ । ସେ ତୁମେହିଁ, ତା ମଧ୍ୟରେ ତୁମର ସବୁକିଛି ଅଛି । ପ୍ରତ୍ୟେକଟି ମଧ୍ୟରେ ବିଶିଷ୍ଟ ପ୍ରକାରର ଗୋଟିଏ ପ୍ରବେଶ କରେ, ଆଉ ଗୋଟିଏ ଶୁକ୍ରକୀଟକୁ ନେଇ ଯଦି

ଅନ୍ୟ ଏକ ଡିମ୍ବକୋଷର ସହିତ ମିଳାଇ ଦେଇ ପାର, ସେ ପୁଣି ଏକ ବିଶିଷ୍ଟ ମଣିଷ ହୋଇ ଉଠିବ। ଦୁଇଟି ଜିନିଷ ଯେ ଠିକ୍ ଏକ ପ୍ରକାରର ହେବ, ତାହା ଦେଖା ଯାଏ ନାହିଁ। ଆ.ପ୍ର. ୨୦/୧୧.୬.୧୯୫୧

## ॥ ସ୍ୱାମୀ-ସ୍ତ୍ରୀର ଭଲପାଇବା କାହାର ପରିପୂରଣ ॥

ମୋର ମନେ ହୁଏ, ସ୍ୱାମୀ-ସ୍ତ୍ରୀର ଭଲପାଇବାଟା ପିତାମାତାଙ୍କ ପ୍ରତି ଭଲପାଇବାରହିଁ fulfilment (ପରିପୂରଣ)। ଅବଶ୍ୟ, ପୁରୁଷର ଯଦି ମା ବାପାଙ୍କ ପ୍ରତି ଭଲପାଇବା ନଥାଏ, କିନ୍ତୁ ସ୍ତ୍ରୀ ପ୍ରତି ଖୁବ୍ ଝୋଙ୍କ୍ ଦେଖାଯାଏ, ତେବେ ତାକୁ ଭଲପାଇବା ନ କହି ଯୌନଲିପ୍ସା କହିବାହିଁ ଭଲ। କାମ ସେତେବେଳେହିଁ ସୁନ୍ଦର ଯେତେବେଳେ ତାହା ଭଲପାଇବାର ଉପରେ ପ୍ରତିଷ୍ଠିତ। ଯେଉଁଠାରେ ଶ୍ରେୟାନୁରାଗର ଭିତ୍ତିର ଉପରେ ଦାମ୍ପତ୍ୟ ପ୍ରେମ ଓ ଯୌନ ଆବେଗ, ସେଠାରେହିଁ ବିରାଟ ମଣିଷର ଆବିର୍ଭାବ ହୁଏ। ...ଏହିପରି ଭଲପାଇବାରେ ପ୍ରବୃତ୍ତିଗୁଡ଼ିକ ଅନେକପରିମାଣରେ ସାର୍ଥକଭାବରେ ସୁବିନ୍ୟସ୍ତ ହୁଏ। ଆ.ପ୍ର. ୨୦/୨୮.୬.୧୯୫୧

## ॥ ପ୍ରଜନନ-ବ୍ୟାପାରରେ ଜୀବଜନ୍ତୁ ବେଳକୁ ଯାହା ଲାଗେ ମଣିଷ ବେଳକୁ ମଧ୍ୟ ତାହା ଲାଗିବ କାହିଁକି ॥

ଆମେ ଅନେକ ସମୟରେ ମନେ କରୁ ଯେ, ପ୍ରଜନନ-ବ୍ୟାପାରରେ ଜୀବଜନ୍ତୁ ବେଳକୁ ଯେଉଁ ଜିନିଷଟା ଲାଗେ, ମଣିଷ ବେଳକୁ ତାହା ଲାଗିବ କାହିଁକି? କିନ୍ତୁ ଏହା ବୁଝୁନା ଯେ, ମଣିଷ ମଧ୍ୟ ଗୋଟିଏ ଜୀବ। ତେଣୁ ବିଭିନ୍ନ ଜୀବଜନ୍ତୁର ପ୍ରଜନନରେ ଏତେପରିମାଣରେ ଉତ୍କର୍ଷ ସାଧନ କରିମଧ୍ୟ ମଣିଷ କ୍ଷେତ୍ରରେ ତାହା କରି ପାରୁନା। ଆ.ପ୍ର. ୨୦/୯.୭.୧୯୫୧

## ॥ ପ୍ରତିଲୋମ ଜାତକର ଭଲ କେତେବେଳେ ହୋଇପାରେ ॥

'ଚଣ୍ଡାଳୋହପି ଦ୍ୱିଜ ଶ୍ରେଷ୍ଠ ହରିଭକ୍ତି ପରାୟଣଃ'। ଭାବେ (ତାର) ସୌରତ-ସନ୍ଦୀପନା ଯଦି ଜଗେଇ ଦିଆଯାଏ। ସୌରତ-ସନ୍ଦୀପନାର ଅସାଧ୍ୟ କୌଣସି କାର୍ଯ୍ୟ ନାହିଁ। ସୌରତ-ସନ୍ଦୀପନାହିଁ exception (ଅସାଧାରଣ)-ର ସୃଷ୍ଟି କରେ। Concentric (କେନ୍ଦ୍ରାୟିତ) ସୌରତ-ସନ୍ଦୀପନା ଅକାମ ମଧ୍ୟ କରି ପାରେ, ଭଲ କାମ

ମଧ୍ୟ କରି ପାରେ। ତାହା କେନ୍ଦ୍ରର ଉପରେ ନିର୍ଭର (କରେ)।

ଆ.ପ୍ର. ୨୦/୧୨.୭.୧୯୫୧

## ।। ବାପା ସଂଯତ ଚରିତ୍ରର ହେଲେ ମଧ୍ୟ ପିଲା ଉଚ୍ଛୃଙ୍ଖଳ କାହିଁକି ହୁଏ ।।

ତାମାନେ ବାପା ହୁଏତ ସଂଯତ, ମା ହୁଏତ ଉଚ୍ଛୃଙ୍ଖଳ। ତେବେ ଏପରି କ୍ଷେତ୍ରରେ ପିଲା ଉଚ୍ଛୃଙ୍ଖଳ ହେଲେ ମଧ୍ୟ ତା ଭିତରେ ଗୋଟିଏ ଅବଶୋଷ-ପ୍ରବଣତା ଥାଏ। ସେ ଏଥିରେ ଶାନ୍ତି ପାଏ ନା। ତଥାପି ସେ-ସବୁ ପ୍ରବୃତ୍ତି-ବଶରେ କରେ।

ଆ.ପ୍ର. ୨୦/୧୭.୭.୧୯୫୧

## ।। ଏକହିଁ ପିତାଙ୍କର ବିଭିନ୍ନ ସନ୍ତାନର ମଧ୍ୟରେ ସମ୍ପୂର୍ଣ୍ଣ ଅଲଗା-ପ୍ରକାର ଦେଖାଯାଏ କାହିଁକି ।।

Instinct (ସହଜାତ ସଂସ୍କାର)-ଟା ଯେଉଁ-ପ୍ରବୃତ୍ତି ନେଇ ଖେଳ କରେ, ମଣିଷର ଜନ୍ମ ତାରି ଭିତର-ଦେଇ ହୁଏ। ଏହି ଭାବରେ ତଫାତ୍ ହୋଇଯାଏ। ମା ଏବଂ ବାପାଙ୍କର ପ୍ରବୃତ୍ତିର ଯଦି ସଂଗତି ହୁଏ, ତେବେ ସନ୍ତାନ ବଳିଷ୍ଠ ହୁଏ। ତା ନ ହୋଇ ଉପଗତିର ସମୟରେ ସ୍ୱାମୀର ଏକ ପ୍ରକାର ପ୍ରବୃତ୍ତି ଏବଂ ସ୍ତ୍ରୀର ଆଉ-ଏକରକମ ପ୍ରବୃତ୍ତି ରହିଲେ ସନ୍ତାନର ସଂସ୍କାର ଓ ପ୍ରକୃତିରେ ଅସଙ୍ଗତି ରହେ। ହଠାତ୍ ପ୍ରବୃତ୍ତି-ଉନ୍ମାଦନାରେ ଯୌନମିଳନ ସଂଘଟିତ ହେଲେ ଶକ୍ତିମାନ ସନ୍ତାନର ଆବିର୍ଭାବର ପଥ ସୁଗମ ହୁଏନା। ହୁଏତ ଭଲ ଇଚ୍ଛା ଥାଏ, କିନ୍ତୁ ଶରୀରରେ ତାହା ରୂପାୟିତ କରି ପାରେ ନା। ଉପଗମନ ଯେତେ ଉନ୍ନତ ଧରଣର ହୁଏ, ସେତେହିଁ ଭଲ। ଆ.ପ୍ର. ୨୦/୨୬.୭.୧୯୫୧

## ।। ଦୁଇଭାଇ ମଧ୍ୟରୁ ଜଣକର ହୁଏତ ପଇସା ପ୍ରତି ଟାଣ ନାହିଁ, ଆଉ ଏକଜଣଙ୍କର ପଇସାର ଖୁବ୍ ଲୋଭ, ଏମିତି ହୁଏ କାହିଁକି ।।

ଗୋଟିଏ ପିଲା ଜନ୍ମିଛି ବୃତ୍ତି-ବୈରାଗ୍ୟର ଉପରେ, ଆଉ ଜଣେ ଜନ୍ମ ନେଇଛି ଭୋଗ-ପ୍ରବୃତ୍ତିର ଉପରେ। ଗୋଟିଏ–ଗୋଟିଏ ପ୍ରବୃତ୍ତି ଗୋଟିଏ-ଗୋଟିଏ ଜଗତ।

ଆ.ପ୍ର. ୨୦/୨୬.୭.୧୯୫୧

## ।। ମୌଳିକମାନଙ୍କ ମଧ୍ୟରେ କୂଳୀନମାନଙ୍କ ଝିଅକୁ ନେବାର ଆଗ୍ରହଟା ଭଲ ନା ମନ୍ଦ ।।

କୂଳୀନମାନଙ୍କର ଝିଅକୁ ନେଇ ହୁଏତ କୃତାର୍ଥ ହେଲ, କିନ୍ତୁ ସେହି କୃତାର୍ଥତା ଯେ ସେମାନଙ୍କୁ ଯମର ଆହାର କରିଦେଲେ, ତାହା ମନେ ରହେ ନାହିଁ। ବିବାହର ଗୋଳମାଳ ରହିଲେ ସନ୍ତାନ ଅବ୍ୟବସ୍ଥ ହେବହିଁ। ତେଣୁ ଦେଖନ୍ତୁ ଆଜି ମଣିଷ କେତେ ଅବ୍ୟବସ୍ଥ। ଆ.ପ୍ର. ୨୦/୨.୮.୧୯୫୧

## ।। ପ୍ରତିଲୋମ ଜାତକ ସାମ୍ୟହରା ହେବହିଁ ।।

ଯେତେ ଗୁଣସମ୍ପନ୍ନ ହେଉ-ନା କାହିଁକି ପ୍ରତିଲୋମ ହେଲେ, ସେ ଜାତକ unbalanced (ସାମ୍ୟହରା) ହେବହିଁ, କୌଣସି ପ୍ରକାରେ balanced (ସାମ୍ୟସିଦ୍ଧ) ହୋଇ ପାରେ ନାହିଁ। ଆ.ପ୍ର. ୨୦/୮.୧୨.୧୯୫୧

## ।। ଭଲ ସନ୍ତାନ ପାଇବାକୁ ହେଲେ ସ୍ୱାମୀ ସ୍ତ୍ରୀର କିପରି ହେବା ଦରକାର ।।

(ସୁପ୍ରଜନନ ପାଇଁ) ଦଶବିଧ ସଂସ୍କାରର ଅନୁଷ୍ଠାନ ପ୍ରବର୍ତ୍ତନ କରିବା ଦରକାର। ଭଲ ସନ୍ତାନ ପାଇବାକୁ ହେଲେ ପୁରୁଷର ଐକାନ୍ତିକ ଇଷ୍ଟପ୍ରାଣତା ଦରକାର। ଆଉ, ମାଆର ଦରକାର ସ୍ୱାମୀ-ଅନୁଚର୍ଯ୍ୟୀ ପତିବ୍ରତ – ବାକ୍ୟରେ, ବ୍ୟବହାରରେ, ଚାଲିରେ, ଚଳନରେ। ଏହାକୁ ବାଇବେଲରେ କହନ୍ତି ଗଭୀର ବାନ୍ଧରେ ସଂଲଗ୍ନ ହେବା।
ଆ.ପ୍ର. ୨୦/୨୯.୧୨.୧୯୫୧

## ।। ପ୍ରତିଲୋମ ବିବାହରେ ସ୍ତ୍ରୀ ସ୍ୱାମୀ ପ୍ରତି ଶ୍ରଦ୍ଧାସମ୍ପନ୍ନା ହେଲେ ମଧ୍ୟ ଭଲ ହୁଏନା କାହିଁକି ।।

ଶ୍ରଦ୍ଧା କୌଣସି କ୍ଷେତ୍ରରେ ଥାଏ କିନା ସନ୍ଦେହ। Weak positive ଓ strong negative-ର (ଦୁର୍ବଳ ରଜୀ ଓ ବଳବାନ ରିଚୀର) combination-ରେ (ସଂଯୋଗରେ) negative (ରିଚୀ) Positive-ର (ରଜୀର) ପରି କାମ କରେ। ଆଉ positive (ରଜୀ) କରେ negative-ର (ରିଚୀର) କାର୍ଯ୍ୟ। ପ୍ରତିଲୋମ-ସଂମିଶ୍ରଣରେ ଝିଅ superior (ଉନ୍ନତତର) ହେବାରୁ ଝିଅ ବଂଶର ତପବୀଜ ପ୍ରଭାବଜାତ

established cultural heredity-ର (ପ୍ରତିଷ୍ଠିତ କୃଷ୍ଟିଗତ ବଂଶଧାରାର) charge (ଭରଣ) positive (ରଜ୍ଜୀ) ପରି କାମ କରୁଥାଏ। ସେତେବେଳେ sperm-ର (ବୀଜର) property (ସମ୍ପଦ/ଗୁଣାବଳୀ) ଟାଣି ଖୋଲି ଆଣି ତାହାକୁ ଅନେକପରିମାଣରେ ନଷ୍ଟ କରି ଦିଏ। ସେତେବେଳେ ପୁରୁଷ ଯଦିଓ positive (ରଜ୍ଜୀ), ତଥାପି ସେ ଦୁର୍ବଳ ବୋଲି negative (ରିଟୀ)-ର ପରି କାର୍ଯ୍ୟ କରେ। ଏହା ଯେ ଟାଣି ନିଏ, ନେଇ ଯେପରି ଅଲଗା ଏକ ଉପଗ୍ରହର ସୃଷ୍ଟି କରେ। ସେଥିରେ double personality-ର (ଦ୍ୱୈତ ବ୍ୟକ୍ତିତ୍ୱ) ପରି ହେବ। ସ୍ୱାସ୍ଥ୍ୟ ମଧ୍ୟ ସେହିପରି ହେବ, ବୋଧ ମଧ୍ୟ ଉନ୍ନତ ହେବ ନାହିଁ, ସଙ୍ଗତି ରହିବ ନାହିଁ। ଏହାର ଅନ୍ୟଥା ହେବାର ଉପାୟ ନାହିଁ। ବେଦ ବିଜ୍ଞାନର ହିଁ ବାହନ।

ଆ.ପ୍ର. ୨୧/୧୮.୪.୧୯୫୨

## ।। ଅନେକ ଭଲ Soul (ଆତ୍ମା) ସ୍ୱଳ୍ପାୟୁ ହୁଏ କାହିଁକି ।।

ପ୍ରଶ୍ନ – ଗୋଟିଏ ଭଲ ଆତ୍ମା (soul) ଯେଉଁଠାକୁ ଆସେ, ସେଠାରେ ପିତାମାତାଙ୍କ ଭିତରେ ସୁଷ୍ଠୁ ଅନୁରାଗ ଅଛି ବୋଲି ବୁଝିବାକୁ ହେବ। ତା ସତ୍ତ୍ୱେ ମଧ୍ୟ ଅନେକ ଭଲ soul (ଆତ୍ମା) ସ୍ୱଳ୍ପାୟୁ ହୁଏ କାହିଁକି ?

ଶ୍ରୀଶ୍ରୀଠାକୁର – ଆୟୁ ନିର୍ଭର କରେ prenatal potency-(ମାତୃଗର୍ଭରେ ଥିବାସମୟର କ୍ଷମତାର) ଉପରେ। Potency (କ୍ଷମତା) ଯେତେ ବେଶୀ ହୁଏ, power of resistance (ପ୍ରତିରୋଧ କ୍ଷମତା) ସେତେ ବେଶୀ ହୁଏ। ପିତାମାତା ଉଭୟଙ୍କର ସର୍ବାଙ୍ଗୀନ ସଂଗତିର ଉପରେ ପୁଣି ଏହି potency (କ୍ଷମତା) ନିର୍ଭର କରେ। ସ୍ୱାମୀ-ସ୍ତ୍ରୀର tuning-ର (ସଙ୍ଗତିର) ଭିତର-ଦେଇ ଗୋଟିଏ ଉଚ୍ଚସ୍ତରରେ ହୁଏତ ପହଞ୍ଚି ପାରେ। କିନ୍ତୁ ତାହା ହୁଏତ shortwave (କ୍ଷୀଣତରଙ୍ଗ) – ୱାଲା, ଦୀର୍ଘସ୍ଥାୟୀ ନୁହେଁ। ସେଠାରେ ଯେଉଁ soul (ଆତ୍ମା) ପ୍ରବେଶ କରେ, ସେ ଏହି ରକମ ସ୍ୱଳ୍ପାୟୁ ହୁଏ। ଆ.ପ୍ର. ୨୧/୨୩.୪.୧୯୫୨

## ।। କୁଳୀନମାନଙ୍କ ଭିତରେ ବିବାହ ବ୍ୟାପାରରେ କଣ କରଣୀୟ ।।

ପ୍ରଶ୍ନ – କୁଳୀନମାନଙ୍କ ମଧ୍ୟରେ ବିବାହ ବ୍ୟାପାରରେ ପର୍ଯ୍ୟାୟ ଯୋଗୁଁ ଯେଉଁ ପ୍ରଚଳିତ ବାଧାନିଷେଧ ଅଛି, ତାହା କାହିଁକି ? ଏବଂ ସେ-ସମ୍ବନ୍ଧରେ କରଣୀୟ କଣ ?

ଶ୍ରୀଶ୍ରୀଠାକୁର – ଏହା ଭିତରେ କୌଣସି ଯୁକ୍ତି ସଙ୍ଗତ କାରଣ ଅଛି ବୋଲି ବୁଝା ଯାଏନା। ଏହା ଭାଙ୍ଗି ଦେଲେ ହୁଏ। ଆ.ପ୍ର. ୨୧/୨୭.୪.୧୯୫୨

## ।। ସତୀତ୍ୱ କୌଣସି କୁସଂସ୍କାର କିନା ।।

ଆଜିକାଲି ସତୀତ୍ୱକୁ ଅନେକ କୁସଂସ୍କାର ମନେ କରନ୍ତି। ଅଥଚ ଏହା ଜାତୀୟ ଉନ୍ନତିର ଗୋଟିଏ ମୂଳ ଜିନିଷ। ପ୍ରଚାରର ଭିତର ଦେଇ, ନାଟକ, ନଭେଲ, ଗଳ୍ପ, ସିନେମା, ପୁସ୍ତକ ଇତ୍ୟାଦିର ଭିତର ଦେଇ ପୁଣି ସମସ୍ତଙ୍କୁ ଏହି ବିଷୟରେ ସଚେତନ କରି ତୋଳିବାକୁ ହେବ। ଆ.ପ୍ର. ୨୧/୧୧.୫.୧୯୫୨

## ।। ବିବାହ ବ୍ୟାପାରରେ ସଠିକ୍ ଯୋଡ଼ି ନ ହେଲେ କଣ ହୁଏ ।।

ମୋର ମନେ ହୁଏ, ବିବାହ ବ୍ୟାପାରରେ ସଠିକ୍ ଯୋଡ଼ି ନ ହେଲେ ଜଣେ ଆଉ ଜଣକର ବିରୋଧୀ ହୋଇ କ୍ଷତିକର ହୁଏ। ଆ.ପ୍ର. ୨୧/୧୮.୫.୧୯୫୨

## ।। ସୁସନ୍ତାନ ପାଇବା ପାଇଁ ସହବାସ କିପରି ହେବା ଦରକାର ।।

ସୁସନ୍ତାନ ଯଦି ପାଇବାକୁ ହୁଏ, ତେବେ ସ୍ୱାମୀ-ସ୍ତ୍ରୀ ଯଦି cleaved (ଯୁକ୍ତ) ନ ହୁଅନ୍ତି, ତାହେଲେ ହୁଏନା। ସହବାସ ଯଦି ଶ୍ରଦ୍ଧୋଷିତ ନ ହୁଏ, ପ୍ରୀଣନ ଦୀପନୀ ନ ହୁଏ, ତେବେ ସନ୍ତାନ ସୁଷ୍ଠୁ ଜୈବୀ-ସଂସ୍ଥିତି ପାଏ ନାହିଁ। ସ୍ତ୍ରୀର ଦରକାର ଇଷ୍ଟାନୁଗ ସକ୍ରିୟ ସ୍ୱାମୀ-ଉନ୍ମୁଖତା। ଝଗଡ଼ା କରି ତାପରେ ସହବାସ କଲାପରେ ଯଦି ସେହି ସହବାସ ଫଳରେ ସନ୍ତାନ ହୁଏ, ତେବେ ସେ ସନ୍ତାନ ସେହି ପ୍ରକାର ପ୍ରକୃତିର ହୁଏ। ସେ ହୁଏତ ପାଞ୍ଚବର୍ଷ ବୟସରୁ ମା-ବାପାକୁ ମାଡ଼ ଦେବା ଆରମ୍ଭ କରେ। ମା-ବାପା ହୁଏତ ସେତେବେଳେ କହନ୍ତି 'ଓ ଭଗବାନ ! ତୁମେ ମୋର କଣ କଲ ?' ମୁଁ କହେ, ଭଗବାନ କଣ କରିବେ ! ତୁମେ ଯାହା ଚାହିଁଛ, ଯାହା କରିଛ, ତାହା-ହିଁ ପାଇଛ।

ଆ.ପ୍ର. ୨୧/୨୫.୫.୧୯୫୨

## ।। କୁଳୋଜ୍ଜ୍ୱଳା କନ୍ୟା କିପରି ହେବ ।।

ମୁଁ କହେ, ଝିଅମାନେ ଘରେ ସମସ୍ତଙ୍କର ମନୋଜ୍ଞ କିପରି ହୋଇ ପାରିବେ, ସମସ୍ତଙ୍କୁ ସୁସ୍ଥ-ସ୍ୱସ୍ଥ କିପରି କରି ରଖି ପାରିବେ ବାସ୍ତବ ଅନୁଚର୍ଯ୍ୟାର ଭିତର-ଦେଇ, ଅଭ୍ୟାସ-ବ୍ୟବହାର ନିୟନ୍ତ୍ରଣରେ, ତାହାହିଁ ପ୍ରଥମେ ଦେଖିବାକୁ ହେବ। ଆଉ ଏହାହିଁ

ଯେପରି nurtured (ପୁଷ୍ଟ) ଓ developed (ଉନ୍ନତ) ହେବ, ସେହିପରି ଭାବରେ science, literature, mathematics (ବିଜ୍ଞାନ, କଳା, ଅଙ୍କ) ପ୍ରଭୃତି ଶିଖାଇବା ଦରକାର। ଏହିପରି ଭାବରେ ଯଦି ତିଆରି କରି ପାର, ତେବେହିଁ ହେବ କୁଳୋଜ୍ଜ୍ୱଳା କନ୍ୟା। ଏହା ବ୍ୟତୀତ ପେଁ ପେଁ କରି ବେହେଲା ବଜାଇବା ଶିଖୁଛି, ଆଉ ଫ୍ୟାସନ କରି ବୁଲୁଛି, ତାହା ଦ୍ୱାରା ଯାହା ହେବାର ତାହା-ହିଁ ହେବ।

ଆ.ପ୍ର. ୨୧/୨୫.୫.୧୯୫୨

## ।। ସମାନ ସ୍ୱାମୀ-ସ୍ତ୍ରୀଙ୍କର ପୁଅ-ଝିଅର ଚେହେରା ଏକ-ଏକରକମର ହୋଇଥାଏ କାହିଁକି।।

ମୋର ମନେ ହୁଏ ସ୍ୱାମୀ ଯେତେବେଳେ ସ୍ତ୍ରୀଠାରେ ଆନତ (inclined) ହୁଏ, ସେତେବେଳେ ଝିଅ ହୁଏ, ଏବଂ ସ୍ତ୍ରୀ ଯେତେବେଳେ ସ୍ୱାମୀଠାରେ inclined (ଆନତ) ହୁଏ, ସେତେବେଳେ ପୁଅ ହୁଏ। ଆଉ ଏହି ପ୍ରକାର ହେଲେ ଝିଅର ଚେହେରା ହୁଏ ବାପା ପରି, ପୁଣି ପୁଅର ଚେହେରା ହୁଏ ମା ପରି। ସ୍ତ୍ରୀ ଯଦି ସ୍ୱାମୀଙ୍କଠାରେ ଠିକ୍‌ଭାବରେ ଯୁକ୍ତ ନ ହୁଏ, ତାଙ୍କଠାରେ ସ୍ୱାର୍ଥାନ୍ୱିତ ନ ହେବାରୁ ତାର ପ୍ରବୃତ୍ତିଗୁଡ଼ିକ ଯଦି adjusted (ନିୟନ୍ତ୍ରିତ) ନ ହୁଏ, ତେବେ କେବଳ ଫାଙ୍କିବାଜିରେ ଭଲ ସନ୍ତାନ ହୁଏ ନାହିଁ। ଆ.ପ୍ର. ୨୧/୨୫.୫.୧୯୫୨

## ।। ସ୍ୱାମୀଙ୍କର କେଉଁ ଫାଙ୍କିବାଜିରେ ମୁସ୍କିଲ ହୁଏ।।

ସ୍ୱାମୀଙ୍କର ଯଦି ଇଷ୍ଟାନୁରାଗ ଓ ଇଷ୍ଟାନୁସରଣର ଦିଗ ଦେଇ ଫାଙ୍କିବାଜି ଥାଏ, ତାହେଲେହିଁ ମୁସ୍କିଲ। ପୁଣି ସ୍ୱାମୀ ଯଦି ସ୍ତ୍ରୀମୁଖୀ ହୁଏ, ସେଥିରେ ମଧ୍ୟ ଭଲ ଫଳ ହୁଏ ନା। ଆ.ପ୍ର. ୨୧/୨୫.୫.୧୯୫୨

## ।। ସତୀତ୍ୱର ଏତେ ପ୍ରୟୋଜନ କାହିଁକି।।

Male (ପୁରୁଷ)-ର gene (ଜିନ୍) impetus (ପ୍ରେରଣା) ଅର୍ଥାତ୍ genetic impetus (ଜନନର ପ୍ରେରଣା) ଦିଏ। Female-ର (ନାରୀର) gene (ଜିନ୍) ସେହି impetus (ପ୍ରେରଣା) ମାଫିକ୍ ରୂପ ଦିଏ। Male gene (ପୁରୁଷ ଜିନ୍) ଓ Female gene (ନାରୀ ଜିନ୍)-ର exudation (କ୍ଷରଣ) ହୁଏ। Fe-

male gene-ର exudation ଯଦି male gene-ର exudation-ର nurturing (ପୋଷଣୀ) ନ ହୁଏ, ତେବେ male gene-ଗୁଡ଼ିକ properly (ଠିକ୍‌ଭାବରେ) develop କରେ ନାହିଁ (ବିକଶିତ ହୁଏ ନାହିଁ) । ସେଥିପାଇଁ ସତୀତ୍ୱର ଏତେ ପରିମାଣରେ ପ୍ରୟୋଜନ । ଆଉ, ଏହି କାରଣରୁ human male gene-ର (ପୁରୁଷ ମଣିଷର ଜିନ୍‌ର) ପାଇଁ human female (ସ୍ତ୍ରୀଲୋକ) ଦରକାର । ମଣିଷ ବ୍ୟତୀତ ଅନ୍ୟପ୍ରାଣୀର female (ସ୍ତ୍ରୀଜାତି) ତାହା ଦେଇ ପାରେ ନାହିଁ। ପୁଣି ମଣିଷ ମଧ୍ୟରେ ବି ପୁରୁଷ ଓ ସ୍ତ୍ରୀର ମେଳ ଯେତେ ଠିକ୍ ହୁଏ ସବୁଦିଗ ଦେଇ ସେତେହିଁ ଭଲ ।

ଆ.ପ୍ର. ୨୧/୧୭.୬.୧୯୫୨

## ॥ ପରିବେଶ ନୁହେଁ, ବଂଶାନୁକ୍ରମହିଁ ଅସଲ କାହିଁକି ॥

ଜଣେ କହିଲେ – ରୁଷିୟାର ଗବେଷକ ମିଚୁରିନ ଓରା herdity (ବଂଶାନୁକ୍ରମ)ର ଉପରେ 1/10th (୧/୧୦) ଭାଗ ନିର୍ଭର କରେ ।

ଶ୍ରୀଶ୍ରୀଠାକୁର – 1/10th (୧/୧୦) ଭାଗ ହେଲେବି କ୍ଷତି ନାହିଁ। ଗୋଟିଏ sperm (ଶୁକ୍ରକୀଟ) ଠାରୁ ଏହି ଶରୀର, ପରିବେଶରୁ ପୋଷଣ ନେଇ ସେ ଏତେ ବଡ଼ ହୁଏ, କିନ୍ତୁ ଏହି 1/10th (୧/୧୦) ଭାଗ-ର ଉପରେ ଛିଡ଼ା ହୋଇହିଁ ହୁଏ। Environment (ପରିବେଶ) ସମସ୍ତଙ୍କ ଉପରେହିଁ ପ୍ରଭାବ ବିସ୍ତାର କରେ, କିନ୍ତୁ ପ୍ରତ୍ୟେକେ environment (ପରିବେଶ)ରୁ ତା ନିଜ ଅନୁଯାୟୀ ନିଅନ୍ତି । ତାହା ନିର୍ଭର କରେ heredity (ବଂଶାନୁକ୍ରମ)-ର ଉପରେ। ତାକୁ 1/10th ହିଁ (୧/୧୦) ଭାଗହିଁ କୁହ ବା ଯେତେ ପରିମାଣହିଁ କୁହ, କାର୍ଯ୍ୟତଃ ଏହାହିଁ ହେଉଛି କିନ୍ତୁ ଅସଲ।

ଆ.ପ୍ର. ୨୧/୧୮.୬.୧୯୫୨

## ॥ ଥରେ ବୀର୍ଯ୍ୟପାତରେ ଯେତେ ଶୁକ୍ରକୀଟ ବାହାରେ ତାର ପ୍ରତ୍ୟେକଟାହିଁ ଅଲଗା କିନା ॥

ଗୋଟିଏ interest (ପସନ୍ଦ)-ର different environmental waves (ବିଭିନ୍ନ ପରିବେଶିକ ତରଙ୍ଗ) ଥାଏ, ପ୍ରତ୍ୟେକଟି sperm (ଶୁକ୍ରକୀଟ)-ର ହିଁ different charge (ବିଭିନ୍ନ ଭରଣ) ହୁଏ, ova-ର (ରଜଃର) charge (ଭରଣ)-ର ସହିତ ଯେଉଁଟାର affinity (ଆସକ୍ତି) ଥାଏ, ଯେଉଁଟା match କରେ (ମେଳ

ହୁଏ), ସେହିଟା receive କରେ (ଗ୍ରହଣ କରେ)। ସ୍ତ୍ରୀର ଆକୂତି ଓ ଆଗ୍ରହ ସ୍ୱାମୀ ଉପରେ ଯେତେ ଥାଏ, ସେତେହିଁ ସେ ସନ୍ତାନକୁ ସୁଷ୍ଠୁ ଭାବରେ ପୋଷଣ ଦେଇ ପାରେ। ...ପ୍ରତ୍ୟେକଟି cell (କୋଷ) ମଧ୍ୟରେ ଆକୁଞ୍ଚନ-ପ୍ରସାରଣୀ ସମ୍ଭୋଗ ଅଛି। ବିଭିନ୍ନ cell (କୋଷ)-ର ମଧ୍ୟରେ affinity (ଆସକ୍ତି) ଅଛି ବୋଲି ସେଗୁଡ଼ିକ ସଂହତ ରହି ଆତ୍ମସତ୍ତା ବଜାୟ ରଖିପାରେ। ଏହି affinity (ଆସକ୍ତି) ବା ଯୋଗାବେଗହିଁ ହେଲା ରସ, ତାଠାରୁ ହିଁ ଯାହା କିଛି। ତେଣୁ କୁହାଯାଏ 'ରସୋ ବୈ ସଃ'। ଏହାର ଅଭିବ୍ୟକ୍ତିକୁ କହନ୍ତି ଲୀଳା, ଆଲିଙ୍ଗନ ଓ ଗ୍ରହଣ।

ଆ.ପ୍ର. ୨୧/୨୨.୬.୧୯୫୨

## ।। କାହାର ସନ୍ତାନ କିପରି ହେବ ।।

କାମାବେଗ ଯାହାର ଯେତେ ସୁଷ୍ଠୁ ହେବ ଓ ଯେତେ ଉନ୍ନତ ସ୍ତରକୁ ଉଠିବ, ସେଠାରେ ସେତେ ଭଲ ସନ୍ତାନ ଆସି ପାରେ, ଆଉ ଯେଉଁଠାରେ ତାହା ଯେତେ ଅସୁସ୍ଥ ଓ ଯେତେ ତଳକୁ ଚାଲିଯିବ, ସେଠାରେ ଭଲ ସନ୍ତାନ ଆସିବାର ସମ୍ଭାବନା ସେତେ କମ୍।

ଆ.ପ୍ର. ୨୧/୩୦.୬.୧୯୫୨

## ।। ପୁରୁଷ—ନାରୀ କିପରି ମନୋଭବ ନେଇ ଚାଲିବା ଉଚିତ ।।୨୩୯

ପ୍ରଶ୍ନ – ବାହାରେ ଚଲାବୁଲା ସମୟରେ ପୁରୁଷ – ନାରୀର ପରସ୍ପର ପରସ୍ପରର ପ୍ରତି କିପରି ମନୋଭାବ ନେଇ ଚାଲିବା ଉଚିତ?

ଶ୍ରୀଶ୍ରୀଠାକୁର – ପ୍ରତ୍ୟେକେ ଯଦି ଆତ୍ମସମ୍ଭ୍ରମ ବଜାୟ ରଖି ଚାଲନ୍ତି, ତାହେଲେ କୌଣସି ଅସୁବିଧା ହୁଏ ନା। ପୁଣି ପୂର୍ବପୁରୁଷର ସଂସ୍କାର ଓ ଯୌନ ସଂସ୍କାର ଯେତେକ୍ଷଣ ପର୍ଯ୍ୟନ୍ତ ସଙ୍ଗତି ଲାଭ ନ କରେ, ସେତେ ପର୍ଯ୍ୟନ୍ତ ଆତ୍ମସମ୍ଭ୍ରମ ମଧ୍ୟ ଠିକ୍‌ଠିକ୍ ଗଜାଏ ନାହିଁ। ଆ.ପ୍ର. ୨୧/୧୬.୭.୧୯୫୨

## ।। ପ୍ରକୃତ ରମଣ କେତେବେଳେ ହୁଏ ।।

ଏତେ ଲୋକ ଦେଖେ, କିନ୍ତୁ ଖୁବ୍ କମ୍ ଲୋକ ଦେଖିଛି, ଯେଉଁମାନେ ସମ୍ଭୋଗର ସୁଖ ଜାଣନ୍ତି। କାମ ମୁହୂର୍ତ୍ତରେ ସ୍ତ୍ରୀ-ପୁରୁଷ ଯେଉଁ ଭାବରେ ମିଳିତ ହୁଅନ୍ତି, ତା ଭିତର ଦେଇ ଯାହା ଆସିବାର କଥା ତାହା ଆସେ। ...ମନରେ ବହୁମୁଖୀ ଆକର୍ଷଣ ନେଇ

ସ୍ତ୍ରୀ ସ୍ୱାମୀକୁ ଧରିଥାଏ ସିନା, ନହେଲେ ଲୋକେ ହୁଏତ କହିବେ ଅସତୀ। ଏହି ରକମ ମାନସିକତା ନେଇ ବହୁତ ଝିଅ ଘର କରିଛନ୍ତି। ପୁଣି, ସ୍ୱାମୀ ମଧ୍ୟ concentric (ସୁକେନ୍ଦ୍ରିକ) ନୁହେଁ। ସେଠାରେ ସନ୍ତାନ ଆଉ କିପରି ହେବ ? ତୁମର ସ୍ତ୍ରୀ ଯେତେବେଳେ ଶ୍ରଦ୍ଧାସିକ୍ତ ଅନ୍ତକରଣରେ କୋଷରେ କୋଷରେ ଆଗ୍ରହଶୀଳ ହୋଇ ସ୍ୱାମୀମୁଖୀ ହୁଏ, ସେତେବେଳେ ତାର ଦେହର ଗନ୍ଧ, ଆଖିର ଚାହାଣୀ, କଥାର ରକମ, ସବୁକିଛି ଅନ୍ୟ ପ୍ରକାରର ହୁଏ। ସେତେବେଳେହିଁ ତା ସହିତ ପ୍ରକୃତରେ ରମଣ ହୁଏ। ସେତେବେଳେ 'ରୂପ ଲାଗି ଆଖି ଝୁରେ, ଗୁଣରେ ମନ ବିଭୋର, ପ୍ରତି ଅଙ୍ଗ ଲାଗି କାନ୍ଦେ ପ୍ରତି ଅଙ୍ଗ ମୋର', – ସେତେବେଳେ କୋଷରେ କୋଷରେ ମିଳନ ହୁଏ।

ଆ.ପ୍ର. ୨୧/୧୬.୭.୧୯୫୨

## ।। ବିବାହ ବ୍ୟାପାରରେ ପାତ୍ର-ପାତ୍ରୀର କଣ ଦେଖିବାକୁ ହୁଏ ।।

ପ୍ରଥମେ ଦେଖିବାକୁ ହୁଏ, ପରସ୍ପରର ଚରିତ୍ର ଓ କୂଳସଂସ୍କୃତି ପରିପୋଷଣୀ ଓ ପରିପୂରଣୀ କିନା। ତା ପରେ ଆୟୁ, ସ୍ୱାସ୍ଥ୍ୟ ଇତ୍ୟାଦି ବିଚାର କରିବା ଦରକାର। କୌଳିକଭାବରେ ଆଦର୍ଶପ୍ରାଣ କିନା ଦେଖିବାକୁ ହୁଏ। ଏଗୁଡ଼ିକ ବିଶେଷ ଭାବରେ progeny (ସନ୍ତାନ)-ପାଇଁ ଦେଖିବା ଦରକାର। ନହେଲେ ସେମାନେ concentric ହୁଅନ୍ତି ନାହିଁ। ଆ.ପ୍ର. ୨୧/୧୬.୭.୧୯୫୨

## ।। ଅନୁଲୋମ ବିବାହ ମଧ୍ୟ ଭଲ ହୁଏ ନାହିଁ କେତେବେଳେ ।।

ଅନୁଲୋମ ବିବାହ ହେଲେହିଁ ଯେ ସବୁ ସମୟରେ ଭଲ ହୁଏ, ତା ନୁହେଁ। ଝିଅ ଓ ପୁଅର କୁଳ ସଂସ୍କୃତି ଓ ଚରିତ୍ରଗତ ବୈଶିଷ୍ଟ୍ୟର ସଙ୍ଗତି ଦରକାର। ପୁଅର ବଂଶ ପ୍ରତି ଝିଅ ବଂଶର ଏକ ଗଭୀର ଶ୍ରଦ୍ଧା ଦରକାର। ପୁଅର ଚରିତ୍ର, ପ୍ରକୃତି ଓ ଗୁଣାବଳୀ ଯାହା ଥାଉ, ସେଥିରେ ଯଦି ଝିଅଟି ତା ପ୍ରତି spell bound ଓ charmed (ମନ୍ତ୍ରମୁଗ୍ଧ ଓ ମୋହିତ) ହୋଇ ଯାଏ, ତାହେଲେ ବୁଝିବାକୁ ହେବ ଯେ, ସେ କାର୍ଯ୍ୟ ହେବା ଭଲ। ତା ସହିତ ଆୟୁ, ସ୍ୱାସ୍ଥ୍ୟ, ବିଦ୍ୟା, ବୁଦ୍ଧି ଇତ୍ୟାଦି ଦେଖିବା ଭଲ।

ଆ.ପ୍ର. ୨୧/୧୮.୭.୧୯୫୨

## ।। ସ୍ୱାମୀ-ସ୍ତ୍ରୀ ମଧ୍ୟରେ ସ୍ତ୍ରୀର ସ୍ଥାନ କଣ ହେବା ଉଚିତ ।।

ପ୍ରଶ୍ନ – ଅନେକ ସ୍ତ୍ରୀ ସ୍ୱାମୀ ସହିତ ନିଜକୁ ସମାନ ମନେ କରନ୍ତି। ସ୍ୱାମୀ-ସ୍ତ୍ରୀ ଦୁଇଜଣଙ୍କ ଭିତରେ ସ୍ତ୍ରୀର position (ସ୍ଥାନ)-ଟା କଣ ହେବା ଉଚିତ ?

ଶ୍ରୀଶ୍ରୀଠାକୁର – ସ୍ତ୍ରୀ ହେଲା ସ୍ୱାମୀର ସହଧର୍ମିଣୀ। ସହଧର୍ମିଣୀ ପରି କଥା ଦେଖିନାହିଁ। ସହଧର୍ମିଣୀ ମାନେ ସତ୍ତାସଙ୍ଗିନୀ with all her faults and glaring attributes (ତାର ସମସ୍ତ ଦୋଷ ଗୁଣ ନେଇ)। ଆ.ପ୍ର. ୨୧/୨୦.୭.୧୯୫୨

## ।। ଝିଅମାନଙ୍କର ସୌନ୍ଦର୍ଯ୍ୟ କେଉଁଠି ।।

ଝିଅମାନଙ୍କର ସୌନ୍ଦର୍ଯ୍ୟ କହିଲେ ମୁଁ ବୁଝେ ମାତୃତ୍ୱ। ମାତୃତ୍ୱର ଭାବ ଯଦି ଝିଅମାନଙ୍କ ମଧ୍ୟରେ ପ୍ରକଟ ନ ହୁଏ, ତେବେ ତାକୁ ସୁନ୍ଦର କୁହାଯାଏ ନାହିଁ।

ଆ.ପ୍ର. ୨୧/୨୩.୭.୧୯୫୨

## ଭଲ ପିଲା ଜନ୍ମାଇବା ପାଇଁ କେଉଁ ଦିଗକୁ ନଜର ଦେବାକୁ ହେବ ।।

ଭଲ ପିଲା ଜନ୍ମାଇବା ପାଇଁ କେତେଟା factor (ବ୍ୟାପାର) ଉପରେ ନଜର ଦେବାକୁ ହୁଏ। ବଂଶ ତ ଦରକାରହିଁ। ସ୍ତ୍ରୀର ସ୍ୱାମୀ ପ୍ରତି ଅକପଟ ଶ୍ରଦ୍ଧା ଓ ନିଷ୍ଠା ରହିବା ଦରକାର। ସ୍ୱାମୀର ଇଷ୍ଟ ଓ ବାପା-ମାଙ୍କ ପ୍ରତି ଅତୁଟ ଶ୍ରଦ୍ଧା, ଭକ୍ତି ଓ ଭଲ-ପାଇବା ରହିବା ଦରକାର। ଏହାରି ଭିତର ଦେଇ ସୁସନ୍ତାନର ଆବିର୍ଭାବ ହୁଏ। ସନ୍ତାନର ସ୍ୱାସ୍ଥ୍ୟ, ମନ ଓ ଆୟୁ ସୁସ୍ଥ ହୁଏ। ଏହି ସବୁ sentiment-ର (ଭାବାନୁକମ୍ପିତାର) nurture (ପୋଷଣ) ଦେବାକୁ ହୁଏ ଯେପରି ତାର practical (ବାସ୍ତବ) ବ୍ୟବସ୍ଥା ଦରକାର, ଆଚାର-ଆଚରଣର ଭିତର ଦେଇ। ଆ.ପ୍ର. ୨୧/୨୯.୭.୧୯୫୨

## ।। ଜନନ-ବିଜ୍ଞାନର ସ୍କୁଲ-ପାଠ୍ୟ ବହି କିପରି ହେବ ।।

Genetics (ଜନନ-ବିଜ୍ଞାନ) ସମ୍ବନ୍ଧରେ ସ୍କୁଲ-ପାଠ୍ୟ ବହି ଦରକାର। ଝିଅମାନେ କିପରି ସ୍ୱାମୀ ନିର୍ବାଚନ କରିବେ, ଯୌନ ଆକୂତି କିପରି ଜାଗେ, ଅବାଞ୍ଛିତ ଯୌନ ଚିନ୍ତା ମୁଣ୍ଡକୁ ଆସିଲେ ତାର କ୍ରିୟା-ପ୍ରତିକ୍ରିୟା କଣ ହୁଏ, ଯୌନ ଆବେଗର ନିରୋଧ କାହାକୁ କହନ୍ତି, ସୁସ୍ଥ ଯୌନଜୀବନ କଣ, ଇତ୍ୟାଦି ପରିଷ୍କାର କରି ଲେଖିବା ଦରକାର। ଏହିଟା ଠିକ୍ ନ ହେଲେ ଜାତିର ଆଉ ବଞ୍ଚିବାର ପଥ ।ହିଁ।

ଆ.ପ୍ର. ୨୧/୧୩.୮.୧୯୫୨

## ।। ବିପ୍ର ବର୍ଣ୍ଣର ବିଭିନ୍ନ ଥାକକୁ କ'ଣ କହନ୍ତି ।।

ମୋର ମନେ ହୁଏ (ବିହାରରେ) ଭୂଇଁହାର (ଭୂମିହାର) ବ୍ରାହ୍ମଣମାନେ ମୂର୍ଦ୍ଧାବଷିକ୍ତ ବିପ୍ର। ଏମାନେ ବିପ୍ରୋଚିତ ଆଚାର-ଆଚରଣ ଓ ସଂସ୍କାରରେ ଅଭ୍ୟସ୍ତ ହେବା ଦରକାର। କାରଣ, ବିପ୍ର ପିତା ଓ କ୍ଷତ୍ରିୟା ମାତାର ସମ୍ମିଶ୍ରଣରେ ଜାତ ଯେଉଁ ସନ୍ତତି ସେହିମାନଙ୍କୁ ଭୂଇଁହାର କୁହାଯାଏ ବୋଲି ମୋର ଧାରଣା। ବଙ୍ଗାଳୀ ସମାଜରେ ଏମାନଙ୍କ ପରି କୌଣସି ବିପ୍ର ଶ୍ରେଣୀ ଦେଖା ଯାଏ ନାହିଁ। ବିପ୍ର, ଅମ୍ବଷ୍ଠ ବିପ୍ର, ପାରଶବ ବିପ୍ର ଏହି ତିନୋଟି ଶ୍ରେଣୀ ବଙ୍ଗାଳୀ ସମାଜରେ ସୁସ୍ପଷ୍ଟ। ବିପ୍ର ପିତାର ସବର୍ଣ୍ଣଜ ସନ୍ତାନ ହେଉଛି ବିପ୍ର ଅର୍ଥାତ୍ ବ୍ରାହ୍ମଣ, ବୈଦ୍ୟମାନେ (ଅର୍ଥାତ୍ ବିପ୍ର ପିତା ଓ ବୈଶ୍ୟା ମାତାର ସନ୍ତାନ ମାନେ) ଅମ୍ବଷ୍ଠ ବିପ୍ର। ବିପ୍ର ପିତା ଓ ଶୁଦ୍ରା ମାତାର ସଂଯୋଗରେ ଯେଉଁ ସନ୍ତାନ ସେମାନେ ପାରଶବ ବିପ୍ର। ଶ୍ରୀପାଲୀ ଯେଉଁମାନେ ସେହିମାନେହିଁ ପାରଶବ ବିପ୍ର। ଧା' ନୋ, ମ' ଘୋ, ମା' ଛୋ ବୋଲି ଯେଉଁମାନେ ପରିଚିତ ସେମାଙ୍କୁ କିନ୍ତୁ ପାରଶବ ବୋଲି କୁହା ଯାଏନା। ତେଣୁ ସେମାନଙ୍କର ଉପନୟନ ହୋଇ ପାରେ ନାହିଁ।

ଆ.ପ୍ର. ୨୧/୧୬.୮.୧୯୫୨

## ।। ବିଧି ଅନୁସାରେ ଆନ୍ତଃ-ପ୍ରାଦେଶିକ ବିବାହ ହେବା ଦରକାର କାହିଁକି ।।

ଆଜିକାଲି ଅନେକେ ମନେ କରନ୍ତି ଯେ, ବ୍ରାହ୍ମଣର ଝିଅକୁ ନିମ୍ନବର୍ଣ୍ଣର ପୁରୁଷ ଅନାୟାସରେ ବିବାହ କରି ପାରନ୍ତି। କିନ୍ତୁ ସେଥିରେ ଯେ କେତେ ପରିମାଣରେ ସର୍ବନାଶ ତାହା ବୁଝନ୍ତି ନାହିଁ। ପୁଣି, ପ୍ରାଦେଶିକତାର ବୁଦ୍ଧି ଭଲ ନୁହେଁ। ପୁରାପୁରି ଆତ୍ମଘାତୀ। ବିଭିନ୍ନ ପ୍ରଦେଶ ମଧ୍ୟରେ ବିଧି ଅନୁଯାୟୀ ବିବାହାଦି ହେବା ଦରକାର। କୂଳ, ବଂଶ, ଚରିତ୍ର ଇତ୍ୟାଦିର ପାରସ୍ପରିକ ସଂଗତି ଦେଖି ବିବାହ ଦେବାକୁ ହେବ, ତାହା ସବର୍ଣ୍ଣ ହେଉ ବା ଅନୁଲୋମହିଁ ହେଉ। Inter-provincial marriage (ଆନ୍ତଃ-ପ୍ରାଦେଶିକ ବିବାହ) ଯଦି ଠିକ୍‌ଭାବରେ ନହୁଏ, ତେବେ କାଳେ-କାଳେ ପ୍ରାୟ same blood (ଏକ ରକ୍ତ) ହୋଇଯିବ।

ଆ.ପ୍ର. ୨୧/୧୦.୯.୧୯୫୨

## ।। କେଉଁ ଆନ୍ଦୋଳନ ଆଗେ କରିବାକୁ ହେବ ।।

ମୁଁ ଯଦି କୌଣସି ଆନ୍ଦୋଳନ ଆରମ୍ଭ କରିନ୍ତି, ତେବେ ଆଗେ ଏହି genetic (ପ୍ରଜନନ)-ର ସୁର ଧରନ୍ତି। କାରଣ, ଏହାର ଫଳ ପରେ ପାଇବୁ। ଆଜିହିଁ ଯଦି

ଆରମ୍ଭ କରୁ, ପଚିଶ ବର୍ଷ ପରେ ତାର ଫଳ ପାଇବୁ । ତେଣୁ ଯେଉଁଗୁଡ଼ିକ ଦ୍ୱାରା ସଦ୍ୟ ଫଳ ପାଇ ହେବ ସେଗୁଡ଼ିକ ପରେ ଆରମ୍ଭ କଲେ ମଧ୍ୟ ଦୋଷ ହୁଏ ନା । କିନ୍ତୁ ଏହା ସର୍ବ ପ୍ରଥମେ ଆରମ୍ଭ କରିବା ଦରକାର । ଆଉ, ଏହା କିନ୍ତୁ ଅନିବାର୍ଯ୍ୟ ପ୍ରୟୋଜନ । ଆ.ପ୍ର. ୨୧/୧୬.୯.୧୯୫୨

## ।। ମଣିଷର କଣ ହେଉଛି ବିବର୍ତ୍ତନ ନା ଅପବର୍ତ୍ତନ ।।

ପ୍ରଶ୍ନ – ବିବର୍ତ୍ତନର ଫଳରେ କ୍ରମେ ଆହୁରି ଉନ୍ନତ ମଣିଷ ହେବ ତ ?

ଶ୍ରୀଶ୍ରୀଠାକୁର – କହିବା ମୁସ୍କିଲ, ବିବର୍ତ୍ତନ ହେଉଛି ନା ଅପବର୍ତ୍ତନ ହେଉଛି, ତାହା ବୁଝି ପାରୁ ନାହିଁ ।

ପ୍ରଶ୍ନ–Physical stature (ଶାରୀରିକ ମାନ) improve (ଉନ୍ନତି) କରୁଛି ତ ?

ଶ୍ରୀଶ୍ରୀଠାକୁର – Psycho-physical stature (ଶାରୀର-ମାନସିକ ମାନ) ଓ ability (ଯୋଗ୍ୟତା) ତ deteriorate କରୁଛି (ଅଧଃପତିତ ହେଉଛି) । ଶ୍ରଦ୍ଧା କମି ଯାଉଛି । ତାମାନେ psycho-physical weakness (ଶାରୀର-ମାନସିକ ଦୁର୍ବଳତା) ତୁମକୁ ଅନୁସରଣ କରୁଛି ।

ପ୍ରଶ୍ନ – ମଣିଷ କଣ ଏକାବେଳେ ଅସଂଶୋଧନୀୟ ପର୍ଯ୍ୟାୟକୁ ଚାଲି ଯାଏ ?

ଶ୍ରୀଶ୍ରୀଠାକୁର – ଅସଂଶୋଧନୀୟ ହେଲା ପରେ ଦୁଇଟା ଦିଗ ଥାଏ । ଗୋଟିଏ, ଚାପର ଠେଲାରେ ଠିକ୍ ହୋଇ ପାରେ, ନଚେତ୍ ନିଃଶେଷ ହୋଇ ଯାଏ ।

ଆ.ପ୍ର. ୨୧/୧୬.୯.୧୯୫୨

## ।। ପ୍ରତିଲୋମ ବିବାହ ଯଦି ହୋଇଯାଏ ତେବେ କଣ କରିବା ଦରକାର ।।

ପ୍ରତିଲୋମ ବିବାହ ଯଦି ହୁଏ, ତେବେ ସେ କନ୍ୟାକୁ ହରଣ କରି ଶ୍ରେୟ ବରଙ୍କୁ ଦେବା ଦରକାର । ପ୍ରତିଲୋମ ଜାତକ ସମଗ୍ର ସମାଜକୁ ଧ୍ୱଂସ କରି ଛାଡ଼େ । ତାହା ଦ୍ୱାରା ଯେଉଁ ସର୍ବନାଶ ହୁଏ, ସେହି ସର୍ବନାଶର ନିଆଁରେ ସବୁ ପୋଡ଼ି ଛାରଖାର ହୋଇ ଯାଏ । ଆ.ପ୍ର. ୨୧/୧୧.୧୧.୧୯୫୨

## ।। ସ୍ୱାମୀ-ସ୍ତ୍ରୀର ଭଲପାଇବା କାମନାର ଭିତ୍ତିରେ ରହିଲେ କଣ ହୁଏ ।।

କାମନାର ଭଲପାଇବା, ପ୍ରେମର ଭଲପାଇବା, ଏହି ଦୁଇଟି ମଧ୍ୟରେ ବହୁତ ତଫାତ୍। କାମନାର ଭଲ ପାଇବାରେ ମଣିଷ କେବଳ ଚାହେଁ, ସେଥିରେ ମଣିଷ ତୃପ୍ତି ପାଏ ନାହିଁ। ତା ମଧ୍ୟରେ ଭଲପାଇବାର ଭ-ମଧ୍ୟ ନାହିଁ। ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଯଦି କେବଳ କାମନାର ଭିତ୍ତିରେ ଭଲ ପାଇବା ରହେ, ତେବେ ସେଠାରେ ମଧ୍ୟ ଏହି ନିଜ ପାଇଁ ଚାହିଦା ହିଁ ପ୍ରବଳ ହୁଏ, ତେଣୁ ସେହିଟା ପାଇଲେହିଁ ହେଲା, ତା ଭିତରେ ଉପଭୋଗ ବୋଲି ଜିନିଷହିଁ ନାହିଁ। ପ୍ରକୃତ ଭଲ ପାଇବା ଥିଲେ ଗୋଟିଏ ପରଶରେ ଲକ୍ଷେ କାମନା ମୋହିତ ହୋଇଯାଏ। ସ୍ୱାମୀ-ପ୍ରୀତି ଯଦି ଥାଏ, ସ୍ୱାମୀ ଯଦି ଶ୍ରେୟ ହୁଅନ୍ତି, ସେଠାରେ କାମନାର ମଧ୍ୟ ଗୋଟିଏ ଉପଭୋଗ ଥାଏ। ମୂଳ ଜିନିଷ ହେଲା ଶ୍ରଦ୍ଧା, ପ୍ରୀତି। ଆ.ପ୍ର. ୨୧/୫.୧୨.୧୯୫୨

## ।। କିଏ ବଧୂ ହୋଇ ପାରେ ନା, ଗୃହିଣୀ କିଏ ।।

ଯିଏ ବହନ କରି ପାରେନା, ସେ ବଧୂ ହୋଇ ପାରେ ନା। ଯେ ଗ୍ରହଣ କରି ପାରେନା, ସେ ଗୃହିଣୀ ହୋଇ ପାରେ ନା। ଗୃହ କୁହାଯାଏ ଗ୍ରହଣ କରେ ବୋଲି। ଯେଉଁଠାରେ ଆଶ୍ରୟ ପାଉଁ। ଆ.ପ୍ର. ୨୧/୩.୧.୧୯୫୩

## ।। ବହୁବିବାହ ନ ହେଲେ କଣ ହେବ ।।

କେଷ୍ଟଦା – ଆଜିକାଲି ତ ବହୁ ବିବାହ ଆଇନତ ନିଷିଦ୍ଧ କରା ହେଇଛି।

ଶ୍ରୀଶ୍ରୀଠାକୁର – ବହୁବିବାହ ଯଦି ସମୀଚୀନ ମନେ କରନ୍ତି, କରିବା ଦରକାର। କରି ଜେଲ ଯିବାକୁ ପଡ଼ିବ। ପୁଣି କରିବାକୁ ପଡ଼ିବ, ଜେଲକୁ ଧରି ନେଇଯିବେ, ତଥାପି କରିବେ। ଉପଯୁକ୍ତ ପୁରୁଷର ବହୁବିବାହ ଓ ସନ୍ତାନ-ସନ୍ତତିଙ୍କ ସଂଖ୍ୟା ଯଦି ବେଶୀ ନ ହୁଏ, ତେବେ କୃଷ୍ଟିଗତ ସଂସ୍କାରସମ୍ପନ୍ନ ସତ୍ତା (ମଣିଷ) ଦେଶରେ ବେଶୀ ରହିବେ ନାହିଁ, ନିକୃଷ୍ଟଙ୍କର ସଂଖ୍ୟା ବଢ଼ିଯିବ, ସେହିମାନେହିଁ ଦେଶର ସର୍ବନାଶର କାରଣ ହୋଇ ଛିଡ଼ାହେବେ। ଉନ୍ନତତର ସନ୍ତତି ଯଦି ଆମେ ଚାହୁଁ, ଉପଯୁକ୍ତ ପୁରୁଷର ବିହିତ ସବର୍ଣ୍ଣ ଓ ଅନୁଲୋମ ବିବାହ ହେବା ଦରକାର। ତାହେଲେ ସମାଜ ସେତେ ଜୀବନ୍ତ ହୋଇ ଉଠିବ। ଆ.ପ୍ର. ୨୧/୧୧.୧.୧୯୫୩

## ।। ନାରୀ ଯଦି ଶ୍ରେୟକୁ ପସନ୍ଦ ନ କରେ ।।

ନାରୀ-ବ୍ୟକ୍ତିତ୍ୱ ସବୁସମୟରେ ହିଁ ଯେ ଶ୍ରେୟକୁ ପସନ୍ଦ କରେ, ତାହା କିନ୍ତୁ ନୁହେଁ। ତା ମାନେ କେଉଁଠି ବିକୃତି ଅଛି। ଆ.ପ୍ର. ୨୧/୧୮.୧.୧୯୫୩

## ।। ପ୍ରତ୍ୟେକ ସ୍ତ୍ରୀର ସବୁଠାରୁ ବଡ଼ ସମ୍ପଦ କଣ ।।

ପ୍ରତ୍ୟେକ ସ୍ତ୍ରୀର ସବୁଠାରୁ ବଡ଼ ସମ୍ପଦ ହେଲା ସ୍ୱାମୀସ୍ୱାର୍ଥିନୀ ହେବା। ସେଠାରେ ଅଭାବ, ବ୍ୟାଘାତ, ଆଲୋଡ଼ନ-ବିଲୋଡ଼ନ କିଛି କରି ପାରେ ନା, ଅଟକିଯାଏ। ଆଉ, ଯେଉଁମାନେ ସ୍ୱାମୀଙ୍କୁ ଉପଭୋଗର ଇନ୍ଧନ କରି ନିଅନ୍ତି, ସ୍ୱାମୀଙ୍କର ଗୋଟିଏ କ୍ଷତି ହେଲେ, ସେଥିରେ ସେମାନଙ୍କ ଦେହକୁ ବାଧେ ନାହିଁ, ଏପରି ହେଲେ ସେମାନେ ସୁଖୀ ହୋଇ ପାରନ୍ତି ନାହିଁ। ଆ.ପ୍ର. ୨୧/୨୭.୧.୧୯୫୩

## ।। ମଣିଷର ଚାଷ ବର୍ତ୍ତମାନହିଁ ଆରମ୍ଭ କରିବାକୁ ହେବ କାହିଁକି ।।

ମଣିଷର ଚାଷ ଯଦି ଆମେ ଠିକ୍‌ଭାବରେ ନ କରୁ, ଆଉ ଧାନ ଚାଷ, ଗହମ ଚାଷ ଯେତେବି କରୁନା କାହିଁକି, କିଛିହିଁ ହେବ ନାହିଁ। ସେଥିପାଇଁ ବାପା ଓ ମାର culture (ଶିକ୍ଷା) ଦରକାର। ପୁଣି କ୍ଷେତ୍ର ଓ ବୀଜର ସଙ୍ଗତି ଦରକାର। ମଣିଷ ନେଇ ସମାଜ। ମଣିଷ ଯେତେ ଭଲ ହେବ ସେତେ ଭଲ ସମାଜ ହେବ। Society (ସମାଜ) ଭଲ ହେବାମାନେ ଭଲ ପିଲା ହେବା। ଭଲ ପିଲା ଯେତେ ହେବେ, ସେତେ ଭଲ ଯୋଗ୍ୟତା ହେବ, ସେଥିରେ ସମାଜ ପ୍ରଗତିଶୀଳ ହେବ। ଯେଉଁଟାର ଫଳ ବିଳମ୍ବରେ ପାଇବ, ସେହିଟା ବର୍ତ୍ତମାନ ଆରମ୍ଭ କରିବାକୁ ହେବ। ଯେତେ ଡେରି କରିବ, ସେତେ ଡେରିରେ ଫଳ ପାଇବ। ଆ.ପ୍ର. ୨୨/୧୩.୨.୧୯୫୩

## ।। ବିବାହ କରିବା କେତେବେଳେ ଦୋଷାବହ ।।

ହଜାର ହଜାର ବିବାହ କରିଲେ କିଛି ଦୋଷ ହେବ ନାହିଁ, ଯଦି ସ୍ତ୍ରୀ-ସର୍ବସ୍ୱ ନ ହୁଏ। କିନ୍ତୁ ଗୋଟିଏ ବିବାହ କରି ମଧ୍ୟ ଯଦି ମଣିଷ ସ୍ତ୍ରୀ-ସର୍ବସ୍ୱ ହୁଏ, ତାହେଲେ ସେଇଟାହିଁ ଦୋଷର ହୁଏ। ଆଉ ବିବାହ ମାନେ ସ୍ତ୍ରୀ ବହନ କରିବ। ସ୍ତ୍ରୀର ବେଳକୁ ବିବାହ, ଆଉ ପୁରୁଷର ବେଳକୁ ଉଦ୍‌ବାହ। ସେ ଇଷ୍ଟଙ୍କଠାରେ ଆସକ୍ତ ହୋଇ ତାଙ୍କୁହିଁ ବହନ କରି ଚାଲିବ।
ଆ.ପ୍ର. ୨୨/୧୦.୩.୧୯୫୩

## ।। ଦୀକ୍ଷାର ପରେ ବିବାହ କାହିଁକି ।।

ଆଗରୁ ଗୋଟିଏ ନିୟମ ଥିଲା, ଦୀକ୍ଷା ନ ନେଲେ ବିବାହ ହୋଇ ପାରୁ ନଥିଲା । ପ୍ରଥମେ ଦୀକ୍ଷିତ ହେବ, ତାପରେ ବିବାହ କରିବ । ସେ ଆଦର୍ଶଙ୍କ ସହିତ ଯୁକ୍ତ ହେଲେହିଁ ଦାମ୍ପତ୍ୟଜୀବନରେ ପ୍ରବେଶ କରି ପାରୁଥିଲା । ତେଣୁ ନାରୀଠାରେ ସେ କେତେବେଳେହିଁ ଆତ୍ମସମର୍ପଣ କରୁ ନଥିଲା । କାରଣ ସେ ତା ଆଗରୁ ଆତ୍ମନିବେଦିତ ।

ଆ.ପ୍ର. ୨୨/୨୪.୪.୧୯୫୩

## ।। ଜାତକ ଅପକୃଷ୍ଟ ହେବାକୁ ଲାଗିଲେ କଣ ହେବ ।।

ଚାଷବାସ ଯେତେହିଁ କରୁ, ମଣିଷ ଚାଷ ଯଦି ନ କରୁ, ଜାତକ ଯଦି ଅପକୃଷ୍ଟ ହେବାକୁ ଲାଗେ ତାହେଲେ ଠକି ଯିବ । ବାପ ଠାରୁ ପିଲା ଅନ୍ତତଃ ଚାରି ଆଙ୍ଗୁଳି ବଡ଼ ହେବା ଦରକାର । ମଣିଷ ଯଦି ମଣିଷ ନ ହୁଏ, ତେବେ ଚାଷ ବା କରିବ କିଏ ଆଉ ବାସ ବା କରିବ କିଏ ? ... ମନେ ରଖ, ପ୍ରଜନନ-ବ୍ୟାପାରରେ vegetable world, animal world, human world (ଉଦ୍ଭିଦଜଗତ, ପଶୁଜଗତ, ମାନବଜଗତ) ସର୍ବତ୍ର ଅନେକ ପରିମାଣରେ ଗୋଟିଏ ହିଁ ନୀତି ।

ଆ.ପ୍ର. ୨୨/୨୭.୫.୧୯୫୩

## ।। ବିବାହ କରିବା ଅପରିହାର୍ଯ୍ୟ କି ନା ।।

ବିବାହ ନ ହେଲେ ତ ଦୁନିଆ ଅଟକି ଯିବ । ବିବାହ ନ-କରିବା-ମଣିଷଙ୍କର ପ୍ରୟୋଜନ ସଂସାରୀମାନଙ୍କ ପାଇଁ । ବିବାହ କରିଲେ ଭାଗବତ ଅଶୁଦ୍ଧ ହେବ ନାହିଁ । ପାରିବାରିକ ଯାଜନ ଓ ଅନୁଶୀଳନର ଭିତର ଦେଇ ସମଗ୍ର ପରିବାରକୁହିଁ ଇଷ୍ଟାର୍ଥପରାୟଣ କରି ତୋଳିବା ଦରକାର । ପ୍ରତ୍ୟେକେ ଉଦ୍‌ବର୍ଦ୍ଧନୀ କୃଷ୍ଟିର ପଥରେ ଚାଲିବେ, ସମଗ୍ର ପରିବାର ଦାନା ବାନ୍ଧି ଉଠିବ ।

ଆ.ପ୍ର. ୨୨/୨୭.୫.୧୯୫୩

## ।। କେଉଁମାନଙ୍କ ପାଖରେ ଝିଅ ଦେବା ଚଳେ ନାହିଁ ।।

କୂଳତପା ହେଲେ କୌଷିକ ଉପାଦାନର ବିହିତ ବିନ୍ୟାସ ହୁଏ, ନଚେତ ତାର ଅଭାବ ହୁଏ, ଜୈବୀ-ସଂସ୍ଥିତି ହୀନ ହୋଇ ପଡ଼େ । ସେମାନଙ୍କ ଠାରେ ଝିଅ ଦେବା ଚଳେ ନାହିଁ । ସେମାନଙ୍କ ଝିଅ ନିଆ ଯାଇପାରେ । ଆ.ପ୍ର. ୨୨/୪.୭.୧୯୫୩

## ।। ଅଧିକାଂଶ ନାରୀ-ପୁରୁଷ କଣ ଜାଣନ୍ତି ନାହିଁ ।।

ବେଶୀ ଭାଗ ପୁରୁଷ ଜାଣନ୍ତି ନାହିଁ ସ୍ତ୍ରୀ ସହିତ କିପରି ଭାବରେ ମିଶିବାକୁ ହୁଏ ଏବଂ ଝିଅମାନେ ମଧ୍ୟ ଜାଣନ୍ତି ନାହିଁ କିପରି ଭାବରେ ସ୍ୱାମୀ-ସେବା କରିବାକୁ ହୁଏ। ଯୌନ ଉପଭୋଗ କାହାକୁ କହନ୍ତି, ତା ମଧ୍ୟ ବହୁ ପୁରୁଷ ଓ ନାରୀ ଜାଣନ୍ତି ନାହିଁ। ଆଦର୍ଶ ବିବାହ କାହାକୁ କହନ୍ତି ସେ ସମ୍ବନ୍ଧରେ ଗୋଟିଏ ପରିଷ୍କାର ଧାରଣା ଅନେକଙ୍କର ନାହିଁ। ତାହା ଯଦି ଥାଆନ୍ତା, ତାହେଲେ ଏପରି ଗୋଟାଏ sentiment (ଭାବାନୁକମ୍ପିତା) ଝିଅମାନଙ୍କ ମଧ୍ୟରେ ଜାଗ୍ରତ ଥାଆନ୍ତା ଯେ, ବିବାହବିଚ୍ଛେଦର କଥାରେ ସେମାନେ ନିଆଁ ଲଗାଇ ଦିଅନ୍ତେ। ଭଲପାଇବା ବାଦ୍‌ଦେଇ ଯୌନ ଉପଭୋଗର ଇଚ୍ଛା ଛାଡ଼ି ଦିଅନ୍ତେ। ଭଲପାଇବା ବାଦ୍‌ଦେଇ ଯୌନ ଉପଭୋଗର ଇଚ୍ଛା ଗୋଟିଏ ନୁଙ୍ଗୁରା ଜିନିଷ। ସବୁ ବ୍ୟାପାରରେ ଆମ୍ଭମାନଙ୍କର ଚଳନ ଆଦର୍ଶାନୁଗ ହେବା ଦରକାର।

ଆ.ପ୍ର. ୨୨/୬.୭.୧୯୫୩

## ।। ଉପଯୁକ୍ତ ପୁରୁଷର ପ୍ରତି ନାରୀର ଟାଣ ହେଲେ କଣ ହୁଏ ।।

ଉପଯୁକ୍ତ ପୁରୁଷର ପ୍ରତି ଯଦି ଗୋଟିଏ ଝିଅର ସର୍ବୋତୋଭାବରେ ଟାଣ ହୁଏ, ତେବେ ସେ ଝିଅ unconsciously (ଅଜ୍ଞାତସାରରେ) moulded (ନିୟନ୍ତ୍ରିତ) ହୋଇ ଯାଏ। ସେ ତାର (ସେହି ପୁରୁଷର) ଯାହା-କିଛିର ପ୍ରତି ଗୋଟିଏ affinity (ଟାଣ) ବୋଧ କରେ। ଆଉ, ସେହି ଭାବରେ ନିଜକୁ ଗଠିତ କରି ତୋଳିବାକୁ ଚାହେଁ। କେଉଁଥିରେ ପୁରୁଷ ସୁଖୀ ହେବ, ତାହାହିଁ ତାର ଧନ୍ଦା ହୋଇଉଠେ। ଭଲ instinct (ସଂସ୍କାର) ଥିଲେ ଏପରି ହୁଏ। ଏହାଦ୍ୱାରା ତାର ରଜସ-ଶୌର୍ଯ୍ୟ ବଢ଼ି ଯାଏ। ସେ ସୁଖୀ ମଧ୍ୟ ହୁଏ। ଯେଉଁଠାରେ ଶ୍ରେୟ ଆକର୍ଷଣର ଭିତର ଦେଇ ହୃଦୟ ଭରି ରହିଥାଏ, ଭାବସନ୍ଦୀପ୍ତ ହୋଇ ରହିଥାଏ, ସୁଖ ସେହିଠାରେହିଁ ଉଛୁଳି ଉଠେ। ଅନ୍ୟ କୌଣସିଥିରେ ସୁଖ ନାହିଁ। Concentric (ସୁକେନ୍ଦ୍ରିକ) ନହେଲେ ତା ମଧ୍ୟରେ ଛନ୍ନତା ରହିବହିଁ। ପ୍ରବୃତ୍ତି-ଅଭିଭୂତ ପ୍ରଚ୍ଛନ୍ନ ଛନ୍ନତା ଯେ କେତେ ପ୍ରକାରରେ ଥାଏ, ତାର ଠିକ୍ ନାହିଁ। କେତେ ପୁରୁଷ ଅଛନ୍ତି ସ୍ତ୍ରୀ ପଛେ ପଛେ ଘୁରି ବୁଲନ୍ତି, ପରିବା କାଟି ଦିଅନ୍ତି, ପୁଅର ଗୁହ କନ୍ଥା କାଟି ଦିଅନ୍ତି, ସ୍ତ୍ରୀର ପାଦର ମଇଳା ଘଷି ସଫା କରି ଦିଅନ୍ତି। ସେ ଜାଗାରେ ସ୍ତ୍ରୀ କେତେବେଳେବି ସୁଖୀ ହୁଏ ନାହିଁ। ଭାବେ ବାପ-ମା ମୋତେ ଏହିପରି ଜଣେ ନପୁଂସକ ହାତରେ ଦେଇଛନ୍ତି। Negative (ସ୍ତ୍ରୀ) ଯଦି positive (ପୁରୁଷ)ଠାରୁ

strong (ସବଳ) ହୁଏ, ସେ negative (ସ୍ତ୍ରୀ) positive (ପୁରୁଷ) ପରି work (କାମ) କରେ। ଆ.ପ୍ର. ୨୨/୭.୭.୧୯୫୩

## ।। ସ୍ୱାମୀଙ୍କ ପ୍ରତି ଉଦଗ୍ର ଟାଣ ନ ରହିଲେ କଣ ହୁଏ ।।

ପୁରୁଷ ଓ ନାରୀର ପରସ୍ପର ପ୍ରତି ପରସ୍ପରର ଟାଣ ନ ରହିଲେ, ଉଭୟଙ୍କର ଭଲପାଇବାର expression (ଅଭିବ୍ୟକ୍ତି) active (ସକ୍ରିୟ) ନହେଲେ, ଜଣେ ଅନ୍ୟ ଜଣକ ସମ୍ବନ୍ଧରେ inert (ନିଥର) ହେଲେ ସନ୍ତାନ-ସନ୍ତତିର ମଧ୍ୟରେ କିଛି diffect (ତୃଟି) ରହିଯାଏ। ସ୍ୱାମୀ-ସ୍ତ୍ରୀ ପରସ୍ପର ପରସ୍ପରକୁ ଆଦର କରି ଯଦି ଖୁସି ନ ହୁଅନ୍ତି, ଜଣେ ଯଦି ନିଥର ହୋଇ ରହେ, ତେବେ ତା ଫଳରେ ଆଉଜଣଙ୍କର ସଜୀବ ଭାବ କମି ଯାଇ ପାରେ। ଗୋଟିଏ ଝିଅ ହୁଏତ ଖରାପ ନୁହେଁ, ଭଲହିଁ। କିନ୍ତୁ ସ୍ୱାମୀଙ୍କ ପ୍ରତି ଯଦି ତାର ଉଦଗ୍ର ଟାଣ ନ ରହେ, ତାହେଲେ ସ୍ୱାମୀଙ୍କୁ ଜୀବନପଥରେ ଉଦ୍ଦୀପିତ କରି ରଖିପାରେ ନାହିଁ। ସ୍ୱାମୀର ସ୍ୱାଭାବିକ ପ୍ରୀତି-ଅଭିବ୍ୟକ୍ତିରେ ଯେଉଁ ଝିଅ ଆନନ୍ଦ ପାଏ ନାହିଁ, କିମ୍ବା ସ୍ୱାମୀ ପ୍ରତି ଯାହାର ପ୍ରୀତି ଅଭିବ୍ୟକ୍ତିସମ୍ପନ୍ନ ନୁହେଁ, ପ୍ରାୟହିଁ ଦେଖା ଯାଏ, ସେମାନଙ୍କ ଭିତରେ କିଛି suppression (ଅବଦମନ) ଅଛି। ପୁଣି ସେମାନେ ଯଦି ଖୁବ୍ ଆଗ୍ରହଶୀଳା ହୁଅନ୍ତି, ସେମାନଙ୍କର ସବୁ କିଛି ନେଇ ସ୍ୱାମୀଙ୍କ ପ୍ରତି ଯଦି ଉଦଗ୍ର ହୋଇ ରହନ୍ତି, ତାଙ୍କର ତୁଷ୍ଟି, ତୃପ୍ତି ସେମାନଙ୍କର ଏକମାତ୍ର କାମ୍ୟ ହୁଏ, ସ୍ୱାମୀ-ସଂସାର, ତାଙ୍କର ଗୁରୁଜନ-ପ୍ରିୟ-ପରିଜନ-ସନ୍ତାନସନ୍ତତିକୁ ସୁସ୍ଥ ଓ ଦୀପ୍ତ ରଖିବା ପାଇଁ ସଦାସକ୍ରିୟ ରହନ୍ତି, ସେତେବେଳେ ତାଙ୍କ ସ୍ପର୍ଶରେ ସ୍ୱାମୀଙ୍କର କର୍ମଶକ୍ତିମଧ୍ୟ ଅନେକ ପରିମାଣରେ ବଢ଼ିଯାଏ। ସେମାନଙ୍କର ସେହି ଚରଭାବ ପୁରୁଷକୁ ଅନେକ ପରିମାଣରେ induced (ଉଦ୍‌ବୁଦ୍ଧ) କରି ତୋଳେ। ସ୍ୱାମୀ ଯେ ନାରୀର କି ସମ୍ପଦ, କୁମାରସମ୍ଭବର ଭିତରେ ତାର ଚିତ୍ରଟି ଦେଖା ଯାଏ।

ଆ.ପ୍ର. ୨୨/୭.୭.୧୯୫୩

## ।। ସୁବିବାହ ବିଶେଷ ପ୍ରୟୋଜନ କାହିଁକି ।।

ଆଜିକାଲି କୌଳିନ୍ୟ-ଚୌଳିନ୍ୟ ଆମେ ମାନୁ ନାହୁଁ। ଅଥଚ ସୁପ୍ରଜନନ ପାଇଁ ଏ-ସବୁ ଦେଖିବା ଦରକାର। ଆମେ ଦେଶରେ ଯେତେ ଜିନିଷ ଚାଷ କରୁନା କାହିଁକି, ଭଲ ମଣିଷର ଚାଷ ଯଦି ନ କରୁ, ଭଲ କରି କିଛି ଗଢ଼ି ତୋଳି ପାରିବୁ ନାହିଁ।

ତେଣୁ ସୁବିବାହର ବିଶେଷ ପ୍ରୟୋଜନ। ମଣିଷ ଚାଷ କରି କାମ କରିବାକୁ ସମୟ ଲାଗେ, ଅଥଚ ଏହା ନ ହେଲେ ମଧ୍ୟ ହେବ ନାହିଁ। ତେଣୁ ଏହା ସର୍ବପ୍ରଥମେ ଆରମ୍ଭ କରିବା ଦରକାର। ଯେତେ ବିଳମ୍ବ କରିବ, ସେତେହିଁ କ୍ଷତିରେ ପଡ଼ି ଯିବ।

ଆ.ପ୍ର. ୨୨/୬.୮.୧୯୫୩

## ।। ବିଶ୍ୱବିଦ୍ୟାଳୟ କଣ ପାରେ ନାହିଁ ।।

ଆଗରୁ ଘଟକ ଥିଲେ। ସେମାନେ ଥିଲେ eugenic experts (ସୁପ୍ରଜନନ-ବିଶେଷଜ୍ଞ)। ଆଜିର western genetics and eugenic (ପାଶ୍ଚାତ୍ୟ ଜନନ ଓ ସୁପ୍ରଜନନ-ବିଦ୍ୟା) ଏତେଦୂର ଆଗେଇଛି କିନା କହି ପାରିବି ନାହିଁ। ବଂଶାନୁକ୍ରମିକ ଧାରାକୁ ଉନ୍ନତରୁ ଉନ୍ନତତର ଯଦି କରି ତୋଳା ନଯାଏ, ତାହେଲେ ବୈଜ୍ଞାନିକମାନଙ୍କର ଦାମ କଣ ? ବିଶ୍ୱବିଦ୍ୟାଳୟ ମଣିଷ କରି ଦେଇ ପାରେ ନାହିଁ। ମଣିଷ ସହଜାତ ସଂସ୍କାର ନେଇ ଜନ୍ମାଏ, ତାକୁ ଶିକ୍ଷା ଆହୁରି ପରିମାର୍ଜିତ କରେ।

ଆ.ପ୍ର. ୨୨/୬.୮.୧୯୫୩

## ।। ଫୁଂମୈଥୁନରେ କଣ ହୁଏ ।।

ଫୁଂମୈଥୁନରେ ମେଧାନାଡ଼ୀ ଛିଡ଼ି ଯାଏ। ଝିଅମାନଙ୍କ ସହିତ ବିହିତ ଯୌନ ସଂଶ୍ରବରେ କିନ୍ତୁ ତାହା ହୁଏ ନାହିଁ। ତେବେ ଝିଅମାନେ ସୁକେନ୍ଦ୍ରିକ ନ ହେଲେ ମୁସ୍କିଲ। ସେମାନଙ୍କ ନିରଭିମାନ ଶ୍ରଦ୍ଧୋଷିତ ଅନୁଚର୍ଯ୍ୟାପରାୟଣ ହେବା ଦରକାର। ଯଦି ଭୋଗଲିପ୍ସୁ ହୁଅନ୍ତି, ଖିଆଲି ହୁଅନ୍ତି, ତାହେଲେ ହେବ ନାହିଁ। ସେଥିରେ ସୁଖ ବୋଲି ଜିନିଷଟାହିଁ ବୋଧ କରି ପାରନ୍ତି ନାହିଁ, ଜୀବନ ବିଚ୍ଛିନ୍ନ ହୋଇ ଯାଏ।

ଆ.ପ୍ର. ୨୨/୯.୮.୧୯୫୩

## ।। ହଜାରେ ଅର୍ଥନୈତିକ ପରିକଳ୍ପନା କେତେବେଳେ ବିଫଳ ହେବ ।।

ମଣିଷର ଚାଷ ଯଦି ଭଲ ନ ହୁଏ, ସେମାନଙ୍କର ଯୋଗ୍ୟତା ଯଦି ନ ବଢ଼େ ତେବେ ହଜାରେ ଅର୍ଥନୈତିକ ପରିକଳ୍ପନାରେ କଣ ହେବ ? ଆଜିକାଲି ମଣିଷର ନୈତିକ ମାନ ଏପରି ହୋଇଛି ଯେ ପାଞ୍ଚଶହ ଟଙ୍କା ଧାର ନେବାକୁ ହେଲେ ଦୁଇଶହ ଟଙ୍କା ଘୁଷ ଦେବାକୁ ହୁଏ। ଭାରତ ଯଦି ନିଜର ଐତିହ୍ୟର ଉପରେ ଛିଡ଼ା ହୁଏ ଏବଂ ଆଦର୍ଶରେ

ସଂହତ ହୋଇ ଉଠେ, ତାହେଲେ ତା ସହିତ କେହି ପାରିବେ ନାହିଁ।

ଆ.ପ୍ର. ୨୨/୧୬.୮.୧୯୫୩

## ।। ଏକ ମାଆର ବିଭିନ୍ନ ସନ୍ତାନ ବିପରୀତ ଚରିତ୍ରର ହୁଅନ୍ତି କାହିଁକି ।।

ତା ମାନେ ମନର ଅବସ୍ଥା ଯେତେବେଳେ ଯେପରି, ସେତେବେଳେ ସେହିପରି ହୁଏ। ଆ.ପ୍ର. ୨୨/୩୦.୮.୧୯୫୩

## ।। କୃତ୍ରିମ ଉପାୟରେ ଗର୍ଭସଞ୍ଚାରରେ ସନ୍ତାନ ଭଲ ହେବ କିନା ।।

ସାଧାରଣ ଭାବରେ ଯେପରି ହୁଏ, ସେପରି ଭଲ ହେବ ନାହିଁ। ଗର୍ଭାଧାନର ସମୟ, ଗର୍ଭାବସ୍ଥାରେ ମାଆର ମନର ଭାବଭୂମି-ଅନୁଯାୟୀ ସନ୍ତାନର ଚରିତ୍ର ଅନେକ ପରିମାଣରେ ପ୍ରଭାବିତ ହୁଏ। ଆ.ପ୍ର. ୨୨/୩୦.୮.୧୯୫୩

## ।। ସବୁଠାରୁ କଠିନ ବିଷୟ କଣ ।।

ଜଣେ କହିଲେ – ଅଭିମନ୍ୟୁର ଜନ୍ମବୃତ୍ତାନ୍ତ ଯଦି ଆମେ ବିଶ୍ୱାସ କରୁ, ତାହେଲେ ମଧ୍ୟ ବୁଝାଯାଏ ଯେ (ଗର୍ଭାବସ୍ଥାରେ ମାଆର ଭାବଭୂମି-ଅନୁଯାୟୀ ସନ୍ତାନର ଚରିତ୍ର ପ୍ରଭାବିତ ହୁଏ –) ଏହି ଜିନିଷଟି ସତ୍ୟ।

ଶ୍ରୀଶ୍ରୀଠାକୁର – (ଉଚ୍ଚକଣ୍ଠରେ) – 'ସତ୍ୟ ସବୁ, କିନ୍ତୁ ନାମରୂପ ପାରେ ନିତ୍ୟମୁକ୍ତ ଆତ୍ମା ଆନନ୍ଦେ ବିହରେ।' (ପରେ ସ୍ୱାଭାବିକଭାବରେ) ମୁଁ ଦେଖେ ସବୁକିଛି ଅପେକ୍ଷା କଠିନ ହେଲା ବିବାହ ବିଷୟ, ଏହାପରି କଠିନ ଆଉ କିଛିହିଁ ନାହିଁ। ତେଣୁ ମୁଁ... କହେ – ବିବାହ ଯଦି ଦିଅ, ଦେଖିଶୁଣି ଦିଅ!

ଆ.ପ୍ର. ୨୨/୩୦.୮.୧୯୫୩

## ।। ଜାତିର ପ୍ରଧାନ ଜିନିଷ କଣ ।।

ଜାତିର ପ୍ରଧାନ ଜିନିଷ ଆଦର୍ଶ ଓ ଜନ୍ମ। ଆଦର୍ଶାନୁଗ ଅନୁଶୀଳନର ଭିତର-ଦେଇ ମଣିଷର ଚରିତ୍ର ଉନ୍ନତ ହୁଏ। ପୁଣି ଉପଯୁକ୍ତ ବିବାହର ଭିତର-ଦେଇ ତାହା ସଂସ୍କାର ରୂପେ ସନ୍ତାନଠାରେ ସଂକ୍ରାମିତ ହୁଏ।

ଆ.ପ୍ର. ୨୨/୧୯.୧୨.୧୯୫୩

## ।। ସମାଜ ଉନ୍ନତ ହେବ କିପରି ।।

Society (ସମାଜ)-କୁ ବଡ଼ କରିବାକୁ ଯଦି ଚାହୁଁ, ଆମ୍ଭମାନଙ୍କ ଖୁବ୍‌ଶୀଘ୍ର proper marriage (ସୁବିବାହ)-ର ବ୍ୟବସ୍ଥା କରିବାକୁ ହେବ। ଏହାର ଫଳ ଡେରିରେ ପାଇବୁ, ତେଣୁ ଖୁବ୍‌ଶୀଘ୍ର ଏହା ଆରମ୍ଭ କରିବାକୁ ପଡ଼ିବ। ସଙ୍ଗେ-ସଙ୍ଗେ ଅନୁଲୋମ ଅସବର୍ଣ୍ଣ ବିବାହ ଓ ବହୁବିବାହର ବ୍ୟବସ୍ଥା କରିବାକୁ ହେବ।

ପ୍ରଶ୍ନ – ବିଜ୍ଞାନ ବହୁବିବାହର ସମର୍ଥନ କରେ, କିନ୍ତୁ ସାମାଜିକ ପ୍ରଥା ଏହାର ବିରୁଦ୍ଧରେ।

ଶ୍ରୀଶ୍ରୀଠାକୁର – ଏହିପରି custom (ପ୍ରଥା) ମାନେ ଆମ୍ଭମାନଙ୍କର ଅଦୃଷ୍ଟ। ସବର୍ଣ୍ଣ ଓ ଅନୁଲୋମକ୍ରମେ ବହୁବିବାହ ହେବା ଦରକାର, ପ୍ରତିଲୋମ ଯେପରି ନ ହୁଏ।

ପ୍ରଶ୍ନ – ଶୁଣାଯାଏ ପୁରୁଷ ସ୍ୱଭାବତଃ ବହୁଗାମୀ।

ଶ୍ରୀଶ୍ରୀଠାକୁର – ତାହା ହେଲା call of becoming (ବୃଦ୍ଧିର ଡାକ)। ଆମେ ବଡ଼ ହେବାକୁ ଚାହୁଁ। ଚାହୁଁ ସନ୍ତାନ-ସନ୍ତତି ମଧ୍ୟ ବଞ୍ଚନ୍ତୁ, ବଡ଼ ହୁଅନ୍ତୁ। ସତ୍ତା ସଚ୍ଚିଦାନନ୍ଦମୟ।

ଆ.ପ୍ର. ୨୨/୧.୧.୧୯୫୪

## ।। ଯୌନ ଜୀବନ କେତେବେଳେ ନୀତିସମ୍ମତ ହୁଏ ।।

Sex life (ଯୌନଜୀବନ)-ହିଁ ହେଉ, ଆଉ ଯାହା ହେଉ – ତାହା ଯଦି ସତ୍ତାପୋଷଣୀ ହୁଏ, ତାହେଲେହିଁ ତାହା moral (ନୀତିସମ୍ମତ)। ଯେ-କୌଣସି ପ୍ରବୃତ୍ତି ସମ୍ବନ୍ଧରେହିଁ ଏହି କଥା। ଦେଖିବାକୁ ହେବ ତାହା ଯେପରି ସପରିବେଶ ମୋର ସତ୍ତାପୋଷଣୀ ହୁଏ। କେବଳ ନିଜର ସ୍ୱାର୍ଥ ଦେଖିଲେ ଚଳିବ ନାହିଁ।

ଆ.ପ୍ର. ୨୨/୧.୧.୧୯୫୪

## ।। ରେଜେଷ୍ଟ୍ରି ବିବାହ ଓ ଆନୁଷ୍ଠାନିକ ବିବାହରେ ତଫାତ୍ କେଉଁଠି ।।

ଆନୁଷ୍ଠାନିକ ବିବାହରେ ସ୍ୱୀକୃତି ଥାଏ ଯେ ସ୍ୱାମୀ ବଧୂର ସତ୍ତା ଆଉ ବଧୂ ତାକୁ ବହନ କରେ। ଗୋଟିଏ ଚୁକ୍ତି, ଆଉ ଗୋଟିଏ ଶୁଭ-ଅନୁଷ୍ଠାନ। ସ୍ୱାମୀ ଓ ବଧୂ ଉଭୟେ ମିଶି ଗୋଟିଏ ସତ୍ତା। ବଧୂ ସ୍ୱାମୀଙ୍କର ଅଂଶୀଦାର ନୁହେଁ ଅଂଶ। ବିବାହ ଠିକ୍‌ଭାବରେ ହେବା ଏକାନ୍ତ ପ୍ରୟୋଜନ।

ଆ.ପ୍ର. ୨୨/୧.୧.୧୯୫୪

ଆପଣଙ୍କମାନଙ୍କର ଯାହା characteristics (ଚରିତ୍ର-ଲକ୍ଷଣ) ତାହା ଆପଣମାଙ୍କର ପିଲାମାନଙ୍କ ଭିତର ଦେଇ flow (ପ୍ରବାହିତ) ହୋଇ ପାରେ। Father-element (ପିତୃଧାରା) ଓ mother-element (ମାତୃଧାରା) ଯଦି ସତ୍‌ସଙ୍ଗତିସମ୍ପନ୍ନ ହୁଏ, ତେବେ ଏହା ହେବା ସମ୍ଭବ। ଦୀ.ର. ୧/୪.୧୨.୧୯୫୩

## ।। କୁଳୀନ ଓ ବଂଶଜ ମଧ୍ୟରେ ବିବାହ ଚଳି ପାରିବ କି ନା ।।

ବ୍ରାହ୍ମଣମାନଙ୍କ ମଧ୍ୟରେ ବଂଶଜ କହିଲେ ବୁଝିବାକୁ ହେବ – ଯେଉଁ- କୁଳୀନମାନେ ଅକୁଳୀନ ଘରେ ଝିଅ ଦେଇଛନ୍ତି। କୁଳୀନ ହୋଇ ଅକୁଳୀନ ଘରେ ଝିଅ ଦେବା ଯେ ପାପ, ତାର ଶାସ୍ତିସ୍ୱରୂପ ସମାଜ ସେମାନଙ୍କୁ ବଂଶଜ ଆଖ୍ୟାରେ ଆଖ୍ୟାୟିତ କରି ରଖିଲା। କିନ୍ତୁ ଏହି ବଂଶଜମାନେ କୁଳୀନ-ବଂଶଜ। କୁଳୀନର ଝିଅ ଯଦି ସେମାନଙ୍କ ଘରେ ବିବାହ ଦିଏ ତାହେଲେ କୁଳୀନର blood-ର (ରକ୍ତର) purity (ପବିତ୍ରତା)-ଟାତ ନଷ୍ଟ ହେଲା ନାହିଁ। ତେଣୁ, କୁଳୀନ ସହିତ ବଂଶଜର ବିବାହାଦି ବିଷୟରେ କୌଣସି ବାଧା ଅଛି ବୋଲି ତ ମନେ ହୁଏନା।

ଦୀ.ର. ୧/୨୨.୩.୧୯୫୪

## ବ୍ରାହ୍ମଣର ପୁଅ ଓ କାୟସ୍ଥର ଝିଅର ବିବାହ କେତେବେଳେ ଅସିଦ୍ଧ ।।

ପ୍ରଫୁଲ୍ଲ (ଦାସ) ଦା ଆସି ଜଣେ ବ୍ରାହ୍ମଣ ପୁଅ ସମ୍ବନ୍ଧରେ ଜାଣିବାକୁ ଚାହିଁଲେ। ତାର ଜଣେ କାୟସ୍ଥ ଝିଅର ସହିତ ଭଲପାଇବା ଅଛି। ପରେ ପରସ୍ପରର ଦୈହିକ ମିଳନ ମଧ୍ୟ ହୋଇଛି। ବର୍ତ୍ତମାନ ଉଭୟେ ଉଭୟଙ୍କୁ ବିବାହ କରିବା ପାଇଁ ପାଗଳ। ଏ କ୍ଷେତ୍ରରେ କରଣୀୟ କଣ ?

ଶ୍ରୀଶ୍ରୀଠାକୁର – ଏହା ବ୍ୟତୀତ ଆଉ ଉପାୟ କଣ ? ଏବେ ବିବାହ କରନ୍ତୁ। କିନ୍ତୁ ସବର୍ଣ୍ଣା (ବିବାହ) ନ କଲେ ଏହି ବିବାହ ଅସିଦ୍ଧ।

ପ୍ରଫୁଲ୍ଲଦା – ସବର୍ଣ୍ଣା ବିବାହ କଣ ଏହି ବିବାହ ଆଗରୁ କରିବାକୁ ହେବ, ନା ପରେ କଲେ ମଧ୍ୟ ଚଳିବ ?

ଶ୍ରୀଶ୍ରୀଠାକୁର – ପ୍ରଥମେ ମଧ୍ୟ କରି ନେଇ ପାରନ୍ତି। ମୋଟ କଥା, ନ କରିଲେ ଏହା ଅସିଦ୍ଧ। ଦୀ.ର. ୧/୨୬.୩.୧୯୫୪

କେହି ଯଦି ଭକ୍ତିପରାୟଣ ହୁଏ, ତାହେଲେ ତ କଥାହିଁ ନାହିଁ। ଆଉ ଅଳ୍ପବହୁତ ସମସ୍ତଙ୍କର ସେ ସମ୍ଭାବନା ଅଛି। ଆ.ପ୍ର. ୨୨/୧୪.୧.୧୯୫୪

## ।। ମଣିଷ ଚାଷ କରିବାକୁ ହେବ କାହିଁକି ।।

ଚାଷବାସ ଯାହା କରୁ ତା ସହିତ ଯଦି ମଣିଷର ଚାଷ ନ କରୁ, ତାହେଲେ କିଛିହିଁ ହେଲା ନାହିଁ। ମଣିଷ ଯଦି ନ ବଞ୍ଚେ ତେବେ ଚାଷ ବା କରିବ କିଏ, ବାସ ବା କରିବ କିଏ ? ଧାନ ଚାଷ କରି ଫଳ ପାଇବାକୁ କେତେଟା ମାସ ଲାଗେ, ଆଉ ମଣିଷ ଚାଷ କରି ଫଳ ପାଇବାକୁ ଷୋହଳରୁ କୋଡ଼ିଏ ବର୍ଷ ଦରକାର।

ଦୀ.ର. ୧/୨୭.୫.୧୯୫୩

## ।। ମୌଳିକ କାୟସ୍ଥ କୂଳୀନର ଝିଅ ନେଲେ କଣ ହୁଏ ।।

ଶ୍ରୀଶ୍ରୀଠାକୁର ଜଣକୁ ପଚାରିଲେ – ତୁମେ କଣ କୂଳୀନ ?

ଉତ୍ତର – ନା, ମୁଁ ମୌଳିକ କାୟସ୍ଥ।

ଶ୍ରୀଶ୍ରୀଠାକୁର – ତାହେଲେ ଆଉ କୂଳୀନର ଝିଅ ନିଅ ନାହିଁ। କୂଳୀନର ଝିଅ ନେଲେ degeneration (ଅବନତି) ଆସିବ। ଏହି-ପ୍ରକାର ଯେଉଁଠି-ଯେଉଁଠି ହୋଇଛି ଦେଖିବ ତା ମଧ୍ୟ adjusted (ନିୟନ୍ତ୍ରିତ) କରି ଦେବାକୁ ପଡ଼ିବ।

ଦୀ.ର. ୨୨/୨୭.୫.୧୯୫୩

## ।। ପିତୃଧାରା ଓ ମାତୃଧାରା ସତ୍‌ସଙ୍ଗତି ସମ୍ପନ୍ନ ହେଲେ କଣ ହୁଏ ।।

ମଣିଷର make-up (ସଂଗଠନ) ଏପରିଭାବରେ ଥାଏ, ଯାହା ଦେଖି ତାର characteristics (ଚରିତ୍ର-ଲକ୍ଷଣ) determined (ନିର୍ଦ୍ଧାରଣ) କରାଯାଏ। କେତେଗୁଡ଼ିଏ flow-of activities-ର (କର୍ମପ୍ରବାହର) ଭିତର-ଦେଇ ଆପଣ determined (ନିର୍ଦ୍ଧାରିତ) ହୋଇ ଅଛନ୍ତି। ଯେପରି, ଶକୁନ୍ତଳାକୁ ଦେଖି ଦୁଷ୍ମନ୍ତର ତାକୁ ବିବାହ କରିବାର ଇଚ୍ଛା ହେଲା। କିନ୍ତୁ ଅନ୍ତରରେ ସେ ଏତେ ପରିମାଣରେ dtermined (ନିଶ୍ଚିତ) ଅଛନ୍ତି ଯେ, ଯେହେତୁ ତାର କ୍ଷତ୍ରିୟ ମନ ଶକୁନ୍ତଳାର ପ୍ରତି ଆକୃଷ୍ଟ ହୋଇଛି, ଅତଏବ ନିଶ୍ଚିତ ଭାବରେ ଶକୁନ୍ତଳା ବ୍ରାହ୍ମଣକନ୍ୟା ନୁହନ୍ତି। କାରଣ, ତାର ମନ କେତେବେଳେବି ଅନ୍ୟାୟ ଦିଗରେ ଝୁଙ୍କି ପାରିବ ନାହିଁ।

## ।। ବିଭିନ୍ନଦିଗରୁ ସଙ୍ଗତି ଦେଖି ବିବାହ ନ ଦେଲେ କଣ ହୁଏ ।।

ବିବାହ ଠିକ୍‌ଭାବରେ ନ ହେଲେ ଅନେକ ସମୟରେ ସ୍ୱାମୀ ବା ସ୍ତ୍ରୀ ମାରା ପଡ଼ନ୍ତି। ତେଣୁ ବଂଶ, ପ୍ରକୃତି, ସ୍ୱାସ୍ଥ୍ୟ, ଆୟୁ, ପସନ୍ଦ–ଅପସନ୍ଦ ଇତ୍ୟାଦି ବିଭିନ୍ନ ଦିଗରୁ ସଙ୍ଗତି ଦେଖି ବିବାହ ଦେବାକୁ ହୁଏ। ମୁଁ ଜଣେ ପୁରୁଷର କଥା ଜାଣେ ପର ପର ତାର ସାତଜଣ ସ୍ତ୍ରୀ ମାରା ପଡ଼ିଲେ। ତାପରେ ଆଉ ସେ ବିବାହ କରି ନାହିଁ।
ଆ.ପ୍ର. ୨୨/୧.୧.୧୯୫୪

## ।। ଆନ୍ତର୍ଜାତିକ ବିବାହ କିପରି ହେବା ଭଲ ।।

Same blood (ଏକ ରକ୍ତ) ହେବା ଭଲ ନୁହେଁ। ପୁଣି ଖୁବ୍ ଅସମତା ମଧ୍ୟ ଭଲ ନୁହେଁ। ଆ.ପ୍ର. ୨୨/୧.୧.୧୯୫୪

## ।। ବିବାହ ଠିକ୍‌ଭାବରେ ହେଲେ କଣ ହୁଏ ।।

ବିବାହ ଠିକ୍‌ଭାବରେ ହେଲେ ଦୋଷ-ତ୍ରୁଟି ସତ୍ତ୍ୱେବି ସ୍ୱାମୀ-ସ୍ତ୍ରୀ ଉଭୟଙ୍କ ପାଖରେ ଜୀବନଟା ଉପଭୋଗ୍ୟ ହୋଇ ଉଠେ। ଗୋଟିଏ କ୍ଷେତ୍ରରେ ଜାଣେ, ସ୍ୱାମୀ ଖୁବ ଭଲ ଥିଲା, କିନ୍ତୁ ରାଗୀ ଥିଲା, ସେ ରାଗିଲେ ସ୍ତ୍ରୀ ଭଙ୍ଗୀ କରି କହେ, 'ଓ ମା ! ତୁମେ ପୁଣି ରାଗିବାକୁ ଶିଖିଲ କେବେ ? ସେ କହେ, 'ଯାଅ, ତୁମେହିଁ ତ ଯେତେ ନଷ୍ଟର ମୂଳ।' ସ୍ୱାମୀ ସେତେବେଳେ ଭିତରେ ନରମ ହୋଇଛି। ସ୍ତ୍ରୀ ସେତେବେଳେ ହସି ହସି କହେ, 'ମୁଁ ତ ନଷ୍ଟର ମୂଳ ହୋଇଅଛିହିଁ, କିନ୍ତୁ ତୁମେ ରାଗିଯାଇ ନିଜକୁ ନଷ୍ଟ କର ନାହିଁ।' ଆ.ପ୍ର. ୨୨/୧.୧.୧୯୫୪

## ।। ଜଣେ ମଣିଷ ଯେତେ ବଡ଼ହିଁ ହେଉ ତାର କଣ ଦେଖିବାକୁ ହେବ ।।

କଥାପ୍ରସଙ୍ଗରେ ସୁଶୀଲଦା (ବସୁ) ପଚାରିଲେ – କୂଳୀନ ମା ଓ ମୌଳିକ ପିତାଙ୍କ ପାଖରୁ ଉଦ୍ଭୁତ ସନ୍ତାନକୁ ବି ତ ସମୟ-ସମୟରେ ଖୁବ୍ ବଡ଼ ହେବାର ଦେଖାଯାଏ।

ଶ୍ରୀଶ୍ରୀଠାକୁର – ଆମେ ହିସାବ କରିବାକୁ ଜାଣୁନା, ଜଣେ ମଣିଷ ଯେତେହିଁ ବଡ଼ ହେଉ, ଦେଖିବାକୁ ହେବ, ତାର ଭାରସାମ୍ୟ କେତେ। ସେ କେତେ ପରିମାଣରେ balanced (ସାମ୍ୟଭାବାପନ୍ନ), କେତେ ପରିମାଣରେ ସବୁ ଦିଗରୁ ସାମ୍ୟ। ଅବଶ୍ୟ,

## ।। ପାରଶବମାନଙ୍କ ମଧ୍ୟରେ ବିପ୍ରବର୍ଗର କେଉଁମାନେ ।।

ମନେ ରଖ, ସମସ୍ତ ପାରଶବ କିନ୍ତୁ ବିପ୍ରବର୍ଗର ନୁହନ୍ତି। ଏମାନଙ୍କ ମଧ୍ୟରେ ଯେଉଁମାନେ ଶିୟେଲୀ (ଶ୍ରୀପାଲୀ) ସେମାନେ ବିପ୍ରବର୍ଗର। ତା ବ୍ୟତୀତ ଯେଉଁମାନେ ମୋଘୋ, ଧାନୀ ଏମାନେ କିନ୍ତୁ ବିପ୍ରବର୍ଗର ନୁହନ୍ତି, ଅନ୍ୟ କିଛି। ସେମାନଙ୍କ ମଧ୍ୟରେ କିଛି ପ୍ରତିଲୋମ ମଧ୍ୟ ଥାଇ ପାରେ। ଦୀ.ର. ୧/୫.୧.୧୯୫୫

## ।। ଭଲ କାୟସ୍ଥ ମିଳୁ ନାହିଁ କାହିଁକି ।।

ଦେଖ, କାୟସ୍ଥମାନଙ୍କ ମଧ୍ୟରେ ମୌଳିକ ଯେଉଁମାନେ ସେମାନଙ୍କର ମୌଳିକର ଝିଅକୁହିଁ ବିବାହ କରିବା ଉଚିତ୍। ମୌଳିକ ମାନେ କୁଳିନମାନଙ୍କର ଝିଅକୁ ବିବାହ କରି-କରି ବର୍ତ୍ତମାନ ଏପରି କରି ପକାଇଛନ୍ତି ଯେ ଆଉ ଗୋଟିଏ ଭଲ କାୟସ୍ଥ ମିଳୁ ନାହିଁ। ପୁଣି, ଏହି-ପ୍ରକାର ବିବାହ ଯେଉଁମାନେ କରୁଛନ୍ତି ସେମାନଙ୍କର ଝିଅକୁ ତୁମ୍ଭେମାନେ ବିବାହ କରି ମଧ୍ୟ ସର୍ବନାଶ କରିଛ। ତୁମର family-ର (ପରିବାରର) ବର୍ଣ୍ଣରେଖା ଅଛି। ତାରି ଭିତର-ଦେଇ ଠିକ୍ କରି ହୁଏ କେଉଁଠାରେ କଣ ଅଛି। ଗୁଣଗୁଡ଼ିକ କେଉଁଠାରେ excess (ବେଶୀ), କେଉଁଠାରେ balanced (ସାମ୍ୟଭାବାପନ୍ନ), କେଉଁଠାରେ ବା nil (ଶୂନ୍ୟ) ହୋଇଅଛି। ଏସବୁକିଛିହିଁ ନିର୍ଭର କରେ ଠିକ୍‌ଭାବରେ ବିବାହାଦି ହେବା ଉପରେ। ଦୀ.ର. ୧/୬.୧.୧୯୫୫

## ।। ବିବାହ ବ୍ୟାପାରରେ ସାତ ପୁରୁଷର ହିସାବ ନେବାକୁ ହୁଏ କାହିଁକି ।।

ଶ୍ରୀଶ୍ରୀଠାକୁର – କୌଣସି ଏକ ଜାଗାରେ ପ୍ରତିଲୋମ ବିବାହ ହେଲେ ତାର ଦୋଷ ୩୨ ପୁରୁଷ ପର୍ଯ୍ୟନ୍ତ ସଂକ୍ରାମିତ ହୋଇ ପାରେ।

ପ୍ରଶ୍ନକର୍ତ୍ତା – ତାହା ଦେଖିବା ତ ସମ୍ଭବ ନୁହେଁ। ଅନେକେ ପୂର୍ବ-ପୁରୁଷଙ୍କର କଥା ତ ଜାଣନ୍ତିହିଁ ନାହିଁ।

ଶ୍ରୀଶ୍ରୀଠାକୁର – ତେଣୁ ଅନ୍ତତଃ ସାତ ପୁରୁଷ ଦେଖିବା ଦରକାର।

ପ୍ରଶ୍ନକର୍ତ୍ତା – ବିବାହ ସମୟରେ ତ ଚାରି ପୁରୁଷର ନାମ ନିଅନ୍ତି।

ଶ୍ରୀଶ୍ରୀଠାକୁର –ତାହା କମେଇ ଆଣିଛ। ସାତ ପୁରୁଷହିଁ ଠିକ୍। କାରଣ, ଏହି ସାତ ପୁରୁଷ ମଧ୍ୟରେ ଯଦି କୌଣସି ଗଣ୍ଡଗୋଳ ପ୍ରବେଶ କରିଥାଏ ତେବେ back cross-ରେ (ଝିଅମାନଙ୍କର ଉଚ୍ଚ ବିବାହ ଦାନ ରୀତି) ଦ୍ୱାରା ସାତ ପୁରୁଷରେ ତାହା ଠିକ୍ ହୋଇ ପାରେ।

ପ୍ରଶ୍ନ – ପିତାମାତା ଦୁଇଦିଗ ହିଁ କଣ ଦେଖିବା ଦରକାର ?

ଶ୍ରୀଶ୍ରୀଠାକୁର – ମୋର ମନେ ହୁଏ ଦୁଇ ଦିଗକୁହିଁ ଦେଖିବା ଭଲ।

ଦୀ.ର. ୧/୬.୧.୧୯୫୫

## ।। ବିବାହ ବେଳରେ ପୁଅଝିଅର ଉଚ୍ଚତା ବିଚାର୍ଯ୍ୟ କିନା।।

ତାର କୌଣସି ପ୍ରୟୋଜନ ନାହିଁ। Length (ଦୈର୍ଘ୍ୟ) (ଉଚ୍ଚତା) ବେଶୀ ହୋଇ ଗଲେ ଅନେକ ସମୟରେ ଦୋଷ ଥାଏ। ଭଲ ବିବାହ ହେଲେ ତୁମର ପିଲା ତୁମଠାରୁ ୨/୪ ଆଙ୍ଗୁଳି tall (ଲମ୍ବା) ହେବ। ...Matching (ମିଳନ) ଭଲ ହେଲେ ସନ୍ତାନ-ସନ୍ତତି ପୂର୍ବପୁରୁଷଙ୍କର length-ର (ଦୈର୍ଘ୍ୟର) ଦିଗକୁ ଯିବାକୁ ଚାହାନ୍ତି।

ଦୀ.ର. ୧/୬.୧.୧୯୫୫

## ।। ବହୁବିବାହ ବନ୍ଦ ହେଲେ କିପରି ଅବସ୍ଥାର ଉଦ୍ଭବ ହେବ।।

ଶ୍ରୀଶ୍ରୀଠାକୁର – ଯେଉଁ-ପ୍ରକାରର ଉଚ୍ଚଶିକ୍ଷାର ପ୍ରଚଳନ ହେଉଛି, ସେଥିରେ ବହୁବିବାହ ଯଦି ବନ୍ଦ କର ତେବେ ଖୁବ୍‌ଶୀଘ୍ର ଏପରି ଅବସ୍ଥାର ଉଦ୍ଭବ ହୋଇ ପାରେ ଯେ ବହୁ ବ୍ରାହ୍ମଣର ଝିଅମାନଙ୍କର ବିବାହ ଚଣ୍ଡାଳ ସହିତ ହୋଇଯିବ। ଏହା ଯେ କେତେ ହେବ ତାର ଠିକଣା ନାହିଁ। ଥରେ ଖୋଜିଥିଲି, ପ୍ରତିଲୋମ blood-ର (ରକ୍ତର) ଗୋଟିଏବି ଲୋକ ବଡ଼ ହୋଇଛି କି ନାହିଁ। ନା ଇଉରୋପରେ ମଧ୍ୟ ତାହା ନାହିଁ।

ଉତ୍ତର – ଇଉରୋପରେ ପ୍ରତିଲୋମ-ଅନୁଲୋମ ଠିକ୍ କରିବା କଷ୍ଟକର।

ଶ୍ରୀଶ୍ରୀଠାକୁର – ସେମାନେ superior-inferior (ଉତ୍କୃଷ୍ଟ-ନିକୃଷ୍ଟ) ମାନନ୍ତି। ... ଏ-ବିଷୟରେ ସେମାନଙ୍କ ମଧ୍ୟରେ ବର୍ତ୍ତମାନ ସୁଦ୍ଧା cruelly fanatic (ନିର୍ଦ୍ଦୟ ଭାବରେ ଜିଦ୍‌ଖୋର) ଏମିତି ଲୋକ ଦେଖିବାକୁ ମିଳନ୍ତି। ଦୀ.ର. ୧/୬.୧.୧୯୫୫

## ।। କିପରି ବିଧବାର ବିବାହ ଦେବା ଚଳିପାରେ।।

ସୁଶୀଲଦା ପଚାରିଲେ – ଜଣେ ଝିଅର ୧୪ ବର୍ଷ ବୟସରେ ବିବାହ ହେଲା। କିନ୍ତୁ ୧୬ ବର୍ଷ ବୟସରେହିଁ ସେ ବିଧବା ହେଲା। ତାକୁ କଣ ପୁଣି ବିବାହ ଦେବା ଚଳିବ ? ସନ୍ତାନସନ୍ତତି ହୋଇନାହିଁ।

ଶ୍ରୀଶ୍ରୀଠାକୁର – ହୋଇପାରେ, ଏହି ଝିଅଟିର ଯଦି ଇଚ୍ଛା ଥାଏ।

ଦୀ.ର. ୧/୧୩.୬.୧୯୫୫

## ।। ବୈଦ୍ୟ କେଉଁମାନେ ।।

ଶ୍ରୀଶ୍ରୀଠାକୁର ଜଣକୁ ପଚାରିଲେ – ଏଠାକାର (ବିହାରର) ଅମ୍ବଷ୍ଠମାନେ କଣ କାୟସ୍ଥ ?

ଉତ୍ତର – ହଁ।

ଶ୍ରୀଶ୍ରୀଠାକୁର – କିନ୍ତୁ ବଙ୍ଗଳାର ଅମ୍ବଷ୍ଠମାନେ କାୟସ୍ଥ ନୁହଁନ୍ତି, ସେମାନେ ବୈଦ୍ୟ। ଅମ୍ବଷ୍ଠମାନେ ବିପ୍ର by origin (ଜନ୍ମସୂତ୍ରରେ)। ବିପ୍ରର ପୁଅ ଯଦି ଭଲ ବୈଶ୍ୟର ଝିଅକୁ ବିବାହ କରେ ତେବେ ଏହି ଜାତକ ଅମ୍ବଷ୍ଠ ହୁଏ। ଏହି-ରକମର ଅନୁଲୋମ ବିବାହ ଆଗରୁ ଥିଲା। ଏଠାକାର (ବିହାରର) ଭୂଇଁହାର ବ୍ରାହ୍ମଣ ଏହି ଆମ୍ଭମାନଙ୍କ ପରି। ଦୀ.ର. ୧/୧୩.୬.୧୯୫୫

## ।। ପ୍ରତିଲୋମ-ଅନୁଲୋମ ଜାତକମାନଙ୍କୁ କଣ ଦେଖି ଚିହ୍ନା ଯାଏ ।।

ଗଙ୍ଗା-ଯମୁନାର ଜଳ କିପରି ଚିହ୍ନା ଯାଏ ଦେଖିଛ ତ ? Correct pedigree (ବିଶୁଦ୍ଧ ବଂଶ) ହେଲେ ମଣିଷ concentric (ସୁକେନ୍ଦ୍ରିକ) ହୋଇ ପାରେ। ନହେଲେ oscillating (ଦୋଦୁଲ୍ୟମାନ ଚିତ୍ତ) ହୁଏ। ଏହି ପ୍ରକାରର ହେଲେ କେତେବେଳେ ମଧ୍ୟ overflown ହୁଏ (ଉଚ୍ଛୁଳି ଉଠେ), କେତେବେଳେବା ଏକାଥରକେ ଝାଉଁଳି ପଡ଼େ। ଆଲ୍‌ସେଶିୟାନ କୁକୁର ଦେଖିନ ! ସେମାନେ କିପରି concentric to one master (ଏକ ପ୍ରଭୁଙ୍କ ଠାରେ ସୁକେନ୍ଦ୍ରିକ)। ଏହା ହେଲା ଅନୁଲୋମର ଲକ୍ଷଣ।

ଦୀ.ର. ୨/୨୬.୯.୧୯୫୫

## ।। ଏକରକ୍ତ ମଧ୍ୟରେ ବିବାହ କରାଯିବ ନାହିଁ କାହିଁକି ।।

ଜଣେ dwarf (ବାମନ) ଯଦି same blood-ର (ଏକ ରକ୍ତ ମଧ୍ୟରେ) ବିବାହ କରେ, ତାହେଲେ ତାର issue (ସନ୍ତାନ-ସନ୍ତତି) ସବୁ dwarf (ବାମନ) ହୋଇ ଯାଆନ୍ତି। ଏହିପରି କରୁ କରୁ ବଂଶ extinct (ଲୋପ) ହୋଇ ଯାଏ। ସେଥିପାଇଁ same blood-ରେ (ଏକ ରକ୍ତ ମଧ୍ୟରେ) ବିବାହ କରିବା ଉଚିତ ନୁହେଁ।

ଦୀ.ର. ୨/୨୭.୯.୧୯୫୫

## ।। କୌଣସି ଝିଅ ଅଶ୍ରେୟ ପୁରୁଷକୁ ବିବାହ କରିବାକୁ ଚାହିଁଲେ କଣ କରିବ ।।

କୌଣସି ଝିଅ ଯଦି ଅଶ୍ରେୟ ପୁରୁଷକୁ ବିବାହ କରିବାକୁ ଯାଏ, ତାହେଲେ ତାକୁ ସେଠାରୁ ହରଣ କରି ଆଣି ଶ୍ରେୟ ପୁରୁଷର ସହିତ ବିବାହ ଦିଆ ଯାଏ । ଶାସ୍ତ୍ରରେ ଏପରି କଥା ଅଛି – 'ଦତ୍ତାମପି ହରେତ୍ କନ୍ୟାଂ ଶ୍ରେୟାଂଶ୍ଚେଦ୍ ବର ଆବ୍ରଜେତ୍ ।' ଶ୍ରେୟ ପୁରୁଷଙ୍କ ସହିତ ବିବାହ ହେଲେ ଝିଅମାନଙ୍କର ଯେତେପରିମାଣରେ ଭଲ ହୁଏ ଏ କ୍ଷେତ୍ରେରେ ସେତେପରିମାଣରେ ଭଲ ନହେଲେ ମଧ୍ୟ ଏହି ଝିଅଟା ଅନ୍ତତଃ bad breeding (କୁଜାତକ ସୃଷ୍ଟି) କରିବ ନାହିଁ। ଏପରି-କି କୌଣସି ବେଶ୍ୟା ମଧ୍ୟ ଯଦି ଶ୍ରେୟପୁରୁଷଠାରେ addicted (ଆସକ୍ତ) ହୁଏ ତେବେ ସେ ମଧ୍ୟ ଆଉ ଖରାପ breed କରେ (ଜନ୍ମଦେବ) ନାହିଁ। ଯେଉଁ ଭଲଟା ଆଶା କରାଯାଏ ତା ହୁଏତ ହୁଏ ନା। କିନ୍ତୁ ଏହି case-ଗୁଡ଼ିକ (ବିଷୟଗୁଡ଼ିକ) ଅଭିଘାତିକ ହେଲେ ମଧ୍ୟ ସାଂଘାତିକ ହୁଏ ନାହିଁ। ଏଗୁଡ଼ିକ ମନ୍ଦ ମଧ୍ୟରେ ଭଲ। ...ଆମ୍ଭମାନଙ୍କର ବିବାହପଦ୍ଧତି ଏତେ ଭଲ ଯେ ସେପରି କିଛି ଆଉ ଦେଖୁ ନା। ଏହା ଦ୍ୱାରା ବୁଝାଯାଏ genetics (ପ୍ରଜନନ ବିଜ୍ଞାନ) ସମ୍ବନ୍ଧରେ ଆମ୍ଭମାନଙ୍କର ପୂର୍ବ-ପୁରୁଷମାନେ କେତେପରିମାଣରେ ଅଭିଜ୍ଞ ଥିଲେ। ଏତେ ଅତ୍ୟାଚାରରେ ମଧ୍ୟ ସବୁ ଠିକ୍ ଅଛି। ତେବେ ବର୍ତ୍ତମାନ ଦେଶରେ ଯେଉଁ ପ୍ରଚଳନ ଚାଲିଛି ସେଥିରେ ଏବେ କଣ ହେବ ତାହା କୁହା ଯାଏ ନା।

ଦୀ.ର. ୨/୨୨.୧୧.୧୯୫୫

## ।। ଫ୍ୟାମିଲି ପ୍ଲାନିଂ ଭଲ କି ନୁହେଁ ।।

ମୁଁ ସେଦିଗ କଥା ଆଦୌ ଚିନ୍ତା କରେ ନାହିଁ। ଭଲ ହେବ ତ ହେଉ, ମା-ଷଷ୍ଠୀର କୋଳ ଭରି ଯାଉ। କିନ୍ତୁ ମୁଁ ଦେଖୁଛି, ଏହି ଭାବରେ ପ୍ରତିଲୋମଗୁଡ଼ିକ ନିରୋଧ କରି ହୁଏ କିନା। ... Unfit (ଅଯୋଗ୍ୟ) ଯେଉଁମାନେ ସେମାନେ ଏମିତିରେବି ବଢ଼ନ୍ତି। କାରଣ, ଏହାରି ଭିତର-ଦେଇ ସେମାନେ ନିଜ ନିଜକୁ continued (ଅବସ୍ଥିତ) କରାଇବାକୁ ଚାହାନ୍ତି। ସେଥିପାଇଁ ହତଦରିଦ୍ର ଯେଉଁମାନେ ସେମାନଙ୍କର ସନ୍ତାନ-ସନ୍ତତି ବେଶୀ ହୁଏ। Unfit majority (ଅଯୋଗ୍ୟର ଆଧିକ୍ୟ) ଯେଉଁଠାରେ, ସେଠାରେ democratic government (ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା) ଭଲ ନୁହେଁ।

ଦୀ.ର. ୨/୧୫.୨.୧୯୫୬

## ।। କୂଳାଚାର ଅତି ଅବଶ୍ୟ ପାଳନୀୟ କାହିଁକି ।।

ହୁଏତ ଦେଖନ୍ତୁ ଆପଣଙ୍କ ବଂଶରେ କୌଣସି ପ୍ରବର ବା କେହି ଡ଼ାକ୍ତର ଥିଲେ, ସେହି instinct (ସଂସ୍କାରହିଁ) ଠେଲି ଉଠେ। ପୁଣି, କେହି ହୁଏତ ପାଣିନିର ପଣ୍ଡିତ ଥିଲେ, ଏହି ଗୁଣହିଁ ଠେଲି ଉଠିବ। କେତେଟା ଜିନିଷ ଅଛି ୨/୩ generation (ପୁରୁଷ) ପରେ ମଧ୍ୟ ଠେଲି ଉଠେ। ସେଥିପାଇଁ କୂଳାଚାର ଅତି ଅବଶ୍ୟ ପାଳନୀୟ। ତା ଭିତର ପଞ୍ଚମହାଯଜ୍ଞ-ଟଜ୍ଞ ସବୁ କିଛି ପଡ଼େ। ଏଗୁଡ଼ିକ ପାଳନର ଭିତର-ଦେଇ ଆମର କୂଳାଚାର ଠିକ୍ ଥାଏ। ଦୀ.ର. ୨/୧୫.୨.୧୯୫୬

## ।। ପ୍ରତିଲୋମ ଯେଉଁଠାରେ ବେଶୀ ହୁଏ ସେଠାରେ କଣ ହୁଏ ।।

ଯେଉଁମାନେ ନିଜକୁ ହୀନ ବିବେଚନା କରନ୍ତି ସେମାନେ ଅନ୍ୟକୁ ମଧ୍ୟ ହୀନ କରିବାକୁ ଚାହାନ୍ତି। ଯେପରି ଅନେକ ଟି.ବି. ରୋଗୀ ମଣିଷମାନଙ୍କ ଭିତରକୁ ବେଶୀ ଯିବାକୁ ଚାହେଁ, ମିଶିବାକୁ ଚାହେଁ। ଭାବଟା ଏପରି ଥାଏ ଯେପରି 'ମୋର କିଛି ହୋଇନାହିଁ।'

ଅତୁଲଦା – Lower culture (ନିକୃଷ୍ଟ କୃଷ୍ଟି) ଯେଉଁମାନଙ୍କର ସେମାନେ ମନେ କରନ୍ତି, higher culture-ର (ଉତ୍କୃଷ୍ଟ କୃଷ୍ଟିର) ଝିଅ ଆଣିଲେ ସେମାନେ ଜାତିରେ ବଡ଼ ହେବେ।

ଶ୍ରୀଶ୍ରୀଠାକୁର – ଜାତିରେ ଉଠିବେ (ବଡ଼ହେବେ) କଣ କହୁଛନ୍ତି ! ଏହି ରକମ କରି କଣ ଜାତି ଉଠେ ? କୂଳୀନ ପ୍ରବେଶ କରିନି ଏହିପରି ଘରର ମୌଳିକ ଆଣି ପାରନ୍ତି କି ? ନୂତନ କାୟସ୍ଥ ସୃଷ୍ଟି କର ତାହେଲେ।

ଅତୁଲଦା – ସି.ଆର. ଦାଶ ତ ବ୍ରାହ୍ମଣ ଘରେ ବିବାହ କରିଥିଲେ।

ଶ୍ରୀଶ୍ରୀଠାକୁର – ଅନ୍ୟମାନଙ୍କ ତୁଳନାରେ ସି.ଆର. ଦାଶଙ୍କର ପ୍ରଭେଦ ଏହା ଦେଖିଲି ଯେ, ଯେତେବେଳେ ବୁଝିଲେ ପ୍ରତିଲୋମ ଖରାପ ସେତେବେଳେହିଁ ଏତେ ଲୋକଙ୍କ ଆଗରେ ସ୍ୱୀକାର କରିଲେ ସେ ଭୁଲ କରିଛନ୍ତି।

ଅତୁଲଦା – ଅନେକେ କହନ୍ତି, higher culture-ର contribution (ଉନ୍ନତ କୃଷ୍ଟିର ଅବଦାନ) ତ ଝିଅମାନଙ୍କର ମଧ୍ୟ ଅଛି।

ଶ୍ରୀଶ୍ରୀଠାକୁର – ତା ଯଦି ହୁଏ ତେବେ ତୁମର ଗାଈଟାକୁ ନେଇ ଗୋଟିଏ ଭଲ bull (ଷଣ୍ଢ) ପାଖକୁ ଯାଅ କାହିଁକି ? ଯେ-କୌଣସି ଗୋଟିଏ ଷଣ୍ଢ ହେଲେ

ତ ହୁଅନ୍ତା । ଯାଅ ତାମାନେ ଭଲ seed (ବୀଜ) ଚାହଁ ।

ରାଧାରମଣଦା – ଯେଉଁମାନଙ୍କ ବଂଶରେ ପ୍ରତିଲୋମ ପ୍ରବେଶ କରିଛି ସେମାନଙ୍କ ମଧ୍ୟରୁ ଅନେକ କହନ୍ତି, ଆମ୍ଭମାନଙ୍କର ପ୍ରତିଲୋମ ହୋଇନାହିଁ । ଏମାନେ ବୁଝନ୍ତି ନାହିଁ ପ୍ରତିଲୋମ କାହାକୁ କୁହାଯାଏ ।

ଶ୍ରୀଶ୍ରୀଠାକୁର – ପ୍ରତିଲୋମ ଯେଉଁଠାରେ ବେଶୀ ହୁଏ ସେଠାରେ ଏ-ସବୁ ବୁଝିବାର ବୁଦ୍ଧିହିଁ କମି ଯାଏ । ଦୀ.ର. ୨/୯.୩.୧୯୫୬

## ।। ବଂଶତାଲିକା ଠିକ୍ କରି ରଖିବାକୁ ହୁଏ କାହିଁକି ।।

ବଂଶର genealogical table-ଟା (ବଂଶତାଲିକାଟା) ଠିକ୍ କରି ରଖ । ଏହା ହେଲା essence of life (ଜୀବନର ସାରବସ୍ତୁ) । ଏହାକୁ ingore (ଅବହେଳା) କରନାହିଁ । ଅନ୍ତତଃ ସାତ ପୁରୁଷ, ଯଦି ପାର, ତାହେଲେ ଚୌଦ ପୁରୁଷଙ୍କ ନାମ ଠିକ୍ ରଖିବ । ଦୀ.ର. ୨/୨୯.୪.୧୯୫୬

## ।। ଭଲ ମଣିଷ କିପରି ଭାବରେ ଜନ୍ମାଇ ପାରିବ ।।

ଶ୍ରୀଶ୍ରୀଠାକୁର – ମଣିଷ ଯଦି ସବୁ ସମୟରେ concentric (ସୁକେନ୍ଦ୍ରିକ) ନ ହୁଏ, ତାହେଲେ କିଛି ହେବା ମୁସ୍କିଲ୍ । ସେଥିପାଇଁ ଆମ ଶିକ୍ଷାର ଆଦର୍ଶହିଁ ଥିଲା concentric (ସୁକେନ୍ଦ୍ରିକ) ହେବା । ଗୋଟିଏ ଜାଗାରେ ଶ୍ରଦ୍ଧା ରଖିବାକୁ ହେବ । 'ଶ୍ରଦ୍ଧାବାନ ଲଭତେ ଜ୍ଞାନମ୍' । ମୁଁ ଯାହା କହେ ଏହିପ୍ରକାର ହୋଇ ଯଦି ଚଳ, divorce (ବିବାହ- ବିଚ୍ଛେଦ) ଯଦି ଉଠାଇଦେବ, ତେବେ ଏହି ଦେଶରେ ପୁଣି ଚାଣକ୍ୟ ଜନ୍ମ ନେଇପାରନ୍ତି । ଚାଣକ୍ୟଙ୍କ ପରି ଆଉ କେହି ନାହିଁ, ଇଉରୋପରେ ମଧ୍ୟ ନାହିଁ । ଯେପରି ରାନ୍ଧିବାକୁ ହେଲେ ଭଲ ମସଲା ଦେବାକୁ ହୁଏ, ସେହିପରି ମଣିଷ ଜନ୍ମ ଦେବାକୁ ହେଲେ ଭଲ ବିବାହ ଦରକାର । Divorce (ବିବାହବିଚ୍ଛେଦ) କରି ଚାଲିଲେ ମଣିଷର ମଧ୍ୟ concentricity (ଏକକେନ୍ଦ୍ରିକତା) ଆଉ ରହେ ନାହିଁ ।

ପ୍ରଶ୍ନ – Marriage (ବିବାହ) ଠିକ୍ କରିବା ଖୁବ୍‌ହିଁ ମୁସ୍କିଲ୍ ।

ଶ୍ରୀଶ୍ରୀଠାକୁର – ଭାଲ କାମ କରିବାକୁ ହେଲେ କଷ୍ଟ କରିବା ଦରକାର ହୁଏ । ... ବିବାହ ନେଇ ଅନେକ ଜିନିଷ ଦିଆ ଅଛି । ଏଗୁଡ଼ିକ ଠିକ୍ କରି adjust (ନିୟନ୍ତ୍ରିଣ) କରି ନେଲେହିଁ ହୁଏ । ଦୀ.ର. ୨/୭.୯.୧୯୫୬

## ।। ପାତ୍ରୀ ଭଲ କି ନା କିପରି ଭାବରେ ବୁଝିବେ ।।

ଝିଅର ମାକୁ ଦେଖିଲେ ଅନେକଟା ଟେର ପାଇବ।

ଦୀ.ର. ୨/୭.୯.୧୯୫୬

## ।। ତୁମେ କିପରି ତାହା ଦେଖି କଣ ବୁଝା ଯାଏ ।।

Virility (ପୌରୁଷ) ଦିଅନ୍ତି father (ପିତା), ଆଉ sprouting urge (ଗଜେଇ ଉଠିବାର ଆବେଗ) ଆସେ mother-ର (ମାଆର) ପାଖରୁ। ତୁମେ କିପରି ତାହା ଦେଖି ବୁଝାଯାଏ ତୁମର mother (ମାତା) ତୁମର father-ଙ୍କ (ପିତାଙ୍କ) ପ୍ରତି କେତେ ପରିମାଣରେ concentric (ସୁକେନ୍ଦ୍ରିକ)। ମଣିଷର ଯାହା କିଛି ଶୌର୍ଯ୍ୟ-ବୀର୍ଯ୍ୟ-ପୁରୁଷତ୍ୱ ସବୁକିଛି ନିର୍ଭର କରେ ତାର ପିତାଙ୍କ ପ୍ରତି ମାଆର concentricity-ର (ସୁକେନ୍ଦ୍ରିକତାର) ତାରତମ୍ୟର ଉପରେ। ପୁଣି, ଏହି ଯେ matter (ବସ୍ତୁ), ଏହାର ଉତ୍ପତ୍ତି କିନ୍ତୁ ଏହି ମା – mother ଠାରୁ। ସେ ପରିମାପିତ କରି ଦିଏ। ସେଥିପାଇଁ material world (ବସ୍ତୁଜଗତ) କହିଲେ ମୁଁ ବୁଝେ motherial world (ମାତ୍ରିକ ଜଗତ)। ଯଦି ବିବାହ ହୁଏ ମାନେ ସ୍ୱାମୀ-ସ୍ତ୍ରୀ ଯଦି ପରସ୍ପର cleaved (ସଂଲଗ୍ନ) ହୁଅନ୍ତି, ତେବେ ତାକୁ ଆଉ ଅଲଗା କରା ଯାଏ ନା। କିନ୍ତୁ ଧରାଯାଉ ତୁମେ ଗୋଟିଏ ବିବାହ କରିଲ, କିଛିଦିନ ପରେ ତୁମର ସ୍ତ୍ରୀ ତୁମକୁ divorce (ବିବାହ-ବିଚ୍ଛେଦ) କରିଲା। ସେତେବେଳେ ତୁମର impression (ଛାପ) ତା ମଥାରେ ରହିଲା। ତାପରେ ପୁଣି ଆଉ ଜଣକୁ ସେ ବିବାହ କଲା। କିଛିଦିନ ପରେ ତାକୁ ପୁଣି divorce (ବିବାହ ବିଚ୍ଛେଦ) କଲା। ତାପରେ, ସେ ଯଦି ମୋତେ ବିବାହ କରେ, ସେତେବେଳେ ଏହି woman-ର (ସ୍ତ୍ରୀଲୋକଟିର) ଉପରେ ମୋର disbelief (ଅବିଶ୍ୱାସ) ରହିବ। ଫଳରେ, ତା ପେଟରୁ ଆଉ ଭଲ ସନ୍ତାନ ଜନ୍ମ ନେବାର ସମ୍ଭାବନା ରହେ ନାହିଁ। ଏହିପରି ଭାବରେ ଜାତି ନଷ୍ଟ ହେବାକୁ ଲାଗେ, ଦୁର୍ବଳ ହେବାକୁ ଲାଗେ। ସେଥିପାଇଁ jesus (ଯୀଶୁ) ତାହା କରିବାକୁ ନିଷେଧ କରିଛନ୍ତି।

ପ୍ରଶ୍ନ – କିନ୍ତୁ ସଭିଏଁ ତ ଏହିପରି ଭାବରେ ଭୁଲ ବିବାହ କରି ଚାଲିଛନ୍ତି।

ଶ୍ରୀଶ୍ରୀଠାକୁର – ଯଦି 80 percent (ଶତକଡ଼ା ୮୦ ଭାଗ) ଭୁଲ କରନ୍ତି ଆଉ 20 percent (ଶତକଡ଼ା ୨୦ ଭାଗେ) ଠିକ୍‌ଭାବରେ କରନ୍ତି, ତାହେଲେ ଏହି 20 percent ହିଁ (ଶତକଡ଼ା ୨୦ ଭାଗହିଁ) nation-କୁ (ଜାତିକୁ) ଠିକ୍ କରି ତୋଳି

ପାରିବେ। ଭୁଲ ହୋଇ ପାରେ। କିନ୍ତୁ ଭୁଲଟା ମଧ୍ୟ, ଠିକ୍‌ଭାବରେ ବିବାହ ଚଳାଇ ପାରିଲେ – ଅନେକ generation (ପୁରୁଷ) ପରେ ଦୂର ହୁଏ। ବର୍ତ୍ତମାନ ମଧ୍ୟ ତୁମ୍ଭମାନଙ୍କ ଦେଶରେ ବା ଇଂଲଣ୍ଡରେ ଅନେକ family (ପରିବାର) ଅଛନ୍ତି ଯେଉଁଠାରେ divorce (ବିବାହ-ବିଚ୍ଛେଦ) ନାହିଁ। ବର୍ତ୍ତମାନ ମଧ୍ୟ ଯଦି 20 percent (ଶତକଡ଼ା ୨୦ ଭାଗ) ଏପରି ସ୍ତ୍ରୀଲୋକ ମିଳନ୍ତି ଯେଉଁମାନଙ୍କର ସ୍ୱାମୀ ଯୁଦ୍ଧରେ ଗଲେ ମଧ୍ୟ divorce (ବିବାହ-ବିଚ୍ଛେଦ) କରନ୍ତି ନାହିଁ, ସ୍ୱାମୀ ଘରେ ରହିଲେ ମଧ୍ୟ ମନରେ divorce-ର (ବିବାହ-ବିଚ୍ଛେଦର) ଚିନ୍ତା ମଧ୍ୟ ଆଣନ୍ତି ନାହିଁ, କେବଳ ଜାଣନ୍ତି – ମୁଁ ଆଉ ସେ, ତେବେ ଏହି 20 percent-ହିଁ (ଶତକଡ଼ା ୨୦ ଭାଗହିଁ) ବାକି 80 percent-କୁ (ଶତକଡ଼ା ୮୦ ଭାଗକୁ) by and by, by and by (କ୍ରମେ କ୍ରମେ) ଠିକ୍ କରି ତୋଳି ପାରନ୍ତି। ଦୀ.ର. ୨/୧୧.୯.୧୯୫୬

## ॥ ବିବାହବିଚ୍ଛେଦ ଯେଉଁମାନେ କରନ୍ତି ସେମାନେ କିଏ କିପରି ॥

Superior (ଶ୍ରେଷ୍ଠ) ହେଲେ ସେହିମାନେ ଯେଉଁମାନେ divorce (ବିବାହ ବିଚ୍ଛେଦ) କରନ୍ତି ନାହିଁ। Next (ପର ସ୍ତରର) ହେଲେ ସେହିମାନେ ଯେଉଁମାନେ divorce (ବିବାହ ବିଚ୍ଛେଦ) କରନ୍ତି, କିନ୍ତୁ inferior-କୁ (ନିକୃଷ୍ଟକୁ) ନ ଧରି superior-କୁ (ଉତ୍କୃଷ୍ଟକୁ) ଧରନ୍ତି, ତା ସହିତ coupled (ସଂଯୁକ୍ତ) ହୋଇଯାନ୍ତି, cleaved (ସଂଲଗ୍ନ) ହୋଇ ଉଠନ୍ତି। ତେବେ ସେମାନେ ସେହି ପ୍ରଥମ ପ୍ରକାର ଠାରୁ lesser (କମ୍) ହୋଇଗଲେ। ଆଉ, ଯେଉଁମାନେ divorce (ବିବାହବିଚ୍ଛେଦ) କରି-କରି ଆଜି ଏହାକୁ କାଲି ତାକୁ ବିବାହ କରି-କରି ଚାଲନ୍ତି ସେମାନେ third (ତୃତୀୟ), ପୁରାପୁରି lower class-ର (ନିମ୍ନଶ୍ରେଣୀର)। ଦୀ.ର. ୨/୧୧.୯.୧୯୫୬

## ॥ କିପରିଭାବରେ ନ ଚଳିଲେ କଣ ହେବ ॥

ଆମେ ବର୍ତ୍ତମାନ ମଧ୍ୟ ଯଦି ଉପଯୁକ୍ତ ଆର୍ଯ୍ୟଶିକ୍ଷାରେ ଶିକ୍ଷିତ ନ ହେଉ, ପାରିବାରିକ ଶିକ୍ଷା, ସ୍ୱାସ୍ଥ୍ୟ, ଧର୍ମ, କୃଷି, ଶିଳ୍ପ, ଅନୁଲୋମ, ପ୍ରତିଲୋମ ଇତ୍ୟାଦି ଯାବତୀୟ ବିଷୟଗୁଡ଼ିକୁ ଭଲ ଭାବରେ ଜାଣି-ବୁଝି, ସାର୍ଥକ ସଙ୍ଗତିଶୀଳ କରି ସ୍ୱାର୍ଥବୁଦ୍ଧି ବାଦ୍‌ଦେଇ ଯଦି ନ ଚାଲୁ, ତାହେଲେ ଅଳ୍ପଦିନର ମଧ୍ୟରେହିଁ, ଆମ୍ଭମାନଙ୍କର ଯେ କଣ ହେବ ତାହା ଆଉ କୁହାଯାଏ ନା। ଦୀ.ର. ୨/୧୫.୯.୧୯୫୬

## ।। ବିବାହବିଚ୍ଛେଦର ଉତ୍ସ କେଉଁଠି ।।

Lust (କାମ ଶକ୍ତି) ଏବଂ craving for passion (ପ୍ରବୃତ୍ତିପୂରଣର ଆକାଂକ୍ଷା) ହେଲା source of divorce (ବିବାହବିଚ୍ଛେଦର ଉତ୍ସ)। ସେଥିପାଇଁ adjusted (ନିୟନ୍ତ୍ରିତ) ହୋଇ ଚାଲିବା ଭଲ। Christ (ଖ୍ରୀଷ୍ଟ) divorce-ର (ବିବାହବିଚ୍ଛେଦର) ବିରୁଦ୍ଧରେ କେତେଭାବରେ କହିଛନ୍ତି। Love-ହିଁ (ଭଲ-ପାଇବାହିଁ) ହେବ basis of marriage, soil of marriage (ବିବାହର ଭିତ୍ତି, ବିବାହର ଭୂମି)। ଆଉ passion (ପ୍ରବୃତ୍ତି) ହେବ secondary thing (ଗୌଣ ବିଷୟ)। Love-ରେ (ଭଲପାଇବାରେ) ଅଛି ଭଲପାଇବା ପାଇଁ ଭଲପାଇବାର କାରଣରୁ, ଭଲ ପାଇଁ ଆତ୍ମତ୍ୟାଗ। ଆଉ, passion (ପ୍ରବୃତ୍ତି) ହେଲା ନିଜର ଲୋଭ- ପରିପୂରଣର ପାଇଁ ତାଙ୍କୁ ଗ୍ରହଣ କରିବା। ଦୀ.ର. ୨/୨୧.୯.୧୯୫୬

## ।। ଅତ୍ୟାବଶ୍ୟକ କ୍ଷେତ୍ରରେ ବିବାହବିଚ୍ଛେଦ ଚଳେ କିନାହିଁ।।

ପ୍ରଶ୍ନ – ଏମିତି ଅନେକ କ୍ଷେତ୍ର ଅଛି ଯେଉଁଠି divorce essential (ବିବାହ-ବିଚ୍ଛେଦ ଅତ୍ୟାବଶ୍ୟକ) ହୋଇ ପଡ଼େ। ସଂସାରରେ ଏମିତି ଗଣ୍ଡଗୋଳ ହୁଏ ଯେ କୌଣସି ପ୍ରକାରେ ମତର ମେଳ ହେବାକୁ ଚାହେଁ ନା।

ଶ୍ରୀଶ୍ରୀଠାକୁର – ସେଠାରେ ବର୍ଜନ ନାହିଁ, ଦୂରରେ ରହିବାର କଥା ଅଛି। କିନ୍ତୁ ସେଥିରେ ଏହି ସ୍ତ୍ରୀଲୋକଟି ଯେ ପୁଣି ଅନ୍ୟ ସହିତ ଯାଇ ବିବାହରେ ବସିବ, ସେ- ବିଧାନ ତୁମ୍ଭମାନଙ୍କ ଶାସ୍ତ୍ରରେ ନାହିଁ।

କେଷ୍ଟଦା – କିନ୍ତୁ ଏହି ଜାତୀୟ ଗୋଟିଏ ବିଧାନ ଯେ ଅଛି –

''ନଷ୍ଟେ ମୃତେ ପ୍ରବ୍ରଜିତେ କ୍ଲୀବେ ଚ ପତିତେ ପତୌ।
ପଞ୍ଚସ୍ୱାପସ୍ତୁ ନାରୀନାଂ ପରିରନ୍ୟୋ ବିଧୀୟତେ ।।''

ଶ୍ରୀଶ୍ରୀଠାକୁର – ତାହା ସମୀଚୀନ ହେଲେ ମଧ୍ୟ ଶୁଭପ୍ରସୂ ନୁହେଁ। ସେହିଟା ଆପଦ୍ଧର୍ମ। ଆପଦ୍ଧର୍ମର ମଧ୍ୟ ପୁଣି category (ଶ୍ରେଣୀ) ଅଛି। ଯେମିତି war-ରେ (ଯୁଦ୍ଧରେ) ଯାଇ ହୁଏତ ଗୋମାଂସ ଖାଇଲେ, ଜେଲକୁ ଯାଇ କାହା ହାତରୁ କଣ ଖାଇଲ, ଅସୁସ୍ଥ ହୋଇ ହୁଏତ ଡୋମର ହାତରୁ ଜଳ ପିଇଲ। ସେଥିରେ ତୁମର ଜାତି ଯାଏ ନାହିଁ। କିନ୍ତୁ ଆପଦ୍ଧର୍ମକୁ ଚିହ୍ନି considerately (ବିବେଚନାପୂର୍ବକ) ତାହାର ପ୍ରୟୋଗ ତ କରିବା ଦରକାର! ମୋର ମନେ ହୁଏ, ଯେଉଁ–family-ରେ

(ପରିବାରରେ) divorce (ବିବାହବିଚ୍ଛେଦ) ଅଛି, ସେହି family-ର (ପରିବାରର) ଝିଅକୁ ବିବାହ କରିବା କଥା ନୁହେଁ।

ପ୍ରଶ୍ନ – ଘରେ ଯାହାର ଦୁଷ୍ଟା ଭାର୍ଯ୍ୟା, ସେ divorce (ବିବାହବିଚ୍ଛେଦ) ଛଡ଼ା କଣ କରିବ ?

ଶ୍ରୀଶ୍ରୀଠାକୁର – ଏଇ ଯେଉଁ କଣ ଗୋଟିଏ କଥା ଅଛି 'Love knows no law' (ଭଲ ପାଇବା କୌଣସି ଆଇନ ମାନେ ନାହିଁ), ଦୁଷ୍ଟ ଭର୍ଯ୍ୟା ଏହି ରକମ selection-ର (ନିର୍ବାଚନର) ମଧ୍ୟ ଦେଇହିଁ ଆସେ। ଛୋଟବେଳେ ଏହି ସବୁ କଥା ଶୁଣିଛି। ବଙ୍ଗଳାରେ ମଧ୍ୟ ଏହି ରକମ କଣ ଗୋଟିଏ କଥା ଅଛି –

ସୁଶୀଲଦା – ଯାର ଦିକେ ଯାର ମଜେ ମନ, କିବା ହାଡ଼ି କିବା ଡୋମ (ଯାହାର ଦିଗରେ ଯାହାର ମଜେ ମନ, କିବା ହାଡ଼ି କିବା ଡ଼ୋମ)।

ଶ୍ରୀଶ୍ରୀଠାକୁର – ହଁ ହଁ ଏହା। ଅନେକେ ଦୁଷ୍ମନ୍ତ-ଶକୁନ୍ତଳାର ଗଳ୍ପ ଉଠାଇ ଏହାକୁ ସମର୍ଥନ କରାଇବାକୁ ଚାହାନ୍ତି। ଶକୁନ୍ତଳାକୁ ଦେଖିବା ମାତ୍ରେହିଁ ଦୁଷ୍ମନ୍ତର ମନ ଶକୁନ୍ତଳାର ଉପରେ ପଡ଼ିଲା। ତାକୁ ବିବାହ କରିବା ପାଇଁ ଇଚ୍ଛା ହେଉଛି। କିନ୍ତୁ ଦୁଷ୍ମନ୍ତ ଜାଣେ, ସେ ବ୍ରାହ୍ମଣକନ୍ୟା। ତଥାପି ତାହାର ମନ ସେଦିଗରେ ଯାଏ କଣ ପାଇଁ? ସେତେବେଳେ ନିଜେ ମନେ-ମନେ ବିଚାର କରିବା ପାଇଁ ଆରମ୍ଭ କରିଲା – ମୋର ପିତୃପୁରୁଷ ଶିଷ୍ଟଭାବରେ ଚଳିଛନ୍ତି, ଆମ ବଂଶରେ କେତେବେଳେବି ପାପ ଢ଼ୋକି ନାହିଁ, ମୋର ବଂଶ ମଧ୍ୟ ସଦାଚାର–ସମ୍ପନ୍ନ, ତା' ସତ୍ତ୍ୱେ ମଧ୍ୟ ମୋର ମନ ଯେତେବେଳେ ଶକୁନ୍ତଳାର ଦିଗକୁ ଟାଣୁଛି ସେତେବେଳେ ସେ ନିଶ୍ଚୟ ହିଁ କ୍ଷତ୍ରିୟର ବିବାହଯୋଗ୍ୟା। କୌଣସି ପ୍ରକାରେ ବିପ୍ରକନ୍ୟା ନୁହେଁ। କାରଣ, ମୁଁ ଯେଉଁ ବଂଶର ପୁଅ ସେଥିରେ ମୋର ମନ କେତେବେଳେବି ଖରାପର ଦିଗକୁ ଯାଇ ପାରେ ନା।

ଦୀ.ର. ୨/୬.୧୦.୧୯୫୬

## ।। ଗୋଟିଏ ବିଧବା ବିବାହ ପ୍ରସଙ୍ଗ ।।

ଆଶ୍ରମର ଗୋଟିଏ ଝିଅ ବିବାହର କିଛିଦିନ ପରେହିଁ ସମ୍ପ୍ରତି ବିଧବା ହୋଇଛନ୍ତି। ... ଶ୍ରୀଶ୍ରୀଠାକୁର ତାକୁ ପାଖକୁ ଡ଼ାକି ନେଇ କହିଲେ – ଦେଖ, ବିବାହ ଯଦି କରୁ, ମୋର ମନେ ହୁଏ ବ୍ରାହ୍ମଣ – ଭଲ ବ୍ରାହ୍ମଣ ବିବାହ କରିବା ଭଲ, ଅଥବା ଭଲ କାୟସ୍ଥ। ଆଉ ଛୁଆପିଲା ଯାହା ହେବେ ସେମାନଙ୍କର ବିବାହ ସମୟରେ, ଝିଅର

ବିବାହ ସମାନ ଅଥବା ଉଚ୍ଚ ଘରେ, ଆଉ ପୁଅର ବିବାହ ସମାନ ଅଥବା ନୀଚ ଘରେ ଦେବା ଭଲ। ଏଥିରେ ଜାତି ଉଚ୍ଚହିଁ ହେବ, ବଢ଼ି ଯିବ। ଆଉ ତାହା ନ ପାଇଲେ ଯେପରି ଚଳିତ ରକମ ସେହି ଭାବରେ ସ୍ୱଘରେ ବିବାହାଦି କରାଇବା ଦରକାର। ବଡ଼ ଭଲ ଘର ଦେଖି ବିବାହ କରିବାକୁ ହୁଏ। ଏମ-ଏ, ବି-ଏ, ପାଶ କରିଲେ କିମ୍ବା ବଙ୍ଗଳାର ହେଲେହିଁ ଯେ ଖୁବ ବଡ଼ ହେଲା ତାହା ହୁଏ ନାହିଁ।

ଝିଅଟିକୁ ଦେଖେଇ ଜଣକୁ ଶ୍ରୀଶ୍ରୀଠାକୁର କହୁଛନ୍ତି – ଆରେ, ତା ପାଇଁ ଜଣେ ଭଲ ବର ଖୋଜି ଦେଇ ପାରିବୁନି ?

ଉତ୍ତର – ମୁଁ କେଉଁଠି ଦେଖିବି ?

ଶ୍ରୀଶ୍ରୀଠାକୁର – ସେମାନେ ହେଲେ ବୈଶ୍ୟସାହା। ଏହି ଶ୍ରେଣୀ ମଧ୍ୟରେ ଖୋଜିବୁ।

ଇତିମଧ୍ୟରେ ଝିଅଟି ଯାଇ ତାର ମାକୁ ଶ୍ରୀଶ୍ରୀଠାକୁରଙ୍କର କଥାଗୁଡ଼ିକ କହିଛି। ମା ଝିଅକୁ ସାଙ୍ଗରେ ନେଇ ଶ୍ରୀଶ୍ରୀଠାକୁରଙ୍କ ପାଖକୁ ଆସିଲେ।

ମା – ଆପଣ ଯେ ତାକୁ ବ୍ରାହ୍ମଣ ସହିତ ବିବାହ ଦେବାକୁ କହୁଛନ୍ତି, ଏବେ ମୁଁ ବ୍ରାହ୍ମଣ କେଉଁଠୁ ପାଇବି। କେଉଁ ବ୍ରାହ୍ମଣ ସହିତ ବିବାହ ଦେଲେ ଭଲ ହେବ ତାହା ମଧ୍ୟ ତ ବୁଝିନି।

ଶ୍ରୀଶ୍ରୀଠାକୁର – ବ୍ରାହ୍ମଣ ହେଲେହିଁ ହୁଏ ନା। ଅନେକ ଟ୍ୟାଁସ ବ୍ରାହ୍ମଣ ଅଛନ୍ତି, ତା ଭଲ ନୁହେଁ। ତା ଠାରୁ ନିଜର ଘର ମଧ୍ୟରେ ବିବାହାଦି କରିବା ଭଲ। ନହେଲେ କାୟସ୍ଥ ହେଲେ ମଧ୍ୟ କରା ଯାଏ।

ମା – ଜଣେ ଭଟ୍ଟାଚାର୍ଯ୍ୟ ବ୍ରାହ୍ମଣ ଅଛନ୍ତି, ଘୁରାଫେରା କରୁଛି ତାକୁ ବିବାହ କରିବା ପାଇଁ।

ଶ୍ରୀଶ୍ରୀଠାକୁର – କଥା ବୁଝ। ଭଟ୍ଟାଚାର୍ଯ୍ୟ ବ୍ରାହ୍ମଣ ହେଲେହିଁ ହୁଏ ନା। ଆଉ ଏହି ଯେଉଁ ଘୁରାଫେରା କରେ ଶୁଣିହିଁ ମୋତେ ଭଲ ଲାଗେ ନା। ସେ ଘୁରାଘୁରି କରିବ କଣ ପାଇଁ, ଘୁରାଘୁରି କରିବ ଇଏ (ଝିଅଟି)। ଦୀ.ର. ୨/୫.୧୧.୧୯୫୬

## ॥ ବିବାହ କୌଣସି ଚୁକ୍ତିର ବିଷୟ କିନ୍ତୁ ନୁହେଁ॥

ବିବାହ କୌଣସି ଚୁକ୍ତିର ବିଷୟ ନୁହେଁ; ବରଂ ସେବା ଓ ସଯତ୍ନ ପରିଚର୍ଯ୍ୟାରେ ଜଣକୁ ଆଉଜଣକର ହୃଦୟର ଅନ୍ତଃସ୍ଥଳକୁ ଆକର୍ଷଣ କରିବା ପାଇଁ ପବିତ୍ର ପ୍ରୟୋଜନ। ସେଥିପାଇଁ ବିବାହରେ କୌଣସି obligation (ବାଧ୍ୟବାଧକତା) ନ ଥାଏ। ଥାଏ in-

clination (ଝୋଁକ)। And that inclination obliges one (ଏବଂ ସେହି ଝୋଁକହିଁ ଜଣକୁ ବାଧ୍ୟ କରେ)। Love (ଭଲପାଇବା) ଜିନିଷଟି ଏହାଠାରୁ grow କରେ (ଜନ୍ମାଏ)। ଏମିତି ଯଦି ନ ହୁଏ ତା ହେଲେ ତାହା କଣ ବଜାରରୁ କିଣିବାକୁ ମିଳେ।

ଦୀ.ର. ୨/୬.୧୧.୧୯୫୬

## ॥ ଅନୁଲୋମ, ପ୍ରତିଲୋମ କିମ୍ବା ବିବାହ ବିଚ୍ଛେଦର କଥାଗୁଡ଼ିକ କାହା ଉପରେ ଭିତ୍ତି କରି କୁହାଯାଇଛି ॥

ଜଣେ ଜିଜ୍ଞାସା କରିଲେ – ଆଚ୍ଛା, ଆପଣ ଯେଉଁ ଅନୁଲୋମ–ପ୍ରତିଲୋମ ସମ୍ବନ୍ଧରେ ଏତେ କଥା କହିଛନ୍ତି, ଏଗୁଡ଼ିକ କାହା ଉପରେ ଭିତ୍ତି କରି କହିଛନ୍ତି?

ଶ୍ରୀଶ୍ରୀଠାକୁର – ଏ ସବୁହିଁ ଦେଖି-ଦେଖି। ଦୁନିଆରେ ଯାହା ଦେଖିଛି ତାହାହିଁ କହେ। ପଢ଼ାଶୁଣା ମୋର କିଛି ନାହିଁ।

ପ୍ରଶ୍ନ – Divorce-ର (ବିବାହବିଚ୍ଛେଦର) ବିଷୟଟି କିପରି କହିଛନ୍ତି?

ଶ୍ରୀଶ୍ରୀଠାକୁର – ଏହି ଯେ ମୁସଲମାନମାନଙ୍କର ତଲାକ ଦେବା ଦେଖିଛି। ମୋଟ କଥା, ମୁଁ ଯାହା କହିଛି, ତାର almost (ପ୍ରାୟ) ସବୁହିଁ practical (ବାସ୍ତବଧର୍ମୀ)। କିଛି-କିଛି ମୋର କଥା ଅଛି, ଯେଉଁଗୁଡ଼ିକ ମୁଁ କହିଛି, ପରେ ତାର support-ରେ (ସମର୍ଥନରେ) ଅନେକ କଥା ମିଳିଛି। କେଷ୍ଟଦା ହୁଏତ ବହି ପଢ଼ି କିମ୍ବା କାଗଜ ପଢ଼ି ମୋ ପାଖରେ କିଛି କହିଛନ୍ତି)। ତାହା ଶୁଣି ମୁଁ ମଧ୍ୟ କିଛି କହିଛି। କିନ୍ତୁ infer (ଅନୁମାନ) କରିବା ଜିନିଷ ମୋର ଖୁବ୍ କମ୍ ଅଛି, ଖୁବ୍ କମ୍।

ଦୀ.ର. ୨/୨୬.୧୧.୧୯୫୬

## ॥ ନଷ୍ଟେ ମୃତେ ପ୍ରବ୍ରଜିତେ କ୍ଲୀବେ ଚ ପତିତେ ପତୌ... ଇତ୍ୟାଦିର ମାନେ କଣ ॥

ସୁଶୀଲଦା କହିଲେ – Divorce-ର (ବିବାହବିଚ୍ଛେଦର) ସଂଖ୍ୟା ଆଜିକାଲି ଦେଶରେ ଖୁବ୍ ବଢ଼ି ଯାଇଛି। ଏହି ଯେ ସ୍ମୃତିର ଶ୍ଳୋକ ଅଛି, "ନଷ୍ଟେ ମୃତେ ପ୍ରବ୍ରଜିତେ କ୍ଲୀବେ ଚ ପତିତେ ପତୌ। ପଞ୍ଚସ୍ୱାପତ୍ସୁ ନାରୀଣାଂ ପତିରନ୍ୟୋ ବିଧୀୟତେ।' ଏହା ଉପରେ ଛିଡ଼ା ହୋଇ ଅନ୍ୟ ପତି ଗ୍ରହଣର ବିଧାନ ଦିଆଯାଏ।

ଶ୍ରୀଶ୍ରୀଠାକୁର – ମୋର ମନେ ହୁଏ, ତାହାର ମାନେ ଏହିପରି। ନଷ୍ଟ ମାନେ

ଯାହାର sperm (ଶୁକ୍ରକୀଟ) ନଷ୍ଟ ହୋଇ ଯାଇଛି, ମୃତ ମାନେ ବିବାହ settled (ସ୍ଥିର) ହେବା ପରେ ମରି ଯାଇଛି, ପ୍ରବ୍ରଜିତ ମାନେ ଏହି ସମୟରେ (ବିବାହ ସ୍ଥିର ହେବା ପରେ) କେଉଁଠାକୁ ଚାଲି ଯାଇଛି, କ୍ଲୀବ ମାନେ impotant (ପୁରୁଷତ୍ୱହୀନ), ପତିତ ମାନେ ଇଷ୍ଟ କୃଷ୍ଟି ଠାରୁ ଅଧଃପତିତ। ଏହି ପଞ୍ଚ ଆପଦ୍‌କାଳେ 'ନାରୀଣାଂ ପତିରନ୍ୟୋ ବିଧୀୟତେ' (ଝିଅମାନଙ୍କର ଅନ୍ୟ ପତିଗ୍ରହଣରେ ବିଧାନ ଅଛି)। କିନ୍ତୁ ମୁଁ କହେ, ତାହା ମଧ୍ୟ irony of fate (ଭାଗ୍ୟର ବିଡ଼ମ୍ବନା)। ତାହା ଭଲ ନୁହେଁ। ...ଫଳକଥା divorce system (ବିବାହବିଚ୍ଛେଦ ପ୍ରଥା) ଭଲ ନୁହେଁ। ଆଉ ଦେଖିବା ଦରକାର divorced (ବିବାହବିଚ୍ଛିନ୍ନ) ଯେଉଁମାନେ ସେମାନେ ଯେପରି superior (ଶ୍ରେଷ୍ଠ) ଆସନ ନ ପାଆନ୍ତି। ଦୀ.ର. ୨/୧୧.୧.୧୯୫୭

## ॥ ସନ୍ତାନ ଭିତରେ ମାର ରକମଟା ବେଶୀ ବର୍ତ୍ତାୟ କି ନାହିଁ॥

ଝିଅମାନଙ୍କୁ ପ୍ରକୃତି କହନ୍ତି। ପ୍ର-କୃ-ତି, ପ୍ରକୃଷ୍ଟ ଭାବରେ କରି ତୋଳେ। ମା-ହିଁ ସବୁ କିଛି piled up କରେ (ସଜେଇ ତୋଳେ)। ମା ଯେପରି training (ଶିକ୍ଷା) ଦିଏ, ସନ୍ତାନ ମଧ୍ୟ ସେହିପରି ହୁଏ। ଦୀ.ର. ୨/୨୩.୧.୧୯୫୭

## ॥ ଝିଅ ମାନଙ୍କର ଚାକିରୀ କରିବା ଅନ୍ୟାୟ କଣ ପାଇଁ॥

ଚାକିରୀ କରିବାକୁ ଯାଇ ଝିଅମାନଙ୍କୁ ବହୁତ ପୁରୁଷର ସଂଶ୍ରବରେ ଆସିବାକୁ ହୁଏ, କଥା କହିବାକୁ ହୁଏ, ଉପରସ୍ଥ କର୍ମଚାରୀର ମନକୁ ଯୋଗାଣ ଦେଇ ଚାଲିବାକୁ ହୁଏ। ଏହାର ଭିତରଦେଇ ଝିଅମାନଙ୍କର sexual leaning (ଯୌନ ପ୍ରବଣତା) ବଢ଼େ। ସେଥିପାଇଁ ଝିଅମାନଙ୍କୁ ଚାକିରୀ କରିବାକୁ ଦେବା ମାନେ sexual licensce (ଯୌନ ସ୍ୱେଚ୍ଛାଚାରିତାର ପରୋୟାନା) ଦେବା। ...ପୁରୁଷବନ୍ଧୁମାନଙ୍କ ସହିତ ଯାଇ କୌଣସି ଝିଅ ଗୋଟିଏ ସିନେମା ମଧ୍ୟ ଯଦି ଦେଖେ ତାହେଲେ ମଧ୍ୟ କାମ ସରିଲା।

ଦୀ.ର. ୨/୨୩.୧.୧୯୫୭

## ॥ ଝିଅକୁ ପଚିଶ ଜାଗାରୁ ଦେଖିବାକୁ ଆସିବା ଭଲ କି ନୁହେଁ॥

ଶ୍ରୀଶ୍ରୀଠାକୁର – ଗୋଟିଏ ଝିଅକୁ ପଚିଶ ଜାଗାରୁ ଦେଖିବାକୁ ଆସିବା – ଏହା ଭଲ ନୁହେଁ। ଜଣେ ହୁଏତ ପଚାରିଲା – ମା, ତୁମେ dance (ନାଚ) ଜାଣ ?

ଗାଇ ପାର ? ଧର ଦେଖି ଗୋଟିଏ। ଏଥିରେ ଏକାଥରେ fathom-ରେ touch (ଅନ୍ତସ୍ଥଳରେ ସ୍ପର୍ଶ) କରି ଦେଲା କାମ ସରିଲା। ସେହି ସବୁ ସ୍ଥାନରେ କେତେବେଳେବି yield କରିବାର (ନତ ହେବାର) ନୁହେଁ। ଆଜିକାଲି ପୁଣି ଅନେକେ divorce-କୁ (ବିବାହବିଚ୍ଛେଦକୁ) ସମର୍ଥନ କରି କୁହନ୍ତି, divorce (ବିବାହବିଚ୍ଛେଦ) କରିଲେ ଦୋଷ କଣ ?

ପ୍ରଶ୍ନ – ଏହି ସବୁ କଥା କେତେଜଣବା ବୁଝନ୍ତି, କେତେଜଣବା ମାନନ୍ତି।

ଶ୍ରୀଶ୍ରୀଠାକୁର – ତୁମେ ଏହିଭାବରେ ମୁଖରେ କହି-କହି ତ ଚାଲ। ଯଦି ପନ୍ଦର ଜଣ ମଣିଷଙ୍କୁ ମଧ୍ୟ ପାଅ ସେହି ପନ୍ଦର ଜଣହିଁ ବୁଦ୍ଧଦେବଙ୍କର ସେହି ପାଞ୍ଚ ଜଣଙ୍କ ପରି ହୋଇ ଯାଇ ପାରନ୍ତି। ଦୀ.ର. ୨/୨୩.୧.୧୯୫୭

## ।। ଶୋତ୍ରିୟ ବ୍ରାହ୍ମଣ କୁଳୀନର ଝିଅ ବିବାହ କରିଲେ କଣ ହୁଏ।।

ଶ୍ରୀଶ୍ରୀଠାକୁର – ତୁମେ ହୁଏତ ଶୋତ୍ରିୟ ବ୍ରାହ୍ମଣ ଅଟ। ମନେ-ମନେ ଭାବୁଛ, ମୁଁ ଅମୁକର ଝିଅକୁ ବିବାହ କରି ପାରିବି ନା ନାହିଁ। କାରଣ ସେ କୁଳୀନ। ଏହା ଭାବି ଦୁଃଖ କରୁଛ। କିନ୍ତୁ ମୂର୍ଖ ! ବୁଝ ନାହିଁ ଯେ ଏହି ବିବାହ କରିଲେ ତୁମର ସର୍ବନାଶ ତୁମେ ଭଲ କରି ଆପଣେଇ ନେଉଛ।

ପ୍ରଶ୍ନ – ନୀହାର ରାୟ ତାଙ୍କର ଇତିହାସରେ ଦେଖେଇଛନ୍ତି ବହୁକାଳ ପୂର୍ବରୁ ଆମର ସୂକ୍ଷ୍ମ ପ୍ରତିଲୋମ ବିବାହ ଚାଲି ଆସିଛି।

ଶ୍ରୀଶ୍ରୀଠାକୁର – ବହୁକାଳ ପୂର୍ବରୁ ନୁହେଁ, ପାଞ୍ଚଶହ ବର୍ଷ ପୂର୍ବରୁ। ସେତେବେଳେ ଥିଲା ସୂକ୍ଷ୍ମ ପ୍ରତିଲୋମ। ଏବେ ହେଉଛି ମୋଟା ପ୍ରତିଲୋମ। ... କୁଳୀନର ଝିଅ ବିବାହ କରି-କରି ମୌଳିକ କାୟସ୍ଥମାନେ ଗଲେ। ଶଳା କାୟସ୍ଥମାନେ ଯଦି ଠିକ ରହିଥାନ୍ତେ ତାହେଲେ ଆଉ ଭାବନା କଣ ! ତାହେଲେ କଣ ଆଉ ଏମିତି ସଲା-ସୁତୁରା କରି divorce bill (ବିବାହବିଚ୍ଛେଦ ଆଇନ) ପାଶ କରେଇ ଗୋଟିଏ ସର୍ବନାଶର କାଣ୍ଡ କରାଇ ପାରିଥାନ୍ତେ ?

ପ୍ରଶ୍ନ – କୁଳୀନର ଯେଉଁ ଝିଅମାନଙ୍କର ମୌଳିକ ସହିତ ବିବାହ ହେଲା ସେମାନେ ନଷ୍ଟ ହେଲେ। କିନ୍ତୁ ସେହି କୁଳୀନର ବଂଶଗୁଡ଼ିକ ତ ଠିକ୍ ରହିଲା ?

ଶ୍ରୀଶ୍ରୀଠାକୁର – କୁଳୀନର ଝିଅକୁ ବିବାହ କରିଲେ ମୌଳିକମାନେ, ହେଲା ପ୍ରତିଲୋମ। ସେମାନଙ୍କର ଝିଅକୁ ପୁଣି ବିବାହ କରିଲେ କୁଳୀନମାନେ। ଏହି ଭାବରେ

ପ୍ରତିଲୋମର ଝିଅ ବିବାହ କରି-କରି ବଂଶ ଦୁର୍ବଳ ହେଲା।

ପ୍ରଶ୍ନ – ଏହି biological disturbance-ଟା (ଜୈବ ବ୍ୟତ୍ୟୟଟା) ଦୂର କରିବାର ଉପାୟ କଣ ?

ଶ୍ରୀଶ୍ରୀଠାକୁର – ମୁଁ ଏତେ ଦିନ ଧରି ତ ତାହାହିଁ କହୁଛି। କରୁନ କଣ ପାଇଁ ? କରି ଦେଖ। ...ଅନୁଲୋମ ବିବାହ ଭଲ। କିନ୍ତୁ ବେଶୀ ଦୂର (ବର୍ଣ୍ଣ ବ୍ୟବଧାନରେ) ଅନୁଲୋମ ଭଲ ନୁହେଁ। ପୁଣି, ଅନୁଲୋମ କରିବାର ମଧ୍ୟ ନିୟମ ଅଛି। ... ଏହି ଧର ତୁମେ କୁଳୀନ ଅଛ, ତୁମ ପକ୍ଷରେ ଶୋତ୍ରିୟର ଝିଅ ବିବାହ କରିବା ଭଲ।

ଦୀ.ର. ୨/୨୩.୧.୧୯୫୭

## ॥ ଏକ ଗୋତ୍ରରେ ବିବାହ କରିଲେ କଣ ହୁଏ ॥

ଶ୍ରୀଶ୍ରୀଠାକୁର – ଏକ ଗୋତ୍ର ମାନେ ଏକହିଁ ରକ୍ତ। ଏକ ଗୋତ୍ରରେ ବିବାହ ହେଲେ ପରେ good traits-ମଧ୍ୟ (ସୁଲକ୍ଷଣଗୁଡ଼ିକ ମଧ୍ୟ) ପ୍ରବଳ ହୁଏ, bad traits -ମଧ୍ୟ (କୁଲକ୍ଷଣଗୁଡ଼ିକ ମଧ୍ୟ) ପ୍ରବଳ ହୁଏ। ଆଉ bad traits (କୁଲକ୍ଷଣ)-ଗୁଡ଼ିକ good trait (ସୁଲକ୍ଷଣ)-ଗୁଡ଼ିକୁ ଖାଇ ପକାଏ।

ପ୍ରଶ୍ନ – କିନ୍ତୁ ଓଲଟା ମଧ୍ୟ ତ ହୋଇ ପାରେ।

ଶ୍ରୀଶ୍ରୀଠାକୁର – ତାହା ହୁଏ ନାହିଁ। ତା ଛଡ଼ା ଅନେକ latent (ସୁପ୍ତ) ଖରାପ ଗୁଣ ମଧ୍ୟ ଜାଗି ଉଠେ। ଦୀ.ର. ୨/୨୩.୧.୧୯୫୭

## ॥ ସବୁ ବର୍ଣ୍ଣର ମଧ୍ୟରେ ବିବାହାଦି ଚଳେ ନାହିଁ କଣପାଇଁ ॥୨୬୯

ଶ୍ରୀଶ୍ରୀଠାକୁର – ବ୍ରାହ୍ମଣର ବୈଶିଷ୍ଟ୍ୟ ଏକ ରକମ, କ୍ଷତ୍ରିୟର ବୈଶିଷ୍ଟ୍ୟ ଏକରକମ। କ୍ଷତ୍ରିୟର ଝିଅ ତୁମେ ବିବାହ କରି ପାର। କିନ୍ତୁ କ୍ଷତ୍ରିୟର ଘରେ (ତୁମର) ଝିଅ ଦେଲେହିଁ ଏକାଥରେ ନିକେଶ ହୋଇ ଯିବ।

ପ୍ରଶ୍ନ – ବ୍ରାହ୍ମଣର ଘରେ ଜନ୍ମିଲେହିଁ ସିଏ ଯେ ବ୍ରାହ୍ମଣ ହେବ ତାର ମାନେ କଣ ?

ଶ୍ରୀଶ୍ରୀଠାକୁର – ଯିଏ ଶିଆଳ ସେ ଶିଆଳହିଁ, କ୍ୟା ହୁଆ କ୍ୟା ହୁଆ କରେ। ପୁଣି କୁକୁରର ଛୁଆ କୁକୁରହିଁ ହୁଏ। ଘେଉ-ଘେଉ କରେ। କୁକୁର-ଶିଆଳର ଉଦାହରଣ ଦେଲି ସହଜରେ ବୁଝିବ ବୋଲି। ପୁଣି ବୁଲ ଟେରିୟାର ଓ ଏଲସେଶିୟାନର

temperamant (ଧାତ) ଏକ ନୁହେଁ। ପ୍ରତ୍ୟେକରହିଁ ନିଜସ୍ୱ ବୈଶିଷ୍ଟ୍ୟ ଅଛି।

ପ୍ରଶ୍ନ – ତାହେଲେ ବ୍ରାହ୍ମଣ ନା କଣ ପତିତ ହୁଏ ଶୁଣେ।

ଶ୍ରୀଶ୍ରୀଠାକୁର – ଜଣେ ବ୍ରାହ୍ମଣ ହୁଏତ ବ୍ରାହ୍ମଣର କାର୍ଯ୍ୟ କରେନା। ସେ ପତିତ ହୋଇ ଯାଇଛି। ବିହିତ ଅନୁଶୀଳନର ଭିତର ଦେଇ ପୁଣି ଉଠି ପାରେ।

ପ୍ରଶ୍ନ – ବ୍ରାହ୍ମଣ ଛଡ଼ା ଆଉ କେତେକ ଭାଗ ହେଲା କିପରି ?

ଶ୍ରୀଶ୍ରୀଠାକୁର – କେହି ନେଲା ଜମି ରକ୍ଷାର ଭାର, କେହି ନେଲା ଟଙ୍କା ରକ୍ଷାର ଭାର, କେହି ନେଲା ସେବା କରିବାର ଭାର। ଏହି ଭାବରେ ଭାଗ ହୋଇ ଗଲା।

ପ୍ରଶ୍ନ – କିନ୍ତୁ ଏମାନଙ୍କ ମଧ୍ୟରେ ତ ଆଉ କେହି ବଡ଼, କେହି ଛୋଟ ନୁହେଁ।

ଶ୍ରୀଶ୍ରୀଠାକୁର – ବଡ଼-ଛୋଟର ବିଷୟ ନୁହେଁ, ଅଲଗା-ଅଲଗା। ଯଦି ବ୍ରାହ୍ମଣର ଝିଅ ସହିତ କାୟସ୍ଥର ପୁଅର ବିବାହ ହୁଏ ତେବେ ତାର ଗୁଣ ନଷ୍ଟ ହୋଇ ଯିବ। ଆମ୍ଭମାନଙ୍କ ମଧ୍ୟରେ ଅନେକ କାୟସ୍ଥ ଋଷି ଥିଲେ। ଅକ୍ଷମୁନି ଥିଲେ ପାରଶବ ବିପ୍ର। ଏହା ମୁଁ ଯେମିତି ଶୁଣିଛି ତାହାହିଁ କହୁଛି।

ପ୍ରଶ୍ନ – ଆଚ୍ଛା, ବିପ୍ର ବଡ଼, କ୍ଷତ୍ରିୟ ଛୋଟ, ଏପରି ହେଲା କଣ ପାଇଁ ? କ୍ଷତ୍ରିୟ ବଡ଼, ବିପ୍ର ଛୋଟ, ଏହା ମଧ୍ୟ ତ ହୋଇ ପାରିଥାନ୍ତା।

ଶ୍ରୀଶ୍ରୀଠାକୁର – ଏପରି କରି ଧର କଣ ପାଇଁ ? ମୁଁ ସେପରି ଧରେନି। ଯିଏ ଯାହାର field-ରେ superior (କ୍ଷେତ୍ରେରେ ଶ୍ରେଷ୍ଠ)। ଅନେକ ବ୍ୟାଧ, ଅନେକ ଚମାର ସାଧନାରେ ବଡ଼ ହୋଇଛନ୍ତି, ଏସବୁ ଗଳ୍ପ ଆମ୍ଭମାନଙ୍କର ଢେର ଅଛି।

... ଜଣେ କମାର ଯଦି superior (ଭଲ) ଶିଳ୍ପୀ ହୁଏ, ଆଉ ଅମୁକ ଯଦି ଖୁବ ଭଲ physicist (ପଦାର୍ଥବିଦ) ହୁଏ, ତେବେ ଅମୁକ କଣ କହିବ ଯେ ଏହି କମାର ଠାରୁ ମୁଁ ବଡ଼ ? ବଡ଼-ଛୋଟ କଣ ପାଇଁ କୁହ ? ବୈଶିଷ୍ଟ୍ୟ ନେଇ ସମସ୍ତେହିଁ ଅଲଗା।

ପ୍ରଶ୍ନ – ଛୋଟ-ବଡ଼ ଯଦି ନାହିଁ ତେବେ ସବୁ ବର୍ଣ୍ଣ ମଧ୍ୟରେ ବିବାହାଦି ଚଳେ ନାହିଁ କଣ ପାଇଁ ?

ଶ୍ରୀଶ୍ରୀଠାକୁର – ଛୋଟ-ବଡ଼ ନ କରି ମୁଁ ଯଦି ଏମିତି କୁହେ ଯେ, ଏହା ସହିତ ଏହାର matching (ମିଳନ) ହେଲେ ତାହା ଠିକ୍-ଠିକ୍ eugenically supported (ପ୍ରଜନନ-ବିଜ୍ଞାନ-ଅନୁମୋଦିତ) ହୁଏ। ଆଉ, ତାହାହିଁ ତ ବିଷୟ। ତାହା ନ କରି ଯେ-କୌଣସି ସ୍ଥାନରେ ଝିଅ ବିବାହ କରିଲେ କଣ ତାର ଫଳ ଭଲ ହୁଏ ?

ପ୍ରଶ୍ନ – କିନ୍ତୁ higher-lower (ଉଚ୍ଚ-ନୀଚ) ପ୍ରଶ୍ନଟା ତ ସମାଜରେ ଅଛିହିଁ। ତାହା ନ କହି ପାରି ହୁଏ ନାହିଁ।

ଶ୍ରୀଶ୍ରୀଠାକୁର – କହିପାର। x, y ଯାହା ଇଚ୍ଛା ତାହାହିଁ କୁହ। କିନ୍ତୁ fact (ପ୍ରକୃତ ତଥ୍ୟ) ଯାହା ତାହାହିଁ। ଏବେ ବୋକା ଭଳିଆ ଯଦି ପ୍ରଶ୍ନ କର, ବାଉଁଶଗଛ ଏତେ ଲମ୍ବା, ଆମ୍ବଗଛ କଣ ପାଇଁ ବାଉଁଶଗଛ ଭଳି ହେବ ନାହିଁ?

ଦୀ.ର. ୨/୨୩.୧.୧୯୫୭

## ॥ ପ୍ରତିଲୋମହିଁ କ୍ଷତ୍ରିୟମାନଙ୍କୁ ନିକେଶ କରିଛି ॥

ଶ୍ରୀଶ୍ରୀଠାକୁର – ମୋର ମନେ ହୁଏ, କିଏ ଶଳା ବଦ୍‌ମାସ ଥିଲା। ବୁଦ୍ଧି ଦେଇ କ୍ଷତ୍ରିୟମାନଙ୍କ ମଧ୍ୟରେ ପ୍ରତିଲୋମ ଢୁକାଇ ସେମାନଙ୍କୁ ନିକେଶ କରିଛି। ସିଏ ଯେ କେଡ଼ା, ନାମଟା ଜାଣି ପାରିଲେ ହୋଇଥାନ୍ତା।

ପ୍ରଶ୍ନ – ପରଶୁରାମଙ୍କର କ୍ଷତ୍ରିୟ-ନିଧନରେ ନା କଣ ନବଶାଖାମାନେ ସାହାଯ୍ୟ କରିଥିଲେ ?

ଶ୍ରୀଶ୍ରୀଠାକୁର – ମୋର ମନେ ହୁଏ ତାହାହିଁ। ସେଥିପାଇଁ ସେମାନଙ୍କୁ କୁହାଯାଏ ନବସାୟକ। ସାୟକ ମାନେ ବାନ।

ପ୍ରଶ୍ନ – ତାହେଲେ ପରଶୁରାମ ଏକା-ଏକା ପରଶୁ ଧରି କିଛି କରି ନାହାନ୍ତି। ଗୋଟିଏ group (ଦଳ) ସୃଷ୍ଟି କରି ନେଇ କାର୍ଯ୍ୟ ଆରମ୍ଭ କରିଥିଲେ।

ଶ୍ରୀଶ୍ରୀଠାକୁର – ଯେମିତି କରି ଯାହା କରିବା ଦରକାର ସେହିପରି କରିଥିଲେ। ...ସି.ଆର.ଦାଶଙ୍କ ପରି ମଣିଷ ଆଉ ଦେଖିଲି ନାହିଁ। ସି.ଆର. ଦାଶ ବ୍ରାହ୍ମଣର ଝିଅ ବିବାହ କରିଲେ। କହୁଥାନ୍ତି, ପରଜନ୍ମରେ ମୋତେ ଚଣ୍ଡାଳ ହୋଇ ଜନ୍ମିବାକୁ ପଡ଼ିବ। ଭୃଗୁକୋଷ୍ଠୀରେ ନା କଣ ତାହାହିଁ ଅଛି। ଦୀ.ର. ୨/୨୩.୧.୧୯୫୭

## ॥ ପ୍ରଜନନ-ବିଜ୍ଞାନରେ କେହିହିଁ ପଣ୍ଡିତ ନୁହେଁ ॥

ମୁଁ ଭାବେ, ଏହି ଯେ India (ଭାରତରେ) divorce bill (ବିବାହବିଚ୍ଛେଦ ଆଇନ) ପାଶ ହେଲା, କେତେ ପଣ୍ଡିତ ତ ଅଛନ୍ତି, କେତେ କଣ ଅଛନ୍ତି, କିନ୍ତୁ କେହି oppose (ବିରୋଧ) କରିଲେ ନାହିଁ – ଲକ୍ଷ୍ମୀକାନ୍ତ ମୈତ୍ର, ଆସାମର ରୋହିଣୀ ଚୌଧୁରୀ ପ୍ରଭୃତି କିଛିଜଣଙ୍କ ଛଡ଼ା। ଅଥଚ ଏଠାରେ ଆସି ତ ଅନେକ ଅନେକ କଥା

କହନ୍ତି। କେତେ ବଡ଼-ବଡ଼ ଡାକ୍ତର, ଓକିଲ କେତେ ଜଣ ଦେଖା ଯାଏ। କିନ୍ତୁ genetics-ରେ (ପ୍ରଜନନ-ବିଜ୍ଞାନରେ) ପଣ୍ଡିତ ଜଣେ ଲୋକ ମଧ୍ୟ ଦେଖିଲି ନାହିଁ।

ଦୀ.ର. ୨/୨୩.୧.୧୯୫୭

## ॥ ପାଶ୍ଚାତ୍ୟରେ କିଏ ପ୍ରଥମେ ବିବାହବିଚ୍ଛେଦ କରିଲେ॥

ଶ୍ରୀଶ୍ରୀଠାକୁର – ଆଗରୁ ନା କଣ waste-ରେ divorce (ପାଶ୍ଚାତ୍ୟରେ ବିବାହବିଚ୍ଛେଦ) ନଥିଲା। କିଏ ଯେପରି ପ୍ରଥମେ ଆରମ୍ଭ କଲା।

ହାଉଜାରମ୍ୟାନଦା – ମିଲଟନ, ତାର ସ୍ତ୍ରୀ ସହିତ କଣ ଏକ ଗଣ୍ଡଗୋଳ ହୁଏ। ସେଥିଯୋଗୁଁ ଏହିପରି କଲା। Custom (ପ୍ରଥା) ଭାଙ୍ଗି ଦେଲା।

ଶ୍ରୀଶ୍ରୀଠାକୁର – କିନ୍ତୁ ସେ ତ christ-ଙ୍କର (ଖ୍ରୀଷ୍ଟଙ୍କର) ଅନେକ ପରେ।

ସୁଶୀଲଦା (ବସୁ) – ହଁ, ମିଲଟନ ତ ସେଦିନର ଲୋକ।

ଦୀ.ର. ୩/୨୭.୧.୧୯୫୭

## ॥ ସଙ୍ଗମ ନ କରିବାହିଁ ସତୀତ୍ୱ କି ନୁହେଁ॥

ପ୍ରଶ୍ନ – ଲୋକେ ସାଧାରଣତଃ ମନେ କରନ୍ତି, intercourse (ସଙ୍ଗମ) ନ କରିବାହିଁ chastity (ସତୀତ୍ୱ)।

ଶ୍ରୀଶ୍ରୀଠାକୁର – ତାହା ଯଦିଓ ଗୋଟିଏ main factor (ପ୍ରଧାନ ଉପାଦାନ), କିନ୍ତୁ କେବଳ ସେହିଟିହିଁ chastity (ସତୀତ୍ୱ) ନୁହେଁ। ଯେମିତି ଦୀକ୍ଷା ସମୟରେ ଗୁରୁ କରିବା। ଗୁରୁ କରିଲି, କିନ୍ତୁ ଆଉ କିଛି କରିଲି ନାହିଁ। ସେଥିରେ ଯେପରି ହୁଏ ନାହିଁ। ତେବେ ଏହା କୁହାଯାଏ ନାହିଁଯେ ସେ baptised (ଦୀକ୍ଷିତ) ହୋଇନାହିଁ। Baptised (ଦୀକ୍ଷିତ) ହୋଇଛି, କିନ୍ତୁ ଆଉ କିଛି କରେ ନାହିଁ। ସେହିପରି ସ୍ୱାମୀଙ୍କ ପାଇଁ କଷ୍ଟ ସହ୍ୟ କରିବା, ସ୍ୱାମୀ ଯେଉଁଥିରେ ଖୁସୀ ରହିବେ ସେହି ଚଳନରେ ଚଳିବା, ଏସବୁ ନାହିଁ, ଅଥଚ ଅନ୍ୟ ପୁରୁଷର ଚିନ୍ତା କରେ ନାହିଁ, – ସେଥିରେ chastity (ସତୀତ୍ୱ) ହୁଏ ନାହିଁ। I should conceive my husband in all respects (ମୁଁ ମୋର ସ୍ୱାମୀଙ୍କୁ ସର୍ବତୋଭାବରେ ଧାରଣ କରିବି)। ନିଜକୁ chastise (ସଂଶୋଧନ) କରିବି – to follow my husband, to follow my love-lord (ମୋର ସ୍ୱାମୀଙ୍କୁ, ମୋର ପ୍ରିୟପରମଙ୍କୁ ଅନୁସରଣ କରିବା ପାଇଁ)। ପୁଣି କେବଳ

follow (ଅନୁସରଣ) କରିଲେହିଁ ହେବ ନାହିଁ, to follow and to fulfil (ଅନୁସରଣ ଏବଂ ପରିପୂରଣ କରିବା ପାଇଁ)। ଦୀ.ର. ୩/୨୫.୩.୧୯୫୭

## ॥ ଗୋତ୍ରକାରକ ଋଷି ସମସ୍ତେହିଁ ବିପ୍ର ବର୍ଣ୍ଣର କି ନୁହେଁ॥ ୨୭୩

ପ୍ରଶ୍ନ – ଗୋତ୍ରକାରକ ଋଷି ଯେ ସବୁ ସମୟରେ ବିପ୍ର ହେବେ ତାର ତ କୌଣସି ମାନେ ନାହିଁ?

ଶ୍ରୀଶ୍ରୀଠାକୁର – ଯେମିତି ବିଶ୍ୱାମିତ୍ର ଗୋତ୍ର ଅଛି। କିନ୍ତୁ ତୁମ୍ଭମାନଙ୍କ (ପ୍ରଶ୍ନକର୍ତ୍ତା ବିପ୍ରବର୍ଣ୍ଣର) ମଧ୍ୟରେ ବିଶ୍ୱାମିତ୍ର ଗୋତ୍ର ନାହିଁ। କ୍ଷତ୍ରିୟ ବିଶ୍ୱାମିତ୍ର ଋଷି ବ୍ରାହ୍ମଣତ୍ୱ ଅର୍ଜନ କରିଥିଲେ।

ପ୍ରଶ୍ନ – କିନ୍ତୁ ବ୍ରାହ୍ମଣତ୍ୱ ଅର୍ଜନ କରିଲେ ମଧ୍ୟ ସେ ତ ବିପ୍ର ହୋଇନାହାନ୍ତି।

ଶ୍ରୀଶ୍ରୀଠାକୁର – ସେଇଥିପାଇଁହିଁ ସେ ଗୋତ୍ର ତୁମ୍ଭମାନଙ୍କର ନାହିଁ।

ଦୀ.ର. ୩/୨୭.୩.୧୯୫୭

## ॥ ଭିନ୍ନ ବର୍ଣ୍ଣର ଏକ ଗୋତ୍ର ମଧ୍ୟରେ ବିବାହ ହୋଇପାରିବ କି ନାହିଁ॥

ପ୍ରଶ୍ନ – ଯେମିତି ମାହିଷ୍ୟମାନଙ୍କ ମଧ୍ୟରେ ଶାଣ୍ଡିଲ୍ୟ-ଗୋତ୍ର ଅଛି। ଶାଣ୍ଡିଲ୍ୟ ଗୋତ୍ରର ଜଣେ ବିପ୍ର କଣ ଏହି ଶାଣ୍ଡିଲ୍ୟ ଗୋତ୍ରର କୌଣସି ମାହିଷ୍ୟ ଝିଅକୁ ବିବାହ କରି ପାରିବ ?

ଶ୍ରୀଶ୍ରୀଠାକୁର – ଯଦିବା ଖୁବ୍ ଦୋଷ ହୁଏ ନାହିଁ, କାରଣ blood-ର connection (ରକ୍ତର ଯୋଗାଯୋଗ) ନାହିଁ। ତଥାପି ନ କରିବାହିଁ ଭଲ।

ଦୀ.ର. ୩/୨୭.୩.୧୯୫୭

## ॥ କୌଣସି ସ୍ତ୍ରୀର ସ୍ୱାମୀ ଯଦି କ୍ଲୀବ ହୁଏ ତେବେ କଣ ହେବ॥

ପ୍ରଶ୍ନ – କୌଣସି ଝିଅ ଯଦି ବିବାହ ପରେ ଜାଣିପାରେ ଯେ ସ୍ୱାମୀ କ୍ଲୀବ, ସେତେବେଳେ ଏହି ଝିଅର ପୁନର୍ବିବାହ ଚଳେ ତ ?

ଶ୍ରୀଶ୍ରୀଠାକୁର – ସେ-ବିବାହ ତ ସିଦ୍ଧହିଁ ହେଲା ନାହିଁ। ଜଣେ ଝିଅ ଯଦି ଆଉ ଜଣେ ଝିଅକୁ ବିବାହ କରେ, ତାହା କଣ ସିଦ୍ଧ ହୁଏ।

ପ୍ରଶ୍ନ – ତାହେଲେ ଏହି ଝିଅର ପୁନର୍ବିବାହରେ ସେ କଣ ବଧୂତ୍ୱର ମର୍ଯ୍ୟାଦା ପାଇବ, ନା ଅବବଧୂ ହୋଇ ରହିବ ?

ଶ୍ରୀଶ୍ରୀଠାକୁର – ବଧୂ ମଧ୍ୟ ହୋଇ ପାରେ, ଅବବଧୂ ମଧ୍ୟ ହୋଇ ପାରେ। ତାହା ତାର ରକମ ଦେଖି ଠିକ୍ ହେବ। ଦୀ.ର. ୩/୫.୪.୧୯୫୭

## ॥ ଶୂଦ୍ରମାନଙ୍କ ମଧ୍ୟରେ ନମଃଶୂଦ୍ର କେଉଁମାନେ ॥

ଶ୍ରୀଶ୍ରୀଠାକୁର – ନମଃଶୂଦ୍ରଙ୍କ ମଧ୍ୟରେ ଯେଉଁମାନେ ଧାନୀ ବା ମଘା ସେମାନେ ଶ୍ରୀପାଲୀମାନଙ୍କ ଘରକୁ ଗଲେ ମଧ୍ୟ ଶ୍ରୀପାଲୀମାନେ ସେମାନଙ୍କର ହାଁଡ଼ିକୁଡ଼ି (ବାସନ କୁସନ) ପକେଇ ଦେଉଥାନ୍ତି। ବିବାହାଦି ଏମାନଙ୍କ–ମଧ୍ୟରେ ଜୋର କରି ନ ଦେଲେ ବୋଧ ହୁଏ ହୋଇହିଁ ନାହିଁ। କିନ୍ତୁ ଯେତେବେଳେ ଠାରୁ ସମସ୍ତଙ୍କର ନାମ ନମଃଶୂଦ୍ର ହେଲା, ଶ୍ରୀପାଲୀମାନଙ୍କୁ ଆଉ ଅଲଗା କରି ଚିହ୍ନା ଗଲା ନାହିଁ, ସେତେବେଳେ ଠାରୁହିଁ ଖୋଲାଖୋଲି ତୃଟି ଢୁକି ଗଲା। ଦୀ.ର. ୩/୧.୫.୧୯୫୭

## ॥ ପାରଶବ କେଉଁମାନେ ॥

ପ୍ରଶ୍ନ – ଆମ୍ଭମାନଙ୍କ ଦେଶରେ ପାହାଡ଼ୀ, ଆଦିବାସୀମାନେହିଁ ତ ଶୂଦ୍ର। ସେମାନଙ୍କ କୌଣସି ଝିଅ ବ୍ରାହ୍ମଣ ସହିତ ବିବାହ ଫଳରେ ଯେଉଁ issue (ସନ୍ତାନ) ହୁଏ ସେହିମାନେହିଁ ତ ପାରଶବ ?

ଶ୍ରୀଶ୍ରୀଠାକୁର – ଶୂଦ୍ରମାନେ ଶୂଚୀକୃତ (ଶୁଦ୍ଧ)। ସେମାନଙ୍କର ଝିଅ ବ୍ରାହ୍ମଣମାନଙ୍କୁ ବିବାହ କରିବାର ଫଳରେହିଁ ପାରଶବ ସୃଷ୍ଟି ହେଲା। ଏମାନଙ୍କର କୌଣସି ଉପନୟନ ନଥିଲା। ମୁଁ ଆପସ୍ତମ୍ଭ ଧର୍ମଶାସ୍ତ୍ରରେ ଏମାନଙ୍କୁ ଉପନୟନ ଦେବାର ସମର୍ଥନ ପାଇଲି। ... ଏମାନେ ଗୁଷ୍ଟିଶୁଦ୍ଧ ସବୁ ବୌଦ୍ଧ ହୋଇ ଯାଇଥିଲେ। କାୟସ୍ଥମାନେ ମଧ୍ୟ ହୋଇଥିଲେ। ସେତେବେଳଠାରୁ ସମସ୍ତେହିଁ ପଇତା ଛାଡ଼ି ଦେଲେ। ପଇତା ଯେତେବେଳେହିଁ ଛାଡ଼ି ଦେଲେ ସେତେବେଳେ ସମସ୍ତେ ହୋଇଗଲେ ଜନ୍ମଠାରୁହିଁ ଶୂଦ୍ର। 'ଜନ୍ମନା ଜାୟତେ ଶୂଦ୍ରଃ'। ଏବେ ଉପନୟନ ନ ନେଲେ ଆଉ ଶୂଦ୍ରତ୍ୱ ଘୁଞ୍ଚେ ନାହିଁ। ଯାହା କହିଲି ଏହାର support (ସମର୍ଥନ) ବୋଧହୁଏ ରଘୁନନ୍ଦଙ୍କର ସମୟ ଠାରୁହିଁ ମିଳିପାରେ।

ଦୀ.ର. ୩/୧.୫.୧୯୫୭

## ॥ ପାରଶବ କଥାର ମାନେ କଣ ॥

ଶ୍ରୀଶ୍ରୀଠାକୁର – ପାରଶବ ମାନେ ପରଧର୍ମୀ ଯାହା ତାକୁ 'ଶୃ' ଅର୍ଥାତ୍ ହିଂସା କରନ୍ତି ଯେଉଁମାନେ। ପିତୃବର୍ଣ୍ଣର ଶତ୍ରୁ ଯେଉଁମାନେ, ଆର୍ଯ୍ୟକୃଷ୍ଟିର ଶତ୍ରୁ ଯେଉଁମାନେ ସେମାନଙ୍କ ପ୍ରତି ଏମାନେ ସହଜ-ହିଂସାପରାୟଣ। Non-Ariyan (ଅନାର୍ଯ୍ୟ) ଯେଉଁମାନେ ସେମାନଙ୍କର ariyanised (ଆର୍ଯ୍ୟକୃତ) ରକମର ମିଶ୍ରଣ ଏମାନଙ୍କ

ମଧ୍ୟରେ ଅଛି। ଐତରେୟ ଉପନିଷଦ୍ ଏମାନଙ୍କରହିଁ ଲେଖା। ସେଥିପାଇଁ ଐତରେୟ ଉପନିଷଦ୍‌ଟି ତୁମ୍ଭମାନଙ୍କର (ପାରଶବମାନଙ୍କର) ସମସ୍ତଙ୍କରହିଁ ପଢ଼ିବା ଉଚିତ।

ଦୀ.ର. ୩/୧.୫.୧୯୫୭

## ।। ଉପାଧି ବଦଳାଇବା ଅତ୍ୟନ୍ତ ଖରାପ କଣ ପାଇଁ।।

ପ୍ରଶ୍ନ – ଆଜିକାଲି ପାରଶବମାନଙ୍କ ମଧ୍ୟରେ ଅନେକେ ନିଜ ନିଜର title (ଉପାଧି) ବଦଳାଇ ନେଉଛନ୍ତି।

ଶ୍ରୀଶ୍ରୀଠାକୁର – ଏହି ଉପାଧି ବଦଳାଇବା, ଏହା ବହୁତ ଖରାପ ଜିନିଷ। ଅତ୍ୟନ୍ତ ଖରାପ। ସେଗୁଡ଼ିକ ହେଲା ଜାତି-ବର୍ଗର ଉପରେ poisonous shock (ବିଷାକ୍ତ ସଂଘାତ)। ସେସବୁ inferiority (ହୀନମନ୍ୟତାର) ଲକ୍ଷଣ।

ଦୀ.ର. ୩/୧.୫.୧୯୫୭

ପାରଶବମାନଙ୍କ ମଧ୍ୟରେ ଅନେକେ ନିଜ ନିଜର ଉପାଧି ପରିବର୍ତ୍ତନ କରି କେହି ମୈତ୍ର ହୋଇଛି, କେହି ଭୌମିକ ହୋଇଛି। ତାପରେ ନିଜନିଜର ବର୍ଗର ମଧ୍ୟରେହିଁ ପ୍ରତିଲୋମ ବିବାହ କରୁଛନ୍ତି। ଏହିପରି କରିଲେ ତ ବିପ୍ରବର୍ଗହିଁ extinct (ବିଧ୍ୱସ୍ତ) କରିଯିବେ। କି ସର୍ବନାଶର କଥା! ବର୍ଗର ମଧ୍ୟରେ ଗୋଟିଏ ବର୍ଗମଧ୍ୟ ଯଦି ବିଶୁଦ୍ଧ ରହିଥାନ୍ତେ ତେବେ ମୋର ମନେ ହୁଏ, ସେହି ଗୋଟିଏ ବର୍ଗହିଁ ଆଉ ସବୁ ଲୋକଙ୍କୁ ଉଠାଇ ଦେଇ ପାରିଥାନ୍ତେ। କିନ୍ତୁ ସବୁ ଯଦି ଘାଆ ହୋଇଯାଏ, ତାହେଲେ ତ ମୁଶକିଲ।

ଦୀ.ର. ୩/୭.୫.୧୯୫୭

## ।। ନିଜ ବର୍ଣ୍ଣର ମଧ୍ୟରେବି ପ୍ରତିଲୋମ ହୁଏ କି ନାହିଁ।।

ପ୍ରଶ୍ନ – ନିଜ ବର୍ଣ୍ଣର ମଧ୍ୟରେବି ପ୍ରତିଲୋମ ହୁଏ ?

ଶ୍ରୀଶ୍ରୀଠାକୁର – ତା ତ ହୁଏହିଁ।

ପ୍ରଶ୍ନ – ତାହେଲେ ଅସଲ ଜିନିଷହିଁ ତ ବିବାହ।

ଶ୍ରୀଶ୍ରୀଠାକୁର – ବିବାହ ମଧ୍ୟରେ 'ବହ' ଅଛି। ବିଶିଷ୍ଟ ରୂପରେ କୂଳକୁ ବହନ କରେ। ତୁମକୁ ତ କରେହିଁ। ତୁମ ସହିତ ତୁମର କୂଳକୁ ମଧ୍ୟ ବହନ କରେ। ଯିଏ କରେ ସେହିଁ ବଧୂ। ତେଣୁ, ବଧୂ ମଧ୍ୟରେବି ବହ-ଧାତୁ ଅଛି।

ଦୀ.ର. ୩/୭.୫.୧୯୫୭

॥ ଉନ୍ନୟନ ପରିକଳ୍ପନାରେ ସୁବିବାହ ଓ ସୁପ୍ରଜନନ ନ ରହିଲେ କଣ ହେବ ॥

ପ୍ରଶ୍ନ – ଆମ୍ଭମାନଙ୍କ (ଦେଶରେ) ଯେସବୁ କମ୍ୟୁନିଟି ପ୍ରଜେକ୍ଟ ବା ଉନ୍ନୟନ ପ୍ରରିକଳ୍ପନା ହେଉଅଛି ସେଥିରେ ଏଗୁଡ଼ିକ ଅର୍ଥାତ୍ ସୁବିବାହ ଓ ସୁପ୍ରଜନନ ନ ରହିଲେ କଣ ହେବ ?

ଶ୍ରୀଶ୍ରୀଠାକୁର – ଅନ୍ୟର ଆହାର ହୋଇଯିବ। ସମସ୍ତେ ମୁରଗୀ ହୋଇଯିବେ। ଆଉ, ଯେଉଁମାନଙ୍କ ଭିତରେ racial instinct (ବଂଶଗତ ସଂସ୍କାର) ଅଛି, ସେହି-ମାନେହିଁ enjoy (ଉପଭୋଗ) କରିବେ। ମାହିଷ୍ୟମାନଙ୍କ ମଧ୍ୟରେବି ଆଜିକାଲି ପ୍ରତିଲୋମ ଖୁବ୍ ଢୁକୁଛି।

ପ୍ରଶ୍ନ – ଦେଶରେ woman's programme (ନାରୀ ଉନ୍ନୟନ କର୍ମଧାରା) କିମ୍ବା ଅନ୍ୟାନ୍ୟ ଉନ୍ନୟନ-ପରିକଳ୍ପନା ଯାହା ହେଉଛି ତା ମଧ୍ୟରେ marriage reform-ଟାହିଁ (ବିବାହ- ସଂସ୍କାରଟାହିଁ) ତ ପ୍ରଧାନ ହେବା ଉଚିତ। Proper marriage (ଉପଯୁକ୍ତ ବିବାହ) ନ ହେଲେ ତ କୌଣସିଥିରେ ଏସବୁ ଠେକା ଦେଇ ହେବ ନାହିଁ।

ଶ୍ରୀଶ୍ରୀଠାକୁର – ନିଶ୍ଚୟହିଁ।

ଦୀ.ର. ୩/୭.୫.୧୯୫୭

॥ ଜ୍ୟୋତିଷରେ ବିପ୍ରବର୍ଣ୍ଣ, କ୍ଷତ୍ରିୟବର୍ଣ୍ଣ, ଦେବଗଣ ଇତ୍ୟାଦିର ମାନେ କଣ ॥

ପ୍ରଶ୍ନ – ଆଚ୍ଛା, ଜ୍ୟୋତିଷରେ ଯେ ବିପ୍ରବର୍ଣ୍ଣ, କ୍ଷତ୍ରିୟବର୍ଣ୍ଣ ଅଛି ସେଗୁଡ଼ିକ କଣ ?

ଶ୍ରୀଶ୍ରୀଠାକୁର – ଜ୍ୟୋତିଷରେ ଯେମିତି ବିପ୍ରବର୍ଣ୍ଣ, କ୍ଷତ୍ରିୟବର୍ଣ୍ଣ ଅଛି, ସେମିତି ଅଛି ଦେବଗଣ, ରାକ୍ଷସଗଣ, ଏହି ସବୁ। ତା ମାନେ ଏହିସବୁ ବିଷୟଗୁଡ଼ିକ ଜାତକର ମଧ୍ୟରେ prominent (ପ୍ରଧାନ)।   ଦୀ.ର. ୩/୭.୫.୧୯୫୭

॥ ବିଶୁଦ୍ଧ ରକ୍ତଧାରା କେତେବେଳେ ପାଇବେ ନାହିଁ ॥

ପ୍ରଶ୍ନ – Pure blood (ବିଶୁଦ୍ଧ ରକ୍ତଧାରା) ତ ଆଜିକାଲି ମିଳେହିଁ ନାହିଁ।

ଶ୍ରୀଶ୍ରୀଠାକୁର – ଢେର ଅଛି। କିନ୍ତୁ ଏହି ଭାବରେ ଯଦି ସବୁ ଚାଲୁ ରହେ ତାହେଲେ କିଛିଦିନ ପରେ ଆଉ ମିଳିବ ନାହିଁ।

ଦୀ.ର. ୩/୭.୫.୧୯୫୭

## ।। ଶଙ୍କରଜାତୀୟମାନଙ୍କୁ କିପରି ଉପରକୁ ଅଣା ଯାଇ ପାରେ ।।

ଶ୍ରୀଶ୍ରୀଠାକୁର – ଏହି ଯେପରି ମଣିର (ପୂଜନୀୟ ଛୋଟଦାଙ୍କର) ଦୁଇଟି କୁକୁର ଅଛି । ସେମାନେ ବାପା-ମା । ଛୁଆଗୁଡ଼ିକ ଉପରେ ମା'ଟାର ଏତେ affection (ସ୍ନେହ) ! ତାର କାରଣ ଏହି ମାକୁ ଅନ୍ୟକୌଣସି କୁକୁର ପାଖକୁ ଯିବାକୁ ଦେଇନି । କିନ୍ତୁ mongrel (ଶଙ୍କରଜାତୀୟ) ଯେଉଁଗୁଡ଼ିକ ସେମାନଙ୍କର ଏପରି ହୁଏ ନାହିଁ । Mongrel-ମାନଙ୍କ (ଶଙ୍କରଜାତୀୟମାନଙ୍କୁ) ଏହିପରି କରି ତୋଳିବାକୁ ହେଲେ ପରେ ଆସ୍ତେ-ଆସ୍ତେ ଅଲଗା process-ରେ (ନିୟମରେ) କରିବାକୁ ହେବ । ସେମାନଙ୍କୁ ଅଲଗା ରଖିବାକୁ ହେବ । ରଖି unicentricity-ର (ଏକକେନ୍ଦ୍ରିକତାର) ଭିତର-ଦେଇ breed (ପ୍ରଜନନ) କରେଇ କରେଇ ଆସ୍ତେ-ଆସ୍ତେ ଅନେକଟା make-up କରି (ଉପରକୁ ଅଣା) ଯାଇ ପାରେ । ଖୁବ ହିସାବ କରି ଏସବୁ କରିବା ଦରକାର । ମଣିଷର କ୍ଷେତ୍ରରେ ମଧ୍ୟ ଠିକ୍ ଏହି ରକମଟାହିଁ ଦରକାର ହୁଏ । ଦୀ.ର. ୩/୭.୫.୧୯୫୭

## ।। ବିବାହ ଯଥାଯୋଗ୍ୟ ରକମରେ ହେଲେ କାମକ୍ରୋଧାଦି ଲୁପ୍ତ ହୁଏ କିନାହିଁ ।।

ପ୍ରଶ୍ନ – ବିବାହଟା ତାହେଲେ ଯଥାଯୋଗ୍ୟ ରକମରେ ହେଲେ କାମ-କ୍ରୋଧ-ଇତ୍ୟାଦି ରିପୁ ଗୁଡ଼ିକ ତ ସବୁ vanished (ଲୁପ୍ତ) ହୋଇ ଯାଇ ପାରେ ।

ଶ୍ରୀଶ୍ରୀଠାକୁର – କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ – ଏହି ଯେଉଁ ଛଅ ରିପୁ, ଏଗୁଡ଼ିକର balanced state (ସାମ୍ୟ ଅବସ୍ଥା) ହେବା ଦରକାର, vanish (ବିଲୁପ୍ତି) ନୁହେଁ । Vanish (ବିଲୁପ୍ତି) ଆମେ ଚାହୁଁ ନା । Eugenics (ଜନନ-ବିଜ୍ଞାନ) ଠିକ୍ ନ ହେଲେ ଏଗୁଡ଼ିକୁ ଆମେ culture (ଅନୁଶୀଳନହିଁ) କରି ପାରିବୁ ନାହିଁ । ଆମ୍ଭମାନଙ୍କର culture (ଅନୁଶୀଳନ) ତ ମଣିଷ ନେଇ । Pure eugenics-ର (ବିଶୁଦ୍ଧ ଜନନ-ବିଜ୍ଞାନର) ଭିତର-ଦେଇ ମଣିଷର trait (ବିଶେଷ ଗୁଣଲକ୍ଷଣ)-ଗୁଡ଼ିକ ଠିକ୍ ହୋଇ ନ ଉଠିଲେ adjustment of complexes (ପ୍ରବୃତ୍ତିର ନିୟନ୍ତ୍ରଣ) ହୁଏହିଁ ନାହିଁ, complex-ଗୁଡ଼ିକ (ପ୍ରବୃତ୍ତିଗୁଡ଼ିକ) dangerous (ବିପଜ୍ଜନକ) ହୋଇ ଉଠେ ।

ଦୀ.ର. ୩/୭.୫.୧୯୫୭

## ।। ବିବାହର ଗୋଳମାଳ ସତ୍ତ୍ୱେ ମଧ୍ୟ ପାଶ୍ଚାତ୍ୟଦେଶରେ ବଡ଼ ବଡ଼ ଲୋକଙ୍କର ଜନ୍ମ କଣ ପାଇଁ ହୁଏ ।।

ପ୍ରଶ୍ନ – ପାଶ୍ଚାତ୍ୟ ଦେଶରେ ତ ବିବାହର କେତେ ଗଣ୍ଡଗୋଳ । ତଥାପି ସେମାନଙ୍କ ଦେଶରେ ଭଲ ପିଲା ଜନ୍ମ ନିଅନ୍ତି କିପରି ?

ଶ୍ରୀଶ୍ରୀଠାକୁର – ସେଠାରେ ଏପରି family (ପରିବାର) ଢେର ଅଛି ଯେଉଁମାନଙ୍କ ମଧ୍ୟରେ କୌଣସି enterpolation (ବ୍ୟତିକ୍ରମ) ହୋଇ ନାହିଁ । ବିଶେଷ କରି ରୋମାନ କ୍ୟାଥଲିକମାନେ ତ ସେସବୁ କରନ୍ତିହିଁ ନାହିଁ । ଏହି ଯେଉଁ ଉଇଲିୟମ ଜେମ୍ସଙ୍କ ପରି ବଡ଼-ବଡ଼ philosopher (ଦାର୍ଶନିକ), ଆହୁରି ବଡ଼-ବଡ଼ ଲୋକ ସେମାନଙ୍କ ମଧ୍ୟ ଦେଇହିଁ ଜନ୍ମଗ୍ରହଣ କରିଛନ୍ତି । ଆଉ, କିଛି ଅଛନ୍ତି ଯେଉଁମାନେ ଏବେଳାରେ ବିବାହ କରି ଆରବେଳାରେ ଛାଡ଼ନ୍ତି, ସେମାନଙ୍କୁ ଏମାନେ ଖୁବ୍ ଘୃଣା କରନ୍ତି । ସେମାନଙ୍କ ମଧ୍ୟରେ କିଛି ଅଛନ୍ତି ଯେଉଁମାନେ divorce (ବିବାହ-ବିଚ୍ଛେଦ) କରିଛନ୍ତି, ଅଥଚ ସେହି ବଂଶରେ ବଡ଼ଲୋକର ଜନ୍ମ ହୋଇଛି । ତାହା କିପରି ? ଏହି ଯେମିତି ନିଉଟନ । ନିଉଟନ ଓ ଆହୁରି କିଏ କିଏ ଜନ୍ମିବା ପରେ ନିଉଟନଙ୍କର ମା divorce (ବିବାହ-ବିଚ୍ଛେଦ) କରିଥିଲେ । ଆଜିକାଲି ସେମାନଙ୍କ ମଧ୍ୟ eugenics-ର (ପ୍ରଜନନ-ବିଜ୍ଞାନର) ଉପରେ affection (ଦରଦ) ଆସି ଯାଇଛି । ଖୁବ research (ଗବେଷଣା) କରୁଛନ୍ତି । କରି କରି ଏହାରହିଁ support (ସମର୍ଥନ) ବାହାର କରୁଛନ୍ତି । ଦେଖାଯାଏ, ଭଲ ଲୋକର ସହିତ ବିବାହ ହୋଇ ଭଲ ପିଲା ହୋଇଛି । ପୁଣି ଖରାପର ସହିତ ବିବାହ ହୋଇ ସନ୍ତାନ ହୋଇଛି ମାତାଲ ମଦଖୋର । ଦୀ.ର. ୩/୧୪.୫.୧୯୫୭

## ରାଢ଼ୀର ଝିଅ ବାରେନ୍ଦ୍ରର ଘରେ ଦେବାକୁ ହେଲେ କଣ ଦେଖିବେ ।।

ପ୍ରଶ୍ନ – ଠାକୁର ! ରାଢ଼ୀ-ବାରେନ୍ଦ୍ର ବିବାହ କଣ ପାଇଁ ହୁଏ ନାହିଁ ?

ଶ୍ରୀଶ୍ରୀଠାକୁର – ତା ହୁଏ ।

ପ୍ରଶ୍ନ – କୌଣସି ରାଢ଼ୀର ଝିଅ ଯଦି ବାରେନ୍ଦ୍ରର ଘରେ ଦେବାକୁ ହୁଏ ତା ହେଲେ minimum (କମପକ୍ଷେ) କଣ ଦେଖିବା ଦରକାର ?

ଶ୍ରୀଶ୍ରୀଠାକୁର – ସବୁ ସମୟରେ ଝିଅ ଦେବ ତୁମର ସମାନ ଘର କିମ୍ବା ତୁମ ଠାରୁ ବଡ଼ ଘର ଦେଖି । ଦୀ.ର. ୩/୧୪.୫.୧୯୫୭

## ।। କୌଳିନ୍ୟର ଶ୍ରେଣୀ ମାନି ଚାଲିବା ଭଲ କି ନୁହେଁ ।।

ପ୍ରଶ୍ନ – କୌଳିନ୍ୟର ଶ୍ରେଣୀ ମାନି ଚାଲିବାହିଁ ତ ଭଲ।

ଶ୍ରୀଶ୍ରୀଠାକୁର – ମାନି ଚାଲିବାହିଁ ଭଲ। ଆଉ କୁଳୀନ ଯେ କେବଳ ବ୍ରାହ୍ମଣ ମଧ୍ୟରେହିଁ ଅଛି ତାହା ନୁହେଁ। କୁଳୀନ ମାନେ କୁଳ ଯେଉଁଠି ଭାଙ୍ଗିନାହିଁ। ଚଷାର ଘରେ ମଧ୍ୟ ତାହା ରହିପାରେ। କିନ୍ତୁ ତା ଘରେ ତୁମ ଝିଅର ବିବାହ ଦେଇ ପାରିବ ନାହିଁ। ଦେବାକୁ ହେବ ତୁମ ବର୍ଣ୍ଣରେ। ପୁଣି ସମାନ ବର୍ଣ୍ଣର ଭିତରେ ମଧ୍ୟ କିନ୍ତୁ ଶ୍ରେଣୀ ଅଛି।

ପ୍ରଶ୍ନ – ଆଗରୁ ବାପା-ଜେଜେବାପା ଏ ବିଷୟରେ ଖୁବ୍ strict (କଠୋର) ଥିଲେ। ବିବାହ ନ ହେଉ ତାହା ମଧ୍ୟ ଭଲ, କିନ୍ତୁ ଅପାତ୍ରରେ ଝିଅ ଦେବି ନାହିଁ। କିନ୍ତୁ ଠାକୁର! ଏଥିରେ ତ ଅନେକଙ୍କର ବିବାହହିଁ ହେବ ନାହିଁ।

ଶ୍ରୀଶ୍ରୀଠାକୁର – ଦେଖ, divine calculation (ଭାଗବତ ହିସାବ) ଗୋଟିଏ ଅଛି। ତୁମର ଯେପରି ଘର, ସେହିପରି ବର ଠିକ୍ ଜୋଟିହିଁ ଅଛି।

ଦୀ.ର. ୩/୧୪.୫.୧୯୫୭

## ।। କରଣ, ତାମ୍ବୁଳୀ ଓ ବାରୁଜୀବୀ କେଉଁମାନେ ।।

ମୁଁ ଅନେକଦିନ ଆଗରୁ ଶୁଣିଥିଲି, ବୈଶ୍ୟ ଯଦି ଶୂଦ୍ରର ଝିଅକୁ ବିବାହ କରେ, ତାର ସନ୍ତାନ ହୁଏ କରଣ। ଆଉ କରଣର ଝିଅ ଯଦି ବ୍ରାହ୍ମଣକୁ ବିବାହ କରେ ତାହେଲେ ତାର ସନ୍ତାନ ହୁଏ ତାମ୍ବୁଳୀ। ପୁଣି ତାମ୍ବୁଳୀର ଝିଅ ଯଦି ବ୍ରାହ୍ମଣକୁ ବିବାହ କରେ ତାର ସନ୍ତାନ ହୁଏ ବାରୁଜୀବୀ। ଏହା ମୁଁ ଶୁଣିଥିଲି। ଦୀ.ର. ୩/୧୭.୫.୧୯୫୭

## ।। ବିବାହ ପରେ ସ୍ତ୍ରୀକୁ କିପରି ଠିକ୍ କରି ନେବାକୁ ହୁଏ ।।

ସ୍ତ୍ରୀକୁ ଠିକ୍ କରି ନେବାକୁ ହେଲେ ଆଗେ ଦେଖିବା ଦରକାର ତାର ସମସ୍ତ ଚଞ୍ଚଳତା ଦେଇ ତୁମକୁ ଭଲ ପାଏ କି ନାହିଁ! ତୁମେ ଯଦି ତାକୁ ଗାଲରେ ଚାପୁଡ଼ା ଦିଅ, ତଥାପି ସେ ତୁମକୁ ଭଲ ପାଏ କି ନାହିଁ! ଏହି ଭଲ ପାଇବାଟା ଯେତେ ମଧୁର ହେବ, ସ୍ତ୍ରୀ ମଧ୍ୟ ସେତେ ଠିକ୍ ହୋଇ ଉଠିବ। ଆଉ ନିଜର ଚାଲିବା-କହିବା (ଚାଲି-ଚଳନ)ଗୁଡ଼ିକ ଆଗେ ଠିକ୍ କରି ନେବା ଦରକାର। ନିଜର ଚାଲିବା-କହିବା (ଚାଲି-ଚଳନ) ଠିକ୍ ନ ହେଲେ ସ୍ତ୍ରୀର ଚାଲିବା-କହିବା (ଚାଲି-ଚଳନ) ଠିକ୍ କରି ପାରିବେ

ନାହିଁ। ଶେଷରେ ସ୍ତ୍ରୀର ଉପରେବି ଦୋଷ ଦେବାକୁ ପଡ଼େ, ନିଜ ଉପରେବି ଦୋଷ ଦେବାକୁ ପଡ଼େ। ଏହି ଯେ ... ଅଛି। ତାର ବାପା ଅଛନ୍ତି, ମା ଅଛନ୍ତି। ଏବେ ବାପା-ମାଙ୍କୁ ବାଦ ଦେଇ ମଧ୍ୟ ଯଦି କର୍ତ୍ତା ହୋଇ ଛିଡ଼ା ହୁଅ ତାହେଲେ ସ୍ତ୍ରୀ ସେତେବେଳେ ଯନ୍ତା ଘୁରାଇବାକୁ ଆରମ୍ଭ କରିବ। (ହାତ ଦ୍ୱାରା ଯନ୍ତା ଘୁରାଇବା ପରି କରି ଦେଖାଇଲେ ଏବଂ ମୁହଁରେ ମଧ୍ୟ ଘୁରାଇବାର ଶବ୍ଦ କରିବାକୁ ଲାଗିଲେ)। ସେମାନଙ୍କୁ କହିବା ଦରକାର, 'ତୁମର ମଧ୍ୟ ଯେଉଁ ଅବସ୍ଥା, ମୋର ମଧ୍ୟ ସେହି ଅବସ୍ଥା। ମୋର ମଧ୍ୟ ଏହି ବାପା-ମା ନ ହେଲେ ଚାଲିବାର ଉପାୟ ନାହିଁ। ଏହିଁ ମୋର ଲକ୍ଷ୍ମୀ-ନାରାୟଣ। ସେମାନଙ୍କର ସେବା କରିଲେ ମତେ ଭଲ ଲାଗିବ।' ମାନେ, ଯେପରି କରି ବୁଝାଇଲେ ଝିଅମାନେ ବୁଝନ୍ତି ସେହି ଭାବରେ କହିବେ। ସେ ଯଦି ତାର ସ୍ତ୍ରୀକୁ ଭଲ ପାଏ ତାହେଲେ ଏହିପରି ଭାବରେ କରେ। ଆଉ, ସେ ଓ ତାର ସ୍ତ୍ରୀର ଯଦି ତାର ବାପା-ମାଙ୍କ ଉପରେ ଝୋଙ୍କ ହୁଏ ତେବେ ତାର ଛୁଆମାନଙ୍କର ମଧ୍ୟ ଏହି ପରି ତାର ଆଉ ତାର ସ୍ତ୍ରୀ ଉପରେ ଝୋଁକ ହେବ। ଏହିପରି ଯଦି ଥାଏ ତା ହେଲେ ସବୁ ଠିକ୍ ରହିବ। ଆଉ ତାହା ନହେଲେ, ଚାରିଦିଗରେ ଯେପରି ଅବସ୍ଥା, ସେଥିରେ ଦୁଇଦିନ ପରେହିଁ ତାର ସ୍ତ୍ରୀ କହିବ – divorce (ବିବାହ-ବିଚ୍ଛେଦ) କରିବି। ଦୀ.ର. ୩/୨୧.୫.୧୯୫୭

## ।। ପତିଲୋମର ଫଳ ବାହାରେ ଭଲ ମନେ ହେଲେ ମଧ୍ୟ ଅନ୍ତରରେ କଣ ଥାଏ।।

ପ୍ରଶ୍ନ – ଆଚ୍ଛା, ପ୍ରତିଲୋମ ବିବାହର result (ଫଳ) ତ ଅନେକ ସମୟରେ ଭଲ ବୋଲି ମନେ ହୁଏ।

ଶ୍ରୀଶ୍ରୀଠାକୁର – ବାହାରଟା good-natured (ଶିଷ୍ଟ ସ୍ୱଭାବଯୁକ୍ତ) ହେଲେ ମଧ୍ୟ interior-ରେ (ଅନ୍ତରରେ) crooked (କୁଟିଳ) ହୁଏ।

ଦୀ.ର. ୩/୬.୬.୧୯୫୭

## ।। ଝିଅମାନଙ୍କର ରଜଃଶକ୍ତି ଆଉ ପୁରୁଷର ବୀର୍ଯ୍ୟଶକ୍ତି କଣ।।

ଝିଅମାନଙ୍କର ରଜଃଶକ୍ତି ହେଲା ସୌର୍ଯ୍ୟ (ସୁ-ଧାତୁ = ପ୍ରସବ), ଗୋଟିଏ କିଛି ଧରି ତାକୁ sprout କରାଏ (ଗଜାଏ)। ଆଉ ପୁରୁଷର ହେଲା ବୀର୍ଯ୍ୟ (ଈର୍-ଧାତୁ = ପ୍ରେରଣ) – ଠେଲି ଧରେ। ତେଣୁ, ମା ଠାରୁ ପାଏ ସୌର୍ଯ୍ୟ, ବାପା ପାଖରୁ

ପାଏ ବୀର୍ଯ୍ୟ। ସେଥିପାଇଁ ସୂର୍ଯ୍ୟର ମଧ୍ଯ ଏକ ନାମ ସବିତା, ସେ ପ୍ରସବ କରେ। କେହି ଝିଅ ଯେତେବେଳେ ଗୋଟିଏ ଧରି ତାର ଭିନ୍ନ ରକମରେ ଚଳେ, ନାନା ରକମାରି କରେ, ତାହା ସୌର୍ଯ୍ୟର ଅଭାବ। ପୁଣି ପୁରୁଷ ଯେତେବେଳେ ଗୋଟିଏ କିଛି ଧରିହିଁ ପାରେ ନାହିଁ, ତାହା ହେଲା ତାର ବୀର୍ଯ୍ୟର ଅଭାବ। ...ତୁମର ପିଲାମାନଙ୍କର କୃତିତ୍ୱ ତୁମର। କିନ୍ତୁ ତାର valour ଅର୍ଥାତ୍ ବିକ୍ରମଟା ହେଲା ତାର ବାପର।

ଦୀ.ର. ୩/୮.୭.୧୯୫୭

## ।। ଜୀବନ କାହାର ସମ୍ମିଳନ ।।

ଆମ୍ଭେମାନେ ମା ଓ ବାପାର combination-ରେ (ସମ୍ମିଳନରେ) ଜନ୍ମ ଗ୍ରହଣ କରୁଁ। ଆମ୍ଭମାନଙ୍କର ଏହି ଦେହଟି ହେଲା material physique (ପାର୍ଥିବ ଉପାଦାନର ସଂଗଠନ)। Material-କୁ ମୁଁ କହେ motherial. Mother-ହିଁ (ମା ହିଁ) ତାର ସେବା-ପରିଚର୍ଯ୍ୟା ଦ୍ୱାରା ଏହି ଦେହ ଗଠନ କରେ। ସେଥିପାଇଁ ସେବା ଝିଅମାନଙ୍କର ସହଜ ଧର୍ମ। ଯେମିତି, ବଡ଼-ବୋହୂ (ଶ୍ରୀଶ୍ରୀବଡ଼ମା) ନିଜେହିଁ ଚାଲିପାରେ ନାହିଁ, କିନ୍ତୁ ମୋତେ ଧରି ନେଇ ଯାଏ। ଭାବେ, କାଳେ ମୋର କୌଣସି କଷ୍ଟ ହୁଏ। ଆଉ, father ମାନେ ପିତା। ପିତା ମଧ୍ୟରେ ଅଛି ପା (ଧାତୁ), ମାନେ ଧାରଣ-ପାଳନ-ପୋଷଣ। Energetic volition (ଉଦ୍ୟମୀ ଇଚ୍ଛାଶକ୍ତି) ତା ମଧ୍ୟରେ ଅଛି। ଏହି ସବୁଗୁଡ଼ିକର combination (ସମ୍ମିଳନ) ନେଇ ହୁଏ life (ଜୀବନ)।

ଦୀ.ର. ୩/୧୫.୭.୧୯୫୭

## ।। ଝିଅର ବିବାହ କେତେବେଳେ ହେବା ଭଲ ।।

ଝିଅମାନଙ୍କର ଶୀଘ୍ରଶୀଘ୍ର ବିବାହ ଦେବାର ବ୍ୟବସ୍ଥା କରିବା ଭଲ। ମୋର ମନେ ହୁଏ, ପୂର୍ବପରି ସେହି ବାର ବର୍ଷରେହିଁ ଝିଅମାନଙ୍କର ବିବାହ ହେଲେ ଭଲ ହୁଏ।

ଦୀ.ର. ୩/୧୫.୭.୧୯୫୭

## ।। ସ୍ୱାମୀ କିମ୍ବା ଭର୍ତ୍ତା କାହାକୁ କୁହାଯାଏ ।।

ମୋର ସତ୍ତାର ଈଶ୍ୱର ଯିଏ, ସେ ମୋର ସ୍ୱାମୀ। ପୁଣି, ମୋର ସ୍ୱ ଯାହାଁଙ୍କ ଠାରେ ଯୁକ୍ତ, ସେହିଁ ମୋର ସ୍ୱାମୀ। ତାହାଲେ ଭର୍ତ୍ତା ଯିଏ, ସେ ମୋର ସ୍ୱାମୀ ହୋଇ

ମଧ୍ଯ ନ ପାରନ୍ତି। କିନ୍ତୁ ସ୍ୱାମୀ ଯିଏ, ସେ ଭର୍ତ୍ତା ମଧ୍ଯ ଅଟନ୍ତି, ପତି ମଧ୍ଯ ଅଟନ୍ତି।
ଦୀ.ର. ୩/୨୦.୮.୧୯୫୭

ଜଣେ ମୋତେ ବିବାହ କରିଲା। ତାପରେ ମୋତେ ଛାଡ଼ି ଯାଇ ଆଉ ଜଣେ ପୁରୁଷକୁ ବିବାହ କରିଲା। ଏହିସବୁ ସ୍ଥାନରେ ମୁଁ ସେହି ସ୍ତ୍ରୀ ଲୋକର ଭର୍ତ୍ତା ହୋଇପାରେ, କିନ୍ତୁ ସ୍ୱାମୀ ହେବି ନାହିଁ। ଦୀ.ର. ୩/୨୯.୮.୧୯୫୭

## ।। ଦ୍ରୌପଦୀର ପଞ୍ଚସ୍ୱାମୀ ଥିଲା କି ନାହିଁ।।

କଥିତ ଅଛି ଦ୍ରୌପଦୀର ବିବାହଟା କୁନ୍ତୀର ଆଦେଶରେ ହୋଇଥିଲା। କୁନ୍ତୀ ସେ ପାଞ୍ଚଜଣଙ୍କୁ ଭାଗ କରି ନେବାକୁ କହିଥିଲେ। କିନ୍ତୁ ମୋର ମନେ ହୁଏ, ଯୁଧିଷ୍ଠିରରହିଁ ସ୍ତ୍ରୀ ଥିଲେ ଦ୍ରୌପଦୀ। ସେମାନେ ସବୁ ଦେବର, ମାନେ ଦ୍ୱି-ବର। ପୁଣି ଦେଖ, ପ୍ରତ୍ୟେକଙ୍କରହିଁ ଅଲଗା ଅଲଗା ସ୍ତ୍ରୀ ଥିଲା। କିନ୍ତୁ ଯୁଧିଷ୍ଠିରର ଆଉ ସ୍ତ୍ରୀ ନଥିଲା। ସେ ଆଉ ବିବାହ କରି ନାହାନ୍ତି। ଦୀ.ର. ୩/୨୯.୮.୧୯୫୭

## ।। କୁନ୍ତୀ କିପରି ଏତେଜଣ ସୁସନ୍ତାନର ଜନନୀ ହେଲେ।।

ପ୍ରଶ୍ନ – କୁନ୍ତୀ ତ ପାଣ୍ଡୁର ସ୍ତ୍ରୀ ହୋଇ ମଧ୍ଯ ସୂର୍ଯ୍ୟ-ଇନ୍ଦ୍ର, ପବନ ପ୍ରଭୃତିଙ୍କ ପାଖରୁ ସନ୍ତାନ ଲାଭ କରିଥିଲେ। କୁନ୍ତୀ ତ ସତୀ ନାରୀ ନୁହେଁ। ଅଥଚ ତାଙ୍କ ପେଟରେ ଏତେ ଭଲ ସନ୍ତାନ କିପରି ହେଲେ ?

ଶ୍ରୀଶ୍ରୀଠାକୁର – କୁନ୍ତୀ ସମ୍ବନ୍ଧରେ କୁହା ଅଛି ଯେ ସୂର୍ଯ୍ୟ ପାଖରୁ, ଇନ୍ଦ୍ର, ପବନ ଏମାନଙ୍କ ପାଖରୁ ମଧ୍ଯ ସନ୍ତାନ ନେଲେ। ତା ମାନେ କଣ ଏମାନେ ପ୍ରତ୍ୟେକେହିଁ ଆସି କୁନ୍ତୀ ସହିତ ସହବାସ କରିଥିଲେ ? ସମସ୍ତେହିଁ କଣ ସେତେବେଳେ ଥିଲେ ? ତାହା ନୁହେଁ। କୁନ୍ତୀ ଏହିସବୁ ଦେବତାଙ୍କର ଆରାଧନା କରୁଥାନ୍ତି ଏବଂ ସ୍ୱାମୀଙ୍କ ଉପରେ ଜଣେ-ଜଣେ ଦେବତାଙ୍କର ଭାବ ସ୍ଥାପନ କରି ସେହି-ସେହି ଗୁଣବିଶିଷ୍ଟ ସନ୍ତାନ ଲାଭ କରନ୍ତି। ସମସ୍ତ ସନ୍ତାନ ପାଣ୍ଡୁର ଔରସରୁହିଁ ହୁଏ। ପୁଣି, ଅଶ୍ୱିନୀକୁମାରଦ୍ୱୟଙ୍କର ସ୍ମରଣ କରି ମାଦ୍ରୀର ଯେଉଁ ସନ୍ତାନ ହୁଏ, ତା ମାନେ ଏହି ପ୍ରକାର ପ୍ରକୃତିର ସନ୍ତାନ ହୋଇଥିଲା। ସେ-ସନ୍ତାନ ମଧ୍ଯ ପାଣ୍ଡୁଙ୍କରହିଁ ସନ୍ତାନ। ଏହାହିଁ ମୋର ମନେ ହୁଏ। ଏବେବି ଝିଅମାନଙ୍କର ପ୍ରଥା ଅଛି, ଋତୁସ୍ନାନର ପରେ ସ୍ୱାମୀଙ୍କ ମୁଖ ଦର୍ଶନ କରିବେ। ଆଉ ଯେଉଁମାନଙ୍କର

ସ୍ୱାମୀ ନ ଥାଏ, ସେମାନେ ସୂର୍ଯ୍ୟଙ୍କୁ ଦର୍ଶନ କାରିବେ। କାରଣ, ସୂର୍ଯ୍ୟଙ୍କୁ କୁହାଯାଏ ଜଗତର ଆତ୍ମା। ତା ହେଲେ ସ୍ୱାମୀର ଆତ୍ମା ମଧ୍ୟ ସେଠାରେ ନିହିତ। ...କୁନ୍ତୀର ବିଷୟଟି ମଧ୍ୟ ସେହିପରିହିଁ। ନହେଲେ ସୂର୍ଯ୍ୟଆସି intercourse (ସହବାସ) କରିଥିଲେ? –Meaningless (ଅର୍ଥହୀନ)। ମୋର ଏହି ପ୍ରକାରର ମନେ ହୁଏ।

ଦୀ.ର. ୩/୨୯.୮.୧୯୫୭

## ।।କେତେଜଣ ଝିଅ ମିଶି ଗୋଟିଏ ପୁରୁଷକୁ ବିବାହ କରିଲେ କଣ ହୁଏ।।

ପାଞ୍ଚଜଣ ସ୍ତ୍ରୀଲୋକ ମିଶି ଯଦି ଗୋଟିଏ ପୁରୁଷକୁ ବିବାହ କରନ୍ତି ତାହେଲେ ସେ ଏହି ପାଞ୍ଚଜଣଙ୍କରହିଁ ସ୍ୱାମୀ ହୁଏ। ଯେମିତି ଏଟମ୍‌ର ମଧ୍ୟରେ ଗୋଟିଏ ପ୍ରୋଟନ ଏବଂ ଅନେକଗୁଡ଼ିଏ ଇଲେକ୍ଟ୍ରନ ଥାଏ – କେଉଁଠି ସାତଟା, କେଉଁଠି ପାଞ୍ଚଟା, କେଉଁଠି ବା ତିନିଟା। ଏହି ଇଲେକ୍ଟ୍ରନ ଏବଂ ପ୍ରୋଟନ ନେଇହିଁ ସମ୍ପୂର୍ଣ୍ଣ ଗୋଟିଏ ଏଟମ। ଝିଅମାନଙ୍କ ମଧ୍ୟରେବି ଏହି ଇଲେକଟ୍ରନ ପରି negative (ଚରିଷ୍ଣୁ) ପ୍ରକାର ଅଛି। ତେଣୁ ସ୍ତ୍ରୀ ଆଉ ପୁରୁଷ ନେଇହିଁ ଗୋଟିଏ ସମ୍ପୂର୍ଣ୍ଣ ଜୀବନ ହୁଏ। ସେଥିପାଇଁ ସ୍ତ୍ରୀକୁ କୁହା ହୁଏ ଅର୍ଦ୍ଧାଙ୍ଗିନୀ। ଦୀ.ର. ୩/୨୯.୮.୧୯୫୭

## ।। ପ୍ରତିଲୋମ-ସଂସ୍ରବ ରହିଲେ କଣ ହୁଏ।।

ମୋର କଣ କରିବା ଉଚିତ, କଣ କରିବା ଉଚିତ ନୁହେଁ, ତାହା ଠିକ୍ କରିଦିଏ self-regarding sentiment (ଆତ୍ମମର୍ଯ୍ୟାଦାବୋଧ)। ଏଇଟି କିନ୍ତୁ ଗର୍ବ ନୁହେଁ। ପୁଣି, blood-ରେ (ରକ୍ତରେ) ଦୋଷ ରହିଲେ ପରେ self-regarding sentiment (ଆତ୍ମମର୍ଯ୍ୟାଦାବୋଧ) କମିଯାଏ। ପ୍ରତିଲୋମ ସଂସ୍ରବ ଯେଉଁଠି ଥାଏ ସେଠାରେ ତ self-regarding sentiment (ଆତ୍ମମର୍ଯ୍ୟାଦାବୋଧ) ରହେହିଁ ନାହିଁ। ପ୍ରତିଲୋମ-ସଂସ୍ରବ ରହିଲେ କେମିତି ହୁଏ! ଧର, କେହି ତୁମକୁ ନିମନ୍ତ୍ରଣ କରି ନେଇ ଯାଇ ହୁଏତ ମୁରଗୀ-ଟୁରଗି ରାନ୍ଧି ଖାଇବାକୁ ଦେଲେ। ସେତେବେଳେ ତୁମର ବୁଦ୍ଧି ଆସି ଯିବ – ମୁଁ ଯଦି ନ ଖାଏ, ଏମାନେ ମନରେ ବ୍ୟଥା ପାଇବେ। କିନ୍ତୁ ବିଦ୍ୟାସାଗର ମହାଶୟଙ୍କୁ (ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କୁ) ଡ଼ାକି ତାହା ଆଉ ଖୁଆଇ ପାରିବେ ନାହିଁ। ସେ strongly (ଜୋର କରି) କହିବେ – ସେସବୁ ମୋତେ ଦେବେ ନାହିଁ। ଗୁରୁଦାସବାବୁଙ୍କର (କଲିକତା ହାଇକୋର୍ଟର ଜଜ୍ ସାର ଗୁରୁଦାସ ବାନାର୍ଜୀ) self-

regarding sentiment (ଆତ୍ମମର୍ଯ୍ୟାଦାବୋଧ) କେମିତି ଥିଲା ଦେଖ ଦେଖି। ଚୋଗା-ଚାପକାନ ଖୋଲି ନାରାୟଣ ପୂଜା କରି ଆସିଲେ। ଦୁଇ ଅଣା ଦକ୍ଷିଣା ପାଇ ତାହା ମଧ୍ୟ ପୁଣି ନେଇ ଆସିଲେ। ଦୀ.ର. ୩/୨୪.୧୦.୧୯୫୭

## ॥ ପ୍ରକୃତ ଭଲପାଇବା ରହିଲେ କଣ ହୁଏ ॥

ପ୍ରଶ୍ନ – ଗୋଟିଏ ଝିଅ ଗୋଟିଏ ପୁରୁଷକୁ ଭଲପାଏ। ଯଦି ତାର ସେହି ଭଲପାଇବା frustrated (ବ୍ୟର୍ଥ) ହୋଇଯାଏ ତେବେ ତାର doomed (ଦୁର୍ଭାଗ୍ୟଗ୍ରସ୍ତ) ହୋଇ ଭାଙ୍ଗି ପଡ଼ିବା ଛଡ଼ା କଣ କୌଣସି ଉପାୟ ଅଛି ?

ଶ୍ରୀଶ୍ରୀଠାକୁର – ତାହା ଭାଙ୍ଗେ ନାହିଁ। ଯଦି ଭାଙ୍ଗେ ତେବେ ବୁଝିବାକୁ ହେବ, ଏହି ନାରାୟଣର ଲକ୍ଷ୍ମୀ ସେ ନୁହେଁ।

ପ୍ରଶ୍ନ – କିନ୍ତୁ ସେଠାରେ ତ ଭଲପାଇବା ଥିଲା ?

ଶ୍ରୀଶ୍ରୀଠାକୁର – ନା, ତାହା ନ ଥିଲା। Love-ହିଁ (ଭଲପାଇବାହିଁ) ନଥିଲା। ଯାହା ଭାଙ୍ଗି ଯାଏ, ତାର ସେସବୁ ଜିନିଷ ରହେ ନାହିଁ।

ପ୍ରଶ୍ନ – ଆଉ ଯାହାର ଭଲପାଇବା ଅଛି ?

ଶ୍ରୀଶ୍ରୀଠାକୁର – ସେ ଅପରକୁ ଭଲପାଇହିଁ ଯାଏ। ସେ ତାର ଏହି gap-ଟିକୁ (ଫାଁକଟିକୁ) ଅନ୍ୟ କିଛି ଦ୍ୱାରା fulfill (ପୂର୍ଣ୍ଣ) କରିବାକୁ ଚାହେଁନା। ଯଦି ଚାହେଁ, then it is not of life (ତାହେଲେ ତାହା ଜୀବନୀୟ ନୁହେଁ)।

ପ୍ରଶ୍ନ – ଭଲପାଇବା ରହିଲେ ସେତେବେଳେ ଚାଲିବାର ରକମଟା କେମିତି ହୁଏ ?

ଶ୍ରୀଶ୍ରୀଠାକୁର – ଭଲପାଇବା ରହିଲେ ସେତେବେଳେ ମଣିଷ ଏହି ରକମରେହିଁ ଚାଲିଥାଏ। ଯିଏ ଚାଲିଯାଇଛି, ତାର ମଙ୍ଗଳ ପାଇଁ ହୁଏତ ପ୍ରାର୍ଥନା କରେ କିମ୍ବା ତାର ଯେଉଁଥିରେ ଭଲ ହୁଏ ତାହାହିଁ କରିବାକୁ ଲାଗେ।

ପ୍ରଶ୍ନ – କିନ୍ତୁ ଏଥିରେ ତାର ତୃପ୍ତି ହୁଏ ନାହିଁ।

ଶ୍ରୀଶ୍ରୀଠାକୁର – ନିଜର ତୃପ୍ତି ପାଇଁ ସେ ବ୍ୟସ୍ତ ହୁଏ ନାହିଁ। ସେ ଏମିତିହିଁ କରି ଚାଲେ। ତାକୁ ସୁଖୀ କରିହିଁ ସେ ସୁଖୀ।

ପ୍ରଶ୍ନ – ତା ହେଲେ ଏହି beating heart (ଅସ୍ଥିର ହୃଦୟ) ନେଇ ସେ ସାରାଜୀବନ କଟେଇବ ?

ଶ୍ରୀଶ୍ରୀଠାକୁର – ଟିକିଏ ଗମ୍ଭୀର ହୋଇ କହିଲେ — ପ୍ରଥମେ love (ଭଲପାଇବା) ନା ପ୍ରଥମେ passion (ପ୍ରବୃତ୍ତି) ? ଯଦି ଆଗେ passion (ପ୍ରବୃତ୍ତି) ହୁଏ ତେବେ ସେ ଆଉ-ଗୋଟିଏ ବିବାହ କରିବ । ଆଉ, ପ୍ରଥମ ଯଦି love (ଭଲପାଇବା) ହୁଏ ତେବେ ଏହି ପ୍ରଥମ ରକମଟି ନେଇ ରହିବ ।

ପ୍ରଶ୍ନ – Passion-ହିଁ (ପ୍ରବୃତ୍ତିହିଁ) ହେଉ, ଆଉ love-ହିଁ (ଭଲପାଇବାହିଁ) ଥାଉ, solution (ସମାଧାନ) ତ ଏଥିରେ ନାହିଁ ।

ଶ୍ରୀଶ୍ରୀଠାକୁର – କିନ୍ତୁ ସେହିଟିକୁ make up (ସଂଶୋଧନ) କରିବାକୁ ଯାଇ ସେ ଆଉ ଗୋଟିଏ ବିବାହ କରିବାକୁହିଁ ଚାହେଁ ନାହିଁ ।

ଦୀ.ର. ୩/୧୭.୧୨.୧୯୫୭

## ।। ଭଲପାଇବା କେତେବେଳେ ଅପବିତ୍ର ହୁଏ ।।

ଧର, ମୁଁ ତୁମକୁ ଭଲପାଏ, ତା ମଧ୍ୟରେ ଯଦି ସ୍ୱାର୍ଥ ଥାଏ, ତାହେଲେ ତାହା ଅପବିତ୍ର ହୋଇଗଲା । ମୁଁ ସେତେବେଳେ ଭଲପାଏ ସେହି ସ୍ୱାର୍ଥକୁ, ତୁମକୁ ଭଲପାଏ ନାହିଁ । ନରନାରୀର ବିଷୟରେ ମଧ୍ୟ ଏହିପରି । ଆଉ, ସେହି ଭଲପାଇବା ମଧ୍ୟରେ ଯଦି sexual interest (ଯୌନକାଂକ୍ଷା) ଥାଏ ତାହେଲେ ମଧ୍ୟ ଗଲା ।

ଦୀ.ର. ୪/୯.୨.୧୯୫୮

## ।। ଉଚ୍ଚବର୍ଣ୍ଣ ନାରୀର ନିମ୍ନବର୍ଣ୍ଣର ପୁରୁଷକୁ ଭଲପାଇବା ଅପବିତ୍ର କିନୁହେଁ ।। ୨୮୫୯

ପ୍ରଶ୍ନ – ଜଣେ ଉଚ୍ଚବର୍ଣ୍ଣର ନାରୀ ଯଦି ଜଣେ ନିମ୍ନବର୍ଣ୍ଣର ପୁରୁଷକୁ ଭଲପାଏ, ତାହା କଣ ଅପବିତ୍ର ?

ଶ୍ରୀଶ୍ରୀଠାକୁର – ସେ-କଥା ଭାବ କଣ ପାଇଁ ? ତୁମେ ତୁମର ମାଙ୍କୁ ଭଲପାଅ ନାହିଁ ? ତୁମର ମାଙ୍କୁ ଅନ୍ୟ ଲୋକ ଭଲପାଆନ୍ତି ନାହିଁ ? ବଡ଼-ବୌ (ଶ୍ରୀଶ୍ରୀବଡ଼ମା) ତୁମକୁ ଭଲପାଆନ୍ତି ନାହିଁ ? (ପ୍ରଶ୍ନକର୍ତ୍ତା ମୁଣ୍ଡ ହଲେଇ ଶ୍ରୀଶ୍ରୀଠାକୁରଙ୍କର କଥାରେ ସମ୍ମତି ଜଣାଉଛନ୍ତି) । ତେବେ ? ଏହି ଭଲପାଇବାର ମଧ୍ୟରେ ଅଛି ଶ୍ରଦ୍ଧା । ଏହି-ସବୁ ଭଲପାଇବା ମଧ୍ୟରେ ଯୌନ-ଆକାଂକ୍ଷା ଯଦି ଥାଏ, ତାହେଲେ ତାହା ତ ଆଉ ଭଲପାଇବା ହେଲା ନାହିଁ । ତୁମର ମାଙ୍କୁ ଅନ୍ୟ ଲୋକ ଭଲପାଆନ୍ତି ନାହିଁ ? ତୁମର ମାଆ ଅନ୍ୟ ଲୋକଙ୍କୁ ଭଲ ପାଆନ୍ତି ନାହିଁ ? ତାହେଲେ ତାହା କଣ ହେଲା ?

ଦୀ.ର. ୪/୯.୨.୧୯୫୮

## ।। ଆମେ ମୁସକିଲ ମଧ୍ୟରେ କେତେବେଳେ ପଡ଼ିଯିବୁ ।।

ଆମେ ଯାହାବି କରୁନା କାହିଁକି, ଆମ୍ଭମାନଙ୍କର ସବୁସମୟରେ ମୁଖ୍ୟ ରହିବା ଉଚିତ – ଜୀବନ, ବିବାହ ଓ ଜନନ । ଏହାକୁ goal (ଲକ୍ଷ୍ୟ) କରି-କରି ଚାଲିବାକୁ ପଡ଼ିବ । ଏହା ଯେତେ ignored (ଅବହେଳିତ) ହେବ, ଆମ୍ଭେମାନେ ସେତେ ମୁସକିଲର ମଧ୍ୟରେ ପଡ଼ି ଯିବୁ । ଦୀ.ର. ୪/୨୫.୩.୧୯୫୮

## ।। ଗୋଟିଏ ଜାତିକୁ କିପରି ନଷ୍ଟ କରାଯାଏ ।।

ପ୍ରଶ୍ନ – ଠାକୁର କଣ intercast marriage (ଅସବର୍ଣ୍ଣ ବିବାହ) support (ସମର୍ଥନ) କରନ୍ତି ?

ଶ୍ରୀଶ୍ରୀଠାକୁର – ହଁ, କିନ୍ତୁ ପ୍ରତିଲୋମ ନୁହେଁ ଅନୁଲୋମ । ପୁଣି, କେବଳ intercast (ଅସବର୍ଣ୍ଣ) ହେଲେହିଁ ହେବ ନାହିଁ, ତାହା marriage-ର (ବିବାହର) ବିଧି ସହିତ ମିଶିବା ଦରକାର । କୁଳରେ ଯାହାର କୌଣସି interpolation (ଅନୁଚିତ ରୂପରେ ଅନ୍ତଃକ୍ଷେପ) ଢୁକିନାହିଁ, ତାକୁହିଁ କୁହାଯାଏ କୁଳୀନ । ଏହି କୌଳିନ୍ୟ ସମସ୍ତଙ୍କରହିଁ ରହିବା ଦରକାର୍ । ଗୋଟିଏ ଜାତିକୁ ନଷ୍ଟ କରିବାକୁ ହେଲେ, ଆପଣମାନେ ଏହି ଯେଉଁ ହାଇଡ୍ରୋଜେନ ବମ୍ ନା କଣ କହନ୍ତି, ଏହି ପ୍ରତିଲୋମରୂପକ ହାଇଡ୍ରୋଜେନ ବମ୍ ଢୁକେଇ ଦେଲେହିଁ ହୁଏ । ତାହାର current (ସ୍ରୋତ) ଚାଲିବହିଁ । ଏକ୍‌ଦମ୍ ନିକେଶ କରି ଛାଡ଼ି ଦେବ । ଦୀ.ର. ୪/୨୫.୩.୧୯୫୮

## ।। ମଣିଷର ଜୀବନରେ କଣ କଣ ବନ୍ଧନ ରହିବା ଦରକାର ।।

ଜଣେ ମଣିଷର ଜୀବନରେ legal binding, social binding ଓ ପାରିବାରିକ binding (ଆଇନଗତ ବନ୍ଧନ, ସାମାଜିକ ବନ୍ଧନ ଓ ପାରିବାରିକ ବନ୍ଧନ) ରହିବା ଦରକାର । ଏହା ନ ରହିଲେ ଜୀବନ haphazard (ଅସଜଡ଼ା), ଉଚ୍ଛୃଙ୍ଖଳ ହୋଇଯାଏ । ଧର, ତୁମେ ବିବାହ କରିଛ । ଏବେ ତୁମର ସ୍ତ୍ରୀ ଯଦି ତାର ବନ୍ଧୁବାନ୍ଧବ ନେଇ ବୁଲି ଯିବାକୁ ଚାହେଁ, ଫୂର୍ତ୍ତି କରିବାକୁ ଯିବାକୁ ଚାହେଁ, ତୁମ ଦିଗକୁ ଲକ୍ଷ୍ୟ ନଥାଏ, ସେତେବେଳେ ତୁମର ଅବସ୍ଥାଟା କେମିତି ହୁଏ ! ତୁମକୁ divorce (ବିବାହବିଚ୍ଛେଦ) କରି ପାରିଲେ ହୁଏତ ତାର ପଥ ପରିଷ୍କାର ହୋଇ ଯାଏ, ଆଉ ଜଣକୁ ଧରି ପାରେ ।

ଏହି ଚଳନର ଫଳରେ ତୁମେ ମଧ୍ୟ affected (ଆକ୍ରାନ୍ତ) ହେବ, ସେ ମଧ୍ୟ ହେବ। Female (ନାରୀ) ଯେଉଁଠାରେ ଉଚ୍ଛୃଙ୍ଖଳ ଚଳନରେ ଚଳେ, ସେଠାରେ male nowhere (ପୁରୁଷ ସ୍ଥାନଶୂନ୍ୟ) ହୋଇପଡ଼େ। ଅନେକେ marriage-କୁ (ବିବାହକୁ) social contract (ସାମାଜିକ ଚୁକ୍ତି) କୁହନ୍ତି। ମୁଁ କହେ, contract-ର (ଚୁକ୍ତିର) marriage (ବିବାହ) ଭଲ ନୁହେଁ। ତାହାକୁ marriage-ହିଁ (ବିବାହହିଁ) କହିବାକୁ ଇଚ୍ଛା ହୁଏ ନାହିଁ। Marriage is something holy and holiness can not have any contract (ବିବାହ ଗୋଟିଏ କିଛି ପବିତ୍ର ଏବଂ ପବିତ୍ରତାରେ କୌଣସି ଚୁକ୍ତି ରହେ ନାହିଁ)। ଦୀ.ର. ୪/୩୧.୩.୧୯୫୮

## ॥ ପୁରୁଷ ଓ ନାରୀ ମଧ୍ୟରେ କିଏ କେମିତି ॥

ସ୍ଥାସ୍ନୁ ହେଲା 'ପଜିଟିଭ୍', ଆଉ ଚର 'ନେଗେଟିଭ୍'। ନାରୀ 'ନେଗେଟିଭ୍'। ସିଏ ଦାରା, ମାନେ ଭାଗ ଭାଗ କରି ଦିଏ (ଦୃ-ଧାତୁ ବିଦାରଣ)। ପୁରୁଷ ଭାଗ କରିପାରେ ନାହିଁ। ସିଏ ତାର static (ନିଶ୍ଚଳ) ଅବସ୍ଥା ନେଇ ଥାଏ। ପୁରୁଷ ହେଲା static and passive (ନିଶ୍ଚଳ ଓ ନିଷ୍କ୍ରିୟ) ଏବଂ ନାରୀ dynamic ଓ active (ସଚଳ ଓ ସକ୍ରିୟ)। ଦୀ.ର. ୪/୧୨.୯.୧୯୫୮

## ॥ ସ୍ତ୍ରୀ ଯଦି ଠିକ୍ ନ ରହେ ତେବେ କଣ ହୁଏ ॥

(ଦେଶର ବର୍ତ୍ତମାନ ପରିସ୍ଥିତିରେ) ସବୁ କିଛି ଢ଼ାଳି ସଜେଇ ନ ପାରିଲେ ହେବ ନାହିଁ। ଦେଶରେ elite (ସର୍ବୋତ୍କୃଷ୍ଟ ବ୍ୟକ୍ତି) ଯେଉଁମାନେ ଅଛନ୍ତି ସେମାନେ ପ୍ରକୃତରେ elite (ସର୍ବୋତ୍କୃଷ୍ଟ) ନୁହଁନ୍ତି। ତାହା ଯଦି ହୋଇଥାନ୍ତା ତାହେଲେ କଣ ଦେଶରେ divorce (ବିବାହବିଚ୍ଛେଦ) ପ୍ରଥା ଆସି ପାରିଥାନ୍ତା ? Divorce (ବିବାହବିଚ୍ଛେଦ) ଚାଲୁ ହେବା ଫଳରେ ସଂସାରଗୁଡ଼ିକ ଭାଙ୍ଗି-ଭାଙ୍ଗି ଯାଉଛି। ଆଜି ଯିଏ ଜଣକର ସ୍ତ୍ରୀ, କାଲି ସେ ଆଉ ଜଣକର ସ୍ତ୍ରୀ ହୋଇ ଯାଉଛି। ଛୁଆପିଲାମାନଙ୍କର ଯେ କି ଅବସ୍ଥା ! ମା ନାହିଁ, ବାପ ନାହିଁ – କେମିତି ଯେପରି ଗୋଟିଏ ଛନ୍ନଛଡ଼ା ଅବସ୍ଥା। ଧର, ମୁଁ ଏବେ ବୁଢ଼ା ହୋଇ ଯାଇଛି। ଆଜି ଯଦି ମୋର ସେହି ଅବସ୍ଥା ହୁଏ, ତାହେଲେ ମୁଁ ରହିବି କେଉଁଠି ? ଗୃହ ଯାହାକୁ କହନ୍ତି, 'ଗୃହିଣୀ ଗୃହମୁଚ୍ୟତେ' – ସେହି ଗୃହହିଁ ଯଦି unstable (ଅସ୍ଥିର) ହୋଇ ଯାଏ ତାହେଲେ ରହିବ କେଉଁଠି ?

Magnet-ର (ଚୁମ୍ବକର) ଦୁଇଟି pole (ମେରୁ) ଅଛି – 'ପଜିଟିଭ୍' ଓ 'ନେଗେଟିଭ୍'। ସ୍ୱାମୀ ହେଲା ପଜିଟିଭ, ସ୍ତ୍ରୀ ହେଲା ନେଗେଟିଭ। ସ୍ତ୍ରୀ ହାତରେ ସଂସାର ଧରିକି ଥାଏ। ସେ ହେଲା ଆଧାର। ସେହି ସ୍ତ୍ରୀ ଯଦି ନ ଥାଏ, ତାମାନେ ଆଧାର ଯଦି ଠିକ୍ ନ ଥାଏ, ତେବେ ବଂଶ, family (ପରିବାର) ସବୁ suffer କରିବେ (କଷ୍ଟଭୋଗ କରିବେ)। ତାପରେ ଦେଖନ୍ତୁ, ବଙ୍ଗଳାରେ ଯେତେ divorce (ବିବାହବିଚ୍ଛେଦ), ବିହାରରେ ସେତେ ନାହିଁ। ବିହାର ଏଦିଗରୁ ଖୁବ୍ ଭଲ। ଦିଲ୍ଲୀରେ ମଧ୍ୟ ଏହା ବେଶ୍ ଦେଖାଯାଏ। ପୁଣି ଏସବୁ ବ୍ରାହ୍ମଣ-କାୟସ୍ଥଙ୍କ ମଧ୍ୟରେହିଁ ବେଶୀ।

ଦୀ.ର. ୪/୧୭.୯.୧୯୫୮

## ॥ ବଂଶାନୁକ୍ରମିକତାର ଦାମ୍ କଣ ପାଇଁ॥

ପ୍ରଶ୍ନ – ପୁନର୍ଜନ୍ମ କଣ ଅଛି ?

ଶ୍ରୀଶ୍ରୀଠାକୁର – ଏହି ଶରୀର ଆଉ ଜନ୍ମ ନିଏ ନାହିଁ। କିନ୍ତୁ ସଂସ୍କାର ଥାଏ ବାପାଙ୍କ ମଧ୍ୟରେ। ସଂସ୍କାର ହେଲା ସମ୍ୟକ ପ୍ରକାରେ କୃତ ଯାହା। ତୁମେ ଯାହା କରୁଛ ତାହା ତୁମ ମଧ୍ୟରେ recorded (ଲିଖିତ) ହେଉଛି। ତାପରେ spermetic cell-ର (ରେତଃଶରୀରର) ମଧ୍ୟ-ଦେଇ ତାହା ସଞ୍ଚାରିତ ହୁଏ। ତୁମେ ବିବାହ କରିଲ। ତୁମର intercourse-ର (ଯୌନମିଳନର) ସମୟରେ sperm-ର (ଶୁକ୍ରର) ମଧ୍ୟ-ଦେଇ ଏହି ସଂସ୍କାର ଗଲା। ତାହା materialised (ମୂର୍ତ୍ତ) ହୋଇ ଉଠେ ସନ୍ତାନର ମଧ୍ୟରେ। ତେଣୁ କୁହେ, 'ସଂସ୍କାରସାକ୍ଷାତ୍‌କାରାତ୍ ପୂର୍ବଜାତିଜ୍ଞାନମ୍।' ସେଥିପାଇଁ heridity-ର (ବଂଶାନୁକ୍ରମିକତାର) ଦାମ୍ ଏତେ। Heridity (ବଂଶାନୁକ୍ରମିକତା) ଛାଡ଼ି ଦେବା ମାନେ ନିଜର ବଂଶକୁ ମାରି ପକେଇବା।

ପ୍ରଶ୍ନ – ପ୍ରତ୍ୟେକ sperm-ର (ଶୁକ୍ରକୀଟର) ମଧ୍ୟରେହିଁ କଣ ପୂର୍ବପୁରୁଷର ସଂସ୍କାର ଅଛି ?

ଶ୍ରୀଶ୍ରୀଠାକୁର – ତା ତ ଅଛିହିଁ।

ପ୍ରଶ୍ନ – କିନ୍ତୁ ଏକାଥରେ ତ ଅସଂଖ୍ୟ sperm (ଶୁକ୍ରକୀଟ) ବାହାରେ। ତାର ପ୍ରତ୍ୟେକଟିରେହିଁ ସଂସ୍କାର ଥାଏ ?

ଶ୍ରୀଶ୍ରୀଠାକୁର – ତା ତ ଥାଏହିଁ। ସେଥିପାଇଁ ଏହି ଯେ masturbation (ହସ୍ତମୈଥୁନ) କରା ହୁଏ, ଅନେକ ପୁଅମାନେ କରନ୍ତି, ତା ମାନେ ସେହି ଏତେଜଣ ମଣିଷଙ୍କୁ ହତ୍ୟା କରା ହୁଏ।

ଦୀ.ର. ୪/୨୦.୯.୧୯୫୮

## ।। ପାଗଳର ବଂଶରେ ବିବାହ କରିବା କଥା ନୁହେଁ।।

ପାଗଳର family-ରେ (ପରିବାରରେ କିମ୍ବା ବଂଶରେ) ବିବାହ କରିବା କଥା ନୁହେଁ। ପୁଣି ଏକ ଧରଣର ଅଛନ୍ତି ଯେଉଁମାନେ ଠିକ୍ ପାଗଳ ନୁହନ୍ତି, କିନ୍ତୁ eccentric (ଖାମଖେୟାଲୀ)। ସେମାନେ ମଧ୍ୟ all-round activity (ସର୍ବତୋମୁଖୀ କର୍ମପ୍ରବଣତା) ନେଇ ଗଜେଇ ଉଠି ପାରନ୍ତି ନାହିଁ। ଯେଉଁଠାରେ active (ସକ୍ରିୟ) ହେବା ଉଚିତ ସେଠାରେ ହୁଏତ ହେଲା ନାହିଁ। କିନ୍ତୁ ଯେଉଁଠି active (ସକ୍ରିୟ) ହେବା ଉଚିତ ନୁହେଁ ସେଠାରେ ଖୁବ୍ ହୋଇ ଉଠିଲା। ଦୀ.ର. ୪/୧୦.୧୦.୧୯୫୮

## ।। ସ୍ୱାଭାବିକ ଦମ୍ପତିଙ୍କର ଅସ୍ୱାଭାବିକ ସନ୍ତାନ ହୁଏ କଣ ପାଇଁ।।

ପ୍ରଶ୍ନ – Normal parent-ମାନଙ୍କର abnormal child (ସ୍ୱାଭାବିକ ଦମ୍ପତିଙ୍କର ଅସ୍ୱାଭାବିକ ସନ୍ତାନ) ହେବାର ଦେଖାଯାଏ। କିନ୍ତୁ ତାହା ଯେ କଣ ପାଇଁ ହୁଏ ତାହା ବୁଝା ଯାଏ ନାହିଁ। ମନେ ହୁଏ ହଠାତ୍‌ହିଁ ହୁଏ।

ଶ୍ରୀଶ୍ରୀଠାକୁର – ମନେ କରନ୍ତୁ, ଗୋଟିଏ ବାପର ପାଞ୍ଚଟି ସନ୍ତାନ। ସେମାନଙ୍କ ମଧ୍ୟରୁ ତିନିଜଣ ବେଶ ଭଲ ହେଲେ। ଆଉ ଦୁଇଜଣ ଅନ୍ୟ ପ୍ରକୃତିର ହେଲେ। ଯେଉଁ କେତେ ଜଣ ଭଲ ହେଲେ ତାହାକୁ ଆପଣ ହୁଏତ କହିଲେ chance (ଦୈବ ବା ହଠାତ୍)। କିନ୍ତୁ ତାହା ନୁହେଁ। ଏହି ଭଲ ହେବା ପଛରେ ପର-ପର କେତେଟା generation (ପୁରୁଷ) ଧରି effort (ପ୍ରଚେଷ୍ଟା) ହୋଇ-ହୋଇ ଆସିଛି, ଯାହା ପାଇଁ ଏହି generation-ରେ (ପୁରୁଷରେ) ତାର ଫଳ ତିନିଜଣଙ୍କଠାରେ ଦେଖାଗଲା। ସେହି effort-ଟି (ପ୍ରଚେଷ୍ଟାଟି) ଆପଣ count (ଗଣନା) କରିଲେ ନାହିଁ ବା ଦେଖିଲେ ନାହିଁ। କହିଲେ, ଏହା ହୋଇଛି suddenly by jerks (ଆକସ୍ମିକଭାବେ ଉଲ୍ଲଙ୍ଘନ-କ୍ରିୟାର କିମ୍ବା ପଲକର ଭିତର ଦେଇ)।

ପ୍ରଶ୍ନ – ରୁଇଦାସ ଯେ ନୀଚ ପରିବାର ଓ ପରିବେଶରେ ଜନ୍ମ ନେଇ ମଧ୍ୟ ଏତେ ବଡ଼ ଓ ଭଲ ହେଲେ ତାହାର କାରଣ ମଧ୍ୟ କଣ ଏହାହିଁ?

ଶ୍ରୀଶ୍ରୀଠାକୁର – (ଜୋରର ସହିତ) ନିଶ୍ଚୟହିଁ। ତାଙ୍କର ଜନ୍ମ ନେବା ଆଗରୁ କେତେଦିନ ଧରି ଯେ effort (ପ୍ରଚେଷ୍ଟା) ଚାଲିଅଛି, ଯାହା ଫଳରେ ରୁଇଦାସଙ୍କର ଜନ୍ମ ହୋଇଛି, ତାହାତ ଆମେ ଜାଣି ନାହୁଁ।

ପ୍ରଶ୍ନ – ତାହେଲେ ପ୍ରକୃତିରେ ଗଛ ପତ୍ରର ମଧ୍ୟରେ ଯେଉଁ sudden change (ହଠାତ୍ ପରିବର୍ତ୍ତନ) ଦେଖାଯାଏ, ଯେମିତି card apple-ରେ (ବୁନୋ ଆପେଲରେ) ଗୋଟିଏ sudden mutation (ହଠାତ୍ ପରିବର୍ତ୍ତନ) ହୋଇ ଅନ୍ୟ varietyର (ରକମର) ଫଳ ଦେଖା ଦେଲା, ଏହା ମଧ୍ୟ କଣ କହିବାକୁ ହେବ ପ୍ରକୃତିର effort-ର (ପ୍ରଚେଷ୍ଟାର) ଫଳରେହିଁ ହୋଇଛି ?

ଶ୍ରୀଶ୍ରୀଠାକୁର – ନିଶ୍ଚୟହିଁ ତାହା। ପ୍ରକୃତି ମଧ୍ୟ ଯେ effort (ଚେଷ୍ଟା) କରି-କରି ଚାଲେ, ତାହା ମଧ୍ୟ ଆମେ ଦେଖିବାକୁ ପାଉ ନା।

ପ୍ରଶ୍ନ – ତାହେଲେ କଣ ସବୁ କାର୍ଯ୍ୟକାରଣ ସମ୍ପର୍କାନ୍ୱିତ ? Chance (ଦୈବଘଟିତ ବା ହଠାତ୍) ବୋଲି କଣ କିଛିହିଁ ନାହିଁ?

ଶ୍ରୀଶ୍ରୀଠାକୁର – ... ଯାହା ଘଟିଛି, ତା ପଛରେ ତାର କାରଣ ଅବଶ୍ୟହିଁ ଅଛି। ତାହା ଆମେ ଜାଣୁ ନା। ତେଣୁ, ଯାହାକୁ chance (ଦୈବଘଟିତ କିମ୍ୱା ହଠାତ୍) ବୋଲି ବ୍ୟାଖ୍ୟା କରୁଛୁ ତାହା ignorance (ଅଜ୍ଞତା) ଛାଡ଼ା କିଛିହିଁ ନୁହେଁ।

ଦୀ.ର. ୪/୧୮.୧୧.୧୯୫୮

## ॥ ପତନ କେତେବେଳେ ଆସି ଯିବ ॥

ଐତିହ୍ୟ, ଆଚାର ଠିକ୍ ନ ରହିଲେ ସର୍ବନାଶ। Fall କରି ଯିବ (ପତନ ଆସିଯିବ)। ଏହି ଯେଉଁ ବିବାହାଦି – ସଦୃଶ ଘରେହିଁ କରିବା ଭଲ। ଆଜିକାଲି ଆମର ଯେଉଁ ଡାଇଭୋର୍ସ ଚାଲୁ ହୋଇଛି, ଏହାର ଫଳ କୌଣସି ପ୍ରକାରେହିଁ ଭଲ ହୋଇ ନାହିଁ। ମୁଁ ଦେଖିଛି, ମୁସଲମାନମାନଙ୍କ ଘରେ ତଲାକ ଦେଉଥାନ୍ତି। ଏହି ତଲାକ ଦିଆ ହୋଇଥିବା ଝିଅଟିର ପରର ପୁରୁଷଠାରୁ ପାଇଥିବା ସନ୍ତାନର shape (ଆକୃତି)-ର ସହିତ ପୂର୍ବର ସ୍ୱାମୀ ଠାରୁ ପାଇଥିବା ସନ୍ତାନର shape-ର (ଆକୃତିର) ଅନେକ ମେଳ ଅଛି। ତାହେଲେ ଦେଖାଯାଉଛି male-ର sperm (ପୁରୁଷର ରେତଃ) ଯେମିତି କାର୍ଯ୍ୟ କରେ, female-ର ova-ମଧ୍ୟ (ନାରୀର ଡିମ୍ୱକୋଷ ମଧ୍ୟ) ସେହି–ଭାବରେ adjusted (ବିନ୍ୟସ୍ତ) ହୋଇ ଉଠେ। କେବଳ ଏହି ଗୋଟିଏ କାରଣ ନୁହେଁ। ଆହୁରି କାରଣ ଅଛି। ମୁଁ ତ ଲେଖାପଢ଼ା ଜାଣି ନାହିଁ। ଆଖିରେ ଯାହା ଦେଖୁଛି ତାହାହିଁ କୁହେ। ଏହିପରି କରି ଚାଲିଲେ ଆମ୍ଭମାନଙ୍କର ସର୍ବନାଶ ହେବ।

ଦୀ.ର. ୪/୨୩.୧୧.୧୯୫୮

## ॥ ଐତିହ୍ୟ ଭାଙ୍ଗିଲେ କଣ ହୁଏ ॥

ପୁରାତନ ପ୍ରତି କୃତିମାନ ଶ୍ରଦ୍ଧା ଯାହା, ତାହା ନୂତନରେ evolued (ବିବର୍ତ୍ତିତ) ହୋଇ ଉଠେ। ମୋର ବାପା, ବଡ଼ ବାପା, ଏହି ପୁରାତନର ପ୍ରତି ଶ୍ରଦ୍ଧା ଯଦି ନଥାଏ ତାହେଲେ ତ ମୁଁ ଆଗେଇ ପାରିବି ନାହିଁ। ମୋର ବଢ଼ିବାର chain (ସଂଯୋଗ) ନଷ୍ଟ ହୋଇ ଯିବ। ...ପୂର୍ବପୁରୁଷର ସାତ୍ୱତ ବ୍ୟତିକ୍ରମ – existential deviation – ହେବାକୁ ଦେବା ଉଚିତ ନୁହେଁ। Tradition (ଐତିହ୍ୟ) ଭାଙ୍ଗିଗଲେ ସାତ୍ୱତ ବ୍ୟତିକ୍ରମ ହୁଏ। Stupid (ନିର୍ବୋଧ) କହୁ ଆମ୍ଭେମାନେ। Stupid-ର ମଧ୍ୟରେ stupon (ବିହ୍ୱଳତା) ଅଛି। ଏହି ବ୍ୟତିକ୍ରମ ଘଟାଇବା ମଧ୍ୟ ଦେଇ ଆମ୍ଭମାନଙ୍କର instinct-ଗୁଡ଼ିକ stupon (ସହଜାତ ସଂସ୍କାରଗୁଡ଼ିକ ହତବୁଦ୍ଧି) ହୋଇ ଯାଏ। ସେତେବେଳେ ଆମ୍ଭେମାନେ ହେଉ stupid (ନିର୍ବୋଧ, ବୁଦ୍ଧିହୀନ)। ...ଆମ୍ଭମାନଙ୍କର vital current (ଜୀବନସ୍ରୋତ), ଯାହାର ନାମ blood (ରକ୍ତ), ତାହା ଯଦି affected (ଦୁଷ୍ଟ) ହୋଇ ଯାଏ ସେତେବେଳେହିଁ ଏହି ଦଶା ହୁଏ। ସେଥିପାଇଁ ସଦୃଶ ଘରେ ବିବାହ ଦେବାର ଗୋଟିଏ tendency (ପ୍ରବଣତା) ଆମ୍ଭମାନଙ୍କର ବରାବରହିଁ ଥିଲା।

ଦୀ.ର. ୪/୨୩.୧୧.୧୯୫୮

## ॥ ପ୍ରତିଲୋମମାନଙ୍କୁ ନେଇ କଣ କରିବାକୁ ହେବ ॥

ପ୍ରଶ୍ନ – ପ୍ରତିଲୋମ ଯେଉଁମାନେ ହେବେ, ସେମାନଙ୍କୁ segregate (ପୃଥକ)କରି ରଖା ଯାଇ ପାରେ। ମଣିଷଙ୍କୁତ ଆଉ ମାରି ଦିଆ ଯାଇ ପାରିବନି!

ଶ୍ରୀଶ୍ରୀଠାକୁର – ମାରି ପକେଇବେ କଣ ପାଇଁ ? ପ୍ରତିଲୋମମାନଙ୍କୁ କୁହାଯାଉଥାଏ ବାହ୍ୟଜାତି। ଲୋକାଳୟର ବାହାରେ ଏମାନଙ୍କର ସ୍ଥାନ ନିର୍ଦ୍ଦିଷ୍ଟ ହେଉଥାଏ। ତାପରେ ସେମାନଙ୍କର experiment (ପରୀକ୍ଷା) କରି-କରି ବିଭିନ୍ନ କାର୍ଯ୍ୟର ମଧ୍ୟ ଦେଇ ଠିକ୍ କରିବାକୁ ହୁଏ। ଦୀ.ର. ୪/୨୩.୧୧.୧୯୫୮

## ॥ ପ୍ରତିଲୋମ-ଜାତକର ଝୋଁକ କେମିତି ହୁଏ ॥

ପ୍ରତିଲୋମ-ଜାତକମାନଙ୍କର tendency (ଝୋଁକ) ହୁଏ ପିତୃକୂଳର ସବୁ divert କରିବାକୁ (ଘୁରାଇ ନେବାକୁ)। ମାତୃକୂଳ ଉପରେ ସେମାନେ କ୍ରୁଦ୍ଧ ଥାଆନ୍ତି।

ସାପମାନଙ୍କ ମଧ୍ୟରେ ତମ୍ପ କିନ୍ତୁ ଏହି ଜାତୀୟ। ଆଉ, ସାପ ଜାତି, ଯାହାର ମୁଣ୍ଡରେ ମଣିଷର ପାଦ ଭଳି ଛାପ ଅଛି, ସୁନେଲୀ କିମ୍ବା ରୂପେଲୀ ରଙ୍ଗର, ଏମାନେ କୋବରା ଭଳି ଏତେ ferocious (ହିଂସ୍ର) ନୁହେଁ। ଏହି ପାଦର ଛାପକୁହିଁ କୁହାଯାଏ କୃଷ୍ଣ ଭଗବାନଙ୍କର କାଳୀୟ ଦମନ କରିବାର ଚିହ୍ନ। କିନ୍ତୁ ତମ୍ପ ସାପ ନା କଣ ପିଛା କରି ଯାଇ କାମୁଡ଼େ। ଭଲଭାବରେ ଦେଖିବେ ଏହି ବିଷୟରେ। Plant (ଗଛପତ୍ର), ପଶୁ ଓ ମଣିଷ ଏହି ତିନି ଜଗତରେ ପ୍ରତିଲୋମର କୁଫଳ ଯଦି ଦେଖାଇ ପାରନ୍ତି ତେବେ ଠିକ୍ ବୁଝାଯାଇ ପାରେ। ଦୀ.ର. ୪/୨୫.୧୧.୧୯୫୮

## ॥ ଜାତିକୁ ଧ୍ୱଂସ କରିବା ପାଇଁ କେତେବେଳେ ଯୁଦ୍ଧର ଦରକାର ହୁଏ ନା॥

ଆମେ ଏହି ଯେଉଁ ପଞ୍ଚବାର୍ଷିକୀ ପରିକଳ୍ପନା କରୁ। ମୁଁ କହେ, ପଞ୍ଚବାର୍ଷିକୀ କରୁ ଅଥବା ଲକ୍ଷେବାର୍ଷିକୀ କରୁଁ, ପ୍ରଥମେ ଦରକାର ମଣିଷ। ମଣିଷ ନ ରହିଲେ ଏଗୁଡ଼ିକ ଉପଭୋଗ କରିବ କିଏ ? Agriculture, industry, marriage ଆଉ education (କୃଷି, ଶିଳ୍ପ, ବିବାହ ଆଉ ଶିକ୍ଷା) ଏହି କେତେଟା pillar-ର (ସ୍ତମ୍ଭର) ଉପରେହିଁ kingdom (ରାଷ୍ଟ୍ର) ଥାଏ। ଏହି pillar (ସ୍ତମ୍ଭ) କେତେଟା ଭାଙ୍ଗି ପକେଇଲେ ଆଉ କିଛି କରିବାର ଉପାୟ ନଥାଏ। ସେତେବେଳେ ସେହି ଜାତିକୁ ଧ୍ୱଂସ କରିବାକୁ ଆଉ war (ଯୁଦ୍ଧ) ଦରକାର ନାହିଁ। ସେଠାକାର ଯେ-କୌଣସି ଲୋକହିଁ betray (ବିଶ୍ୱାସଘାତକତା) କରିପାରେ। ଦୀ.ର. ୪/୨୫.୧୧.୧୯୫୮

## ॥ ନିଜ ବଂଶର ସାତ୍ୱତ ବୈଶିଷ୍ଟ୍ୟଗୁଡ଼ିକ ତ୍ୟାଗ କରିଲେ କଣ ହୁଏ॥

ପ୍ରଶ୍ନ – ନିଜ ବଂଶର ପୂର୍ବପୁରୁଷର ସାତ୍ୱତ ବୈଶିଷ୍ଟ୍ୟଗୁଡ଼ିକ ତ୍ୟାଗ କରିଲେ କଣ ହୁଏ ? ଏହି ତ୍ୟାଗ କରିବାର ବୁଦ୍ଧି ଆସେ କେଉଁଠାରୁ ?

ଶ୍ରୀଶ୍ରୀଠାକୁର – ନିଜ ବଂଶର ପୂର୍ବପୁରୁଷର ସାତ୍ୱତ tradition-ର (ଐତିହ୍ୟର) ବୈଶିଷ୍ଟ୍ୟଗୁଡ଼ିକ କେତେବେଳେ ମଧ୍ୟ ତ୍ୟାଗ କରିବା ଉଚିତ ନୁହେଁ। ତାହା ତ୍ୟାଗ କରିଲେ ମଣିଷ ବ୍ୟତିକ୍ରମଦୁଷ୍ଟ ହୋଇ ପଡ଼େ। ଆପଣତ ଆପଣଙ୍କର ଜେଜେବାପାଙ୍କରହିଁ gene (ଜିନ)। ନା କଣ ? ଆମ୍ଭେ ପ୍ରତ୍ୟେକେ ତାହାହିଁ। ମୁଁ ଯଦି ସେଠାରୁ deviate କରେ (ଭ୍ରଷ୍ଟ ହୁଏ) ତାହେଲେ ବୁଝିବାକୁ ହେବ ସେଠାରେ ପ୍ରକୃତିଗତ ଅର୍ଥାତ୍ ମାତୃଗତ ଦୋଷ ଅଛି। ଏହି ଦୋଷଟି କେମିତି ହୁଏ ? ଏହି ଯେମିତି, କେହି ହୁଏତ ପ୍ରତିଲୋମ

ବିବାହ କରିଛି କିମ୍ବା ଏହି ପ୍ରକାର ଗୋଟିଏ type (ରକମ) କରିଛି। ସେତେବେଳେ ସେହି ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଝଗଡ଼ା ହୁଏ, ଗଣ୍ଡଗୋଳ ହୁଏ। ଦେଖିନାହାନ୍ତି ? ଆଉ ସ୍ୱାମୀ-ସ୍ତ୍ରୀଙ୍କର ଏହିପରି ଅମେଳ ରହିଲେ ସେମାନଙ୍କର ସନ୍ତାନ ମଧ୍ୟ ଦୁଷ୍ଟ ଓ ବିକୃତ ହେବା ପାଇଁ ବାଧ୍ୟ। ଦୀ.ର. ୪/୨୫.୧୧.୧୯୫୮

## ॥ ପୂର୍ବରୁ କରାଯାଇଥିବା ପ୍ରତିଲୋମର ଦୋଷ କିପରି କଟାଇହେବ ॥

ପ୍ରଶ୍ନ – ପୂର୍ବପୁରୁଷର ...ପ୍ରତିଲୋମ କରିବା ଫଳରେ ମୁଁ ଆଜି ହୁଏତ suffer (ଦୁଃଖଭୋଗ) କରୁଛି। ଏହା କଟେଇବାର ଉପାୟ କଣ ?

ଶ୍ରୀଶ୍ରୀଠାକୁର – ମୋର ମନେ ହୁଏ, କଟା ଯାଇ ପାରେ। ...ସ୍ମୃତିରେ ଯେମିତି ବ୍ୟବସ୍ଥା ଅଛି ସେହିଭାବରେ ପ୍ରତିଲୋମଜାତକମାନଙ୍କୁ ବାହ୍ୟଜାତି କରି ଲୋକ-ସମାଜଠୁ ବାହାରେ ରଖିବାକୁ ହୁଏ। ରଖି ନାନା ପ୍ରକାର କାର୍ଯ୍ୟର ଭିତରେ ପକେଇ ସେମାନଙ୍କର experiment (ପରୀକ୍ଷା-ନିରୀକ୍ଷା) କରିବାକୁ ହୁଏ। Genetics-ର (ଜନନ ବିଜ୍ଞାନର) ପଣ୍ଡିତ ଯେଉଁମାନେ ସେମାନେ ଯଦି ଦୟା କରନ୍ତି ତାହେଲେ ହୁଏତ କାହାରି ଦଶ ପୁରୁଷରେ, କାହାରି ବା ଆହୁରି କମ ସମୟରେ ପରିବର୍ତ୍ତନ ଘଟି ପାରେ। ଗଛପତ୍ର ଧରି test (ପରୀକ୍ଷା) କରିଲେ ଅନେକ ଶୀଘ୍ରଶୀଘ୍ର ଫଳ ମିଳି ପାରେ।

ଦୀ.ର. ୪/୨୫.୧୧.୧୯୫୮

## ॥ ଶାସ୍ତ୍ର ପ୍ରତିଲୋମମାନଙ୍କୁ ବାହ୍ୟଜାତି କରିଛି କଣ ପାଇଁ ॥

ପ୍ରତିଲୋମ-(ଜାତକ)-ଗୁଡ଼ିକ ଖୁବ୍ ବେଶୀ infect କରନ୍ତି (ସଂକ୍ରମିତ କରନ୍ତି)। Infect (ସଂକ୍ରମିତ) କରନ୍ତି sexually (ଯୌନଗତଭାବରେ)। ସେଥିପାଇଁ ବାହ୍ୟ ଜାତି କରିବାର କଥା ଅଛି, ଯାହାଦ୍ୱାରା ସେମାନଙ୍କ ଠାରୁ ଅନ୍ୟ ମଧ୍ୟରେ ଆଉ କୌଣସି infection ନ ଆସେ। ଏହି ଯେ... ଏଠାରେ ହରଗୌରା ଫୁଲର ଗଛ ଥିଲା। ତାର ଗୋଟିଏ ଦୁଇଟି ଫୁଲ ହଳଦିଆ ଥିଲା। କିଛିଦିନ ମଧ୍ୟରେହିଁ ସବୁ ଫୁଲଗୁଡ଼ିକର ରଙ୍ଗ ହଳଦିଆ ହୋଇଗଲା। ଛୋଟ animal (ପ୍ରାଣୀ) ଧରି-ଧରି test (ପରୀକ୍ଷା) କରିଲେ ଆପଣ ଟକ୍‌କରି ଗୋଟିଏ root (ଗୋଡ଼ା) ପାଇ ଯାଇ ପାରନ୍ତି। ପୁଣି ପୁରୁଷାନୁକ୍ରମେ ଇଷ୍ଟାନୁଗ ସାତ୍ୱତ ଚଳନର ମଧ୍ୟ-ଦେଇ ଯେଉଁ ସବୁ ପ୍ରତିଲୋମଜାତକମାନଙ୍କର ପରିବର୍ତ୍ତନ ଆସିବାକୁ ଲାଗିଲା, ଆମ୍ଭେ ଯେଉଁମାନେ uninfected (ଅଦୁଷ୍ଟ/ଅସଂକ୍ରମିତ),

ସେମାନେ ପୁଣି କେତେ ପୁରୁଷ ପରେ ସେମାନଙ୍କୁ ବିବାହ କରିପାରୁ, ତାହା ମଧ୍ୟ ଏହା ସହିତ determine (ନିର୍ଦ୍ଧାରଣ) କରା ଯାଏ।

-ଦୀ.ର. ୪/୨୫.୧୧.୧୯୫୮

## ॥ ପ୍ରତିଲୋମ ବିବାହ ପାଇଁ ଉତ୍ସାହ ଦାନର ପରିଣାମ କଣ ହେବ ॥

ଏଥିରେ କାହାରି ଲାଭ ନାହିଁ। Lower class-ର ମଧ୍ୟ (ନିମ୍ନଶ୍ରେଣୀର ମଧ୍ୟ) ଲାଭ ନାହିଁ, upper class-ର ମଧ୍ୟ (ଉଚ୍ଚଶ୍ରେଣୀର ମଧ୍ୟ) ଲାଭ ନାହିଁ। ଏହା ଫଳରେ ଯେଉଁ-ସବୁ ସନ୍ତାନ ହେବ, ପରିଣାମରେ ଚାଟୁକାର ହେବା ଛଡ଼ା ସେମାନଙ୍କର ଉପାୟ ରହିବ ନାହିଁ। ଧିରେ ଧିରେ ସମସ୍ତେହିଁ ଶଙ୍କର ହୋଇ ପଡ଼ିବେ। ...ତୁମର ଝିଅ ହୁଏତ ଜଣେ କାୟସ୍ଥର ପୁଅକୁ ବିବାହ କରିଲା। ପୁଣି ତାର ଝିଅ ବିବାହ କରିବ ଜଣେ ସାହୁକୁ। ଏହିପରି କରୁ-କରୁ ସବୁ ଭାଙ୍ଗି ଯିବ। ଦୀ.ର. ୪/୯.୧୨.୧୯୫୮

## ॥ ନାରୀ-ପୁରୁଷର ସମାନ ଅଧିକାରର ଦାବୀ କେତେଟା ଯଥାର୍ଥ ॥

ସ-ମାନ ହୋଇ ପାରେ! କିନ୍ତୁ ଏକ ପ୍ରକାରର ଅନ୍ୟ ଏକ ହୋଇ ପାରେ ନାହିଁ। ମିଶ୍ରୀ ଏକସେର, ଚିନି ମଧ୍ୟ ଏକସେର ହୋଇ ପାରେ, କିନ୍ତୁ ମିଶ୍ରୀ ମିଶ୍ରୀ, ଚିନି ଚିନି। ପୁଣି, ମିଶ୍ରୀ ଏକସେର, କାଠ ଏକ ସେର ହୋଇ ପାରେ। 'ପଜିଟିଭ୍' ଏକସେର, 'ନେଗେଟିଭ' ଏକ ସେର ହୋଇ ପାରେ। ଗୋଟିଏ ଝିଅ ଆଉ ଗୋଟିଏ ପୁରୁଷ ସମାନ ଏକ ସେର ହୋଇ ପାରନ୍ତି କିନ୍ତୁ ସପ୍ରକୃତି ହେବେ ନାହିଁ। ସେଇଥିପାଇଁ, ନାରୀ ଯଦି ସ୍ୱାମୀର ଛନ୍ଦାନୁବର୍ତ୍ତିନୀ ନ ହୁଏ ତାହେଲେ ଆଉ ସ୍ୱ-ମାନ-ରେ ଛିଡ଼ାହୋଇ ପାରିବ ନାହିଁ। ପୁଣି, ଏହି ମାନହିଁ କିନ୍ତୁ ତାର ବାସ୍ତବରେ ମାନ ଅର୍ଥାତ୍ ଓଜନ କିମ୍ବା ବୈଶିଷ୍ଟ୍ୟ। ଜଣେ ପୁରୁଷ ଯେତେବେଳେ ନାରୀ-ସହବାସ କରେ ବା ଜଣେ ନାରୀ ଯେତେବେଳେ ପୁରୁଷ-ସହବାସ କରେ ସେତେବେଳେ ସେ ତାର ମାନରେ ଠିକ୍ ରହିହିଁ ତାହା କରେ। ପୁଣି ଦେଖନ୍ତୁ, ଏହି ଯେ positive ଓ negative (ସ୍ଥାସ୍ନୁ ଓ ଚରିଷ୍ଣୁ) ଏହି ବିପରୀତ-ଧର୍ମୀତ୍ୱ ଯଦି ନ ଥାଏ ତାହେଲେ ଆଉ ଉପଭୋଗ ବୋଲି କିଛି ରହିବ ନାହିଁ। ଗୋଟିଏ ଝିଅର ପେଟରେ ପୁରୁଷ ମଧ୍ୟ ହୁଏ, ଝିଅ ମଧ୍ୟ ହୁଏ। ପୁରୁଷ ହେବାପାଇଁ ମଧ୍ୟ ତାକୁ ସହବାସ କରିବାକୁ ପଡ଼ିଛି, ଝିଅ ହେବା ପାଇଁ ମଧ୍ୟ ତାକୁ ସହବାସ କରିବାକୁ

ପଡ଼ିଛି ତାର ଏହି ସମବିପରୀତଧର୍ମୀ ସତ୍ତାର ସହିତ। ତାହେଲେ ଏକଦମ୍ ଏକ ପ୍ରକାରଟି କିପରି ହେବା ସମ୍ଭବ? ଦୀ.ର. ୪/୧୩.୧୨.୧୯୫୮

## ॥ ରକ୍ତର ବୈଶିଷ୍ଟ୍ୟ ବିଷୟଟି କଣ ॥

ପ୍ରଶ୍ନ – କଥାରେ କହନ୍ତି 'ରକ୍ତର ବୈଶିଷ୍ଟ୍ୟ'। କିନ୍ତୁ ବିଷୟଟି କଣ?

ଶ୍ରୀଶ୍ରୀଠାକୁର – ରକ୍ତମାନେ ଯାହା ଦ୍ୱାରା ତୁମେ ରଞ୍ଜିତ ହୋଇଛ, bloomed ହୋଇଛ (ଫୁଟି ଉଠିଛ)। ଆଉ ଏହି ରଞ୍ଜିତ ହୁଏ ଭାବବୃତ୍ତି* ଦ୍ୱାରା, instinct (ସଂସ୍କାର) ଦ୍ୱାରା। ରକ୍ତରେ ସଂସ୍କୃତିଅନୁସାରେ ଭାବବୃତ୍ତି embodied (ମୂର୍ତ୍ତ) ହୁଏ। ଅଥବା କୁହାଯାଏ, କୃଷ୍ଟିରଞ୍ଜିତ ଭାବବୃତ୍ତି ଯାହା heredity-ର (ବଂଶାନୁକ୍ରମିକତାର) ଭିତର-ଦେଇ ସଞ୍ଚାରିତ ହୁଏ। ସଂସ୍କୃତି ମାନେ ଜନ୍ମ ଠାରୁ ଯେଉଁ ବୈଶିଷ୍ଟ୍ୟଗୁଡ଼ିକ ମିଳେ। ପୁଣି, ଏହି ସଂସ୍କାର ଅନୁସାରେହିଁ ତ group (ଗୁଚ୍ଛ) ହୁଏ – ତାହା ଯେମିତି ମଣିଷ-ଜଗତରେ, ସେହିପରି ପଶୁଜଗତରେ, ସେହିପରି ଉଦ୍ଭିଦ ଜଗତରେ।

ପ୍ରଶ୍ନ – ତାହେଲେ ରକ୍ତମାନେହିଁ ତ ସଂସ୍କାର।

ଶ୍ରୀଶ୍ରୀଠାକୁର – ରକ୍ତ ମାନେହିଁ ତାହା। କିନ୍ତୁ ସାଧାରଣରେ ବୁଝନ୍ତି ରକ୍ତ ମାନେହିଁ blood (ରକ୍ତ)। ଅସଲରେ ରକ୍ତ ସୃଷ୍ଟି କରେ ଏହି ଭାବବୃତ୍ତି। ତେବେ, ଯେମିତି ଦୁଇ ଭାଇ ଅଛନ୍ତି। ଏମାନଙ୍କର ରକ୍ତ ଏକ। କିନ୍ତୁ ରକ୍ତ ଏକ ହେଲେ ମଧ୍ୟ gene-ରେ (ଜିନ୍‌ରେ) ତଫାତ୍ ହୋଇ ଯାଏ। Gene-ଟା (ଜିନ୍‌ଟା) ହେଲା microscopic embodiment of seed (ଅତିକ୍ଷୁଦ୍ର ବୀଜ-ଶରୀର)। ତାର ଆଖି-କାନ-ନାକ-ମୁଖ ସବୁହିଁ ଅଛି। ତୁମେ ଯଦି ସଦୃଶ ବଂଶରେ ସ୍ୱବର୍ଣ୍ଣରେ ଭିନ୍ନ ଗୋତ୍ରରେ ବିବାହ କର, ତାହେଲେ ତୁମର gene-ର (ଜିନ୍‌ର) ଅନ୍ତର୍ନିହିତ ଗୁଣବୈଶିଷ୍ଟ୍ୟଗୁଡ଼ିକ ଅନେକ ପରିମାଣରେ maintained (ରକ୍ଷିତ) ହୁଏ। ପୁଣି maintained (ରକ୍ଷିତ) ତ ହୁଏ ଅବଶ୍ୟହିଁ, ବଢ଼ିମଧ୍ୟ ଯାଏ। Physical exertion-ର (ଶାରୀରିକ ପରିଶ୍ରମର) ଶକ୍ତି ବଢ଼ି ଯାଏ, intelligence (ବୋଧି) ବଢ଼ି ଯାଏ। କାହାରି ହୁଏତ ବା equilibrium (ସାମ୍ୟ ଅବସ୍ଥା) ହୁଏ। sperm (ଶୁକ୍ରାଣୁ)-ର ମଧ୍ୟରେ ଥାଏ Gene (ଜିନ୍)। ଆଉ, sperm (ଶୁକ୍ରାଣୁ) କେତେବେଳେ ମଧ୍ୟ ova (ଡିମ୍ବକୋଷ) ଛଡ଼ା fertilized (ଅଙ୍କୁରିତ) ହୋଇ ପାରେ ନାହିଁ। କେବଳ ପୁରୁଷ ହେଲେହିଁ ଯେ ସବୁ ହୋଇ ଗଲା ତା ନୁହେଁ। ପୁଣି କେବଳ ଝିଅ ହେଲେହିଁ ଯେ ସବୁ ହୋଇ ଗଲା ତା ମଧ୍ୟ ନୁହେଁ। Diarchy (ଦ୍ୱୈତଶାସନ) ଦରକାରହିଁ। ତାହା ଟେଷ୍ଟଟିଉବ୍‌ବେବୀ କରିବା ପାଇଁ ମଧ୍ୟ ଦରକାର, illegitimate

child-ର (ଅବୈଧ ସନ୍ତାନର) କ୍ଷେତ୍ରରେ ମଧ୍ୟ ଦରକାର। ଭଗବାନଙ୍କର ରାଜତ୍ୱଟାହିଁ ଗୋଟିଏ Diarchy (ଦ୍ୱୈତଶାସନ)। 'ପଜିଟିଭ୍' ତାର ଯଦି କାହାରି ଦେହରେ ଲଗେଇ ରଖ, କିଛିବି ହେବ ନାହିଁ। ପୁଣି କେବଳ 'ନେଗେଟିଭ୍' ତାର ଯଦି ଲଗେଇ ରଖ, ସେଥିରେ ମଧ୍ୟ କିଛି ହେବ ନାହିଁ। କିନ୍ତୁ 'ପଜିଟିଭ୍' ଓ 'ନେଗେଟିଭ୍' ଏକ ସଙ୍ଗେ ଯଦି ଧର ଏକା ଥରେ କାମ ସରିବ। କମ୍‌ପକ୍ଷରେ 'ଶକ୍' ତ ଲାଗିବହିଁ।

ଦୀ.ର. ୪/୧୪.୧୨.୧୯୫୮

* ଭାବୁବତ୍ତି = ଭାବ ମାନେ ହେବା, ବୃତ୍ତି ମାନେ ରହିବା। ଭାବବୃତ୍ତି ମାନେ ହେବାରେ ରହିବା, ହୋଇ ହୋଇ ଚାଲିବା।

## ॥ ସଦୃଶ ଘରେ ଯୋଗ୍ୟ ବିବାହର ପ୍ରୟୋଜନ କଣ ପାଇଁ॥

ଏହି ଯେଉଁ କୋକିଶିଆଳ ଆଉ ଏମିତି ଶିଆଳ, ଦେଖିଛନ୍ତି ତ? ଏମାନଙ୍କର ପରସ୍ପରର ସମାଜ ଅଲଗା। କୋକିଶିଆଳ ଗର୍ତ୍ତ କରି ବସା କରି ରହନ୍ତି। ସେମାନଙ୍କ ସହିତ ଏହି ଶିଆଳଙ୍କୁ କେତେବେଳେବି breed କରିବାର (ସନ୍ତାନ ଉତ୍ପାଦନ କରିବାର) ଦେଖିଛନ୍ତି? ତାପରେ ଦେଖ, ଏକ ସ୍ଥାନରେ ହୁଏତ ଅନେକ କେତେ ପ୍ରକାର ପକ୍ଷୀ ବସି ଅଛନ୍ତି – କଳା, ଧଳା, ହଳଦିଆ, ଗୋଲାପୀ, ମୁଣ୍ଡରେ ଟିକା ଥିବା, ପୁଣି ଟିକା ନାହିଁ ଏମିତି ବି ଅଛନ୍ତି। ନଦୀର ଧାରରେ ସମସ୍ତେ ଚରୁଛନ୍ତି। କେହି ଜଳ ଧାରରେ ବସି ଅଛି ଉଦ୍ଦେଶ୍ୟ – ଗୋଟିଏ ମାଛ ଆସିଲେହିଁ ଖପ୍ କରି ଧରିବ। କେହି ଘାସ ମଧ୍ୟରେ ପୋକ ଖୋଜି ବୁଲୁଛି, କେହିବା ଗରୁ ଦେହରେ ବସି ଟେଙ୍କି ଖୋଜି ଖାଉଛି। ତାପରେ କୌଣସି କାରଣରୁ ସମସ୍ତେ ଉଡ଼ିଲେ। ଦେଖିବେ ସବୁ ଅଲଗା ଅଲଗା ହୋଇ ଯାଇଛନ୍ତି। ଯିଏ ଯାହାର ଦଳରେ ମିଶି ଉଡୁଛନ୍ତି। କାରଣ, ପ୍ରତ୍ୟେକଙ୍କ ମଧ୍ୟରେ ସଂସ୍କାର କାର୍ଯ୍ୟ କରୁଛି। ତୁମ୍ଭମାନଙ୍କ ମଧ୍ୟରେବି ସଂସ୍କାର ଅଛି। ତା ଭିତର ଦେଇହିଁ ତୁମ୍ଭେମାନେ grow କର (ବଢ଼ି ଉଠ)। ଏବେ, ଏହି footing-ଟା ଅର୍ଥାତ୍ ଏହି ବେଦୀଟାହିଁ ଯଦି ନଷ୍ଟ କରି ପକାଅ ତାହେଲେ ତୁମେ ଯାହା-ତାହା ହୋଇଯିବ। ଏହି ବେଦୀ ଠିକ୍ ରଖିବା ପାଇଁ ଦରକାର ସଦୃଶ ଘରେ ଯୋଗ୍ୟ ବିବାହ। ପୂର୍ବରୁ ନିୟମ ଥିଲା, ତୁମେ ସବର୍ଣ୍ଣ ବିବାହ ନ କରି ଅନୁଲୋମ ଅସବର୍ଣ୍ଣ ବିବାହ କରି ପାରିବ ନାହିଁ। ସେଠାରେ ମଧ୍ୟ ପୁଣି culture, tradition (କୃଷ୍ଟି, ଐତିହ୍ୟ) ସବୁ ଠିକ୍ ରଖି, ବିବାହର ଅନ୍ୟାନ୍ୟ ନୀତି

ସହିତ ମେଳ ହେଲେ ତେବେହିଁ କରି ପାର। ଅନୁଲୋମ ହେଲେହିଁ ଯେ ଫଟ୍‌କରି ବିବାହ କରି ବସିଲ ତାହା ହେବ ନାହିଁ। ଏହିସବୁ ବ୍ୟବସ୍ଥାର ମଧ୍ୟ ଦେଇ ସାତ୍ୱତ ଐତିହ୍ୟର ବେଦୀଟା ଠିକ୍ ରହୁଥାଏ। କୌଣସି ମଣିଷ ପଡ଼ି ଯାଉ ନଥାଏ। କିନ୍ତୁ ଏହି stay-ଟା (ସ୍ଥିତିଟା) ତୁମର ଯେତେବେଳେହିଁ ନଷ୍ଟ ହୋଇଯିବ, ସେତେବେଳେ ତୁମକୁ ଅନ୍ୟ stay (ସ୍ଥିତି) ନେବାର ଚେଷ୍ଟା କରିବାକୁ ହେବ। ଆଉ, ନିଜର stay (ସ୍ଥିତି) ହରାଇବା ମାନେହିଁ ଅପରର ଭକ୍ଷ୍ୟ ହୋଇ ଉଠିବା। ତୁମ ମଧ୍ୟରେ ସେତେବେଳେ servitude mentality (ଦାସ ମନୋଭାବ) ଆସି ଯିବ। ଦୀ.ର. ୪/୧୭.୧୨.୧୯୫୮

## ।। ସତ୍ କୁଳ ମାନେ କଣ।।

ଶ୍ରୀଶ୍ରୀଠାକୁର – ସତ୍‌କୁଳ ମାନେ ତାହା, ଯେଉଁ-ବଂଶରେ ସେମାନଙ୍କର କୂଳଗତ ସଂସ୍କାରଧାରା ବଜାୟ ରଖିବାର ଚେଷ୍ଟା ଅଛି। ଆଉ, ତୁମେମାନେ ତୁମର ପୂର୍ବପୁରୁଷଙ୍କର ସଂସ୍କୃତିଧାରାର ଗୋଟିଏ ଉଦ୍ଭବ। ସେହି ପୂର୍ବପୁରୁଷଙ୍କର ସଂସ୍କୃତି ସେହିପରି ସଦୃଶ କୂଳରେ ବିବାହିତ ହେବା ଫଳରେ ଆହୁରି ବଢ଼ି ଯିବ। ଆଉ ଯଦି ଓଲଟା ପ୍ରକାରରେ କର ଅର୍ଥାତ୍ higher culture-ର ova-ର (ଉନ୍ନତ କୃଷ୍ଟିର ଡ଼ିମ୍ବକୋଷର) ମଧ୍ୟରେ ଯଦି lower culture-ର sperm (ନିକୃଷ୍ଟ କୃଷ୍ଟିର ଶୁକ୍ରକୀଟ) ଯାଏ, ତାହେଲେ ସେହିଟା ଭାଙ୍ଗି ଯିବ। ସେଇଟି ହେଲା ପ୍ରତିଲୋମ। ପ୍ରତିଲୋମର ସନ୍ତାନ ତୁମ କୃଷ୍ଟିର against-ରେ (ବିରୁଦ୍ଧରେ) ଯିବ। ଏହା ଠାରୁ ବରଂ ଅନୁଲୋମ supported (ସମର୍ଥିତ)। ସେହିଠାରେ ଅପକୃଷ୍ଟ ମା ପାଏ cultured seed (ଉନ୍ନତ ଧରଣର ବୀଜ)। ସେହି seed-ର (ବୀଜର) ଚାଲିଚଳନ, ଆଚାର-ବ୍ୟବହାର ସେତେବେଳେ ସେଠାକାର cell-division (କୋଷବିଭାଜନ) ନେଇ ବଢ଼ି ଚାଲେ। ଈଶ୍ୱରଙ୍କର government (ଶାସନତନ୍ତ୍ର) ଗୋଟିଏ diarchy (ଦ୍ୱୈତଶାସନ)। ଜଣେ ମା, ଆଉ ଜଣେ ବାବା। 'କାକୋ ନିନ୍ଦୋ, କାକୋ ବନ୍ଦୋ, ଦୋନୋ ପଲ୍ଲୁ ଭାରୀ।' ମଣିଷ ମଧ୍ୟରେ 'ପଜିଟିଭ୍' ଓ 'ନେଗେଟିଭ୍' ଦୁଇଟିହିଁ ଅଛି। ତା ନହେଲେ ଚେତନାହିଁ ରହେ ନାହିଁ, formation-ହିଁ (ସଂଗଠନହିଁ) ହୁଏ ନାହିଁ।

ପ୍ରଶ୍ନ – Zygote-ର (ଜୀବକୋଷର) ଭିତରେ କିପରି ଭାବରେ 'ପଜିଟିଭ୍-ନେଗେଟିଭ୍' ଦୁଇଟିହିଁ ଥାଏ ?

ଶ୍ରୀଶ୍ରୀଠାକୁର – ଦୁଇଟି ନ ରହିଲେ ତ active-ହିଁ (କ୍ରିୟାଶୀଳହିଁ) ହୁଏ ନାହିଁ। ଗୋଟିଏ cell-ର (କୋଷରେହିଁ) ଗୋଟିଏ ଦିଗରେ ଥାଏ ପଜିଟିଭ୍ ଆଉ ଏକ ଦିଗରେ

ଥାଏ 'ନେଗେଟିଭ୍'। ଗୋଟିଏ ଅନ୍ୟ ଗୋଟିଏକୁ ଟାଣେ। ପାଖକୁ ଆସେ, ପୁଣି ଦୂରକୁ ଅପସରି ଯାଏ। ପୁଣି ପାଖକୁ ଆସେ। ଏହା କରୁ କରୁ cell-division (କୋଷ ବିଭାଜନ) ହୋଇ ଚାଲେ। ନହେଲେ ତ ଗଠନହିଁ ହୋଇପାରେ ନାହିଁ।

ଦୀ.ର. ୪/୨୩.୧୨.୧୯୫୮

## ॥ ସଦ୍‌ଗୋପ କିପରି ହେଲେ ॥

ମୋର ମନେ ହୁଏ, କ୍ଷତ୍ରିୟ ଆଉ ଗୋପ ମିଳନରେ ସଦ୍‌ଗୋପ ହୋଇଛି। ରୋହିଣୀ ବୋଧ ହୁଏ ଗୋପକନ୍ୟା। ରୋହିଣୀର ସହିତ ବାସୁଦେବର ବିବାହ ହେଲା। ତାଙ୍କର ପୁଅ ବଳରାମ ହେଲେ ସଦ୍‌ଗୋପ। ମୋର ଏହି ପରି ମନେହୁଏ।

ଦୀ.ର. ୪/୨.୧.୧୯୫୯

## ॥ ପାତ୍ର କେମିତି ହେଲେ ଭଲ ଲାଗେ ॥

ଜଣେ ଦାଦା କହିଲେ – ଜଣେ ଦାଦା ତାଙ୍କର ଝିଅର ବିବାହର ଚେଷ୍ଟା କରି ଦୁଇଟି ସମ୍ବନ୍ଧ ପାଇଛନ୍ତି। ତା ମଧ୍ୟରେ ଜଣେ ଏମ୍.ଏ. ପାଶ, ଖୁବ୍ ବଡ଼ ଚାକିରୀ କରେ। ଅନ୍ୟ ଜଣକ ମ୍ୟାଟ୍ରିକ ପାଶ, କିନ୍ତୁ ନିଜ ଚେଷ୍ଟାରେ ବଡ଼ ହୋଇ ଉଠିଛି। କାହା ସହିତ ବିବାହ ଦେବେ ଜାଣିବାକୁ ଚାହିଁଛନ୍ତି।

ଶ୍ରୀଶ୍ରୀଠାକୁର – ଏମ୍.ଏ. ପାଶ ଚାକର ଠାରୁ ମ୍ୟାଟ୍ରିକ ପାଶ ଅଥଚ ନିଜ ଚେଷ୍ଟାରେ ନିଜ ଗୋଡ଼ରେ ଛିଡ଼ା ହୋଇଥିବା ମଣିଷ ମୋତେ ବେଶୀ ଭଲ ଲାଗେ।

ଦୀ.ର. ୪/୨୫.୧.୧୯୫୯

## ॥ ଅନୁଲୋମ ବିବାହରେ କେଉଁଥିରେ ମେଳ ଥିବା ଦରକାର ॥

ଜଣେ ବ୍ରାହ୍ମଣର ଝିଅକୁ ଯଦି ଜଣେ କ୍ଷତ୍ରିୟ କିମ୍ବା ବୈଶ୍ୟର ପୁଅ ବିବାହ କରେ, ତାହେଲେ ତାର ଏହି ସଂସ୍କାର ନଷ୍ଟ ହୋଇ ଯାଏ। ଏହା ପ୍ରତିଲୋମ। ଅନୁଲୋମରେ ସଂସ୍କାର ନଷ୍ଟ ହୁଏ ନାହିଁ। କିନ୍ତୁ ଅନୁଲୋମ 'ଯାହା-ତାହା' କରି କରିଲେ ପରେ ଭଲ ହୁଏ ନାହିଁ। ଅନୁଲୋମ କରିବାକୁ ହେଲେ ନିଜର କୃଷ୍ଟି ଓ tradition-ର (ଐତିହ୍ୟର) ସହିତ ତାର କୃଷ୍ଟି ଓ tradition-ର (ଐତିହ୍ୟର) ମେଳ ଥିବା ଦରକାର। ପୂର୍ବରୁ ଆମ୍ଭମାନଙ୍କର ଘଟକ ପ୍ରଥା ଥିଲା। ସେମାନେ ଜାଣିଥିଲେ, କେଉଁ ପୁଅ ସହିତ କେଉଁ

ଝିଅର ବିବାହ ହେଲେ କେମିତି ଜୁଆପିଲା ହେବେ। ଘଟକମାନେ ଏକଦମ୍ ନିଶ୍ଚିତ ଭାବରେ କହିଦେଇ ପାରୁଥାନ୍ତି। ଏହି ଘଟକପ୍ରଥା ବ୍ରାହ୍ମ-ସମାଜର ସମୟ ଠାରୁ ନଷ୍ଟ ହୋଇ ଯାଉଛି।

ଦୀ.ର. ୪/୨୭.୧.୧୯୫୯

## ॥ ସ୍ୱୟଂବର ମାନେ କଣ ॥

ସ୍ୱୟଂବର ମାନେ କିନ୍ତୁ ଯାହାକୁ ତାହାକୁ ବିବାହ କରିବା ନୁହେଁ। ନିଜେ ଠିକ୍‌ହିଁ select (ନିର୍ବାଚନ) କରି ନେବେ। କିନ୍ତୁ କେବେବେଳେ ମଧ୍ୟ ନୀଚକୁ select (ନିର୍ବାଚନ) କରିବେ ନାହିଁ। ଉଚ୍ଚକୁହିଁ ତ ବରଣ କରନ୍ତି। ନା କଣ ?

ଦୀ.ର. ୪/୨୭.୧.୧୯୫୯

## ॥ ବଂଶପାତ ମାନେ କଣ ॥

ପ୍ରଶ୍ନ – ମୁସଲମାନମାନଙ୍କ ମଧ୍ୟରେ ବିବାହରେ କେତେ ଗୋଳମାଳ। ତଥାପି ସେମାନେ ଏବେ ପର୍ଯ୍ୟନ୍ତ ମଧ୍ୟ ବଞ୍ଚି ଅଛନ୍ତି, ଏବଂ ସେମାନଙ୍କ ମଧ୍ୟରେ ଦୁଇ ଚାରି ଜଣ ମନିଷୀ ଯେ ଆସିନାହାନ୍ତି ତା ମଧ୍ୟ ନୁହେଁ।

ଶ୍ରୀଶ୍ରୀଠାକୁର – କିନ୍ତୁ ତାହା କମ୍, ଢେର କମ୍। ସେ ଯାହାହିଁ ହେଉ, ନିଶ୍ଚିହ୍ନ ହୋଇ ଯିବା ଭଳି କିଛି କରି ନାହାନ୍ତି।

ପ୍ରଶ୍ନ – କିନ୍ତୁ ଆପଣ ତ କୁହନ୍ତି, ପ୍ରତିଲୋମରେ କୁପୋକାତ, ବିଶ୍ୱାସଘାତକ ବଂଶପାତ।

ଶ୍ରୀଶ୍ରୀଠାକୁର – ବଂଶପାତର ଦୁଇଟା ମାନେ ଅଛି। ଗୋଟିଏ extinct (ଧ୍ୱଂସ) ହୋଇଯିବା, ଆଉ ଗୋଟିଏ degenerate (ଅଧୋଗତିଲାଭ) କରିବା। 'ପାତ' ମାନେହିଁ ହେଲା ପତନ। ଦୀ.ର. ୪/୨୯.୧.୧୯୫୯

## ॥ ସଂସ୍କାର କିପରି ଭାବରେ ସନ୍ତାନଠାରେ ସଞ୍ଚାରିତ ହୁଏ ॥

ଶ୍ରୀଶ୍ରୀଠାକୁର – ପୂର୍ବକାଳରେ ଆମମାନଙ୍କର ବୁଦ୍ଧି ଥିଲା, ଚାରିଦିଗରୁ ଆମମାନଙ୍କର ପରିପୋଷଣୀ ଯାହା ସବୁ କିଛି ନେଇ-ନେଇ ନିଜେ enriched (ସମୃଦ୍ଧ) ହେବା। ଏହା ସହିତ ଥିଲା ନିଜ ନିଜର tradition-ରେ (ଐତିହ୍ୟରେ) fanatic (ଗୋଁଡ଼ା) ରହିବାର ବୁଦ୍ଧି। କିନ୍ତୁ servitude mentality (ଦାସ-ମନୋଭାବ) ଯେତେ ବଢ଼ିବାକୁ

ଲାଗିଲା ସେତେ ଆମ୍ଭେମାନେ degenerate (ଅଧୋଗତିଲାଭ) କରିବାକୁ ଲାଗିଲୁ। ଆମେ ପ୍ରତ୍ୟେକେ ସଂସ୍କାରର ଭିତର-ଦେଇ ଜନ୍ମୁ। ଏହି ସଂସ୍କାର-ଅନୁପାତିକ କର୍ମ କରି ଚାଲିଲେ brain (ମସ୍ତିଷ୍କ) ତା ଦ୍ୱାରା ଅନୁରଞ୍ଜିତ ହୁଏ। ବୟସ ଯେତେ ବଢ଼େ ସେତେ dots (ଛାପ) ପଡ଼ି ଚାଲେ brain-ରେ (ମସ୍ତିଷ୍କରେ)। ଆମର ଭାବବୃତ୍ତି ମଧ୍ୟ ସେତେବେଳେ ସେହି ପ୍ରକାରର ହୁଏ। ସଂସ୍କାରର ଯେଉଁ ଗୁଣଗୁଡ଼ିକ ନେଇ ଆମେ ଜନ୍ମୁ ତାହା ଯଦି work out ନ କରୁଁ (କାର୍ଯ୍ୟରେ ନ ଲଗାଉ) ତାହେଲେ ସେସବୁ ନଷ୍ଟ ହୋଇଯାଏ। ପୁଣି କୃଷ୍ଟି ମାନେ କରିବା। କୃଷ୍ଟିକୁ ପାଳନ କରି ଚାଲିବାର ଭିତର-ଦେଇ ଆସେ ସଂସ୍କାର। ସେହି ସଂସ୍କାର ଆମ ଭିତର-ଦେଇ ପାଏ ଆମର offspring (ସନ୍ତାନ), next generation (ପରବର୍ତ୍ତୀ ପୁରୁଷ)।

ପ୍ରଶ୍ନ – ତାହେଲେ ସଂସ୍କାରଟା ଏକେବାରେ genetically steady (ଜନ୍ମଗତ ଭାବରେ ଦୃଢ଼ବଦ୍ଧ) ହୋଇଯାଏ।

ଶ୍ରୀଶ୍ରୀଠାକୁର – ତାହାହିଁ ହୁଏ। ଏହାର ଭିତର-ଦେଇ ପୁଣି mutation-ର (ବିଶେଷ ପରିବର୍ତ୍ତନର) ଉଦ୍ଭବ ହୁଏ। ଗୋଟିଏ change (ରୂପାନ୍ତର) ହୁଏ। ...ପୁଣି evil mutation ମଧ୍ୟ (ଖରାପର ଦିଗକୁ ମଧ୍ୟ ପରିବର୍ତ୍ତନ) ହୁଏ। ଖୁବ୍ demoralized (ଚାରିତ୍ରିକଶକ୍ତିହୀନ) ହୋଇଯାଏ। ତାହା ତୁମେ ହୁଏତ ଭାବିହିଁ ପାର ନାହିଁ ଏପରିଭାବେ।

ପ୍ରଶ୍ନ – କିନ୍ତୁ ଠାକୁର! ଭଲ mutation-ର (ବିଶେଷ ପରିବର୍ତ୍ତନର) prime factor (ପ୍ରଧାନ ଉପାଦାନ) ତ ଶ୍ରେୟଙ୍କ ଉପରେ ଟାଣ।

ଶ୍ରୀଶ୍ରୀଠାକୁର – ମୋର ଏହି ରକମ ଧାରଣା। Mutation-ଟା accident (ବିଶେଷ ପରିବର୍ତ୍ତନଟା ଯେ ଦୈବ ଘଟଣା), ମୋର ତାହା ମନେ ହୁଏ ନା। Accident (ଦୈବଘଟଣା) କିଛିହିଁ ନୁହେଁ। ମୋର ଆହୁରି ମନେ ହୁଏ, ଏହି ଯେ race-ଗୁଡ଼ିକ (ଜାତିଗୁଡ଼ିକ), Dravidian କିମ୍ବା Mangolian (ଦ୍ରାବିଡ଼ କିମ୍ବା ମଙ୍ଗୋଲୀୟ), ଏମାନଙ୍କର କ୍ରୋମୋସମ୍ ହୁଏତ ସମାନହିଁ ଅଛି। ତା ମଧ୍ୟରେ କଣ ଗୋଟିଏ difference (ପାର୍ଥକ୍ୟ) ଅଛି। ତାହା ନ ହେଲେ typical change (ଦେଖିବା ଭଳିଆ ପରିବର୍ତ୍ତନ) ହୁଏ କଣ ପାଇଁ? ସେମାନଙ୍କର ସେହି commonness-ର (ଏକଧରଣତ୍ୱର) ମଧ୍ୟରେବି ଗୋଟିଏ variety (ବୈଚିତ୍ର୍ୟ) ଅଛି। Intelligence- ମଧ୍ୟ (ବୁଦ୍ଧିବୃତ୍ତି ମଧ୍ୟ) ଏମାନଙ୍କ ମଧ୍ୟରେ ଖୁବ୍ ଦେଖା ଯାଏ। ପୁଣି ଦେଖ, Negro mother (ନିଗ୍ରୋ-ମା), କିନ୍ତୁ father Aryan (ବାପା ଆର୍ଯ୍ୟସନ୍ତାନ), ଏହି ପ୍ରକାରର ପୁଅ ନିଗ୍ରୋମାନଙ୍କ ମଧ୍ୟରେ

ରହି ମଧ୍ୟ ହୁଏତ ଟକ୍‌କରି ଗୋଟିଏ ବଡ଼ ଲୋକ ହୋଇଗଲା। ଯାଇ ଖୋଜିକି ଦେଖ, ତା ପୂର୍ବରୁ ଏହି ବଂଶରେ ହୁଏତ ଏହିପରି ଆଉ ହୋଇ ନାହିଁ। Higher blood-ର stimulus (ଉଚ୍ଚ ରକ୍ତ ଧାରାର ଉଦ୍ଦୀପନା) ପାଇ ଏହି ରକମ ହୋଇଗଲା। ପୂର୍ବେ ଆମ୍ଭମାନଙ୍କ ଦେଶରେ Indo-Aryan (ଭାରତୀୟ-ଆର୍ଯ୍ୟ ବଂଶସମ୍ଭୂତ) ଯେଉଁମାନେ, ସେମାନେ ଶୁଦ୍ରମାନଙ୍କୁ ବିବାହ କରୁଥାନ୍ତି। କଳା ରଙ୍ଗ ଯାହା ଦେଖ, ତାହା ଏମାନଙ୍କ ଠାରୁ ଆସିଛି – ମାନେ aborigine-ମାନଙ୍କର (ଆଦିମ ଅଧିବାସୀମାନଙ୍କ) ଭିତରେ ଥିଲା। ଏହି ରକମ ବିବାହର ଫଳ ଭଲ ମଧ୍ୟ ହୋଇ ପାରେ, ଖରାପ ମଧ୍ୟ ହୋଇ ପାରେ। ସେଥିପାଇଁ ଅନେକ ଦେଖି ଶୁଣି ସଦୃଶ ଘରେ ବିବାହଟା stable (ସ୍ଥିର) ହୋଇଛି। ବାବା! ମୋର ଭଲରେ ମଧ୍ୟ କାମ ନାହିଁ, ଖରାପରେ ମଧ୍ୟ କାମ ନାହିଁ। ମୋର ନିଜର ଘରହିଁ ଭଲ। ପୁଣି, ବିବାହ ଯଦି ଓଲଟା ହୁଏ ମାନେ ପ୍ରତିଲୋମ ହୁଏ, ତାହେଲେ ଏପରି ଆଶ୍ଚର୍ଯ୍ୟ, female-ମାନେ ମଧ୍ୟ (ସ୍ତ୍ରୀ ଲୋକେମାନେ ମଧ୍ୟ) ଖରାପ ହୋଇଯାଆନ୍ତି। ମୁଁ ଯେତେ ସବୁ ଦେଖିଛି, ସବୁ ଏହି ରକମର।

ଦୀ.ର. ୪/୨୯.୧.୧୯୫୯

## ।। ନିକୃଷ୍ଟ ଶୁକ୍ରକୀଟର ସନ୍ତାନ କିପରି ହୁଏ ।।

Inferior sperm (ନିକୃଷ୍ଟ ଶୁକ୍ରକୀଟ) ଦେଇ ଯଦି କୌଣସି ova pricked (ଡିମ୍ବକୋଷ ବିଦ୍ଧ) ହୁଏ, ତାହେଲେ ସେଠାରେ ଛୁଆ ସେହି ପ୍ରକାରର ବେକାୟଦା ହୁଏ। ହୁଏତ ମଦ ଖାଏ। ଝିଅପିଲା ଦେଖିଲେହିଁ (ମୁଖ ବିକୃତ କରି ବିକୃତ ସ୍ୱରରେ) 'କିଗୋ ରୂପସୀ!' – ଏହି ରକମର କରିବାକୁ ଲାଗେ। ଏହି ଯେ ତୁମେ ଏଠାକୁ ଆସି ଯାଇଛ, ତୁମର being (ସତ୍ତା) ତୁମକୁ ଏଠାକୁ ଆଣି ରଖିଛି। ଏହା ଖୋଜି ପାଇ ହେବ ହୁଏତ ତୁମର କୌଣସି forefather-ର (ପୂର୍ବପୁରୁଷଙ୍କ) ମଧ୍ୟରେ। ସେ ହୁଏତ ଏହି ପ୍ରକାର କୌଣସି saint-ଙ୍କ (ସାଧୁପୁରୁଷଙ୍କ) ପାଖକୁ ଯାଉଥାନ୍ତି। ତାପରେ ତୁମର ଜଣେ ଭାଇ ହୁଏତ scientist (ବିଜ୍ଞାନିକ) ହୋଇଛି, ଜଣେ ଭାଇ ହୁଏତ ଡାକ୍ତର ହୋଇଛି। ତାର ମଧ୍ୟ ମୂଳରେ ଏହିପରି କୌଣସି କାରଣ ନିଶ୍ଚୟହିଁ ଅଛି। ବିନା କାରଣରେ କିଛି ହୁଏ ନାହିଁ। ଗୋଟିଏ କାକୁଡ଼ି ଗଛରେ କଣ କେବେ ତରଭୁଜ ଧରିବାର ଦେଖିଛ? ତାହା ହୁଏ ନା। କାକୁଡ଼ି ଗଛରେ କାକୁଡ଼ିହିଁ ହୁଏ। କାଙ୍କଡ଼ ହୁଏ ନାହିଁ। ଯେଉଁ seed (ବୀଜ) ତା ଭିତରେ ଅଛି, ତାକୁହିଁ କେବଳ

ଜନ୍ମ ଦେଇପାରେ। Sperm ଜନ୍ମ ବେଳରେ ତାର urge-କୁ (ସମ୍ବେଗକୁ) carry (ବହନ) କରେ। ସେଥିପାଇଁହିଁ ପୋଟଳ ଗଛରେ ପିତାଜହ୍ନି (ଧୁଁଧୁଲ) ଧରେ ନାହିଁ। Wheat (ଗହମ) କେତେବେଳେ ମଧ୍ୟ barly (ଯବ) ହୋଇ ଯାଏ ନାହିଁ।

ଦୀ.ର. ୪/୧୦.୩.୧୯୫୯

## ॥ କେମିତି ବିବାହ ସର୍ବୋତ୍ତମ ॥

Best (ସର୍ବୋତ୍ତମ) ହେଲା ସଦୃଶ ଘରେ ବିବାହ। ଅନୁଲୋମ ହେଲା next good (ପରବର୍ତ୍ତୀ ଭଲ)। ଅନୁଲୋମ ହେଲା ପରେ ମଧ୍ୟ sperm-ର attribute (ଶୁକ୍ରକୀଟର ଗୁଣ-ଐଶ୍ୱର୍ଯ୍ୟ) ଟିକିଏ lower down (ତଳକୁ ଓହ୍ଲାଇ ଯାଏ), ତେବେ ମାର ଦିଗଠାରୁ ପୁଣି ଟିକିଏ ବଢ଼ି ଯାଏ। ପୁଣି ପ୍ରତିଲୋମ ଠାରୁ ଅନୁଲୋମ ଢେର ଭଲ। ପ୍ରତିଲୋମ ତୁମ୍ଭମାନଙ୍କର sanction (ଅନୁମୋଦନ) ନାହିଁ। କିନ୍ତୁ ଅନୁଲୋମର sanction (ଅନୁମୋଦନ) ଅଛି। ତେବେ ସବୁଠାରୁ ଭଲ ହେଲା ସଦୃଶ ବିବାହ।

ଦୀ.ର. ୪/୧୦.୩.୧୯୫୯

## ॥ ଡିମ୍ବକୋଷ ପାଇଁ ସମାନ ଗୁଣଧର୍ମୀ ଶୁକ୍ରକୀଟ କଣ ପାଇଁ ଦରକାର। ॥

ପ୍ରଶ୍ନ – Compatible sperm (ସମାନ ଗୁଣଧର୍ମୀ ଶୁକ୍ରକୀଟ) ନ ପାଇଲେ ତ ovum (ଡିମ୍ବକୋଷ) ଠିକ୍‌ଭାବରେ କାର୍ଯ୍ୟ କରେ ନାହିଁ।

ଶ୍ରୀଶ୍ରୀଠାକୁର – ଯେ-କୌଣସି sperm (ଶୁକ୍ରକୀଟ) ଦେଇହିଁ ova fertilised (ଡ଼ିମ୍ବକୋଷ ସଂଗର୍ଭିତ) ହୋଇ ପାରେ। କିନ୍ତୁ helpful (ସହାୟକ) ହେବ ଯଦି compatible sperm (ସମାନଗୁଣଧର୍ମୀ ଶୁକ୍ରକୀଟ) ପାଏ। ପୁଣି ଦେଖ, ଗୋଟିଏ ova-କୁ (ଡିମ୍ବକୋଷକୁ) ଯଦି pin prick (ପିନ୍ ଦ୍ୱାରା ବିଦ୍ଧ) କର, କିମ୍ବା ଇଲେକ୍‌ଟ୍ରିକ୍ ଶକ୍ ଦିଅ ତା ଫଳରେ ହୁଏତ ଗୋଟିଏ ବେଙ୍ଗ ଜନ୍ମିଲା। କିନ୍ତୁ ତାହା ବଞ୍ଚେ ନାହିଁ। ତାହେଲେ ଦେଖାଯାଉଛି, ova-ର (ଡ଼ିମ୍ବକୋଷର) ମଧ୍ୟରେ making (ଗଠନର) ରକମଟା ଅଛିହିଁ। ତାକୁ ଯେପରିଭାବରେ ଶକ୍ ଦେବେ, ସେହିପରିଭାବରେ ସେ ବଢ଼ିବ।

ଦୀ.ର. ୪/୧୦.୩.୧୯୫୯

## ॥ ଏକହିଁ ପିତାର ଭିନ୍ନ ପ୍ରକୃତିର ସନ୍ତାନ ହୁଏ କଣ ପାଇଁ ॥

ପ୍ରଶ୍ନ – ଏମିତି ଦେଖା ଯାଏ ଯେ, ଏକହିଁ father-ର (ବାପାର) sperm-ରେ (ଶୁକ୍ରକୀଟରେ) ଗୋଟିଏ ପିଲା ହେଲା ଚାଲାକ, ବୁଦ୍ଧିମାନ, ଆଉ ଗୋଟିଏ ପିଲା ହୁଏତ ବୋକା ବା ପାଗଳ ହେଲା।

ଶ୍ରୀଶ୍ରୀଠାକୁର – ତାହେଲେ କେଉଁଠି mental (ମାନସିକ) ଗୋଳମାଳ ଅଛି। ପୁଣି ଉନ୍ମାଦ ମାତୃଦୋଷେଣ, ପିତୃଦୋଷେଣ ମୂର୍ଖତା (ମାର ଦୋଷରେ ଉନ୍ମାଦ ହୁଏ, ମୂର୍ଖତା ଆସେ ବାପାର ଦୋଷରୁ)। ସ୍ୱାମୀ-ସ୍ତ୍ରୀର ଭିତରେ mental makeup (ମାନସିକ ସଂଗଠନ) ଠିକ୍ କରି ନେଇ ନ ପାରିଲେ ଏପରି ହେବାରେ ଦେଖା ଯାଏ। ଯେପରି ଧର, ମୁଁ ହୁଏତ ଏମିତି ଖୁବ୍ morosed (ବିଷାଦଗ୍ରସ୍ତ) ହୋଇ ଅଛି। ମୋର mental condition (ମାନସିକ ଅବସ୍ଥା) ମୋଟେହିଁ ଭଲ ନାହିଁ। ଏହି ଅବସ୍ଥାରେ ମୁଁ ଯଦି intercourse (ସହବାସ) କରେ ସେତେବେଳେ ଯାହା ହେବାର ତାହାହିଁ ହୁଏ।

ପ୍ରଶ୍ନ – ତାହେଲେ ଭଲ ପିଲା ପାଇବାକୁ ହେଲେ husband-ର (ସ୍ୱାମୀର) ଉପରେ wife-ର (ସ୍ତ୍ରୀର) ଖୁବ୍ love and devotion (ପ୍ରୀତି ଓ ଭକ୍ତି) ରହିବା ଦରକାର।

ଶ୍ରୀଶ୍ରୀଠାକୁର – ଏହି ଯେ କିଏ ଯେପରି କହିଥିଲା, 'my husband is my Guru' (ମୋ ସ୍ୱାମୀହିଁ ମୋର ଗୁରୁ)।...

ପୁଣି ଦେଖ, ତୁମେ ଯଦି ଗୋଟିଏ ସାଧାରଣ କୁକୁର ଦ୍ୱାରା ଗୋଟିଏ ଏାଲସେଶିୟାନ bitchର (ମାଈକୁକୁରର) breed (ସନ୍ତାନ-ଉତ୍ପାଦନ) କରାଅ, ତାହେଲେ ତାର issue (ଛୁଆଗୁଡ଼ିକ) ଖରାପ ହୋଇ ଯିବେ। ପୁଣି କୌଣସି ଏାଲସେଶିୟାନ ଦ୍ୱାରା ଯଦି ଗୋଟିଏ mongrel bitch-ର (ଦୋ-ଆଁଶଲା ମାଈ କୁକୁରର) breed (ସନ୍ତାନ ଉତ୍ପାଦନ) କରାଅ, ତାହେଲେ ତାର ଛୁଆଗୁଡ଼ିକ ମଧ୍ୟ ଏହି ଏାଲସେଶିୟାନର ଗୁଣ ସବୁ ଠିକ୍‌ଭାବରେ ପାଇବ ନାହିଁ।

ଦୀ.ର. ୪/୧୦.୩.୧୯୫୯

## ॥ ଇଉରୋପୀୟମାନଙ୍କ ସହିତ ବିବାହାଦି କିପରି ଭାବରେ ହେବ ॥

ମୁଁ ଅବଶ୍ୟ ଜାଣେ ନାହିଁ। ଇଉରୋପର ସବୁ ଖବର ଜାଣେ ନାହିଁ। କିନ୍ତୁ ମୋର ଗୋଟିଏ କଥା ମନେ ହୁଏ। ଇଣ୍ଡୋ-ଏରିୟାନ କିମ୍ବା ଇଉରୋ-ଏରିୟାନ

ଯେଉଁମାନେ, ଏମାନଙ୍କ ପ୍ରତ୍ୟେକଙ୍କରହିଁ ବୈଶିଷ୍ଟ୍ୟାନୁପାତିକ ଗୁଚ୍ଛ ଅଛି, ଯାହାର ନାମ ବର୍ଣ୍ଣ। ଏମାନେ ଯଦି କୁଳଗତ ଏବଂ କୃଷ୍ଟିଗତ ପ୍ରଥା ସବୁ ଠିକ୍ ରଖି ଚାଲନ୍ତି ତାହେଲେ ଏମାନଙ୍କ ସହିତ ସଦୃଶ ଘରେ ଅନୁଲୋମକ୍ରମରେ ବିବାହାଦି ଚାଲିପାରେ। ଯଦି ସମସ୍ତଙ୍କର culture of the family (ପରିବାରର କୃଷ୍ଟି) and culture of the individual (ଏବଂ ବ୍ୟକ୍ତିର କୃଷ୍ଟିଗତ ଅନୁଶୀଳନ) ଠିକ୍ ଥାଏ ତାହେଲେ higher-ରେ (ଉଚ୍ଚରେ) ଝିଅ ଦେଇ gain କରାଯାଏ (ଲାଭବାନ ହୁଆଯାଏ)। ଦୀ.ର. ୪/୧୦.୩.୧୯୫୯

## ॥ ବିବାହର ସମ୍ବନ୍ଧ ନିର୍ଣ୍ଣୟରେ ଜାତକ-କୋଷ୍ଠୀ କେତେଟା ପ୍ରୟୋଜନ॥

ପ୍ରଶ୍ନ – ମୋ ପୁଅର ବିବାହ ଗୋଟିଏ ସ୍ଥାନରେ ଠିକ୍ ହେଉଛି। କିନ୍ତୁ ପୁଅ-ଝିଅ କାହାରି ଜାତକ-କୋଷ୍ଠୀ ନାହିଁ।

ଶ୍ରୀଶ୍ରୀଠାକୁର – ଜାତକ ତ ପ୍ରଧାନ ନୁହେଁ। ବଂଶ ଦେଖିବା ଦରକାର। ବଂଶର ଆୟୁ କେମିତି, ରୋଗ ଅଛି କି ନାହିଁ, ବୋଧ କେମିତି, ବୁଦ୍ଧି ଅଛି କି ନାହିଁ, ଚାଲିଚଳନ-ଆଚାର-ଚରିତ୍ର କେମିତି, ସେମାନଙ୍କର ସ୍ୱଭାବ ସୁନ୍ଦର କି ନୁହେଁ, ବଂଶ ମାତାଲ କି ନୁହେଁ, ତାହା ଦେଖିବା ଦରକାର। ଏଗୁଡ଼ିକ ନ ଦେଖି ବିବାହ ଦେଲେ କିନ୍ତୁ ପ୍ରାୟହିଁ ଠକିବାକୁ ହୁଏ। ମୋର ବିବାହ ତ କୋଷ୍ଠୀ ଦେଖି ହୋଇ ନାହିଁ।

ଦୀ.ର. ୪/୨୨.୩.୧୯୫୯

## ॥ ବ୍ୟାଭିଚାରୀ ସ୍ତ୍ରୀ ସହିତ ବିବାହ-ବିଚ୍ଛେଦ କରିବ କି ନାହିଁ॥

ପ୍ରଶ୍ନ – ସ୍ତ୍ରୀଯଦି adulterous (ବ୍ୟାଭିଚାରୀ) ହୁଏ ତାହେଲେ କଣ ତାକୁ divorce (ବିବାହ-ବିଚ୍ଛେଦ) କରିବା ଭଲ ?

ଶ୍ରୀଶ୍ରୀଠାକୁର – ଆମ୍ଭମାନଙ୍କ ଏଠାକାର Indian system-ରେ (ଭାରତୀୟ ନିୟମରେ) divorced (ବିବାହ-ବିଚ୍ଛିନ୍ନ) ହେବାକୁ କହନ୍ତି। ମୋର ମନେ ହୁଏ, ଯଦି ତାକୁ correct (ସଂଶୋଧନ) କରା ଯାଏ ତାହା-ହିଁ ସବୁଠାରୁ ଭଲ। ତାହା ନ କରି ଯଦି ତାକୁ divorce (ବିବାହ-ବିଚ୍ଛେଦ) କର, ତାହେଲେ ତାକୁ ଏହି ପଥରେ ଆହୁରି ଆଗେଇ ଦେବା ହେବ। ସେ ସେତେବେଳେ ଆଉ ଜଣକୁ ଧରି ନେଇ ଚାଲିବ। ଫଳରେ, ତାର ଦଳ ବଢ଼ି ଯିବ।

ପ୍ରଶ୍ନ – ଶାସ୍ତ୍ରରେ ଅଛି, ସ୍ତ୍ରୀ ବ୍ୟାଭିଚାରୀ ହେଲେ ତାକୁ ବାନ୍ଧି ରଖିବ। କିନ୍ତୁ

ସେହି ବ୍ୟାଭିଚାର ଯଦି ପ୍ରତିଲୋମ-ସଂକ୍ରାନ୍ତ ହୁଏ, ସେ ତ ଆହୁରି ଖରାପ।

ଶ୍ରୀଶ୍ରୀଠାକୁର – ତାହା ଖୁବ୍‌ହିଁ ଖରାପ। ...କେତେ କାମ (କାଣ୍ଡ) ହୁଏ ଦେଖିନ। ଅସ୍ଥିତ୍ୱହିଁ ଭାଙ୍ଗି ଯିବା ପରି ହୋଇଛି। ଦୀ.ର. ୫/୨୩.୩.୧୯୫୯

## ।। ସଦୃଶ ଘରେ ବିବାହ ଦରକାର କଣ ପାଇଁ ।।

Sperm (ଶୁକ୍ରକୀଟ)-ଗୁଡ଼ିକ ova-ରେ (ଡିମ୍ବକୋଷରେ) ଯାଇ prick (ବିଦ୍ଧ) କରେ। Same instinct-ର sperm (ସଦୃଶ ସଂସ୍କାରର ଶୁକ୍ରକୀଟ) ଯଦି same instinct-ର ova-କୁ (ସଦୃଶ ସଂସ୍କାରର ଡ଼ିମ୍ବକୋଷକୁ) prick (ବିଦ୍ଧ) ନ କରେ ତାହେଲେ ଶଙ୍କର ହୋଇ ଯାଏ, instinct-ଗୁଡ଼ିକ ନଷ୍ଟ ମଧ୍ୟ ହୋଇ ଯାଏ। ଏଥିପାଇଁ ସଦୃଶ ଘରେ ବିବାହ ଏତେ ଦରକାର। ଆମ୍ଭମାନଙ୍କର marriage-system-ଟା (ବିବାହ-ପ୍ରଥାଟା) ଭଲ କରି readjust (ପୁନର୍ବିନ୍ୟାସ) କରିବା ଦରକାର।

ଦୀ.ର. ୫/୨୯.୩.୧୯୫୯

## ।। ବୁଦ୍ଧି କରି ସୁସନ୍ତାନ ଆଣା ଯାଏ କି ନାହିଁ ।।

ପ୍ରଶ୍ନ – ଆଚ୍ଛା, ଗୋଟିଏ male ଓ female (ପୁରୁଷ ଓ ନାରୀ) ଯଦି ସୁସନ୍ତାନ ଆଣିବାର ବୁଦ୍ଧି ନେଇ united (ମିଳିତ) ହୁଅନ୍ତି ତାହେଲେ କଣ ସେଠାରେ ସୁସନ୍ତାନ ଆସି ପାରେ ?

ଶ୍ରୀଶ୍ରୀଠାକୁର – ସଦୃଶ କୁଳ ହେଲେ ସମ୍ଭାବନା ଥାଏ। ପୁଣି ସେହି କୁଳର କୃଷ୍ଟି ଯାହାର ଯେତେ living (ଜୀବନ୍ତ), ତାର ସେତେ ଭଲ ହୁଏ। ଆଉ, ଯାହାର living (ଜୀବନ୍ତ) ନୁହେଁ, ତାର ମଧ୍ୟ ଘସୁ-ଘସୁ କିଛିଟା ହୋଇ ପାରେ।

ଦୀ.ର. ୫/୨୯.୩.୧୯୫୯

## ।। ଝିଅର ବିବାହ ସବୁ ସମୟରେ ଉଚ୍ଚକୂଳରେ ଦେବେ କଣ ପାଇଁ ।।

ଝିଅର ବିବାହ ସବୁ ସମୟରେ ଉଚ୍ଚ କୂଳରେ ଦେବେ। ତାରମାନେ, ସେଠାକୁ ଯାଇ ସେ ସ୍ୱାମୀକୂଳର ସମସ୍ତଙ୍କୁ ଧରି ରଖିବ। ତାହା ସହିତ ନିଜକୁ ମଧ୍ୟ ବଡ଼ କରି ତୋଳି ପାରିବ। ଝିଅମାନଙ୍କର ଯଦି high pedigree (ଉଚ୍ଚ ବଂଶ) ହୁଏ, ଆଉ ବିବାହ ମଧ୍ୟ ସେହି-ପ୍ରକାରର ହୁଏ, ତାହେଲେ ଏକେବାରେ ଅମୃତ ପରି ହୁଏ। ତାର ଚାଲିଚଳନ,

ସହବାସ, ସବୁହିଁ ହୁଏ ସେହି-ରକମ। କାରଣ, ସେଠାରେ ତାର affinity (ଆକର୍ଷଣ) ହୁଏ। ତାର ova- ମଧ୍ଯ (ଡିମ୍ବକୋଷ ମଧ୍ଯ) developed (ସମୃଦ୍ଧ) ହୋଇ ଉଠିବାକୁ ଲାଗେ। ସ୍ୱାମୀଙ୍କର ଭଲ ପାଇଁ ଯାହା ଯାହା ଦରକାର, ସବୁହିଁ ସେ ଅକ୍ଳେଶରେ କରି ପକାଏ। ତାର ଯଦି କୌଣସି ଖରାପ quality (ଅବଗୁଣ) ଥାଏ, ସେଗୁଡ଼ିକ ମଧ୍ଯ recessive (ଶକ୍ତିହୀନ) ହୋଇ ପଡ଼େ। ସେ ସବୁ ବୁଝେ। କିନ୍ତୁ କିଛି ଖରାପ ପ୍ରବୃତ୍ତିହିଁ ଆସେ ନାହିଁ। ନିଜ ତରଫରୁ ତାର ଗୋଟିଏ solution (ସମାଧାନ) ହୋଇ ଯାଏ। ...ତୁମେ ଯଦି ସେହି ରକମ ଗୋଟିଏ ଭଲ ସ୍ତ୍ରୀପାଅ, ତାହେଲେ ଦେଖ, ତୁମକୁ ଦେଖିଲେହିଁ କିମ୍ବା ତୁମ ଦେହରେ ହାତ ଦେଲେହିଁ ତାର ଏକ peculiar sexual satisfaction (ବିଶେଷ ରକମର ଯୌନ ପରିତୃପ୍ତି) ହୁଏ। ମୁଁ ଯେ ଏହି-ପ୍ରକାରର କେତେ type (ରକମ) ଦେଖିଛି ତାର ଇୟତ୍ତା ନାହିଁ। Sexology (ଯୌନବିଜ୍ଞାନ) ଯଦି ମୁଁ ଲେଖିଥାନ୍ତି ତାହେଲେ ହ୍ୟାଭ୍‌ଲକ ଏଲିସ ଠାରୁ ଯେ ଖୁବ କମ୍ ହୋଇଥାନ୍ତା ତାହା ନୁହେଁ। ଆଉ, ଏତେ confession (ସ୍ୱୀକାରୋକ୍ତି) ମୋ ପାଖରେ ଅଛି ଯେ ତାହା ଆଉ କହିବାର ନାହିଁ।

ଦୀ.ର. ୫/୩୦.୩.୧୯୫୯

## ।। କେତେ ପୁରୁଷ ପରେ କାହାରି କୌଣସି ବିଶେଷ ଗୁଣ ତାର ସନ୍ତାନ-ସନ୍ତତିଙ୍କ ମଧ୍ୟରେ ସୁଦୃଢ଼ ହୋଇ ପାରେ ।।

ଯଦି (ସେହି ଗୁଣ) dominant (ପ୍ରବଳ) ଥାଏ ତେବେ ସହଜରେ ହୁଏ। ଆଉ, recessive (ଦୁର୍ବଳ) ରହିଲେ ଡ଼େରି ହୁଏ। ପୁଣି, ସେଠାରେ ଯଦି ଇଷ୍ଟନିଷ୍ଠା ସମସ୍ତ gene-କୁ (ଜିନକୁ) ଆଲୋଡ଼ନ କରେ, ସବୁ ଆକର୍ଷଣକୁ ଠେଲି ପକାଇ ଉପରକୁ ଉଠି ପାରେ, ତାହେଲେ ଏକେବାରେ କାମ ହୋଇ ଯାଏ। ରତ୍ନାକର ବାଲ୍ମିକୀ ହୋଇ ଯାଏ। ସେଥିପାଇଁ ପ୍ରଥମେ ଘର ଠିକ କର। ଘର ଦେଖି, ବର୍ଣ୍ଣ ଦେଖି ବିବାହର ବ୍ୟବସ୍ଥା କର। ଏକ ବର୍ଣ୍ଣର ମଧ୍ୟରେବି ପୁଣି ଥାକ ଅଛି। ସେଗୁଡ଼ିକ ମଧ୍ଯ ହିସାବର ମଧ୍ୟରେ ରଖିବ। ଜାତି ଗଢ଼ିବାକୁ ଗଲେ ବିବାହ ଠିକ୍ କରିବା 'ଛଡ଼ା ଉପାୟ ନାହିଁ। ତା ମଧ୍ୟରେ ପୁଣି ଝିଅମାନେ ଯେଉଁଥିରେ କୌଣସି ପ୍ରକାରେହିଁ ନୀଚ ଘରେ ନ ପଡ଼ନ୍ତି ସେ ଦିଗରେ ଖୁବ୍ ଖିଆଲ ରଖିବାକୁ ହେବ।

ଦୀ.ର. ୫/୩୦.୩.୧୯୫୯

## ॥ ଶୁକ୍ରକୀଟ ଯେତେ ଭଲହିଁ ହେଉ ଡିମ୍ବକୋଷର ଭଲ ଗ୍ରହଣଶକ୍ତି ନ ରହିଲେ କଣ ହୁଏ ॥

Receving (ଗ୍ରହଣ) ଭଲ ହେଲେ ଫଳ ଭଲ ହୁଏ। Apathy (ବିତୃଷ୍ଣା) ରହିଲେ ଭଲ ହୁଏ ନାହିଁ। ତାପରେ ଦେଖ, ଦୁଇ ଜଣଙ୍କ ମଧ୍ୟରେ ଏପରି ହୁଏତ ଖୁବ୍ ଭଲ ପାଇବା ଅଛି। ମଝିରେ ଦିନେ ଖରାପ କଥା କହି ରଗେଇ ଦେଇ ଦେଖିବାକୁ ହୁଏ ସେତେବେଳେ କେମିତି କୁହେ କିମ୍ବା ବ୍ୟବହାର କରେ। ସ୍ତ୍ରୀହିଁ ହେଉ, ପୁରୁଷହିଁ ହେଉ, ପ୍ରତ୍ୟେକଙ୍କୁହିଁ ଖୁଁଚା ଦେଇ ଦେଖିବା ଦରକାର। ପୁଣି, ତୁମକୁ ମଧ୍ୟ କୌଣସି ଦିନ ଏପରି ପିନ୍ ମାରି ଖୁଁଚା ଦେବେ କିନ୍ତୁ, ତାହା ଭୁଲି ଯାଅ ନାହିଁ। ଯେଉଁମାନଙ୍କର conscious (ଚେତନା) ଖୁବ୍ strong (ଶକ୍ତିଶାଳୀ) ସେମାନେ ସବୁ ପରିସ୍ଥିତିରେ ନିଜକୁ ଠିକ୍ ରଖି ପାରନ୍ତି। ...ଯାହା ପାଖରେ ଝିଅମାନଙ୍କର desires and wishes fulfilled (କାମନା ବାସନାର ପରିତୃପ୍ତି) ହୋଇ ଯାଏ, ସେହି ଝିଅ ପାଖରେ ତାର husband like a nectar (ସ୍ୱାମୀ ଅମୃତତୁଲ୍ୟ)।

ଦୀ.ର. ୫/୩୧.୩.୧୯୫୯

## ॥ ସ୍ୱାଭାବିକ ଜନ୍ମ ହେଲେ ବାପାଙ୍କ ଠାରୁ ପୁଅ ବେଶୀ ବୁଦ୍ଧିମାନ ହୁଏ କି ନାହିଁ ॥

ତାହା ହୁଏ। ଆଉ ଏହି ଲକ୍ଷଣ ଦେଖିହିଁ ବୁଝାଯାଏ, ସେଠାରେ normal breeding (ସ୍ୱାଭାବିକ ପ୍ରଜନନ) ଚାଲିଛି। ଦୀ.ର. ୫/୩୧.୩.୧୯୫୯

## ॥ ଅସବର୍ଣ୍ଣ ବିବାହରେ ମଧ୍ୟ ଭିନ୍ନ ଗୋତ୍ର ହେବା ଉଚିତ କି ନୁହେଁ ॥୩୦୭

ଭିନ୍ନ ବର୍ଣ୍ଣ ହେଲେ ମଧ୍ୟ ଯଦି ଗୋତ୍ର ଏକ ହୁଏ ତାହେଲେ ସେଠାରେ ବିବାହ ନ କରିବାହିଁ ଭଲ। ଦୀ.ର. ୫/୩୧.୩.୧୯୫୯

## ॥ ପ୍ରବର ମାନେ କଣ ॥

ପ୍ରବର ମାନେ great persons of that family (ସେହି ପରିବାରର ମହାନ ବ୍ୟକ୍ତିଗଣ)। ଆମ୍ଭମାନଙ୍କର ଏସବୁ ଥିଲା। ଆମ୍ଭେମାନେ ସବୁ ନଷ୍ଟ କରି ପକେଇଛୁ। ଦୀ.ର. ୫/୩୧.୩.୧୯୫୯

## ॥ ବିବାହରେ ରାଜଯୋଟକ ବଡ଼ କଥା କି ନୁହେଁ॥

ଗୋଟିଏ ବ୍ରାହ୍ମଣ ଝିଅର ବ୍ରାହ୍ମଣ ପୁଅ ସହିତ ମଧ୍ୟ ରାଜଯୋଟକ ହୋଇ ପାରେ, ପୁଣି ଗୋଟିଏ ଡୁମର ପୁଅ ସହିତ ମଧ୍ୟ ରାଜଯୋଟକ ହୋଇ ପାରେ। ତାହା ଯଦି ହୁଏ, ସେତେବେଳେ ସେହି ଡୁମହିଁ prevail କରେ (ବଡ଼ ହୋଇ ଉଠେ), superior (ଶ୍ରେଷ୍ଠ) ଗୁଣ ଗୁଡ଼ିକ recessive ହୋଇ ଯାଏ (ଉଭେଇ ଯାଏ) ଆଉ inferior (ନିକୃଷ୍ଟ)-ଗୁଡ଼ିକ dominant (ପ୍ରବଳ) ହୋଇ ଉଠେ। ସେଥିପାଇଁ ବିବାହ ସମୟରେ ରାଜଯୋଟକ ବଡ଼ କଥା ନୁହେଁ, ଦେଖିବାକୁ ହୁଏ compatibility (ସଦୃଶତ୍ୱ)। Compatible (ସଦୃଶ) ନହେଲେ ସେଠାରେ ଆଉ consistency (ସୁସଙ୍ଗତି) ରହେ ନାହିଁ, ଫଳରେ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ co-ordination-ମଧ୍ୟ (ସାମଞ୍ଜସ୍ୟ ମଧ୍ୟ) ହୁଏ ନାହିଁ। ଦୀ.ର. ୫/୧୬.୭.୧୯୫୯

## ॥ ପ୍ରତିଲୋମ ନ ମାନିଲେ ମଧ୍ୟ ଫଳ ଖରାପ ହେବ କି ନାହିଁ॥

ଅନେକେ ପ୍ରତିଲୋମ ମାନନ୍ତି, ପୁଣି ଅନେକ ପଣ୍ଡିତମାନେ ମଧ୍ୟ ମାନନ୍ତି ନାହିଁ। କିନ୍ତୁ ନ ମାନିଲେ ମଧ୍ୟ ଫଳ ଯାହା ହେବାର ତାହା ହେବହିଁ। ତାହା ଫଳରେ issue ମଧ୍ୟ (ସନ୍ତାନ ମଧ୍ୟ) ଖରାପ ହୁଏ, ପ୍ରସୂତି ମଧ୍ୟ ଖରାପ ହୋଇ ଯାଏ। ସେଥିପାଇଁ ଆମ୍ଭମାନଙ୍କର ପୂର୍ବପୁରୁଷମାନେ ବ୍ରାହ୍ମଣର ଘରକୁ ଯଦି କାୟସ୍ଥର ଝିଅ ଆସୁଥାନ୍ତି, ସେମାନଙ୍କ ହାତରୁ ଖାଉଥାନ୍ତି। କିନ୍ତୁ ଯେଉଁ ବ୍ରାହ୍ମଣ ଝିଅ ସହିତ କାୟସ୍ଥର ବିବାହ ହେଉଥାଏ, ତା ହାତରୁ କୌଣସି ଦିନ ଖାଉ ନ ଥାନ୍ତି। ଦୀ.ର. ୫/୯.୮.୧୯୫୯

## ॥ ପୁଅର ବିବାହ ଉଚ୍ଚଘରେ ଦିଆଯାଏ କି ନାହିଁ॥

ସେ-ସବୁ dangerous (ବିପଜ୍ଜନକ) କଥା। ସେ-ସବୁ ଯେଉଁମାନେ କୁହନ୍ତି ସେମାନେ genetics ([illegible]-ନୀତି) ଜାଣନ୍ତି ନାହିଁ। ଦୀ.ର. ୫/୯.୮.୧୯୫୯

## ॥ ସ୍ୱାମୀର ଅତ୍ୟାଚାରରେ ଯଦି ଡାଇଭୋର୍ସ କରିବାକୁହିଁ ହୁଏ ତାପରେ କଣ କରିବ॥

ପ୍ରଶ୍ନ – କୌଣସି ଝିଅ ସ୍ୱାମୀର ଅତ୍ୟାଚାରରେ ତିଷ୍ଠି ନ ପାରି ଯଦି ଡାଇଭୋର୍ସ କରେ ଏବଂ ତାପରେ ଆଉ ବିବାହ ନ କରେ?

ଶ୍ରୀଶ୍ରୀଠାକୁର – ଆମ୍ଭମାନଙ୍କ ଶାସ୍ତ୍ରରେ ଡାଇଭୋର୍ସର କଥା ନାହିଁ, separation କରି (ଅଲଗା ହୋଇ) ରହିବାର କଥା ଅଛି, ତାହାହିଁ ରହିବ। ଆଉ, ଏହିପ୍ରକାରର ରହିବା ପରେ ସେ ଯଦି ଆଉ ବିବାହ ନ କରେ ତା ହେଲେ ତ infect (ସଂକ୍ରମିତ) କରିଲା ନାହିଁ। ମୁଁ କେତେଜଣ ମୁସଲମାନ ଝିଅକୁ ଦେଖିଛି, ସେମାନେ ବିଧବା ହେବା ପରେ ଆଉ ବିବାହ କରି ନାହାନ୍ତି। ଦୀ.ର. ୫/୯.୮.୧୯୫୯

## ।। ପରସ୍ତ୍ରୀଗମନ କିମ୍ବା ଏହି ଜାତୀୟ ପାପର ଶାସ୍ତି କିପରି ହେବ ।।

ଶ୍ରୀଶ୍ରୀଠାକୁର – ପରସ୍ତ୍ରୀଗମନ କିମ୍ବା ଏହି ଜାତୀୟ ପାପ ଯେଉଁମାନେ କରନ୍ତି ସେମାନଙ୍କୁ ଅପରେସନ କରି ଦେବା ଭଲ।

ପ୍ରଶ୍ନ – ସେଥିରେ ତ ପରସ୍ତ୍ରୀଗମନ ବନ୍ଦ ହୁଏ ନାହିଁ, impregnat (ଗର୍ଭସଞ୍ଚାର) କରିବାର କ୍ଷମତା ରହେ ନାହିଁ।

ଶ୍ରୀଶ୍ରୀଠାକୁର – ସେହି ତ। ସେହି କ୍ଷମତାଟା ନଷ୍ଟ ହେଲେ ତାଦ୍ୱାରା social effect (ସାମାଜିକ କ୍ଷତି)-ଟା ବନ୍ଦ ହେଲା। ତାପରେ ସେମାନଙ୍କର ଧିରେ ଧିରେ reformation (ସଂସ୍କାର) କରିବା ଦରକାର। ଦୀ.ର. ୫/୧୦.୮.୧୯୫୯

## ।। କୂଳୀନ ମାନେ ଶ୍ରୋତ୍ରିୟର ଘରେ ଝିଅ ଦେଲେ କଣ ହୁଏ ।।

ଶ୍ରୀଶ୍ରୀଠାକୁର ଜଣକୁ ଜିଜ୍ଞାସା କରିଲେ – ତୁମ୍ଭେମାନେ କଣ କୂଳୀନ ନା ଶୋତ୍ରିୟ ?

ଉତ୍ତର – କୂଳୀନ।

ଶ୍ରୀଶ୍ରୀଠାକୁର – କୂଳୀନ ମାନେ ଶୋତ୍ରିୟର ଘରେ ଝିଅ ଦେଲେ ସେମାନଙ୍କର କୂଳ ଭାଙ୍ଗେ। ତାହା ହେଲା ସେମାନଙ୍କର punishment (ଶାସ୍ତି)। ତୁମ୍ଭେମାନେ ଯେତେବେଳେ କୂଳୀନ, ତୁମ୍ଭମାନଙ୍କର habit, behaviour, character (ଅଭ୍ୟାସ, ବ୍ୟବହାର, ଚରିତ୍ର), ମୋଟକଥା traditional trait-ଗୁଡ଼ିକୁ (ଐତିହ୍ୟଗତ ବିଶେଷ ଲକ୍ଷଣ ଗୁଡ଼ିକୁ) ଦେଖିବ with every respectful eye (ସବୁରକମର ସଶ୍ରଦ୍ଧ ଦୃଷ୍ଟି ନେଇ)। ଅନେକେ ହୁଏତ କୁହନ୍ତି, ଗରୁ ଖାଇବୁ ନାହିଁ କଣ ପାଇଁ ? ସେ ସବୁ tradition-ର (ଐତିହ୍ୟର) ଗୋଳମାଳ।

ଦୀ.ର. ୫/୧୪.୮.୧୯୫୯

## ।। ଗୋତ୍ର ମାନିବାକୁ ହୁଏ କଣ ପାଇଁ ।।

ପ୍ରତିଟି ଗୋତ୍ରହିଁ ସ୍ୱ ସ୍ୱ ବୈଶିଷ୍ଟ୍ୟ ବିଶେଷ। ଗୋଟିଏ–ଗୋଟିଏ ଗୋତ୍ର ତାର culture, creed, character, conduct (ସଂସ୍କୃତି, ଧର୍ମବିଶ୍ୱାସ, ଚରିତ୍ର, ଆଚରଣ) ବହୁଯୁଗ ଧରି ନାନା ଭାବରେ achieve (ଅଧିଗତ) କରିଛି। ଏହି ଗୋତ୍ରଧାରା କେତେବେଳେ ମଧ୍ୟ ନଷ୍ଟ କରିବାର ନୁହେଁ। ଗୋତ୍ର ଭାଙ୍ଗିଲେ ସର୍ବନାଶ। ସେଥିପାଇଁ ଭିନ୍ନ ଗୋତ୍ର ଦେଖି ବିବାହ ଦେବାକୁ ହୁଏ। ବିଭିନ୍ନ ଗୋତ୍ରର male and female-ର (ସ୍ତ୍ରୀ ଓ ପୁରୁଷର) ଯେତେବେଳେ proper combination (ଉପଯୁକ୍ତ ମିଳନ) ହୁଏ ସେତେବେଳେ ଗୋତ୍ର ଓ ବଂଶର ଗୁଣଗତ ବୈଶିଷ୍ଟ୍ୟଗୁଡ଼ିକ ସନ୍ତାନ-ସନ୍ତତିଙ୍କ ମଧ୍ୟରେ dominant (ପ୍ରଧାନ) ହୋଇ ଉଠେ। ଆଉ, combination (ମିଳନ) ଠିକ୍‌ଭାବରେ ନ ହେଲେହିଁ ସେଗୁଡ଼ିକ recessive (ହ୍ରାସମୁଖୀ) ହୋଇ ଉଠେ। ସେଥିପାଇଁ ସଦୃଶ ବଂଶରେ ବିବାହ ହେବା ଭଲ। ତାହା ହେଲା first class marriage (ପ୍ରଥମ ଶ୍ରେଣୀର ବିବାହ)। ଆଉ, ଅନୁଲୋମ ହେଲା second class marriage (ଦ୍ୱିତୀୟ ଶ୍ରେଣୀର ବିବାହ)। ଅନୁଲୋମ ବିବାହର କ୍ଷେତ୍ରରେ ମଧ୍ୟ ଏହି ଭିନ୍ନ ଗୋତ୍ର ପ୍ରବର ଏସବୁ ଠିକ୍ ରଖି କରିବ। କିନ୍ତୁ ପ୍ରତିଲୋମ ଯେପରି କେତେବେଳେ ମଧ୍ୟ ନ ହୁଏ। ତୁମର ଗୋଟିଏ ଝିଅକୁ ଯଦି କାୟସ୍ଥ କିମ୍ବା ବୈଶ୍ୟର ସହିତ ବିବାହ ଦିଅ ତାହେଲେ କିନ୍ତୁ ଏକେବାରେ ସବୁ murder (ନିକେଶ)। କାରଣ, ତାହା ଫଳରେ ସବୁ ଗୁଣଗୁଡ଼ିକ recessive (ହ୍ରାସମୁଖୀ) ହୋଇ ଯାଏ। ଦୀ.ର. ୫/୧୪.୮.୧୯୫୯

## ।। ବିବାହର ଏତେ ଗୋଳମାଳରେ କୃଷ୍ଟି ଓ ଐତିହ୍ୟ କାହାରି ଠିକ୍ ଅଛି କି ନାହିଁ ।।

ଏତେ ଗୋଳମାଳ ହୋଇବି ପାଞ୍ଚଟା family-ମଧ୍ୟ (ପରିବାର ମଧ୍ୟ) ଯଦି ଠିକ୍ ରହେ, ତାରହିଁ ପ୍ରଭାବ ଢ଼େର। ନଷ୍ଟ ହୋଇ ମଧ୍ୟ ଅନେକ ଠିକ୍ ଅଛି। ବ୍ରାହ୍ମଣ କଣ ନଷ୍ଟ ହୋଇନାହାନ୍ତି ? ଢ଼େର ବ୍ରାହ୍ମଣ ନଷ୍ଟ ହୋଇଛନ୍ତି। କାୟସ୍ଥ କଣ ନଷ୍ଟ ହୋଇ ନାହାନ୍ତି ? ଢ଼େର କାୟସ୍ଥ ନଷ୍ଟ ହୋଇଛନ୍ତି। ଢ଼େର ବୈଶ୍ୟ ମଧ୍ୟ ନଷ୍ଟ ହୋଇଛନ୍ତି। ତାର ଭିତର ଦେଇ ମଧ୍ୟ ଦେଖ କିଛି family (ପରିବାର) ସେମାନଙ୍କର culture and tradition (କୃଷ୍ଟି ଓ ଐତିହ୍ୟ) ଠିକ୍ ବଜାୟ ରଖି ଚାଲିଛନ୍ତି।

ଦୀ.ର. ୫/୧୪.୮.୧୯୫୯

## ॥ ଆୟୁ ଠିକ୍ ରଖିବା ପାଇଁ କଣ କରିବ ॥

ଶ୍ରୀଶ୍ରୀଠାକୁର – ଯାହା କରିଲେ ତୁମ୍ଭମାନଙ୍କର ଆୟୁ ଠିକ୍ ରହେ ତାହାହିଁ କରିବ। ବିବାହାଦି ଠିକ୍‌ଭାବେ ଦେଖି କରିବ। ଯେଉଁ ବଂଶର ଆୟୁ ବେଶୀ, ସେହି ବଂଶରୁ ଝିଅ ନେବ।

ପ୍ରଶ୍ନ – ବିବାହ ସମୟରେ ତାହେଲେ both side (ଉଭୟପକ୍ଷ) ଦେଖିବାକୁ ହେବ ?

ଶ୍ରୀଶ୍ରୀଠାକୁର – ହଁ। ତାହା ନ ହେଲେ କଣ ହୁଏ ?

ଦୀ.ର. ୫/୧୮.୮.୧୯୫୯

## ॥ ରୋଗ ପ୍ରତିରୋଧରେ ସଦୃଶ ବିବାହର ଗୁରୁତ୍ୱ କେମିତି ॥

ଶ୍ରୀଶ୍ରୀଠାକୁରଙ୍କର ଜଣେ ଅନୁରାଗୀ ଥ୍ରମ୍ବସିସ୍‌ରେ ମରି ଯିବାରୁ ଏହି ରୋଗ ସମ୍ବନ୍ଧରେ ଶ୍ରୀଶ୍ରୀଠାକୁରଙ୍କ ଆଗରେ ନାନା ଲୋକ ନାନା କଥା ଆଲୋଚନା କରୁଥିଲେ। ଶ୍ରୀଶ୍ରୀଠାକୁର ଟିକିଏ ଗମ୍ଭୀର ସ୍ୱରରେ ଧୀରେ ଧୀରେ ଉଚ୍ଚାରଣ କରିଲେ – ବିବାହ ଠିକ୍ ନ ହେବା ପର୍ଯ୍ୟନ୍ତ ଅର୍ଥାତ୍ compatible marriage (ସଦୃଶ ବିବାହ) ନହେବା ପର୍ଯ୍ୟନ୍ତ ଏସବୁ ଯିବ ନାହିଁ।

ପ୍ରଶ୍ନ – ତାହେଲେ heart-attack-ମଧ (ହାର୍ଟ ଏଟାକଟା ମଧ) କଣ ବିବାହର ଗୋଳମାଳରେ ହୁଏ ?

ଶ୍ରୀଶ୍ରୀଠାକୁର – Life is imparted in the womb (ଜୀବନ ସଞ୍ଚାରିତ ହୁଏ ଗର୍ଭର ମଧ୍ୟରେହିଁ)। ତାପରେ ତାକୁ ସୁସ୍ଥ ସୁଶୃଙ୍ଖଳ କରିବା ପାଇଁ ଯେତେ ଚେଷ୍ଟାହିଁ କରୁଁ, ତାହା ହୁଏ mechanical (ଯାନ୍ତ୍ରିକ)। ଅବଶ୍ୟ ବିବାହ ଠିକ୍ ବିଧିମତ ଦେବାଟା ଯଦିଓ mechanical (ଯାନ୍ତ୍ରିକ), ତେବେବି ତାହା normally adjusted (ସ୍ୱାଭାବିକଭାବେହିଁ ନିୟନ୍ତ୍ରିତ)। ଦୀ.ର. ୫/୧୮.୮.୧୯୫୯

## ॥ ମା ଅଶୁଦ୍ଧ ହେଲେ କଣ ହୁଏ ॥

ମା ଯଦି ଅଶୁଦ୍ଧ ହୁଏ ତେବେ ସମସ୍ତ ଜାତିଟାହିଁ ବ୍ୟତିକ୍ରମଦୁଷ୍ଟ ହୋଇ ଯାଏ। ମସ୍ତିଷ୍କ ମଧ୍ୟ ବିକୃତ ହୋଇ ଯାଏ। ...ଝିଅମାନେ ବିବାହ ପୂର୍ବରୁ କାହାରିକୁ ଯଦି ସ୍ୱାମୀ

ବୋଲି ଭାବନ୍ତି, ତାହା ଖୁବ୍ ଖରାପ। ...ସେଥିପାଇଁ ତ ତୁମ୍ଭମାନଙ୍କର ପୂର୍ବପୁରୁଷମାନେ ସେଗୁଡ଼ିକୁ (ଝିଅମାନଙ୍କର ବାହାରେ ଘୁରାଫେରା କରିବା, କାଯ୍ୟକର୍ମ କରିବା) ଏକଦମ୍ ବାରଣ କରି ଯାଇଛନ୍ତି। ସେସବୁ ଆଗରୁ ନ ଥିଲା। ... ଦୁଇ ପ୍ରକାରର character (ଚରିତ୍ର) ଅଛି, beastly character ଆଉ developed charater (ପଶୁବତ୍ ଚରିତ୍ର ଆଉ ଉନ୍ନତ ଚରିତ୍ର)। Beastly character (ପଶୁବତ୍ ଚରିତ୍ର) ହେଲା ଖାଏ, ଦାଏ, ଚାଲେ, ଘୁରେ, sexually engaged-ମଧ୍ୟ (ଯୌନ ମିଳନ ମଧ୍ୟ) ହୁଏ। ଏହି ଯେପରି ଶିଆଳ, କୁକୁର, ବିଲେଇ ଇତ୍ୟାଦି। ଆଉ developed character (ଉନ୍ନତ ଚରିତ୍ର) ଯେଉଁମାନଙ୍କର ସେମାନେ ଚିନ୍ତା କରି ପାରନ୍ତି। ଠିକ୍ ଭୂଲ ଧରି ପାରନ୍ତି। ଦୀ.ର. ୫/୨୭.୯.୧୯୫୯

## ॥ ପ୍ରତିଲୋମରେ ଶୁକ୍ରକୀଟ କେମିତି ପ୍ରକୃତିସମ୍ପନ୍ନ ହୋଇ ଚାଲେ ॥

କଥା ପ୍ରସଙ୍ଗରେ ଶ୍ରୀଶ୍ରୀଠାକୁର ଜଣକୁ ଜିଜ୍ଞାସା କରିଲେ – ଆପଣଙ୍କର ଗୋତ୍ର କଣ ?

ଉତ୍ତର – କାଶ୍ୟପଗୋତ୍ର।

ଶ୍ରୀଶ୍ରୀଠାକୁର – ବଂଶରେ ପ୍ରତିଲୋମ ଯେପରି କେତେବେଳେ ମଧ୍ୟ ନ ହୁଏ। ବିବାହ କରିବାକୁ ହୁଏ ସଦୃଶ ଘରେ। ଆଉ, ଅନୁଲୋମ ଭଲ। Sperm (ଶୁକ୍ରକୀଟ) ସବୁସମୟ dominant (ପ୍ରାଧାନ୍ୟ ବିସ୍ତାର) କରେ। ସେ ova-ର (ଡ଼ିମ୍ବକୋଷର) ମଧ୍ୟରେ ଢୁକି ଯାଏ। କିନ୍ତୁ ପ୍ରତିଲୋମରେ back out କରେ(ପଶ୍ଚାତ୍‌ଗତିସମ୍ପନ୍ନ ହୁଏ)। ଜଣେ ଚମାରର ପୁଅ ସହିତ ଯଦି ମୋ ଝିଅର ବିବାହ ଦିଏ, ସେଠାରେ ମଧ୍ୟ ଏହି sperm (ଶୁକ୍ରକୀଟ) back out କରିବ (ପଶ୍ଚାତ୍‌ଗତିସମ୍ପନ୍ନ ହୋଇ ଚାଲିବ)।

ପ୍ରଶ୍ନ – କିନ୍ତୁ ଚମାର ଯଦି କର୍ମ ଦ୍ୱାରା ବ୍ରାହ୍ମଣ ହୁଏ ତାହେଲେ ତ ତା ସହିତ ମୋ ଝିଅର ବିବାହ ହୋଇ ପାରେ।

ଶ୍ରୀଶ୍ରୀଠାକୁର – ...କର୍ମର ଦାବୀ କରିଲେ କଣ କର୍ମୀ ହୁଏ ? ଭଗବାନ କଣ ଡ଼ବଲ ପ୍ରମୋଶନ କେତେବେଳେବି ଦିଅନ୍ତି ? ଭଗବାନ ହେଲେ ଭଜମାନ। ତା ମଧ୍ୟରେ ଅଛି ଅନୁରାଗ, ସେବା, ଅନୁଶୀଳନ, ଦାନ। କର୍ମକାର, ଚର୍ମକାର, ବ୍ରାହ୍ମଣ, ଯାହାହିଁ ହେଉ, ସେମାନେ ଉନ୍ନତ ହୁଅନ୍ତି ଆଚରଣ ଓ ଅନୁଶୀଳନର ଭିତର ଦେଇ। କିନ୍ତୁ 'ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁ'। କାରଣ, ବ୍ରାହ୍ମଣହିଁ ସମସ୍ତଙ୍କୁ train କରୁଥାନ୍ତି (ଶିକ୍ଷା ଦେଉଥାନ୍ତି)।

ପ୍ରଶ୍ନ – କିନ୍ତୁ କାର୍ଯ୍ୟ ନ କରିଲେ ତ କେହି ଉନ୍ନତି କରି ପାରିବେ ନାହିଁ।

ଶ୍ରୀଶ୍ରୀଠାକୁର – ସେଇଥିପାଇଁ ତ ମୁଁ କହେ, କର୍ମ କର। ଉଠି ଛିଡ଼ା ହୁଅ। କର୍ମକାର, ଚର୍ମକାର, ସମସ୍ତଙ୍କୁ ତୋଳି ଧର। ପ୍ରାଚୀନକାଳ ଠାରୁ ଆମ୍ଭମାନଙ୍କର ଯେଉଁ tradition (ଐତିହ୍ୟ)-ଗୁଡ଼ିକ ଚାଲି ଆସୁଛି, ଯାହା ଆମ୍ଭମାନଙ୍କ ମଧ୍ୟରେ instinct (ସଂସ୍କାର) ହୋଇ ଅଛି, ସେଗୁଡ଼ିକୁ ମାରିବା ମାନେହିଁ ଏତେଦିନ ଧରି କଲ୍ୟାଣକର ଯାହା ହୋଇ ଆସିଛି ସେଗୁଡ଼ିକୁ ଏକବାରେ ନିକେଶ କରି ପକେଇବା।

ଦୀ.ର. ୫/୨୪.୧୦.୧୯୫୯

## ॥ ବିବାହ ବ୍ୟାପାରରେ ପ୍ରଥମେ କଣ ଦେଖିବାକୁ ହୁଏ ॥

ଜଣେ କହିଲେ – ଆଜିକାଲିର ଯୁଗରେ ପୁଅଝିଅମାନେ ପରସ୍ପରର ଗୁଣରେ ମୁଗ୍ଧ ହୋଇ ବିବାହ କରୁଛନ୍ତି।

ଶ୍ରୀଶ୍ରୀଠାକୁର – ଓହୋ ହୋ ! କଣ କଥା ! ଗୁଣମୁଗ୍ଧ ନା sexual inclination (ଯୌନସଂସର୍ଗର ପ୍ରବଣତା) ! ପ୍ରଥମେ କୁହନ୍ତି... – ତୁମେ ସୁନ୍ଦର। ବହୁତ ସୁନ୍ଦର। ତୁମେ ବି.ଏସ.ସି ପଢୁଛ ତ ? ମା-ବାପାଙ୍କୁ ମାନିବା ଦରକାର ନାହିଁ। ମୁଁ ମଧ୍ୟ ମୋ ମା-ବାପାଙ୍କୁ ମାନେ ନାହିଁ। ତୁମେ ଆସ। ତୁମକୁ ମୁଁ ସାହାଯ୍ୟ କରିବି। ତାପରେ ଦୁଇଜଣ ଯାଇ କୋର୍ଟଶିପ୍ କରି ବିବାହ କରିଲେ। ତେତ୍ରିଶ ଦିନ ପରେ ଦେଖା ଗଲା, ସେହି ଝିଅଟି ଆଉ ଜଣକ ସହିତ ପ୍ରେମ କରୁଛି। ସେତେବେଳେ ଗାଲରେ ହାତ ଦେଇ ବସି ଭାବେ, ଓ ମା ! ଏହା କଣ ହେଲା ! ସେଥିପାଇଁ ବିବାହ ବ୍ୟାପାରରେ ମୁଁ କହେ, ପ୍ରଥମେ ଦେଖିବାକୁ ହୁଏ purity of clan, purity of culture (ବଂଶର ପବିତ୍ରତା, କୃଷ୍ଟିର ବିଶୁଦ୍ଧତା)। ଆଉ ଏହାକୁ ଠିକ୍ ରଖିବା ପାଇଁ ନିଜେ ମଧ୍ୟ ଯଜନ-ଯାଜନ-ପରାୟଣ ହୋଇ ଚାଲିବାକୁ ହୁଏ, ଅପରକୁ ମଧ୍ୟ କରି ତୋଳିବାକୁ ହୁଏ।

ଦୀ.ର. ୫/୨୪.୧୦.୧୯୫୯

## ॥ ବିବାହ–ପ୍ରସଙ୍ଗରେ ନାନା ପ୍ରଶ୍ନ ॥

ପ୍ରଶ୍ନ – ଆଚ୍ଛା, ଏହି ଯେଉଁ ବହୁବିବାହ ବନ୍ଦ ହୋଇ ଯାଇଛି – ଏହା କଣ ଠିକ୍ ହୋଇଛି ?

ଶ୍ରୀଶ୍ରୀଠାକୁର – ଖୁବ୍ ଖରାପ ହୋଇଛି। ପରିଣାମ ଯେ କଣ ହେବ ତାହା କୁହା ଯାଏନା।

ପ୍ରଶ୍ନ – କଣ ଖରାପ ହୋଇଛି ?

ଶ୍ରୀଶ୍ରୀଠାକୁର – ଏବେ ଦୁଇଟି ବିବାହ କରିଲେ ଦୋଷ, କିନ୍ତୁ concubine (ଉପପତ୍ନୀ) ରଖିଲେ ଦୋଷ ନାହିଁ। Concubine (ଉପପତ୍ନୀ) ରହି ପାରେ। ଛୁଆପିଲାମାନେ ମଧ୍ୟ ତାର ପ୍ରସାଦ ପାଇ ପାରନ୍ତି।

ପ୍ରଶ୍ନ – କିନ୍ତୁ ଆଗରୁ ଯେ ଦଶଟା କରି ବିବାହ କରୁଥାନ୍ତି –।

ଶ୍ରୀଶ୍ରୀଠାକୁର – ସେ କେତେବେଳେ ? ମୁସଲମାନ ଆକ୍ରମଣର ପରେ। ସେମାନେ ଆସି ଯେତେବେଳେ ତୁମ୍ଭମାନଙ୍କର ଝିଅ-ସ୍ତ୍ରୀ-ମାନଙ୍କୁ ନେଇ ଯିବାକୁ ଲାଗିଲେ, ସେତେବେଳେ ଉପାୟ ନ ଦେଖି ବହୁବିବାହ, ଯେପରି ସେପରି ବିବାହ, ଏହି ସବୁ ହେବାକୁ ଲାଗିଲା।

ପ୍ରଶ୍ନ – ବହୁବିବାହ ପୁରୁଷର ହୋଇପାରେ, ସ୍ତ୍ରୀ-ଲୋକର କଣ ପାଇଁ ହେବ ନାହିଁ ?

ଶ୍ରୀଶ୍ରୀଠାକୁର – ସ୍ତ୍ରୀର ଅଧିକାର କଣ ପୁରୁଷର ଅଛି ? ପୁରୁଷର ଅଧିକାର କଣ ସ୍ତ୍ରୀର ଅଛି ? ପୁରୁଷର ଯେତେ ପାଣ୍ଡିତ୍ୟହିଁ ଥାଉ, ଛୁଆକୁ ପେଟରେ ଧରିବାର କ୍ଷମତା କିନ୍ତୁ ନାହିଁ। ତା ଛଡ଼ା ଆହୁରି କଥା ଅଛି। ତା ଫଳରେ ଜନ୍ମହିଁ ଖରାପ ହୋଇଯିବ।

ପ୍ରଶ୍ନ – ବିଧବା-ବିବାହ କଣ ଭଲ ?

ଶ୍ରୀଶ୍ରୀଠାକୁର – ତାହା ଏକଦମ୍ ଛୋଟ ସମୟରେ କୌଣସି ଜ୍ଞାନ ଫୁଟିବା ପୂର୍ବରୁ ଯଦି କୌଣସି ଝିଅର ବିବାହ ହୁଏ, ଏବଂ ତାପରେହିଁ ତାର ସ୍ୱାମୀ ମରିଯାଏ ଅଥବା ଯେଉଁଠାରେ ବିବାହିଁ ଅସିଦ୍ଧ, ସେହି ସବୁ ସ୍ଥାନରେ ଚଳି ପାରେ।

ପ୍ରଶ୍ନ – ଡ଼ାଇଭୋର୍ସ କଣ ଆପଣ ସମର୍ଥନ କରନ୍ତି ?

ଶ୍ରୀଶ୍ରୀଠାକୁର – (ଜୋର ସହିତ ମୁଣ୍ଡ ହଲେଇ) ନାଃ। ବରଂ incompatible marriage ମଧ୍ୟ (ଅସଦୃଶ ବିବାହ ମଧ୍ୟ) ଭଲ କିନ୍ତୁ ଡ଼ାଇଭୋର୍ସ ଭଲ ନୁହେଁ। Incompatible marriage-ରେ (ଅସଦୃଶ ବିବାହରେ) ଏକ ସଙ୍ଗରେ ରହୁ ରହୁ adapability (ମାନି ନେବାର କ୍ଷମତା) ଆସେ।

ପ୍ରଶ୍ନ – ଗୋଟିଏ ବିବାହରେ compatibility (ସଦୃଶତ୍ୱ) କିପରି ଠିକ୍ କରାଯାଏ ?

ଶ୍ରୀଶ୍ରୀଠାକୁର – ସେହି କ୍ଷେତ୍ରରେ ପୁଅ ଓ ଝିଅର ଆୟୁ, ବଂଶ, କୃଷ୍ଟି ଏହିସବୁ ଦେଖିବା ଦରକାର।

ପ୍ରଶ୍ନ – କୋଷ୍ଠୀ (ଜାତକ) ଦେଖିବା ଆପଣ ବିଶ୍ୱାସ କରନ୍ତି ?

ଶ୍ରୀଶ୍ରୀଠାକୁର – ତାହା କେତେବେଳେ ମିଶେ, କେତେବେଳେ ମଶେ ନାହିଁ।

ପ୍ରଶ୍ନ – ଏବେ ତ ପଣପ୍ରଥା ବିରାଟ ଆକାର ଧାରଣ କରିଛି।

ଶ୍ରୀଶ୍ରୀଠାକୁର – ସେକଥା ଏବେ କହି କଣ ହେବ ? ପୂର୍ବରୁ ନ କରିଥିଲେ ହୋଇଥାନ୍ତା। ଦୀ.ର. ୫/୨୫.୧୦.୧୯୫୯

## ॥ ବିଦେଶରେ ମଧ୍ୟ ବିବାହର ବିଧିନିଷେଧ ଅଛି କି ନାହିଁ॥

ପ୍ରଶ୍ନ – ଅନ୍ୟଦେଶରେ ତ ବିବାହରେ ଏତେ ବିଧିନିଷେଧ ନାହିଁ।

ଶ୍ରୀଶ୍ରୀଠାକୁର – ସେ ଦେଶରେ ମଧ୍ୟ ଅଛି। ଗଳ୍ପ ଶୁଣିଛି, ବିଲାତରେ କୂଳୀନ ଅଛନ୍ତି, ମଧ୍ୟମ ଅଛନ୍ତି, ନୀଚ ଘରର ଲୋକ ମଧ୍ୟ ଅଛନ୍ତି। ସେଠାରେ କୂଳୀନର ଝିଅ ନୀଚ ଘରର ପୁଅକୁ ବିବାହ କରେ ନାହିଁ। ତାହା ପ୍ରତିଲୋମ। ପ୍ରତିଲୋମ ତୁମମାନଙ୍କର ମଧ୍ୟ ନିଷିଦ୍ଧ ଥିଲା। କିନ୍ତୁ ଅନୁଲୋମ ବିବାହ ଚାଲୁ ଥିଲା। ସେଥିପାଇଁ ପୂର୍ବରୁ ତୁମ୍ଭେମାନେ ଶୂଦ୍ରାଣୀ ବିବାହ କରିଛ। ଏହି ଯେତେ କଳା ବ୍ରାହ୍ମଣ ଦେଖ, କଳା କ୍ଷତ୍ରିୟ ଦେଖ, ଏମାନଙ୍କ ବଂଶରେ କିନ୍ତୁ ଏହି ଶୂଦ୍ରାଣୀ ବିବାହ ଅଛି।

ପ୍ରଶ୍ନ – ଏବେତ ବହୁତ ଓଲଟା-ପାଲଟା ଏବଂ ଅଶାସ୍ତ୍ରୀୟ ବିବାହ ହେଉଛି। କେହି ତ ବାଘ ପରି ଲମ୍ଫ ଦେଇ ପ୍ରତିବାଦ କରିବା ପାଇଁ ଆଗେଇ ଆସୁ ନାହିଁ।

ଶ୍ରୀଶ୍ରୀଠାକୁର – ତୁମ୍ଭମାନଙ୍କ ଭିତରେ ଏବେବି ହୁଏତ ସେହିପ୍ରକାର ବାଘ ଲୁଚି ଅଛି। ଅଛି, ତା ମାନେ, ତୁମେ ଏପର୍ଯ୍ୟନ୍ତ ମଧ୍ୟ ତୁମର ପିତୃପୁରୁଷକୁ ଅବଜ୍ଞା କରି ପାର ନାହିଁ।

ପ୍ରଶ୍ନ – ଅନେକେ ତ ସବୁ ବୁଝି ମଧ୍ୟ ଚୁପ୍‌କରି ଥାଆନ୍ତି।

ଶ୍ରୀଶ୍ରୀଠାକୁର–ତାହେଲେ ଦୁଇଟି ପଥ ଅଛି। ହୁଏତ ବାଘ ପିଞ୍ଜୁରା ଭାଙ୍ଗି ବାହାରିବ, ନହେଲେ, ସବୁ ବିଲୟ ହୋଇଯିବ। ଆଉ, ବାଘ ପିଞ୍ଜୁରୀ ଭାଙ୍ଗି ବାହାରିଲେ କଳ୍କି ଅବତାର ହୁଏ ନାଁ କଣ ହୁଏ ତାହା କହିବା ମୁଶକିଲ। ଦୀ.ର. ୫/୧.୧୧.୧୯୫୯

## ॥ ପ୍ରତିଲୋମ କେଉଁମାନେ କରନ୍ତି॥

ପ୍ରତିଲୋମ କେଉଁମାନେ କରନ୍ତି ? – ଯେଉଁମାନଙ୍କ ଭିତରେ inferiority ingrained (ହୀନମନ୍ୟତା ଦୃଢ଼ବଦ୍ଧ) ହୋଇ ଅଛି। ଏହା ଫଳରେ ମୁଁ ତ ମରି ଗଲିହିଁ। ତାଛଡ଼ା ମୋର country ଓ people-କୁ (ଦେଶ ଓ ମଣିଷଙ୍କୁ) ଏକେବାରେ

murder (ଖତମ) କରି ଦେଲି। ଜଣେ ଚମାର ଯଦି ତୁମ୍ଭର ଝିଅକୁ ବିବାହ କରେ, ସେ ତତ୍କ୍ଷଣାତ୍ succumb କରି (ଶେଷ ହୋଇ) ଗଲା। ହରିଜନମାନଙ୍କର ବ୍ରାହ୍ମଣର ଝିଅ ନେଇଯିବାରେ ଯେ କି ସର୍ବନାଶ କରା ହୋଇଛି ତାହା ଆଉ କହିବାର ନାହିଁ। ବିପ୍ର, କ୍ଷତ୍ରିୟ, ବୈଶ୍ୟ, ଏହି ତିନୋଟି stock-କୁ (ମୌଳିକ ଧାରାକୁ) ଯଦି ମାରି ପକାଅ ତାହେଲେ କଣ ହେବ ? ଶୂଦ୍ରହିଁ ତ ନଷ୍ଟ ହୋଇ ଯିବେ। ଏହି ସବୁ ଠିକ୍‌ଭାବରେ ଦେଖିବା ଓ ଠିକ୍ ରଖିବା ପାଇଁ ପ୍ରତ୍ୟେକ constituency-ରେ (ନିର୍ବାଚନକ୍ଷେତ୍ରରେ) ପାଞ୍ଚଜଣ non-official (ବେସରକାରୀ) ମଣିଷ ରଖିବା ଦରକାର।

ଦୀ.ର. ୫/୨.୧୧.୧୯୫୯

## ॥ ବ୍ରାହ୍ମଣ ଯଦି ଶୂଦ୍ରର ଝିଅ ବିବାହ କରେ ତାର ସନ୍ତାନ କିପରି ବ୍ରାହ୍ମଣ ହେବ ॥

କୌଣସି ବ୍ରାହ୍ମଣ ଯଦି ଶୂଦ୍ରର ଝିଅ ବିବାହ କରେ ତାହେଲେ ତାର ଝିଅକୁ ବ୍ରାହ୍ମଣର ଘରେ ଦେଇ, ପୁଣି ତାର ଝିଅକୁ ବ୍ରାହ୍ମଣର ଘରେ, ଏହି ଭାବରେ ସାତ ପୁରୁଷ ଧରି back cross କରିବା ପରେ ସେହି ସପ୍ତମ ପୁରୁଷର ସନ୍ତାନ ବିପ୍ରତ୍ୱରେ ଉପନୀତ ହୋଇ ପାରେ। ଦୀ.ର. ୫/୨.୧୧.୧୯୫୯

## ॥ ଏହିପରି ଚାଲିବାକୁ ଲାଗିଲେ କଣ ଅବସ୍ଥା ହେବ ॥

ମଣିଷର home and hearth (ଘରସଂସାର) ଯଦି ଠିକ୍ ନ ରହେ ତାହେଲେ ମଣିଷ dissatisfied (ଅସନ୍ତୁଷ୍ଟ) ରହିବହିଁ। ଯେଉଁ ସ୍ତ୍ରୀ ନେଇ ତୁମେ ବହୁଦିନ ଘର କରିଛ, ଏବେ ହୁଏତ ତାକୁ ପାଞ୍ଚ ମିନିଟ୍‌ରେ ନୋଟିସ ଦେଇ ଡାଇଭୋର୍ସ କରି ଦେଇ ପାର। ଏହିପରି ଚାଲିବାକୁ ଲାଗିଲେ ତୁମର traditional trail (ଐତିହ୍ୟଗତ ଧାରା) ଭାଙ୍ଗି ଯିବ। ଆଉ, ତୁମେ ହୋଇଯିବ cocks and hens-ର (ମୁରଗା-ମୁରଗୀ) ପରି। ଦୀ.ର. ୫/୩.୧୧.୧୯୫୯

## ॥ କାହାରି ଡ଼ାଇଭର୍ସ କରା ସ୍ତ୍ରୀ ଅନ୍ୟକୁ ବିବାହ କରିଲେ କଣ ହୁଏ ॥

ଶ୍ରୀଶ୍ରୀଠାକୁର – ଧର, ତୁମେ ତୁମର ସ୍ତ୍ରୀକୁ ଡ଼ାଇଭୋର୍ସ କରିଲ। ତାପରେ ଯେଉଁ ମୁହୂର୍ତ୍ତରେ ସିଏ ଯାଇ ଅନ୍ୟକୁ ବିବାହ କରିଲା, ସେହି ମୁହୂର୍ତ୍ତରେହିଁ ସିଏ ନଷ୍ଟ ହୋଇ ଗଲା।

ପ୍ରଶ୍ନ – କିଭାବରେ ନଷ୍ଟ ହୁଏ ?

ଶ୍ରୀଶ୍ରୀଠାକୁର – ଧର, ତୁମର ସ୍ତ୍ରୀକୁ ତୁମେ ଡ଼ାଇଭୋର୍ସ କରିଲ। ସେ ତୁମ ଠାରୁ ଗୋଟିଏ ରକମ ନେଇ ଯାଇଛି। ତାପରେ ଆଉ ଏକଜଣକୁ ବିବାହ କରିବାରୁ ସେ ଆଉ ତୁମର sperm carry (ଶୁକ୍ରାଣୁ ବହନ) କରି ପାରିଲା ନାହିଁ। ତାର ଏକମୁଖୀ ଭାବ ନଷ୍ଟ ହୋଇ ଗଲା। ଯାହା ପାଖକୁ ଗଲା ତାର କାମ ସାରିଲା। ସେଠାରୁ ହୁଏତ ଅନ୍ୟ ଏକ ସ୍ଥାନକୁ ଯାଇ ତାର କାମ ସାରିଲା। ତାର ପୁଅବି ପୁଣି ଗୋଟିଏ ସ୍ତ୍ରୀଲୋକକୁ ଖୋଜି ନେଇ ତାର କାମ ସାରିବ। ଏହି ଭାବରେ ସେ existence-ର (ସତ୍ତାର) ପାଖକୁ ମଧ୍ୟ ଯାଇ ପାରିଲା ନାହିଁ। ସେ ଅସ-କୁ (ଅସ୍ତିତ୍ୱକୁ) ନିକେଶ କରି ଦେଲା। ତେଣୁ, ଅସତୀ ହୋଇଗଲା। ତୁମ୍ଭମାନଙ୍କ କଥାରେ ସେ ଅସତୀ। ଏଥିରେ ତୁମେ ସର୍ବନାଶ କରିଲ କେବଳ ନିଜର ନୁହେଁ, society-ର ମଧ୍ୟ (ସମାଜର ମଧ୍ୟ)।

ଦୀ.ର. ୫/୫.୧୨.୧୯୫୯

## ।। ଭଲ କାର୍ଯ୍ୟ ଏବେଠୁହିଁ ଆରମ୍ଭ କରି ଦେବାକୁ ହୁଏ କଣ ପାଇଁ ।।

ଶ୍ରୀଶ୍ରୀଠାକୁର ମୁଚି ସମ୍ପ୍ରଦାୟର ଜଣକୁ ଜିଜ୍ଞାସା କରିଲେ – ଏହି ତୁମ୍ଭମାନଙ୍କ ମଧ୍ୟରେ ଡାଇଭୋର୍ସ ଅଛି ନା କଣ ?

ଉତ୍ତର – ଅଛି।

ଶ୍ରୀଶ୍ରୀଠାକୁର – ଉଠାଇ ଦେ, ଏକେବାରେ ଉଠାଇ ଦେ। ଭଲ ଗଛ ମଧ୍ୟରେ ଯଦି ଗୋଟିଏ ଖରାପ ଗଛ ରଖ ତାହେଲେ କଣ ହେବ ? ଭଲ ଗଛଟା ମଧ୍ୟ ନଷ୍ଟ ହୋଇ ଯିବ। ପୁରୁଷ ଲୋକ ଛିଡ଼ା ହୁଅନ୍ତି ସ୍ତ୍ରୀଲୋକଙ୍କ ଉପରେ। ସେଥିପାଇଁ ସ୍ତ୍ରୀ ଲୋକଙ୍କର ସବୁ ସମୟ ଠିକ୍ ରହିବା ଦରକାର। ବର୍ତ୍ତମାନ ଯେଉଁ ପରି ହୋଇଛି ସେଥିରେ ସମସ୍ତେ ସ୍ତ୍ରୀଲୋକମାନଙ୍କୁ capture (ଦଖଲ) କରିବାକୁ ଚାହାଁନ୍ତି। ସମସ୍ତଙ୍କୁ ଚାକିରୀ କରାଇବାକୁ ଚାହାନ୍ତି। ତୁମ୍ଭେମାନେ ତାହା କରିବା ପାଇଁ ଦେବ କଣ ପାଇଁ ? ତୁମେମାନେ କଣ ପାଗଳ ? ମଣିଷ ତ ! ଆଉ ଦେଖ, ସମାନ ଘରେ ବିବାହ କରିବାକୁ ହୁଏ। ସମାନ ଘରେ ବିବାହ ନ କରିଲେ ଟ୍ରାଡ଼ିଶନ ନଷ୍ଟ ହୋଇ ଯାଏ। ଯାହାର ଫଳ ଡ଼େରିରେ ମିଳେ, ତାର ବୀଜ ଅନେକ ଆଗରୁ ବୁଣିବାକୁ ହୁଏ। ବୀଜ ଯଦି ଡେରିରେ ବୁଣ ତାହେଲେ ଫଳ ପାଇବା ପାଇଁ ଡେରି ହୋଇ ଯିବ। କ୍ଷତି ହେବ ତୁମ୍ଭମାନଙ୍କର। ତେଣୁ ଭଲ କାର୍ଯ୍ୟ ଏବେହିଁ ଆରମ୍ଭ କରି ଦେବାକୁ ହୁଏ। ଦୀ.ର. ୫/୫.୧୨.୧୯୫୯

## ॥ ତୁମ୍ଭମାନଙ୍କର ବିଚାର କିପରି ହେବା ଉଚିତ ॥

Class (ଶ୍ରେଣୀ) କଣ କେବଳ ମଣିଷଙ୍କ ମଧ୍ୟରେ ? ପ୍ରକୃତିରେହିଁ class (ଶ୍ରେଣୀ) ରହି ଯାଇଛି । ତୁମେ ଭାଙ୍ଗିବ କିପରି । ଏହି ଯେଉଁ ଡାମରା କାଉ ଆଉ ପାତିକାଉ ଅଛି, ଏମାନଙ୍କର କେତେବେଳେ ମଧ୍ୟ ବିବାହ ହେବାର ଦେଖିଛ ? ବିବାହ ହୁଏ ନାହିଁ । ପୁଣି ଶାଳିକମାନଙ୍କ ମଧ୍ୟରେ ଅଛି ଗାଂ-ଶାଳିକ, ଭାଟ-ଶାଳିକ, ଝୁଁଟିବାନ୍ଧା-ଶାଳିକ । କ୍ଷେତରେ ବସି ଏମାନେ ପ୍ରାୟ ଏକ ପ୍ରକାରର ଜିନିଷ ଖାଆନ୍ତି ଯିଏ ଯାହାର ପ୍ରକାର ଅନୁସାରେ । ଏମାନଙ୍କ ମଧ୍ୟରେ କେତେବେଳେ ମଧ୍ୟ match (ମିଳନ) ହୁଏ ନାହିଁ । ଫିଙ୍ଗେ ପକ୍ଷୀ ଆଉ ଦୋୟେଲ ପକ୍ଷୀର ମଧ୍ୟରେ କଣ କେତେବେଳେ ମଧ୍ୟ match (ମିଳନ) ହୁଏ ? ଏହି ଯେ ବଗ କେତେ ରକମର ଅଛି – ହଳଦିଆ ବଗ, କଳା ବଗ, ଧଳା ବଗ । ସମସ୍ତେହିଁ ମାଛ ଖାଆନ୍ତି । କିନ୍ତୁ ଏମାନଙ୍କର peculiarity (ବିଶେଷତ୍ୱ) ହେଲା, ଏହି ଧଳା-କଳା ବଗମାନଙ୍କ ମଧ୍ୟରେ କେତେବେଳେ ମଧ୍ୟ match (ମିଳନ) ହୁଏ ନାହିଁ । ସମସ୍ତେ ଯିଏ ଯାହାର ଅନୁସାରେ ଅଲଗା । ସେମାନେ କଣ ମନୁଷ୍ୟ ? ସେମାନେ ତ ତୁମ୍ଭମାନଙ୍କ ପରି philosophy (ଦର୍ଶନ ଶାସ୍ତ୍ର) ପଢ଼ି ନାହାଁନ୍ତି । ତଥାପି କେମିତି ନିଜ ନିଜର ବୈଶିଷ୍ଟ୍ୟ ଠିକ୍ ରଖନ୍ତି । ତୁମ୍ଭେମାନେ ପରମପିତାଙ୍କର ସନ୍ତାନ । ତୁମ୍ଭମାନଙ୍କର ବିଚାର ଆହୁରି ମଧ୍ୟ accurate (ନିଖୁଁତ) ହେବା ଉଚିତ । ଆଜିକାଲିକାର ଏହି ସବୁ ବିଦ୍ୱାନ ମଣିଷ କଣ କୁହନ୍ତି, କଣ କରନ୍ତି, ବୁଝନ୍ତିବି ନାହିଁ । ଦେଖ, ସେମାନେ ତୁମକୁ ଭୁଟେଇ ଯେମିତି ସେମାନଙ୍କ ପରି କରି ପକେଇ ନ ପାରନ୍ତି । ସେମାନେ ଏସବୁ ବୁଝନ୍ତି ନାହିଁ, ବୁଝିବାକୁ ମଧ୍ୟ ଚାହାନ୍ତି ନାହିଁ ।

ଦୀ.ର. ୫/୫.୧୨.୧୯୫୯

## ॥ କ୍ଷତ୍ରିୟ ଯଦି କୂଳୀନର ଝିଅ ବିବାହ କରେ କଣ ହେବ ॥

ଶ୍ରୀଶ୍ରୀଠାକୁର – ମୁଁ ଦେଖିଛି, କୌଣସି କ୍ଷତ୍ରିୟ ଯଦି କୂଳୀନର ଝିଅ ବିବାହ କରେ, କେତେଟା ମାସ ହୁଏତ ଠିକ୍ ରହେ । ତାପରେହିଁ ଭାଙ୍ଗି ପଡ଼ିବାକୁ ଲାଗେ ।

କେଷ୍ଟଦା – ମୌଳିକ କାୟସ୍ଥ ମଧ୍ୟ ଯଦି କୂଳୀନର ଝିଅ ବିବାହ କରେ ତାହେଲେ ଯାଇଛି ।

ଶ୍ରୀଶ୍ରୀଠାକୁର – ଏହା କରି କରି କାୟସ୍ଥ ମାନେ ଏକଦମ୍ ଯାଇଛନ୍ତି । ମୁଁ ଭାବେ, କାୟସ୍ଥମାନଙ୍କ ମଧ୍ୟରେ ଏହା ଆଣିଲା କିଏ ?

କେଷ୍ଟଦା – ପ୍ରତାପାଦିତ୍ୟ। ସେ ନିଜେ କୂଳୀନ ନଥିଲେ। କିନ୍ତୁ ପଣ୍ଡିତମାନଙ୍କୁ ଡାକି କନ୍ୟାଗତ କୂଳ ପ୍ରତିଷ୍ଠା କରିଲେ। ସେତେବେଳ ଠାରୁ ସବୁ କୂଳୀନଙ୍କ ଝିଅ ନେଇ ଜାତିରେ ଉଠିବାକୁ ଆରମ୍ଭ କରିଲେ। ଶିବାଜୀ ମଧ୍ୟ ତ ରାଜା ହୋଇ ଏହିପ୍ରକାର ହୋଇଥିଲେ। ବ୍ରାହ୍ମଣମାନେ ତାଙ୍କୁ କ୍ଷତ୍ରିୟ ବନେଇ ଥିଲେ।

ଶ୍ରୀଶ୍ରୀଠାକୁର – ତାହାହିଁ ହେବ। କାରଣ, ଶିବାଜୀର ପୁଅ ଦିଗକୁ ଦେଖିଲେ ଆଉ ଶିବାଜୀଙ୍କୁ ଧରା ଯାଏ ନାହିଁ। ଦୀ.ର. ୫/୧୭.୧୨.୧୯୫୯

## ॥ ବିବାହ ଅନୁକ୍ରମଦୁଷ୍ଟ ହୁଏ କେତେବେଳେ ॥ ୩୧୯

ଶ୍ରୀଶ୍ରୀଠାକୁର କେଷ୍ଟଦା (ଭଟ୍ଟାଚାର୍ଯ୍ୟ)-ଙ୍କୁ ଜିଜ୍ଞାସା କରିଲେ – ଅନୁକ୍ରମଦୁଷ୍ଟ କଥାଟି ହୁଏ ନାହିଁ?

କେଷ୍ଟଦା – ଅନୁକ୍ରମଦୁଷ୍ଟ ମାନେ ?

ଶ୍ରୀଶ୍ରୀଠାକୁର – ଯେମିତି ଆପଣମାନେ ହୁଏତ ଦାକ୍ଷିଣାତ୍ୟ ବୈଦିକ। ଆପଣଙ୍କ ଝିଅ ଯଦି ପାଶ୍ଚାତ୍ୟ ବୈଦିକକୁ ଦିଅନ୍ତି ତାହେଲେ ସେଇଟି ହେଲା ଅନୁକ୍ରମଦୁଷ୍ଟ।

ଦୀ.ର. ୫/୧୭.୧୨.୧୯୫୯

## ॥ ବିବାହରେ ବିକୃତି କିପରି ଭାବରେ ସଞ୍ଚାରିତ ହୁଏ ॥

ଅନ୍ତ୍ୟଷ୍ଠ ସହିତ କାୟସ୍ଥର ବିବାହ ଭଲ ନୁହେଁ। କିନ୍ତୁ ଏଠାରେ (ବିହାରରେ) ବଡ଼ ବଡ଼ ଲୋକମାନେ ଏହା ଚଳାଉଛନ୍ତି। ଅବଶ୍ୟ ପ୍ରକୃତ ଅର୍ଥରେ ସେମାନେ ବଡ଼ ନୁହଁନ୍ତି। ବହୁ ଲୋକଙ୍କୁ ହୁଏତ control (ପରିଚାଳନା) କରେ, ଏହି ଅର୍ଥରେ କହୁଛି। Tradition (ଐତିହ୍ୟ) ସେମାନେ ମାନନ୍ତି ନାହିଁ। ସେମାନଙ୍କର contact-ରେ (ସଂସ୍ପର୍ଶରେ) ଯେଉଁମାନେ ଆସନ୍ତି, ସେମାନଙ୍କ ମଧ୍ୟରେବି ଏହି ସବୁ ଦୋଷ ସଞ୍ଚାରିତ ହୁଏ।

ପ୍ରଶ୍ନ – ଯଦି କେହି ଭୁଲ ବିବାହ କରି ପକାଏ ?

ଶ୍ରୀଶ୍ରୀଠାକୁର – ତୁମ୍ଭମାନଙ୍କର ତ ସବୁହିଁ ଜଣା ଅଛି। How do we come and evolve (କିପରି ଭାବରେ ଆମେ ଜନ୍ମ ଓ ବଢ଼ି ଉଠୁ)। ସବୁ ସମୟ ମନେ ରଖିବ, sperm dominate (ଶୁକ୍ରକୀଟ ପ୍ରାଧାନ୍ୟ ବିସ୍ତାର) କରେ। ଆଉ ova ହେଲା recessive (ଡ଼ିମ୍ବକୋଷ ହେଲା ଗୌଣ)।

ପ୍ରଶ୍ନ – ଆଜିକାଲି scientific explanation-ମଧ୍ୟ (ବିଜ୍ଞାନସମ୍ମତ ବ୍ୟାଖ୍ୟା ମଧ୍ୟ) ଅନେକେ ଶୁଣିବାକୁ ଚାହାନ୍ତି ନାହିଁ।

ଶ୍ରୀଶ୍ରୀଠାକୁର – ଯଦି କେହି ଚାହେଁ ତାହେଲେ ତାହା ତ ତୁମ୍ଭମାନଙ୍କର ହାତରେହିଁ ଅଛି। ଆଉ ଯେଉଁମାନେ ଶୁଣିବେ ନାହିଁ, they will feel consequence (ସେମାନେ ଫଳ ଭୋଗିବେ)। ଆଜି ତୁମର ବାପା ଯଦି ଜଣେ ଶ୍ରୀବାସ୍ତବକୁ ବିବାହ କରିଥାନ୍ତେ, ତାହେଲେ ତୁମେ ଆଉ ଏମିତି ହୋଇ ପାରି ନଥାନ୍ତ। କେତେ ଲୋଭ ରହିଥାନ୍ତା, କେତେ ଲୋଲୁପତା ରହିଥାନ୍ତା। ଏବେ କିପରି ତୁମର ବାପାଙ୍କୁ follow (ଅନୁସରଣ) କରୁଛ। ତୁମକୁ ଦେଖି ଆଉ ଯେଉଁମାନେ ଏସବୁ ମାନନ୍ତି ନାହିଁ ସେମାନଙ୍କ ମଧ୍ୟରୁ ଜଣକୁ ଠୋକର ଦେଇ ଦେଖ, ତାହେଲେହିଁ ବୁଝି ପାରିବ। ତୁମ୍ଭମାନଙ୍କର ଝିଅ ହେଲେ ମୁଁ ଭୟ କରେ। ଏଇତ ଲେଖା ପଢ଼ା ଶିଖାଇବ। ଶେଷ ସମୟରେ ହୁଏତ କହିବ ମୁଁ ଅମୁକ ସିଂକୁ ବିବାହ କରିବି। ଏହାର ଦାମ କଣ ? ଆଜି ଜଣକ ସହିତ ଭାବ ହେଲା, କାଲି ତାକୁ ଉଡ଼େଇ ଦେଲା, ଏହାହିଁ ତ ହୁଏ। ଯଦି traditional trail-ଗୁଡ଼ିକ (ଐତିହ୍ୟଗତ ଧାରାଗୁଡ଼ିକ) ଆଜି ଠିକ୍ ରହିଥାନ୍ତା, religious (ଧର୍ମୀୟ) ପ୍ରତିଷ୍ଠାନଗୁଡ଼ିକ ଠିକ୍ ଥାଆନ୍ତା, ତାହେଲେ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଜଣେ ବୌଦ୍ଧ, ଆଉ ଜଣେ ମୁସଲମାନ କିମ୍ବା ଖ୍ରୀଷ୍ଟିୟାନ ହୋଇଥିଲେ ମଧ୍ୟ କ୍ଷତି ହୋଇ ନ ଥାନ୍ତା।

ଦୀ.ର. ୫/୧୯.୧୨.୧୯୫୯

## ॥ ପାତ୍ରର ଜାତକ-କୋଷ୍ଠୀ ନ ରହିଲେ କଣ କରିବ ॥

ପ୍ରଶ୍ନ – ପାତ୍ରପକ୍ଷ ଆଧୁନିକଭାବାପନ୍ନ। ସେମାନେ ଜାତକ-କୋଷ୍ଠୀ ରଖନ୍ତି ନାହିଁ କିମ୍ବା ମାନିବାକୁ ମଧ୍ୟ ଚାହାନ୍ତି ନାହିଁ। ଝିଅର ବିବାହ ଠିକ୍ କରିବା ପାଇଁ ଏ କ୍ଷେତ୍ରରେ କଣ କରିବା ଉଚିତ ?

ଶ୍ରୀଶ୍ରୀଠାକୁର – ଏ-ସବୁ ଜାଗାରେ ଝିଅର କୋଷ୍ଠୀ ଦେଖିହିଁ ସ୍ଥିର କରିବାକୁ ହୁଏ, ସେ କୋଷ୍ଠୀ କେମିତି, ବୈଧବ୍ୟ-ଯୋଗ କିମ୍ବା ଅନ୍ୟ କୌଣସି ଖରାପ କିଛି ଅଛି କି ନାହିଁ, ଇତ୍ୟାଦି। ଦୀ.ର. ୬/୬.୧.୧୯୬୦

## ॥ ଅନୁଲୋମ ଅସବର୍ଣ୍ଣ-ବିବାହ ଏବେ ବନ୍ଦ ରହିବ କି ନାହିଁ ॥୩୨୦

ପ୍ରଶ୍ନ – ବର୍ତ୍ତମାନ୍ ଆଇନରେ ତ ଦୁଇଟି ବିବାହ ନିଷିଦ୍ଧ। ଅଥଚ ଅନୁଲୋମ ଅସବର୍ଣ୍ଣ-ବିବାହ ପ୍ରବର୍ତ୍ତନ କରିବାକୁ ହେଲେ ଏକାଧିକ ବିବାହର ପ୍ରଶ୍ନ ଆସିହିଁ ଯାଉଛି। ଏ କ୍ଷେତ୍ରରେ କଣ କରାଯିବ ?

ଶ୍ରୀଶ୍ରୀଠାକୁର – ମୁଁ ଏହା କରେଇ ଦେଇ ଯାଇଥାନ୍ତି ଯଦି ମୋ ପଛରେ ସେମିତି ଜୋର ରହିଥାନ୍ତା। ଏବେ ହେଉଛି ଜେଲ ଖଟିବା ପାଇଁ ଯିଏ ରାଜି ସେ କରି ପାରେ।

ପ୍ରଶ୍ନ – ତାହେଲେ ଏହା କଣ ଏବେ stop (ବନ୍ଦ) ରହିବ ?

ଶ୍ରୀଶ୍ରୀଠାକୁର – Stop (ବନ୍ଦ) ଆମେ କରୁନାହୁଁ। Stop (ବନ୍ଦ) କରୁଛି ଆଇନ। ଆମେ stop (ବନ୍ଦ) କରୁଛୁ ଏକଥା ଠିକ୍ ନୁହେଁ।

ଦୀ.ର. ୬/୩୦.୧.୧୯୬୦

## ।। ସର୍ବଦା ସାତ୍ୱତ ଭାବରେ ଚାଲିବା ଭଲ କଣ ପାଇଁ ।।

ଏବେକାର ରକମ ହୋଇଛି କଣ ! ତୁମେ ହୁଏତ ୨୪ ଘଣ୍ଟା ପରେ ରାତି ୧୨ଟା ସମୟରେ ଘରକୁ ଗଲ। ସେତେବେଳେ କେତେଗୁଡ଼ିଏ ଭଲ topic (ବିଷୟ) ନ ହୋଇ ସ୍ତ୍ରୀ ସହିତ ଗୋଟିଏ ବାଜେ topic (ବିଷୟ) ନେଇ କଥା ହେଲ। ଫଳରେ, ତୁମର ସ୍ତ୍ରୀ ତୁମର ଧୃତି ପାଇଲା ନାହିଁ, ତୁମର trail (ଧାରା) ପାଇଲା ନାହିଁ। ତାପରେ ଏହି ପ୍ରକାର ମାନସିକ ଅବସ୍ଥାରେ ତୁମ୍ଭମାନଙ୍କର ପିଲା ହେଲା। ଫଳରେ ହେଲା କଣ ! ପିଲା ଭଲ ହେଲା ନାହିଁ। ଯେଉଁଠାରେ ୧୨ ଟଙ୍କା ପାଇଥାନ୍ତ, ସେଠାରେ ୧୨ ପଇସା ମଧ୍ୟ ପାଇଲ ନାହିଁ। ସେଥିପାଇଁ, ସର୍ବଦା ସାତ୍ୱତ mood-ରେ (ଭାବରେ) ଚାଲିବା ଭଲ। ସାତ୍ୱତ mood (ଭାବ) ନ ହେଲେ ସାତ୍ୱତ ଭାବବୃତ୍ତି ଜାଗେ ନାହିଁ।

ଦୀ.ର. ୬/୨୫.୨.୧୯୬୦

## ।। ସମାଜରେ ପ୍ରତିଲୋମ ହୋଇଗଲେ ରକ୍ଷାର ଉପାୟ କଣ ।।

ତାହା back cross (ବୀଜପ୍ରାଧାନ୍ୟରେ ଉପନୀତ ହେବାର ଉଦ୍ଦେଶ୍ୟରେ ଜନନ-ସଂକ୍ରାନ୍ତ ଊର୍ଦ୍ଧଗତି) କରି ଯଦି ହୁଏ। ଏ ବିଷୟରେ ତୁମ୍ଭମାନଙ୍କର ପୂର୍ବତନ ପୁରୁଷଗଣ କଣ କରି ଯାଇଛନ୍ତି ମୁଁ ଜାଣେ ନାହିଁ। ମୋଟ କଥା, culture-ଟିକୁ (କୃଷ୍ଟିକୁ) seed-ର (ବୀଜର) ଦିଗରେ convert (ରୂପାନ୍ତରିତ) କରିପାର କେତେ ମାତ୍ରାରେ ତାହା ଦେଖିବାକୁ ହେବ। ଦୀ.ର. ୬/୨୬.୨.୧୯୬୦

## ଅହରହ ପ୍ରତିଲୋମ ସମର୍ଥିତ ହୋଇ ରହିବାର ପରିଣାମ କଣ ହୋଇପାରେ୩୨୧

ଏଠାକୁ ଯେଉଁମାନେ ଆସିଛନ୍ତି, ମୁଁ ସମସ୍ତଙ୍କୁହିଁ ପ୍ରତିଲୋମ ବନ୍ଦ କରିବାର କଥା କହିଛି। ଯାହା ଚାଲୁଛି ଏହି ପ୍ରକାର ଅହରହ ପ୍ରତିଲୋମ supported (ସମର୍ଥିତ)

ହୋଇ ଚାଲିଲେ ଏହା ପରେ ସେହି କଳ୍କି-ଅବତାରଙ୍କ ପରି କେହି ଆସିବେ, ସବୁ ଶେଷ କରି ଦେବେ। ଏହା ନେଇ ମୁଁ ଭାବେ। ସେହିପରି ମଣିଷ ଯେ ପାଏ ନାହିଁ। ମୋର ଏହି ସବୁ ଲେଖାଗୁଡ଼ିକ ଯଦି ଛପାଇ ବାହାର କରି ରଖାଯାଏ ତାହେଲେ ସେହିପରି ମଣିଷ ଯଦି କୌଣସି ଦିନ ଆସେ, ସେତେବେଳେ ଏହିଗୁଡ଼ିକୁ ଦେଖି ତାର କର୍ତ୍ତବ୍ୟ ଠିକ୍ କରି ପାରିବ। ଏକ-ଠେଲାରେ ଦେଶ-ଜାତି ଠିକ କରି ପକେଇବ।

ଦୀ.ର. ୬/୬.୩.୧୯୬୦

## ॥ ଯେଉଁମାନଙ୍କ ମଧ୍ୟରେ କେବଳ ଗୋଟିଏ ଗୋତ୍ର ସେମାନଙ୍କର ବିବାହ କିପରି ହେବ ॥

ଯେଉଁମାନଙ୍କର ସଗୋତ୍ର ଛଡ଼ା ବିବାହ ହେବାର ଉପାୟ ନାହିଁ, ଅର୍ଥାତ୍ ଯେଉଁମାନଙ୍କ ମଧ୍ୟରେ କେବଳ ଗୋଟିଏ ଗୋତ୍ର, ସେମାନଙ୍କର ବିବାହ ସମୟରେ ଦେଖିବା ଦରକାର, ପାତ୍ର-ପାତ୍ରୀର ଉଭୟଙ୍କ ପରିବାର ମଧ୍ୟରେ କୌଣସି ରକ୍ତର ସମ୍ବନ୍ଧ ଯେପରି ନଥାଏ। ...ଦଶ ପୁରୁଷ କିମ୍ବା ପାରିଲେ ତା ଠାରୁ ବେଶୀ ଦେଖିବା ଭଲ। ମୋଟ କଥା, ଏମିତି ପରିବାରର ସହିତ ବିବାହର ସମ୍ବନ୍ଧ କରିବାକୁ ହେବ ଯେଉଁମାନଙ୍କ ସହିତ କୌଣସିଦିନହିଁ ରକ୍ତର ସମ୍ବନ୍ଧ ହୋଇନାହିଁ।

ଦୀ.ର. ୬/୧୧.୩.୧୯୬୦

## ॥ ରାମାୟଣ-ମହାଭାରତର କିଛି ବିବାହ-ପ୍ରସଙ୍ଗ ॥

ପ୍ରଶ୍ନ – ରାବଣ ବ୍ରାହ୍ମଣର ପୁତ୍ର ହୋଇ ମଧ୍ୟ କଣ ପାଇଁ ଖରାପ ସ୍ୱଭାବର ହେଲେ ?

ଶ୍ରୀଶ୍ରୀଠାକୁର – ସେହି ଯେ ତାଙ୍କର ଜନ୍ମର soil (ଭୂମି) ଖରାପ, ସେଥିପାଇଁ ଏହିପରି ହୋଇଛି। ସେଥିପାଇଁ ରାବଣ ଯେପରି ଗୋଟିଏ vanity (ଅହଂକାର) ନେଇ ଘୁରୁଥାନ୍ତି, balanced (ସାମ୍ୟ) ସ୍ୱଭାବର ନୁହେଁ। ଯଦି balanced (ସାମ୍ୟ) ସ୍ୱଭାବର ହୋଇଥାନ୍ତେ ତାହେଲେ ରାମଚନ୍ଦ୍ରଙ୍କ ସହିତ allied (ସମ୍ମିଳିତ) ହୋଇ ଯାଇଥାନ୍ତେ। ତା ଛଡ଼ା ବିଶ୍ୱଶ୍ରବା ଆଉ ନିକଷା ଏମାନେ ଦୁଇଜଣଙ୍କର ଅନୁଲୋମ ହେଲେ ମଧ୍ୟ ଖୁବ୍ ବେଶୀ difference (ବୈସାଦୃଶ୍ୟ) ଥିଲା। ଅନୁଲୋମ ବିବାହ ସମୟରେ ବେଶୀ difference (ବୈସାଦୃଶ୍ୟ) ଭଲ ନୁହେଁ। ପରଶୁରାମଙ୍କର ମା-

ବାପାଙ୍କ ମଧ୍ୟରେବି difference (ବୈସାଦୃଶ୍ୟ) ଥିଲା। ସେଥିପାଇଁ ସେ ମଧ୍ୟ କମ୍ disaster (ବିପଦ) ଆଣି ନାହାନ୍ତି। ପୁଣି, ଯେଉଁଠାରେ racial difference (ଜାତିଗତ ବୈସାଦୃଶ୍ୟ), ସେଠାରେ ଆହୁରି ଖରାପ ହୁଏ। ରାକ୍ଷସ ତ different race (ଭିନ୍ନ ଜାତି)।

ପ୍ରଶ୍ନ – କିନ୍ତୁ ପାରଶର ବ୍ରାହ୍ମଣ, ସତ୍ୟଗନ୍ଧା ଶୂଦ୍ର, ଏମାନଙ୍କର ପିଲା ଭଲ ହେଲେ କିପରି ?

ଶ୍ରୀଶ୍ରୀଠାକୁର – ସେମାନେ same culture-ର (ଏକହିଁ କୃଷ୍ଟିର) ମଧ୍ୟରେ ଥିଲେ, ଗୋଟିଏ school (ନିୟମାନୁବର୍ତ୍ତିତା)ର ମଧ୍ୟରେ।

ପ୍ରଶ୍ନ – ଆଚ୍ଛା, କୁନ୍ତିର ସହିତ ପାଣ୍ଡୁର ବିବାହ କଣ ସଦୃଶ ଥିଲା ?

ଶ୍ରୀଶ୍ରୀଠାକୁର – ମୁଁ ଠିକ୍ ଜାଣେ ନାହିଁ। ବୋଧ ହୁଏ ଦୁଇଜଣହିଁ କ୍ଷତ୍ରିୟ ଥିଲେ।

ପ୍ରଶ୍ନ – ଅନୁଲୋମରେ ତ ପୁରୁଷ ଅନେକ ଉଚ୍ଚ ହେବ। କିନ୍ତୁ ପାଣ୍ଡୁ ରୋଗୀ ଥିଲେ। ସେଠାରେ ଅନୁଲୋମ କିପରି ହେଲା ?

ଶ୍ରୀଶ୍ରୀଠାକୁର – ଅନୁଲୋମ ତ ନୁହେଁ। କୁନ୍ତି ଓ ପାଣ୍ଡୁ ମଧ୍ୟରେ ବିବାହ ସଦୃଶ ସବର୍ଣ୍ଣ। କିନ୍ତୁ ସବର୍ଣ୍ଣ ମଧ୍ୟରେବି ଝିଅ ସାମାନ୍ୟ ନୀଚ ହେଲେ ଭଲହିଁ ହୁଏ। ଯେମିତି ବ୍ରାହ୍ମଣଙ୍କ ମଧ୍ୟରେ ଅଛି କୁଳୀନ ଆଉ ଶ୍ରୋତ୍ରିୟ। କୁଳୀନ ଶ୍ରୋତ୍ରିୟର ଝିଅ ନେଇ ପାରେ। କିନ୍ତୁ ଶ୍ରୋତ୍ରିୟର ଘରେ ଝିଅ ଦେଇ ପାରେ ନାହିଁ। ପୁଣି, ଧୃତରାଷ୍ଟ୍ର ଯେ ଗାନ୍ଧାରୀଙ୍କୁ ବିବାହ କରିଲେ, ତାହା ଏକ dangerous (ସାଂଘାତିକ) ବିବାହ। ଗାନ୍ଧାରୀ ଥିଲେ କାନ୍ଦାହାରର ଝିଅ। ଧୃତରାଷ୍ଟ୍ର ସେହି ଦେଶକୁ invade (ଆକ୍ରମଣ) କରି ଏକେବାରେ ନିକେଶ କରି ଦେଲେ। ସାରା ଦେଶଟିକୁ ଛାରଖାର କରି ପକାଇଲେ। ଗାନ୍ଧାରୀଙ୍କର ସବୁ ଭାଇମାନଙ୍କୁ ମାରି ପକେଇଲେ। ବଞ୍ଚିଲେ କେବଳ ଗାନ୍ଧାରୀ ଆଉ ଜଣେ ଭାଇ ଶକୁନୀ। ତାପରେ ଧୃତରାଷ୍ଟ୍ରଙ୍କୁ ନିର୍ବଂଶ କରି ଶୋଧ ନେଲେ ଶକୁନି। ତାଙ୍କର ଏକଶହ ପୁତ୍ରକୁ ମାରିଲେ। ଶକୁନି ଯେତେବେଳେ ଏକା-ଏକା ରହୁଥାନ୍ତି ସେତେବେଳେ ସେହି ତାର ବାପାର ହାଡ଼ ଦ୍ୱାରା ତିଆରି ପାଶା ହାତରେ ନେଇ ଦେଖୁଥାନ୍ତି ଆଉ ଚିତ୍କାର କରି ଉଠୁଥାନ୍ତି 'ପ୍ରତିହିଂସା', 'ପ୍ରତିହିଂସା'। ଏହାସବୁ ଦେଖିଶୁଣି ମୋର ମନେ ହୁଏ, ଗାନ୍ଧାରୀ ମଧ୍ୟ ସେହିପ୍ରକାର ଥିଲେ। ସେଥିପାଇଁ ଯୁଦ୍ଧ ପୂର୍ବରୁ ଦୁର୍ଯୋଧନ ଯେତେବେଳେ ପ୍ରଣାମ କରିବାକୁ ଆସିଲେ ସେତେବେଳେ ଗାନ୍ଧାରୀ କହିଲେ 'ଧର୍ମର ଜୟ ହେଉ'। ଏହି କଥା କହିଲେ କଣ ପାଇଁ – 'ଧର୍ମର ଜୟ ହେଉ'। କୁନ୍ତୀ ତ

ପୁଅମାନଙ୍କୁ କହିଲେ 'ତୁମ୍ଭମାନଙ୍କର ଜୟ ହେଉ'। ଗାନ୍ଧାରୀ ତ କହିଲେ ନାହିଁ। ପୁଣି ଗାନ୍ଧାରୀ ଯେ ଆଖି ବାନ୍ଧି ରଖୁଥାନ୍ତି, ତା ମାନେ ସେ ଘୃଣାରେ ଧୃତରାଷ୍ଟ୍ରଙ୍କର ମୁଖ ମଧ୍ୟ ଦେଖିବାକୁ ଚାହିଁନାହାନ୍ତି। ତାଙ୍କ ଭିତରେ ଥିଲା ପ୍ରତିହିଂସା। ତେଣୁ, ସବୁସମୟରେ ଆଖି ବାନ୍ଧି ରଖୁଥାନ୍ତି।

ପ୍ରଶ୍ନ – ପୂର୍ବକାଳରେ ଗୋଟିଏ ଝିଅକୁ ବିବାହ କରିବା ପାଇଁ କ୍ଷତ୍ରିୟମାନେ ପରସ୍ପର ଯୁଦ୍ଧ କରୁଥାନ୍ତି। ଯିଏ ଜୟଲାଭ କରୁଥାଏ ସେ ହିଁ ଝିଅଟିକୁ ବିବାହ କରୁଥାଏ।

ଶ୍ରୀଶ୍ରୀଠାକୁର – ସେମାନେ sword (ତରବାରି) ହାତରେ ନେଇ ଯୁଦ୍ଧ କରୁଥାନ୍ତି କ୍ଷତ୍ରିୟ valour (ବିକ୍ରମ) ଠିକ୍ ରଖିବା ପାଇଁ। ଏହା କରି ସେମାନେ କ୍ଷତ୍ରିୟ custom (ପ୍ରଥା) ଠିକ୍ ରଖୁଥାନ୍ତି। ତାହା ଯଦି ନ ହୋଇଥାନ୍ତା, ତା ହେଲେ ରୁକ୍ମିଣୀର ବିବାହ ହେବା ପରେ ସେମାନଙ୍କ ସହିତ ଶ୍ରୀକୃଷ୍ଣଙ୍କର ବିରୋଧ ଲାଗିହିଁ ରହିଥାନ୍ତା। ତାହା କିନ୍ତୁ ଆଉ ରହିଲା ନାହିଁ। କିନ୍ତୁ ଧୃତରାଷ୍ଟ୍ର ତା' କରିନାହାନ୍ତି।

ଦୀ.ର. ୬/୧୨.୩.୧୯୬୦

## ॥ ବିପ୍ର ପିତା ଓ କ୍ଷତ୍ରିୟା ମାତା ଠାରୁ ଜାତ ସନ୍ତାନର ବିବାହ କାହା ସହିତ ହେବା ଉଚିତ ॥

ସେହି ପ୍ରକାରର ଯେଉଁମାନେ ସେମାନଙ୍କ ସହିତହିଁ ହେବ, ସମାନ ଘରେ। ଆଉ, ଏହି ଝିଅମାନଙ୍କର ବିବାହ ବ୍ରାହ୍ମଣଙ୍କ ସହିତ ମଧ୍ୟ ହୋଇ ପାରେ – ଯଦିବା ଟିକିଏ ନୀଚ ହେଲା। ତେବେ ଏହି ପ୍ରକାର ବିବାହ କରିବା ପୂର୍ବରୁ ସେହି ବିପ୍ରର ଜଣେ ସବର୍ଣ୍ଣା ବିପ୍ରକନ୍ୟାକୁ ବିବାହ କରିବାକୁ ପଡ଼ିବ।

ପ୍ରଶ୍ନ – ଏକରେହିଁ ତ ଅନୁଲୋମର ଅନେକଗୁଡ଼ିଏ division (ବିଭାଗ)। ଏହା ଫଳରେ ତ division (ବିଭାଗ) ଆହୁରି ବଢ଼ିଯିବ।

ଶ୍ରୀଶ୍ରୀଠାକୁର – ତା ତ ହେବହିଁ। ପୂର୍ବକାଳରେ ବ୍ରାହ୍ମଣମାନେ ଏହିଗୁଡ଼ିକୁ ଠିକ୍ ରଖୁଥାନ୍ତି। ପ୍ରତିଲୋମ ଯେଉଁଥିରେ କୌଣସି ପ୍ରକାରେହିଁ ଢୁକି ନ ପାରେ ସେହି ଦିଗରେ ଲକ୍ଷ୍ୟ ରଖୁଥାନ୍ତି। ସେଥିପାଇଁ କହନ୍ତି 'ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ'। ସମାଜରେ ଯେପରି ପୁରୋହିତ ଥାଆନ୍ତି, ସେହିପରି ଘଟକ ରହୁଥାନ୍ତି। ସେମାନେ eugenics-ରେ expert (ପ୍ରଜନନ-ବିଜ୍ଞାନରେ ସୁଦକ୍ଷ) ଥିଲେ। ଏପରି expert (ସୁଦକ୍ଷ) ଥିଲେ ଯେ ପୂର୍ବରୁ କହି ଦେଇ ପାରୁଥାନ୍ତି, ଏହି ଝିଅ ସହିତ ଯଦି ଏହି ପୁଅର ବିବାହ

ହୁଏ ତାହେଲେ ତାର ସନ୍ତାନ ଏହିପ୍ରକାର ହେବ। ପୁଣି, ସେମାନଙ୍କର କେତେଜଣ ପୁଅ ଏବଂ କେତେଜଣ ଝିଅ ହେବ ତାହା ମଧ୍ୟ କହି ଦେଇ ପାରୁଥାନ୍ତି।

ଦୀ.ର. ୬/୧୨.୩.୧୯୬୦

## ।। ବିବାହ ବ୍ୟାପାରରେ ଆହୁରି କଥା ।।

ପ୍ରଶ୍ନ – ବିବାହ ସମୟରେ ସଦୃଶ ଘର ତ ଭଲହିଁ। ତା ପରେ ତ ଅନୁଲୋମ କରା ଯାଇପାରେ ?

ଶ୍ରୀଶ୍ରୀଠାକୁର – ପ୍ରଥମେହିଁ ହେଲା ସଦୃଶ ଘର। ସେହିଟାହିଁ ବିବାହ। ତା ଉପରକୁ ଅଛି ଅନୁଲୋମ। କିନ୍ତୁ ତା ପୂର୍ବରୁ ସଦୃଶ ବିବାହ ଗୋଟିଏ କରିବାହିଁ ଉଚିତ।

ପ୍ରଶ୍ନ – ସଦୃଶ ମାନେ କ'ଣ ?

ଶ୍ରୀଶ୍ରୀଠାକୁର – Similar clan (ସମାନ ବଂଶ)।

ପ୍ରଶ୍ନ – କେଉଁଠି ହୁଏତ ଦେଖା ଗଲା, ବରର ପରିବାର ମାଛ ଖାଆନ୍ତି, କନ୍ୟାର ପରିବାର ମାଛ ଖାଆନ୍ତି ନାହିଁ। ଏଠାରେ ବିବାହ ହେଲେ ପ୍ରତିଲୋମ ହେବ ନାହିଁ ?

ଶ୍ରୀଶ୍ରୀଠାକୁର – ଏହି ପ୍ରକାର ବିବାହର ଉପରେ ଯଦି ପ୍ରୀତି ରହେ ତାହେଲେ ବ୍ୟତିକ୍ରମର ଆରମ୍ଭ ହେଲା କୁହାଯାଏ। ଆଉ, ବ୍ୟତିକ୍ରମ ଘଟିବାକୁ ଲାଗିଲେ ଧିରେ ଧିରେ ଯାହା ହେବାର ତାହାହିଁ ହୁଏ। ମଣିଷ ନୀଚ ଆଡ଼କୁ ଉହ୍ଲାଇବାକୁ ଲାଗେ। ବ୍ରାହ୍ମଣର ଝିଅ ହୁଏତ ଚମାରକୁ ବିବାହ କରେ, ଆହୁରି କଣ କଣ କରେ। ଆଜି ଦେଶରେ କାୟସ୍ଥ ଯଦି ଠିକ୍ ଥାଆନ୍ତେ, ସେମାନେ ସବୁକିଛିକୁ control (ନିୟନ୍ତ୍ରଣ) କରି ପାରିଥାନ୍ତେ, ଏମିତିକି ବ୍ରାହ୍ମଣମାନଙ୍କୁ ମଧ୍ୟ। ଯେଉଁଠି deviation (ବ୍ୟତିକ୍ରମ) ହୁଏ ସେହିଁଠାରେହିଁ ପ୍ରତିଲୋମର ସୂତ୍ରପାତ ହୁଏ।

ପ୍ରଶ୍ନ – Deviation (ବ୍ୟତିକ୍ରମ) କଣ ପ୍ରତିଲୋମ ?

ଶ୍ରୀଶ୍ରୀଠାକୁର – Deviation ମାନେ ବ୍ୟତିକ୍ରମ। ପ୍ରତିଲୋମ ହେଲା greater (ବଡ଼ ରକମର ବ୍ୟତିକ୍ରମ)।

ପ୍ରଶ୍ନ – ଦେଖିଶୁଣି ହୁଏତ ସଦୃଶ ଘରେହିଁ ବିବାହ ହେଲା। ତାପରେ ଦେଖା ଗଲା ସ୍ୱାମୀ ଉପରେ ସ୍ତ୍ରୀର କୌଣସି ଶ୍ରଦ୍ଧା ନାହିଁ।

ଶ୍ରୀଶ୍ରୀଠାକୁର – ତାହା ଯଦି ନ ଥାଏ, ତାହେଲେ ବୁଝିବାକୁ ହେବ ସେଠାରେ

ସଦୃଶତ୍ୱ maintained (ରକ୍ଷିତ) ହୋଇନି। ବିବାହ ଠିକ୍ କରିବା ଗୋଟିଏ ଫାଁକା କଥା ନୁହେଁ। ବିବାହ ଠିକ୍ କରିବାକୁ ଗଲେ ଦେଖିବାକୁ ହୁଏ ପୁଅ-ଝିଅର ବଂଶର ଆୟୁ କେମିତି, ବଂଶରେ କୌଣସି ରୋଗ ଅଛି କି ନାହିଁ, ସେମାନଙ୍କର behaviour (ବ୍ୟବହାର) କେମିତି, attribute (ଗୁଣାବଳୀ) କେମିତି। କେବଳ ଗାଈ କିଣି ତ ଲାଭ ନାହିଁ, କ୍ଷୀର ଦିଏ କି ନାହିଁ ଦେଖିବାକୁ ତ ପଡ଼ିବ ? ଏସବୁ ଦେଖିବା କିନ୍ତୁ ତୁମ୍ଭମାନଙ୍କର forefather-ଙ୍କରହିଁ (ପୂର୍ବପୁରୁଷଙ୍କରହିଁ) trail (ଧାରା)। ପୁଣି ଦେଖ, ତୁମର forefather (ପୂର୍ବପୁରୁଷ) ହୁଏତ ୧୦୦ ବର୍ଷ ବଞ୍ଚି ଯାଇଛନ୍ତି। ତୁମେ ଏମିତି ସଦୃଶ ଘରୁ ଝିଅ ନେଇ ଆସିଲ, ଯେଉଁମାନଙ୍କର ହାରାହାରି ଆୟୁ ୫୦ ବର୍ଷ। ସେତେବେଳେ ତୁମ ବଂଶର ଆୟୁ ହୁଏତ ହୋଇଗଲା ୭୦ ବର୍ଷ। ଏତେଗୁଡ଼ିଏ ହିସାବ କରି ତା ପରେ ଝିଅ ଆଣିବା ଦରକାର। ସେଥିପାଇଁ କହନ୍ତି ମା, ମାନେ ଯିଏ ମାପ କରି ଦିଏ।

ପ୍ରଶ୍ନ – ସଦୃଶ ବିବାହର ମଧ୍ୟରେ ତ ଅନୁଲୋମ-ପ୍ରତିଲୋମ ହୁଏ ?

ଶ୍ରୀଶ୍ରୀଠାକୁର – ସଦୃଶ ଯଦି ବି ନ ମିଳେ, ତାହେଲେ nearly (ପାଖାପାଖି) ଅନୁଲୋମ ଯେଉଁଥିରେ ହୁଏ ତାହାହିଁ କରିବାକୁ ହେବ। ପ୍ରତିଲୋମ avoid କରିବାକୁହିଁ (ଏଡ଼ାଇବାକୁହିଁ) ହେବ। କିନ୍ତୁ ସଦୃଶହିଁ ସବୁ ଦିଗରୁ ଭଲ। ଆଉ, ବିବାହ ବ୍ୟାପାରରେ ପୁଅ ଓ ଝିଅ ଉଭୟଙ୍କରହିଁ father side ଓ mother side (ପିତୃକୂଳ ଓ ମାତୃକୂଳ) ଦୁଇଦିଗରହିଁ history (ଇତିହାସ) ବିଚାର କରି ଦେଖିବା ଦରକାର।

ପ୍ରଶ୍ନ – ଆଜିକାଲି ତ family tradition (ପାରିବାରିକ ଐତିହ୍ୟ) maintained (ରକ୍ଷିତ) ହୁଏ ନାହିଁ।

ଶ୍ରୀଶ୍ରୀଠାକୁର – ତାହା ଖୁବ୍‌ହିଁ ଖରାପ। ଅଦୃଷ୍ଟହିଁ ଖରାପ କହିବାକୁ ହୁଏ।

ଦୀ.ର. ୬/୧୨.୬.୧୯୬୦

## ।। ମହାଭାରତର ଆହୁରି ବିବାହ-ପ୍ରସଙ୍ଗ ।।

ପ୍ରଶ୍ନ – ପାଣ୍ଡୁ ତ ରୋଗୀ ଥିଲେ, ଆଉ କୁନ୍ତୀ ଥିଲେ ସୁସ୍ଥ। ଏହି ବିବାହଟି ପ୍ରତିଲୋମ ହୋଇନି ?

ଶ୍ରୀଶ୍ରୀଠାକୁର – ରୋଗ ରହିଲେ ମଧ୍ୟ existential deficiency (ସତ୍ତାଗତଭାବରେ କୌଣସି ଖାଁକତି) ନଥିଲା। ସେଥିପାଇଁ ସେମାନଙ୍କର ଛୁଆପିଲାମନେ ମଧ୍ୟ ପରାକ୍ରମୀ ହେଲେ।

ପ୍ରଶ୍ନ – କିନ୍ତୁ ଭୀମ-ଅର୍ଜୁନ ଏମାନଙ୍କର ଜନ୍ମବୃତାନ୍ତ ତ ଅନ୍ୟ ପ୍ରକାରର।

ଶ୍ରୀଶ୍ରୀଠାକୁର – ଆମ୍ଭମାନଙ୍କ ଦେଶରେ ଆଗରୁ ପ୍ରଥା ଥିଲା, ଏବେ ମଧ୍ୟ ଅଛି ଯେ ଝିଅମାନେ ଋତୁସ୍ନାନ ପରେ, ପ୍ରଥମେ ସ୍ୱାମୀର ମୁଖ ଦେଖିବେ, ତା ପୂର୍ବରୁ ଆଉ କାହାର ମୁହଁ ଦେଖିବେ ନାହିଁ। ସେତେବେଳେ ହୁଏତ ଋତୁସ୍ନାନ ପରେ ସୂର୍ଯ୍ୟର ମୁଖ ଦେଖିଥିଲେ, କୌଣସିଥର ପବନର ମୁଖ ଦେଖିଥିଲେ। ତା ମାନେ କୁନ୍ତୀ ସେମାନଙ୍କର ଗୁଣାବଳୀ ଧ୍ୟାନ କରିଥିଲେ। ଆଉ ଏହି ଭାବ ତାଙ୍କର conceive (ଗର୍ଭଧାରଣ) କରିବା ସମୟରେ ଥିଲା। ତା ଫଳରେ, ସେହି ଗୁଣଯୁକ୍ତ ସନ୍ତାନ ଲାଭ କରିଛନ୍ତି। ସୂର୍ଯ୍ୟ ତୁମର ମନରେ ଆସି ପାରନ୍ତି। କିନ୍ତୁ ସୂର୍ଯ୍ୟ the planet (ଗ୍ରହ) କିମ୍ବା the wind (ପବନ), ଏମାନେ conceive (ଗର୍ଭଧାରଣ) କରାନ୍ତି କିପରି ? Conceive (ଗର୍ଭଧାରଣ) କରାଇବା ପାଇଁ ଦରକାର ଜଣେ ମଣିଷ। ତେଣୁ, ଯେଉଁସବୁ ଗଳ୍ପକଥା ଚଳିତ ଅଛି, ଯେଉଁଗୁଡ଼ିକ deluding to me (ମୋ ପାଖରେ ପ୍ରବଞ୍ଚନାପୂର୍ଣ୍ଣ)।

ପ୍ରଶ୍ନ – ଏହା ଉପରେ ଛିଡ଼ାହେଲେ ମହାଭାରତର ଅନେକ ଜିନିଷ explain (ବ୍ୟାଖ୍ୟା) କରାଯାଇ ପାରିବ ନାହିଁ।

ଶ୍ରୀଶ୍ରୀଠାକୁର – ମୁଁ ତ ଭଲ ଭାବରେ ଜାଣେ ନାହିଁ, meagre to understand (ବୁଝେ ମଧ୍ୟ କମ୍)। ଶୁଣିଥିଲି, ତୁର୍କୀରେ ଜଣେ ସ୍ତ୍ରୀଲୋକ ନା କଣ conception-ର (ଗର୍ଭଧାରଣର) ସମୟରେ ନେପୋଲିୟନର ଛବି ଦେଖୁଥାଏ। ତାର ପୁଅ ହେଲା ଠିକ୍ ଏହି ନେପୋଲିୟନଙ୍କ ପରି। ଏହି ପ୍ରକାରର ଆହୁରି ଢେର ଉଦାହରଣ ଅଛି, ମୁଁ ଶୁଣିଛି। ... କୌଣସି ବିଷୟ ଯେତେବେଳେ ବୁଝା ନ ପଡ଼େ, ସେତେବେଳେ ମଣିଷ ତାହା ନେଇ ଭାବେ, ବାହାର କରିବା ପାଇଁ ଚେଷ୍ଟା କରେ how it is possible (କିପରି ଭାବରେ ଏହା ସମ୍ଭବ)!...

ପ୍ରଶ୍ନ – ଆଚ୍ଛା, ଏହି କଥା ଯେ ଅଛି, କୁମାରୀ ଅବସ୍ଥାରେ କୁନ୍ତୀ ପାଖକୁ ଯାତାୟାତ କରୁଥାନ୍ତି ପାଣ୍ଡୁ। ତାହେଲେ ପାଣ୍ଡୁ ତ ନାରୀମୁଖୀ !

ଶ୍ରୀଶ୍ରୀଠାକୁର – ସେଥିରେ କଣ ହେଲା ! ନାରୀମୁଖୀହିଁ ହେଉ ଆଉ ବାରୀମୁଖୀହିଁ ହେଉ ସେମାନଙ୍କର ଚଳନ ଦେଖ ନାହିଁ କଣ ପାଇଁ, ସେମାନଙ୍କର ସନ୍ତାନ-ସନ୍ତତି କେମିତି ହେଲେ ଦେଖ। ବିବାହ ପୂର୍ବରୁ ପରିଚୟ ରହେ ନାହିଁ ? ମୋ ସହିତ ବଡ଼ବୌ-ର ଜଣାଶୁଣା ଥିଲା ବିବାହ ପୂର୍ବରୁ। ମୋ ଜୀବନରେ ଯଦି ଏହା ହୋଇ ପାରେ, ତାହେଲେ ଆହୁରି ବଡ଼ ଜୀବନରେ ତାହା ଆହୁରି କେତେ ପ୍ରକାରର ହୋଇ ପାରେ।...

ପ୍ରଶ୍ନ – କିନ୍ତୁ ଗାନ୍ଧାରୀଙ୍କର ଯେ ଶହେ ପୁତ୍ର ହେଲା, ଏହା କିପରି ଭାବରେ support (ସମର୍ଥନ) କରାଯାଏ ?

ଶ୍ରୀଶ୍ରୀଠାକୁର – ଦେଖ କିପରି ଭାବରେ ହୁଏ। ମୋର ଏତେ ବିଦ୍ୟାବୁଦ୍ଧି ନାହିଁ ଯେ ଏସବୁ କହିବି। ତୁମେ ଯେପରି କୁହ zygote (ଭୃଣାଣୁର) ଭାଗ ହୁଏ, ଏହିପ୍ରକାରଭାବରେ କିଛି ହୁଏକି ନାହିଁ ଦେଖ। ଏହି ପ୍ରକାର ଆନେକ କିମ୍ବଦନ୍ତୀ ପୁରାଣରେ ମଧ୍ୟ ଅଛି। ଏହି ସବୁ ଗୁଡ଼ିକର ଚୋପା ଛଡ଼େଇ ଦେଲେ ଅସଲ ବସ୍ତୁଟା ବାହାର କରି ନିଆ ଯାଇପାରେ। ଦୀ.ର. ୬/୧୨.୩.୧୯୬୦

## ।। ଭୃଣଦେହ ଗଠନ ହୋଇ ପାରେ କଣ ପାଇଁ ।।

ଶ୍ରୀଶ୍ରୀଠାକୁର – Male-female (ସ୍ତ୍ରୀ-ପୁରୁଷ)ର ମଧ୍ୟରେ ଯେଉଁ affinity (ଆକର୍ଷଣୀ ସମ୍ବେଗ) ଥାଏ ତାହାରି ଫଳରେ sperm ova-ର (ପୁଂବୀଜ ସ୍ତ୍ରୀ ଡ଼ିମ୍ବକୋଷ)ର ମଧ୍ୟରେ ଢୁକି zygote (ଭ୍ରୁଣଦେହ) form (ଗଠନ) କରି ପାରେ। Affinity (ସମ୍ବେଗ) ଯଦି ନ ଥାଏ ତାହେଲେ ଜନ୍ମହିଁ ହୁଏ ନାହିଁ। ବେଶ୍ୟାମାନଙ୍କ କ୍ଷେତ୍ରରେ ଏହି affinity-ର (ଆକର୍ଷଣୀ ସମ୍ବେଗର) ଅଭାବ ଥାଏ। ତେଣୁ, ସେମାନେ ପ୍ରାୟହିଁ barren (ବନ୍ଧ୍ୟା) ହୁଅନ୍ତି। ଅନେକେ ପୁଣି ଔଷଧ-ପତ୍ର ଦ୍ୱାରା ମଧ୍ୟ ନିଜକୁ ସେହିପ୍ରକାରର କରି ରଖନ୍ତି।

ପ୍ରଶ୍ନ – ତାହେଲେ ଆପଣ ଯେଉଁ congenital affinity-ର (ଜନ୍ମଗତ ଆକର୍ଷଣର) କଥା କୁହନ୍ତି, ତାର ମାନେ ହେଲା affinity of the sperm for the ova (ଡିମ୍ବକୋଷର ପ୍ରତି ପୁଂବୀଜର ଆକର୍ଷଣ)।

ଶ୍ରୀଶ୍ରୀଠାକୁର – Sperm ଆଉ ova-ର affinity (ପୁଂବୀଜ ଓ ଡ଼ିମ୍ବକୋଷର ଆକର୍ଷଣ) ଯଦି least possible (ଅତି ଅଳ୍ପ ସମ୍ଭବ) ପ୍ରକାରରେ ଥାଏ ତାହେଲେ ସେଠାରେ conception (ଗର୍ଭସଞ୍ଚାର) ହୋଇ ପାରେ, ଆଉ ତାହାର least possible stand-ମଧ୍ୟ (ସାମାନ୍ୟତମ ସମ୍ଭାବ୍ୟ ଭିତ୍ତି ମଧ୍ୟ) ଯଦି ନଥାଏ ତାହେଲେ ସେଠାଏ ଆଉ soil (ଭୂମି) ପାଏ ନାହିଁ, barren (ବନ୍ଧ୍ୟା) ହୋଇ ଯାଏ। ଆପଣଙ୍କର ଯଦି କେହି ଶୂଦ୍ରା ସ୍ତ୍ରୀ ଥାନ୍ତା, ଆଉ ତା ଠାରେ ଆପଣ ଉପଗତ ହୋଇଥାନ୍ତେ, ତା ଫଳରେ ମଧ୍ୟ ସନ୍ତାନ ହୋଇଥାନ୍ତା। କିନ୍ତୁ ଆପଣଙ୍କର traditional trail (ଐତିହ୍ୟର ଧାରା) ଧରି ରଖିବାର ମେକଦାର ଯାହାର ନାହିଁ, ତା ଠାରେ ଉପଗତ ହେଲେ ଆଉ issue (ସନ୍ତାନ) ହୋଇ ନ ଥାନ୍ତା। ଦୀ.ର. ୬/୪.୪.୧୯୬୦

## ।। ଜାତି-ବର୍ଣ୍ଣର ବ୍ୟାଭିଚାର ନ କରିଲେ କଣ ହୋଇ ପାରେ ।।

ଶ୍ରୀଶ୍ରୀଠାକୁର – ଆମ୍ଭମାନଙ୍କର ପୂର୍ବପୁରୁଷଙ୍କର ଯେଉଁ ସବୁ ସମ୍ପଦ ଥିଲା ତାହାର ଯଦି ଯଥାଯଥ ବ୍ୟବହାର ନ କରୁଁ ତାହେଲେ ତାହା ଆସ୍ତେ ଆସ୍ତେ ନଷ୍ଟ ହୋଇଯିବ।

ପ୍ରଶ୍ନ – ଏବେ ତ ବର୍ଣ୍ଣାଶ୍ରମ କେଉଁଠିବି ନାହିଁ।

ଶ୍ରୀଶ୍ରୀଠାକୁର – ତାହା ମଧ୍ୟ ମୁଁ କହେଁ, ଏହି ଜାତି-ବର୍ଣ୍ଣ ମାନିବାହିଁ ଭଲ। ଏହାର ବ୍ୟାଭିଚାର କରିବା ଭଲ ନୁହେଁ। ଯେଉଁ ଟିକକ ଏବେ ପର୍ଯ୍ୟନ୍ତ ଟେକି ରହିଛି, ତାହା ଯଦି ଅକ୍ଷତ ରଖି ଚାଲି ପାରନ୍ତି, ତାହେଲେ ଏହା ଭିତର ଦେଇହିଁ ଦିନେ ବିରାଟ ସମ୍ଭାବ୍ୟତା sprout କରିବ (ଗଜେଇବ)।

ପ୍ରଶ୍ନ – କିନ୍ତୁ ମୁଁ ବ୍ରାହ୍ମଣ ହୋଇ ଯଦି ମୋର କରଣୀୟ ନ କରେ ତାହେଲେ ମୋ ଭିତରର possibility (ସମ୍ଭାବ୍ୟତା) ତ ଆସ୍ତେ ଆସ୍ତେ ନଷ୍ଟ ହୋଇ ଯିବ।

ଶ୍ରୀଶ୍ରୀଠାକୁର – ଯଦି କିଛି ମଧ୍ୟ ପାଳନ କରା ହୁଏ ତାହା ମଧ୍ୟ ଭଲ। ସ୍ୱଳ୍ପମପି ଗରୀୟସୀ। ସେଥିପାଇଁ ମୁଁ କହେ, କିଛି କର।

ପ୍ରଶ୍ନକର୍ତ୍ତା – ଅନ୍ତତଃ ଯେଉଁଥିରେ ଜନ୍ମଗତ ଦୁଷ୍ଟତା ନ ଆସେ।

ଶ୍ରୀଶ୍ରୀଠାକୁର – ଏହା କରୁ କରୁ ଯଦି ପାଞ୍ଚ ଜୋଡ଼ା ମଣିଷ ମଧ୍ୟ ବଞ୍ଚି ରହନ୍ତି ପରମପିତାଙ୍କର ଦୟାରେ, ତାହେଲେ ଏହି ପାଞ୍ଚ ଯୋଡ଼ା ମଣିଷହିଁ ସବୁ ଓଲଟାଇ ଦେଇ ପାରନ୍ତି। ଦୀ.ର. ୬/୪.୪.୧୯୬୦

## ।। ପାରଶବ ପ୍ରସଙ୍ଗରେ ଆହୁରି କଥା ।।

ପୂର୍ବକାଳରେ ବ୍ରାହ୍ମଣମାନେ ଜଣେ ବିପ୍ର ଝିଅ ବିବାହ କରି ତାପରେ କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ବିବାହ କରି ପାରୁଥାନ୍ତି। ପାରୁଥାନ୍ତି, କିନ୍ତୁ ଯାହା ଖୁସୀ ତାହା କରିବାର ଉପାୟ ନଥିଲା। ସମାଜରେ systematic adjustment-ଟି (ବ୍ୟବସ୍ଥିତ ନିୟନ୍ତ୍ରଣଟି) ବଜାୟ ରଖିବାର ଖୁବ୍ ଚେଷ୍ଟା ଥିଲା। ...ସେମାନେ (ପାରଶବ ମାନେ) ହେଲେ ବିପ୍ରର ଔରସରୁ ଶୂଦ୍ରାଗର୍ଭଜାତ ସନ୍ତାନ। ଦେଖନ୍ତୁ ସେମାନଙ୍କ ଜାତିର ମଧ୍ୟରେ ଗୋଟିଏ valour (ଶୌର୍ଯ୍ୟ) ଥିଲା। ସେହିମାନଙ୍କୁ ନମଶୂଦ୍ର କହନ୍ତି। କିନ୍ତୁ ଏ ନାମ ଆଗରୁ ନଥିଲା। ଏହା ମନେ ହୁଏ Buddhist period (ବୌଦ୍ଧ ଯୁଗର) ପରେ ଆସିଛି। Aryan culture-ଟା (ଆର୍ଯ୍ୟକୃଷ୍ଟିର ଅନୁଶୀଳନଟା) ଯାହାଦ୍ୱାରା ଅବାଧରେ ଚାଲିପାରେ ସେଥିପାଇଁହିଁ ଭଗବାନଙ୍କର ଅପାର ଦୟାରେ ବୋଧ ହୁଏ ଏହି ଜାତିର ସୃଷ୍ଟି ହୋଇଛି।

ଏମାନଙ୍କର ମସ୍ତିଷ୍କ ଓ ବାହୁ ସମାନ ଭାବରେ ଚାଲେ। କିନ୍ତୁ ଏମାନେ ଯେତେବେଳେ ପ୍ରତିଲୋମ (ବିବାହ) କରନ୍ତି ସେତେବେଳେ ମୋର ହାଉ-ହାଉ କରି କାନ୍ଦିବାକୁ ଇଚ୍ଛା କରେ। ଏହା କହି ନାହିଁ, ଏବେ କହି ପକେଇଲି। ଏବେ ଶୁଣିବାକୁ ପାଏ, ସେମାନଙ୍କ ମଧ୍ୟରେ କେହି ମୁଖାର୍ଜୀ, କେହି ବାନାର୍ଜୀ ହୋଇ ମୁଖାର୍ଜୀ-ବାନାର୍ଜୀର ଝିଅକୁ ବିବାହ କରୁଛି। ଭାବେ ସେମାନଙ୍କର ଝିଅ ବିବାହ କରିଲେ ବୋଧ ହୁଏ ଜାତିରେ ଉପରକୁ ଉଠିଗଲି। କିନ୍ତୁ ଆଉ ଉଠିବା ଭଲ ନୁହେଁ। ଯାହା ଅଛ ସେହିଟିକୁହିଁ adjust (ନିୟନ୍ତ୍ରିତ/ଠିକ୍‌ଠାକ୍) କରି ନେବାହିଁ ଭଲ। ଆଉ, ଏହି ପ୍ରକାର ବୁଦ୍ଧି ଯଦି ଥାଏ ତାହେଲେ ଆବ୍ରହ୍ମସ୍ତମ୍ଭ ପର୍ଯ୍ୟନ୍ତ ସମସ୍ତେ କ୍ରୀତଦାସରେ ପରିଣତ ହୋଇ ଯିବେ। ...ପୂର୍ବପୁରୁଷଙ୍କର ସେହି ଧାରା ଏବେ ପର୍ଯ୍ୟନ୍ତ ମଧ୍ୟ ତୁମ୍ଭମାନଙ୍କ ମଧ୍ୟରେ ଅଛି, କ୍ଷୀଣଧାରାରେ ବହୁଛି। ଏବେ କରି ଉଠେଇ ପାରିଲେହିଁ ହୁଏ। ତୁମ୍ଭମାନଙ୍କର ସମ୍ପଦର ଅଭାବ ନଥିଲା। ଏବେ ତାହା କାହିଁ, ସେହି ପ୍ରକାରର ଜଣେ ଲୋକ ଆଖିରେ ପଡ଼େ ନାହିଁ! ଏବେ ସବୁ ବ୍ୟାନାର୍ଜୀ ହେବାକୁ ଚାହାନ୍ତି, ଚ୍ୟାଟାର୍ଜୀ ହେବାକୁ ଚାହାନ୍ତି, ଗାଙ୍ଗୁଲି ହେବାକୁ ଚାହାନ୍ତି।

ଦୀ.ର. ୬/୪.୪.୧୯୬୦

## ।। ବୈଦ୍ୟ ଏବଂ କାୟସ୍ଥର ମଧ୍ୟରେ ବିବାହ ଚଳିପାରେ କି ନାହିଁ ।।

ତାହା କରିବା ଭଲ ନୁହେଁ। ତାହା ଦ୍ୱାରା ବିଶେଷ ବିଶେଷ ଧାରାର ବୈଶିଷ୍ଟ୍ୟଗୁଡ଼ିକ ନଷ୍ଟ ହୋଇ ଯାଏ। ଏହି ଯେ ଖବର ବାହାରିଛି। ଚୀନରେ ଗୋଟିଏ ପଦ୍ମବୀଜ ମିଳିଛି। ତାହା ନା କଣ ୫୦୦୦୦ ବର୍ଷର ପୁରୁଣା। କ୍ୟାଲିଫର୍ଣ୍ଣିୟାରେ ତାହାକୁ research (ଗବେଷଣା) କରି sprout (ଉଦ୍‌ଗତ) କରେଇଛନ୍ତି। ବୀଜ ତ ନଷ୍ଟ ହୋଇହିଁ ନାହିଁ, ବରଂ ସେହି ଗଛରୁ ଫୁଲ ମଧ୍ୟ ଫୁଟିଛି। ତୁମ୍ଭମାନଙ୍କର ମଧ୍ୟ ମନେ ହୁଏ ବୀଜବୈଶିଷ୍ଟ୍ୟ ଯଦି ଠିକ୍‌ରଖି ଚାଲି ପାର ତାହେଲେ କଣ ଯେ ହୋଇ ପାରେ ତାହା କୁହାଯାଏ ନାହିଁ। କିନ୍ତୁ cross (ବିପରୀତ ସଂମିଶ୍ରଣ) ହେଲେ ଆଉ ସେ କାମ ହେବ ନାହିଁ।

ଦୀ.ର. ୬/୪.୫.୧୯୬୦

## ।। ଯେ-କୌଣସି ପୁରୁଷକୁ ଯେ-କୌଣସି ଝିଅ ବିବାହ କରିଲେ କଣ ଦୋଷ ହୁଏ ।।

ଅନେକେ କହନ୍ତି, ଯେ-କୌଣସି ପୁରୁଷକୁ ଯେ-କୌଣସି ଝିଅ ବିବାହ କରି ପାରିବେ, ସେଥିରେ ଦୋଷ କଣ ? କିନ୍ତୁ ବ୍ୟାପାରଟା ଟିକିଏ ତଳେଇ ଦେଖିଲେହିଁ

ହୁଏ। ଜନ୍ମଟାତ ଅକସ୍ମାତ ଆକାଶରୁ ହୋଇନାହିଁ। ତୁ ଜନ୍ମ ନେଇଛୁ, ତା ଆଗରୁ ଜନ୍ମ ନେଇଛି ତୋର ବାପା, ତା ପୂର୍ବରୁ ତୋର ଜେଜେବାପା। ତାଙ୍କର ମଧ୍ୟ ବାପା ଥିଲେ, ତାଙ୍କର ମଧ୍ୟ ବାପା ଥିଲେ। ଏହି ପ୍ରକାରେ ଧାରାହିଁ ଚାଲି ଆସିଛି। ତାପରେ ତୋର ମଧ୍ୟ ଝିଅ ଅଛି। Sperm-ର (ଶୁକ୍ରକୀଟର) ମଧ୍ୟରେ male sperm (ପୁଂ ଶୁକ୍ରକୀଟ) ଅଛି, female sperm-ମଧ୍ୟ (ସ୍ତ୍ରୀ ଶୁକ୍ରକୀଟ ମଧ୍ୟ) ଅଛି। ଗୋଟିଏ static (ସ୍ଥାଣୁ), ଆଉ ଗୋଟିଏ dynamic (ଚରିଷ୍ଣୁ)। ଏହି female sperm (ସ୍ତ୍ରୀ ଶୁକ୍ରକୀଟ) ଠାରୁ ତୋର ଝିଅ ହେଲା। ତେଣୁ, ସେ କିନ୍ତୁ ତୋରହିଁ ଗୋଟିଏ part (ଅଂଶ)। ସେ ova-ର (ଡ଼ିମ୍ବକୋଷର) ମଧ୍ୟକୁ ଯାଇ ରହେ, ବଢ଼େ। ତା ମାନେ, ତୁହିଁ ତା ମଧ୍ୟରେ ଯାଇ ବଢୁଛୁ। ସେଠାରେ cell-division (କୋଷ-ବିଭାଜନ) ହୋଇ ଚାଲେ। ହେଉ ହେଉ centrosome (ପ୍ରାଣନ-ତାରକା) ମୁଣ୍ଡରେ ନେଇ ସେ ବଢ଼ି ଚାଲେ। ତୋର idea (ଭାବ) ଯେଉଁ ଭାବରେ imparted (ସଞ୍ଚାରିତ) ହେଲା, ଝିଅଟିର ଜନ୍ମ ମଧ୍ୟ ସେହି ରକମ ନେଇ ହେଲା। ସେଥିପାଇଁ ଝିଅକୁ ତାର ପିତୃଧାରାରେ cultured (ଶିକ୍ଷିତ) କରି ଦେବା ଦରକାର। ମନେ ରଖ, ବି-ଏ, ଏମ-ଏ ପାଶ କରିଲେହିଁ cultured (ଶିକ୍ଷିତ) ହେଲା ନାହିଁ। କୂଳକୃଷ୍ଟିର ଅନୁଶୀଳନ ଦରକାର। ଆଗରୁ ଆମ୍ଭମାନଙ୍କର କୂଳାଚାର ଥିଲା। ସେମାନେ similar clanship (ସଦୃଶ ବଂଶ) ଦେଖି ପୁଅଝିଅର ବିବାହ ଦେଉଥାନ୍ତି। ତୁମେ ଯଦି ତାହା ନ କର, ତାହେଲେ ତୁମର ଝିଅ ମଧ୍ୟରେ ଯେଉଁ ଧାରାଟା ଥିଲା ତାହା ନଷ୍ଟ ହୋଇଗଲା। ଏହି life (ଜୀବନଧାରା) ଆଉ ରହିଲା ନାହିଁ। ତୁମର seed-ର (ବୀଜର) suicide (ଆତ୍ମହନନ) ହେଲା। ଦୀ.ର. ୬/୧୦.୫.୧୯୬୦

## ॥ ଗୋଳମାଳ ବିବାହ ଯେଉଁମାନଙ୍କର ସେମାନଙ୍କୁ ବଞ୍ଚାଇବାର ଉପାୟ କଣ ॥

ପ୍ରଶ୍ନ – ଯେଉଁମାନେ ବିବାହରେ... ଗୋଳମାଳ କରି ବସି ଅଛନ୍ତି, ସେମାନଙ୍କୁ ବଞ୍ଚାଇବାର କଣ କୌଣସି ଉପାୟ ନାହିଁ?

ଶ୍ରୀଶ୍ରୀଠାକୁର – ସେହିପ୍ରକାରର ପଣ୍ଡିତଲୋକ ରହିଲେ ହୁଏତ back cross (ବୀଜୋତ୍କର୍ଷରେ ଉପନୀତ ହେବାର ଉଦ୍ଦେଶ୍ୟରେ ବିବାହ-ସଂଯୋଗ) କରି କରି କିଛି ବଞ୍ଚାଇ ପାରେ। କିନ୍ତୁ ପ୍ରତିଲୋମ-ସଂଯୋଗ ଖୁବ୍‌ବେଶୀ ହୋଇ ଗଲେ ଆଉ

ତାହା ସମ୍ଭବ ହୁଏ ନାହିଁ। ଧର, ତୁମର ପାଞ୍ଚଜଣ ଝିଅ ଅଛନ୍ତି। ଜଣକୁ ଡ଼ୋମ ସହିତ ଦେଲ, ଜଣକୁ ଦେଲ ମେହେନ୍ତର ସହିତ, ଜଣକୁ ମୁଚୀ ସହିତ, ଏହି ଭାବରେ ବିବାହ ଦେଲ। ଏବେ, ସେମାନେ ଯଦି minister (ମନ୍ତ୍ରୀ) ହୁଅନ୍ତି ତାହେଲେ ତୁମର culture-tradition-ର (କୃଷ୍ଟି-ଐତିହ୍ୟର) କଥା ଶୁଣିବେ ମଧ୍ୟ ନାହିଁ, ବୁଝିବାକୁ ମଧ୍ୟ ଚାହିଁବେ ନାହିଁ। ଆମ୍ଭମାନଙ୍କର traditional traits (ଐତିହ୍ୟଗତ ଧାରା) ଯାହା ଥିଲା ସେଗୁଡ଼ିକ ଅଶୋକଙ୍କ ସମୟରେ ଭାଙ୍ଗି ଗଲା। ସେତେବେଳେ ମୁସଲମାନ ଆସିବାର ପଥ ହେଲା। ଯେତେ Buddhist (ବୌଦ୍ଧ) ଥିଲେ, ସେମାନେ ମଧ୍ୟ ଅନେକେ ମୁସଲମାନ ହୋଇ ଗଲେ। ଏହିଭାବରେ tradition (ଐତିହ୍ୟଧାରା) ଭାଙ୍ଗି ଦେଇ ଆମେମାନେ ଏପରି ଅକାମ କରିଛୁ ଯେ ଆମ୍ଭମାନଙ୍କର ବ୍ୟକ୍ତିତ୍ୱ ବୋଲି ଆଉ କିଛି ନାହିଁ।

ପ୍ରଶ୍ନ – ଆମ୍ଭମାନଙ୍କର ଏହି devolution-ର (ଅଧଃପତନର) ଉପରେ ଆମ୍ଭମାନଙ୍କର କୌଣସି ହାତ ନାହିଁ।

ଶ୍ରୀଶ୍ରୀଠାକୁର – ହାତ ଅଛି। ଆମ୍ଭେମାନେହିଁ ତାହା ଭାଙ୍ଗିଲୁ। ଧୃତିକୁ, ଧର୍ମକୁ ବାଦ ଦେଲୁ। ତେଣୁ ଏହି ଅବସ୍ଥା। ଏବେ ମଧ୍ୟ ଯେଉଁଟିକକ ଅବଶିଷ୍ଟ ଅଛି ତାହାହିଁ ନେଇ ଯଦି ଉଠି ପଡ଼ି ଲାଗୁ ତାହେଲେ ପୁଣି ବଢ଼ି ଉଠି ପାରିବୁ। ...ବିବାହ-ବ୍ୟବସ୍ଥାରେ ଗୋଳମାଳ ହେବା କାରଣରୁ ତୁମ୍ଭମାନଙ୍କର zeal (ଉଦ୍ଦୀପନା) ଅନେକ କମି ଯାଇଛି। ଏବେ ମଧ୍ୟ ଉଦ୍ଧାରର ଉପାୟ ଅଛି। କରିଲେ ହୁଏ।

ପ୍ରଶ୍ନ – ଏହି 'ଅକାମ' କଣ ପାଇଁ ହେଲା ?

ଶ୍ରୀଶ୍ରୀଠାକୁର – ଏହା passionate enticement (ପ୍ରବୃତ୍ତିର ପ୍ରଲୋଭନ)। Existence (ସତ୍ତା)ର ଉପରେ କୌଣସି ଲୋଭ ନାହିଁ। ମୁଁ ଏବେହିଁ ଯଦି ମୋର ଗୋଟିଏ ଝିଅକୁ ପ୍ରତିଲୋମରେ ବିବାହ ଦେଇପାରେ, ତା ହେଲେ ହୁଏତ 'ମହାରାଜାଧିରାଜ' ଉପାଧି ପାଇଯିବି। ଯିବ ତ ଯିବ ଗୋଟିଏ ଝିଅ ଯିବ। ମୋର ତ ନାମ ହେବ। ଏହି ଯେମିତି, କେତେ ପୁରୁଷ ଧରି ମୋର ଉପାଧି ଚକ୍ରବର୍ତ୍ତୀ ଚାଲିଛି। ଆଜି ହୁଏତ ବିଶେଷ କୌଣସି ପ୍ରଲୋଭନରେ ପଡ଼ି ଟକ୍‌କରି ମୋର ଏହି ଉପାଧି ପାଲଟି ଦେଲି। ତା ମାନେ ହେଲା, ପୂର୍ବପୁରୁଷଙ୍କ ଉପରେ ମୋର ନିଷ୍ଠା ନାହିଁ।

ପ୍ରଶ୍ନ – ଏବେ mass mind-ହିଁ (ମଣିଷଙ୍କର ମନହିଁ) ଏହି ପ୍ରକାର ହୋଇ ଯାଇଛି।

ଶ୍ରୀଶ୍ରୀଠାକୁର – Mass (ମଣିଷ) ଏହି ଭାବରେ ଚଳନ୍ତି କେତେବେଳେ ?

ଯେତେବେଳେ ମନୀଷୀଗଣ ବୈଶିଷ୍ଟ୍ୟକୁ ଲଙ୍ଘନ କରି ବିଜାତୀୟ ଭାବଧାରାରେ ପ୍ରଭାବିତ ହୋଇ ବାସ୍ତବକର୍ମରେ ଏଗୁଡ଼ିକୁ କରିବାକୁ ଆରମ୍ଭ କରି ଦେଲେ, ବର୍ଣ୍ଣାଶ୍ରମ ଭାଙ୍ଗି ଦେଲେ। ଏହି ଯେଉଁ casteless society (ଶ୍ରେଣୀହୀନ ସମାଜ) କରିବାର କଥା କହନ୍ତି, caste ମାନେ କଣ ଜାଣିଛୁ ତ?

ଉତ୍ତର – Caste ମାନେ ତ ଜାତି।

ଶ୍ରୀଶ୍ରୀଠାକୁର – Caste ଆସିଛି castus ଠାରୁ, ମାନେ pure (ବିଶୁଦ୍ଧ)। Caste କହେ, ତୁମର group-ର (ଶ୍ରେଣୀର) ମଧ୍ୟରେ ତୁମେ pure (ବିଶୁଦ୍ଧ) ରୁହ, କ୍ଷତ୍ରିୟ ତାର groupରେ (ଶ୍ରେଣୀରେ) pure (ବିଶୁଦ୍ଧ) ରହୁ, ଏହି ରକମ ସବୁ। ବୈଶିଷ୍ଟ୍ୟଗତ ଗୁଣପଣା ଯେମିତି କୌଣସି ପ୍ରକାରେହିଁ ନଷ୍ଟ କିମ୍ବା ଦୁଷ୍ଟ ନ ହୁଏ। Caste-ର ମଧ୍ୟରେ ଯେ ଏତେକିଛି ଅଛି ତାହା କେହି ବୁଝିବାକୁ ଚାହାନ୍ତି ନାହିଁ, ଭିତରକୁ ମଧ୍ୟ ଦେଖନ୍ତି ନାହିଁ।...

ପ୍ରଶ୍ନ – ଯାହା ନଷ୍ଟ ହୋଇଯାଇଛି ତାହା ପାଇଁ କଣ କରିବୁ?

ଶ୍ରୀଶ୍ରୀଠାକୁର – ପୁଣି ଆରମ୍ଭ କରିବୁ। ଦୀକ୍ଷା, ଶିକ୍ଷା ଏବଂ ବିବାହ, ଏହି ତିନୋଟି ଯେପରି ଠିକ୍‌ରହେ ତାହା ଦେଖିବୁ। ପ୍ରତିଟି ବିବାହ ଯେପରି ବର୍ଣ୍ଣ-ବଂଶ-ଗୋତ୍ର-ବୟସ ଇତ୍ୟାଦି ବିଚାର କରି ସଦୃଶ ଘରେ ହୁଏ ତାର ବ୍ୟବସ୍ଥା କରିବୁ। ନିଜର ଐତିହ୍ୟ, କୂଳାଚାର ଠିକ୍ ରଖିବୁ।

ପ୍ରଶ୍ନ – ଠାକୁର ! ଆପଣ ସଦୃଶ ଘରେ ବିବାହ ଦେବାର କଥା ଆଜିକାଲି ଏତେ କହୁଛନ୍ତି ଯେ ଉଚ୍ଚଘରେ ଝିଅର ବିବାହ ଦେବାର କଥା ଯେପରି ଏକ ପାଖରେ ପଡ଼ି ରହିଛି।

ଶ୍ରୀଶ୍ରୀଠାକୁର – ଏବେ ଏକଥା କହୁଛ କଣ ପାଇଁ? ବଡ଼ ଘର କହିଲେ ଯେ ତୁମ୍ଭେମାନେ ବ୍ୟତିକ୍ରମ ଦୁଷ୍ଟ ଗୋଟିଏ ଘରକୁ ବୁଝ। ସେଥିପାଇଁ କହେ, ସଦୃଶହିଁ ଭଲ। ସଦୃଶ ଘରେ ପାରିଲେହିଁ ବିବାହ ଦେବ। ଅବଶ୍ୟ ପ୍ରକୃତରେ ବଡ଼ ଘର ଯେଉଁଟା ତାହା ଆହୁରି ଭଲ।

ପ୍ରଶ୍ନ – ଆପଣ ଆଗରୁ କହୁଥାନ୍ତି, ବର ମାନେ ଶ୍ରେଷ୍ଠ।

ଶ୍ରୀଶ୍ରୀଠାକୁର – ଏବେ ମଧ୍ୟ କୁହେ। ସେଥିପାଇଁ ଏହି ଭାବରେ କୈଫିୟତ ଦେଲି।

ପ୍ରଶ୍ନ – ଆପଣ କହନ୍ତି, ସଦ୍‌ବଂଶର ନିଶାନା ଶ୍ରଦ୍ଧା। କିନ୍ତୁ ଏବେ ଯେଉଁମାନେ ସଦ୍‌ବଂଶ ବୋଲି ଖ୍ୟାତ, ସେମାନଙ୍କ ମଧ୍ୟରେ ଯେପରି ତାହା ଦେଖାଯାଏ ନାହିଁ।

ଶ୍ରୀଶ୍ରୀଠାକୁର – ସେଥିପାଇଁ ବଂଶ ମଧ୍ୟ ସେହି ପ୍ରକାର ହୋଇ ଯାଇଛି।

ପ୍ରଶ୍ନ – କୌଣସି ମହାପୁରୁଷଙ୍କର କଥା ଶୁଣିଲେ ସେମାନେ ନାକ ଟେକନ୍ତି।

ଶ୍ରୀଶ୍ରୀଠାକୁର – ତାହେଲେ ବୁଝ, ସମସ୍ତେ କେମିତି ହୋଇ ଯାଇଛନ୍ତି। ଏମାନଙ୍କ ମଧ୍ୟରେ କାହାକୁ କାହାକୁ ଉଠା ଯାଇପାରେ, କାହାକୁ ଆଉ ହୁଏହିଁ ନାହିଁ।

ଦୀ.ର. ୬/୧୦.୫.୧୯୬୦

## ॥ ପ୍ରତିଲୋମ-ଜାତକର ପ୍ରକୃତି ବଦଳେ କି ନାହିଁ॥

ପ୍ରଶ୍ନ – ପ୍ରତିଲୋମ-ଜାତକମାନେ ଯେ ଜନ୍ମଗତ ଭାବରେ ଦୁଷ୍ଟ, ଇଷ୍ଟମୁଖୀ ହୋଇ ନାମ ଧ୍ୟାନ କରିବା ଫଳରେ ତ ଏମାନଙ୍କର ପରିବର୍ତ୍ତନ ହୋଇ ପାରେ ?

ଶ୍ରୀଶ୍ରୀଠାକୁର – ଚେଷ୍ଟା କରି ଦେଖି ପାର। ଯଦି ହୁଏ ତ ଭଲହିଁ। ହଜରତ ମହମ୍ମଦ କହୁଥାନ୍ତି, ଗୋଟିଏ ପାହାଡ଼ ୫୦ ମାଇଲ ଦୂରକୁ ଘୁଞ୍ଚି ଯାଇଛି ତାହା ବିଶ୍ୱାସ କର, କିନ୍ତୁ ଗୋଟିଏ ମଣିଷର ପ୍ରକୃତି ବଦଳିଛି ତାହା ବିଶ୍ୱାସ କର ନାହିଁ।

ପ୍ରଶ୍ନ – କିନ୍ତୁ ଆମ୍ଭମାନଙ୍କର ସଂସ୍କାର ବଦଳାଇବା ପାଇଁହିଁ ତ ଆପଣଙ୍କୁ ଧରିଛୁ।

ଶ୍ରୀଶ୍ରୀଠାକୁର – ସେଗୁଡ଼ିକ ବଢ଼ାଇବା ପାଇଁ ଧରିଛ। ପୁଣି କିଛି cure (ସଂଶୋଧନ) କରିବା ପାଇଁ ମଧ୍ୟ ଧରିଛ। ଦୀ.ର. ୬/୧୨.୫.୧୯୬୦

## ॥ କାୟସ୍ଥମାନେ ସଙ୍ଗତିହାରା, ଯୋଗ୍ୟତାହାରା ହେଲେ କଣ ପାଇଁ॥

ଯଶୋରର ରାଜା ପ୍ରତାପାଦିତ୍ୟ କୂଳୀନ ମାନେ ଭାବୁଥାନ୍ତି ବୋଧ ହୁଏ କୌଣସି title (ଉପାଧି)। ତେଣୁ, ସେ ଗୁହକୁ ମଧ୍ୟ କୂଳୀନ କରିଦେଲେ। କିନ୍ତୁ କୂଳୀନ ସେହିମାନେ ଯେଉଁମାନେ କୂଳ ରକ୍ଷା କରି ଚାଲିଛନ୍ତି। ବହୁ indomitable (ଦୁର୍ଜୟ) ଲୋକ କାୟସ୍ଥମାନଙ୍କ ମଧ୍ୟରେ ଥିଲେ। କିନ୍ତୁ ଗୁହମାନେ କୂଳୀନ ହେବା ପରେ କୂଳୀନର ଝିଅ ବିବାହ କରିବାକୁ ଲାଗିଲେ। ଏହି ଭାବରେ ସୂକ୍ଷ୍ମ ପ୍ରତିଲୋମ ଢୁକି ଗଲା। ତାହା ଫଳରେ, ଏହି କାୟସ୍ଥ ଜାତିଟାହିଁ ଏକେବାରେ ସଙ୍ଗତିହାରା, ଯୋଗ୍ୟତାହାରା ହୋଇ ପଡ଼ିଲା। ଦୀ.ର. ୬/୧୨.୫.୧୯୬୦

## ॥ ପ୍ରତିଲୋମ ବିବାହକୁ ଭୟ କରେ କଣ ପାଇଁ॥

ପ୍ରତିଲୋମ marriage (ବିବାହ)-ଟିକୁ ମୋର ସବୁ ସମୟ ଭୟ କରେ। ଯେତେ ଏଗୁଡ଼ିକ ଦେଖେ ସେତେ କାବୁ ହୋଇଯାଏ, hopeless (ନିରାଶ) ହୋଇ

ଯାଏ। ... ଆମର ସେଠାରେ (ହିମାୟତପୁରରେ) ବହୁତ ମୁସଲମାନ ଥିଲେ, ସେମାନଙ୍କୁ ଦେଖୁଥାଏ। ସେମାନଙ୍କ ମଧ୍ୟରେ ହିନ୍ଦୁ ଝିଅମାନଙ୍କ ପେଟରୁ ଯେଉଁମାନଙ୍କର ଜନ୍ମ, ସେମାନେ ହିନ୍ଦୁମାନଙ୍କର ବେଶୀ ଶତ୍ରୁ ହେଉଥାନ୍ତି। ଆଉରଙ୍ଗଜେବ ଆଦିମାନଙ୍କୁ ଦେଖ, ସବୁ ସେହି ପ୍ରକାରର। ପୁଣି ପଶୁମାନଙ୍କ ମଧ୍ୟରେବି ଲକ୍ଷ୍ୟ କରିଛି। ଅବଶ୍ୟ କୁକୁରରହିଁ ବେଶୀ ଦେଖାଯାଏ। (ହିନ୍ଦୁମାନଙ୍କ ମଧ୍ୟରେ ଯେଉଁ ପ୍ରତିଲୋମ ମାନେ ହୁଅନ୍ତି ସେମାନେ) ସବୁ ସେହି ପ୍ରକାରର। ହୁଏତ ତୁମେ ତାର ଉପକାର କରିଛ। ସେ ତାହା ମନେହିଁ ରଖେ ନାହିଁ। ଫାଁକ ପାଇଲେହିଁ ତୁମକୁ ମାରି ଦିଏ। ତୁ ବିଶେଷ ଖିଆଲ ରଖିବୁ, ତୋ ବଂଶରେ ଯେପରି ସଦୃଶ ଘର ଛଡ଼ା ବିବାହ ଆଦି ନ ହୁଏ।

ଦୀ.ର. ୬/୧୩.୫.୧୯୬୦

## ॥ ବଂଶାନୁକ୍ରମିକତା ଏବଂ ଆନୁଷଙ୍ଗିକ ଜିଜ୍ଞାସା ॥

ପ୍ରଶ୍ନ – Better heredity (ଉନ୍ନତ ବଂଶାନୁକ୍ରମିକତା) ପାଇବାକୁ ହେଲେ କଣ କରିବାକୁ ହେବ ?

ଶ୍ରୀଶ୍ରୀଠାକୁର – Heredity (ବଂଶାନୁକ୍ରମିକତା) ଭଲ କରିବାକୁ ହେଲେ ତାର process (ଉପାୟ) ହେଲା ସଦୃଶ କୂଳରେ ବିବାହ କରିବା। ତାପରେ ଛୁଆପିଲା ଯାହା ହେବେ ସେମାନଙ୍କର ଶିକ୍ଷା ଓ culture (କୃଷ୍ଟି) ଯେଉଁଥିରେ ଉନ୍ନତ ଧରଣର ହୁଏ ତାହାର ବ୍ୟବସ୍ଥା କରିବା। Heredity (ବଂଶାନୁକ୍ରମିକତା) ବ୍ୟତିକ୍ରମଦୁଷ୍ଟ ହେଲେ ଖୁବ୍ ଖରାପ ହୋଇ ଯାଏ।

ପ୍ରଶ୍ନ – ଝିଅ ଯଦି Lower heredity-ର (ନୀଚ ବଂଶୋଦ୍ଭୁତ) ହୁଏ ?

ଶ୍ରୀଶ୍ରୀଠାକୁର – ସେ ତ ଭଲ। ସେଥିରେ ଅନୁଲୋମ ହୁଏ। ତାହା ଅନେକ ଭଲ। ବର୍ତ୍ତମାନର ଯେଉଁ ସମୟ ସେଥିରେ ମନେ ହୁଏ ସମାନ clan-ରେ (ବଂଶରେ) ବିବାହ ହେବାହିଁ ଭଲ।

ପ୍ରଶ୍ନ – ସମାନ clan (ବଂଶ)ମାନେ କଣ ସମାନ ବର୍ଣ୍ଣ ?

ଶ୍ରୀଶ୍ରୀଠାକୁର – ତା ଛଡ଼ା ଆଉ କଣ ?

ପ୍ରଶ୍ନ – ତାହେଲେ ଏତେଦିନ ଆମେ ଯେଉଁ ଅନୁଲୋମ ଅସବର୍ଣ୍ଣର କଥା କହୁଛେ ତାର କଣ ହେବ ?

ଶ୍ରୀଶ୍ରୀଠାକୁର – ଏହା ମୁଁ କହୁଛି ଏଠାକାର ରକମ ଦେଖି, for the time

being (କିଛି-ସମୟ ପାଇଁ)। ଆଗକାଳର ଦିନରେ ଋଷିମାନେ ବଂଶ ଦେଖି ବିଚାର କରି ଯେଉଁଥିରେ ଭଲ result (ପରିଣତି) ହେବ ସେହିପରି ବିବାହ ଦେଉଥାନ୍ତି। ଏବେ ବଂଶଗୁଡ଼ିକ ମଧ୍ୟରେ କେଉଁଟି କେଉଁ ପ୍ରକାର ହୋଇ ଅଛି ଟେର ପାଇବା ମୁଶକିଲ। ହୁଏତ ଜଣେ ବ୍ରାହ୍ମଣର ଝିଅ ଆଉ ଜଣେ ମେହେନ୍ତରର ପୁଅ ଗୋଟିଏ କ୍ଲାସରେ ପଢ଼ନ୍ତି। ଏକ ସଙ୍ଗରେ ମିଶୁ ମିଶୁ ସେମାନଙ୍କ ମଧ୍ୟରେ ଭାବ ହୋଇ ଗଲା। ତା ପରେ ଝିଅଟି ସେହି inferior (ନୀଚବଂଶର) ପୁଅଟିକୁ ଗୋପନରେ ବିବାହ କରିଲା। Conception ମଧ୍ୟ (ଗର୍ଭସଞ୍ଚାର ମଧ୍ୟ) ହେଲା। ପ୍ରଥମେ ଲୁଚାଇଲେ, ପରେ ଆଉ ପାରେ ନାହିଁ। ହୁଏତ ତାର ଗୋଟିଏ ଝିଅ ହେଲା। ପରେ ସେହି ଝିଅଟିକୁ ତୁମ ପୁଅ ସହିତ ବିବାହ ଦେଲା। ଦେଇ ଦେଲା ତୁମ ବଂଶର କାମ ସାରି। ପୁଣି, ଆଉ ଗୋଟିଏ ରକମ ମଧ୍ୟ ଆରମ୍ଭ ହୋଇଛି। କୋଷ୍ଠୀର ଛକ ମଧ୍ୟରେ ଅନେକଙ୍କର ଲେଖାଥାଏ ବିପ୍ରବର୍ଗ। ସେ ନିଜେ ହୁଏତ ବୈଶ୍ୟ। ଏହି ଲେଖା ଦେଖାଇ କୁହେ, ମୁଁ ବିପ୍ର। ତା ପରେ ବ୍ରାହ୍ମଣର ଝିଅକୁ ବିବାହ କରେ। ଏହିସବୁ ନାନା ପ୍ରକାରରେ ହେଉଛି। ଗୋଟିଏ spoiling fix-ର (ଧ୍ୱଂସାତ୍ମକ ସଙ୍କଟାବସ୍ଥାର) ପରି ଆରମ୍ଭ ହୋଇଛି। ଝିଅମାନଙ୍କର tendency-ହିଁ (ପ୍ରବଣତା-ହିଁ) ହେଲା ସଂସାରଟିକୁ ବାନ୍ଧି ରଖିବା। ସେମାନେହିଁ ଯଦି spoiled (ନଷ୍ଟ) ହୋଇ ଯାଆନ୍ତି ତାହେଲେ ଆଉ ଧରି ରଖିବ କିଏ!

ଦୀ.ର. ୬/୧୭.୫.୧୯୬୦

॥ ଶ୍ରୀଶ୍ରୀଠାକୁରଙ୍କର ବାଣୀ ॥

ବିବାହ-ବ୍ୟାପାରେ ସବୁଠୁ ଆଗରୁ
ବର୍ଣ୍ଣର ହିସାବ କରିବୁ,
ତା' ସହିତ ବଂଶଟିକୁ
ବେଶ୍ ତନଖି ଦେଖିବୁ;
ବଂଶ ଦେଖି ଶ୍ରଦ୍ଧା ହେଲେହିଁ
ସ୍ୱାସ୍ଥ୍ୟ ଦେଖିବୁ କିପରି ତା'ର,
ତା' ସହିତ ତୁ ମିଳେଇ ନେବୁ
ସ୍ୱଭାବ-ଅଭ୍ୟାସ-ବ୍ୟବହାର;
ଏହି ସବୁଗୁଡ଼ିକର ସୁସଙ୍ଗତି
ମେଳିହିଁ ଯଦି ଟାଏରେ,
ବିଦ୍ୟା ଦେଖିବୁ ନଜର କରି
କର୍ମର ଓଜନ ତାହାରେ;
ପରମ୍ପର୍ଯ୍ୟୋ ଏହିଗୁଡ଼ିକ ସବୁ
ମିଳାଇ ବିବାହ ଦେଲେ,
ପ୍ରାୟହିଁ ଦେଖିବୁ ଠକିବୁ ନାହିଁ ତୁ
ମରିବୁ ନାହିଁ ବିଷରେ ।୨।

(ଅନୁଶ୍ରୁତି ୧ମ ଖଣ୍ଡ, ବିବାହ)